ଇଂରାଜୀ ସାହିତ୍ୟର ଇତିହାସ

ଉତ୍ସର୍ଗ

ବାପା, ମା'

**ଶ୍ରୀ ଭଗବାନ ମହାପାତ୍ର**

**ଶ୍ରୀମତୀ ନିଶାମଣି ଦେବୀଙ୍କ**

ହାତରେ ଦେଲି ।

**ଶ୍ୟାମ**

# ଇତିହାସ କଥା

ଦେବଦୂତମାନଙ୍କର ଯେଉଁଠିକି ଡର, ନିର୍ବୋଧମାନେ ସେଠାକୁ ଧସେଇ ପଶନ୍ତି । ମୋ ଇଂରେଜୀ ସାହିତ୍ୟର ଇତିହାସ ରଚନା ହୁଏତ ସେହିଭଳି ଏକ ପ୍ରୟାସ । ଜନୈକ ଅବାଞ୍ଛିତ ଶିଷ୍ୟଙ୍କ କଥା ମନେପଡ଼େ । ଶିଷ୍ୟଜଣକ ସଙ୍ଗୀତ ଶିକ୍ଷା ଆଶାରେ ଜଣେ ପୋଖତ ଗୁରୁଙ୍କ ପାଖରେ ପହଞ୍ଚିଲେ । ଗୁରୁ କିନ୍ତୁ ତାଙ୍କୁ ପାଖ ପୂରେଇଦେଲେ ନାହିଁ । ଶିଷ୍ୟ ବିଚରା ହତାଶହୋଇ ଆଶ୍ରମ ପାଖରେ କେଉଁଠି ବସି ଗୀତ ଅଭ୍ୟାସ କରୁଥିଲେ । ସେ ଗୀତ ଗୁରୁଙ୍କ କାନରେ ବାଜିଲା । ଏ ଭଳି ବିଭ୍ରାନ୍ତ ସ୍ୱରରେ କେହି ଗୀତ ଗାଇପାରେ ? ଗୁରୁଙ୍କ ପକ୍ଷରେ ତାହା ଅସହ୍ୟ ହୋଇଉଠିଲା । ସଙ୍ଗେ ସଙ୍ଗେ ସେ ଶିଷ୍ୟଟି ନିକଟରେ ପହଞ୍ଚିଲେ; ତ୍ରୁଟି ଦର୍ଶାଇ ଦେବାକୁ ଯାଇ ନିଜେ ଗୀତଟି ଗାଇଲେ । ମୋ ଲେଖା ବି କୌଣସି ବିଶେଷଜ୍ଞଙ୍କ ପକ୍ଷରେ ଅସହ୍ୟ ହେଲେ ଶ୍ରମ ସାର୍ଥକହେବ ।

ଇଂରେଜମାନେ ଓଡ଼ିଶାକୁ ଆସିଲେ, ଗଲେ । ଦେଢ଼ଶହ ବର୍ଷ ଧରି ସ୍କୁଲ କଲେଜରେ ଇଂରେଜୀ ସାହିତ୍ୟ ପଢ଼ାହେଲା । ଏ ସାହିତ୍ୟ ପ୍ରଭାବରେ ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶ ଲାଭ କଲା । ତଥାପି ଓଡ଼ିଆରେ ଖଣ୍ଡିଏ ଇଂରେଜୀ ସାହିତ୍ୟର ଇତିହାସ ରଚିତ ହୋଇନଥିବାର ଦେଖି ମୁଁ ବିସ୍ମିତ ହେଉଥିଲି । ସମ୍ଭବତଃ ପୂର୍ବେ ଇଂରେଜୀ ଭାଷା ମାଧ୍ୟମରେ ହିଁ ଜ୍ଞାନାର୍ଜନ ପାଇଁ ବିଶେଷ ଝୁଙ୍କ ଥିଲା । କିନ୍ତୁ ବର୍ତ୍ତମାନ ମାତୃଭାଷା ମାଧ୍ୟମରେ ଯାବତୀୟ ଜ୍ଞାନ ଆହରଣର ଉଦ୍ୟମ ହେଉଥିବାବେଳେ ଓଡ଼ିଆ ଭାଷାରେ ଇଂରେଜୀ ସାହିତ୍ୟର ଇତିହାସ ରଚନାର କିଛି ଆବଶ୍ୟକତା ହୁଏତ ରହିଛି ।

ଏମ୍. ଏ. ଶ୍ରେଣୀରେ ପଢ଼ୁଥିବାବେଳେ ମୋର ଏ ପୁସ୍ତକଟିର ପରିକଳ୍ପନା ମନରେ ଝଡ଼ଝଂଝା ସହ ଲଢ଼େଇ କରୁ କରୁ କେତେ ବର୍ଷ ବିତିଗଲା । ବିଶ୍ୱଭାରତୀ ସ୍ନାତକୋତ୍ତର ଓଡ଼ିଆ ପାଠ୍ୟକ୍ରମରେ ଏକ ବିଶେଷ ପତ୍ର ଭାବେ ଇଂରେଜୀ ସାହିତ୍ୟର ଇତିହାସର ଅନ୍ତର୍ଭୁକ୍ତି ମୋର ଅତୀତର ସ୍ୱପ୍ନକୁ ପୁଣି ଜାଗରୂକ କରିଥିଲା । ୧୯୭୫ ମସିହାର ପୂଜା ଛୁଟିରେ ସତକୁସତ ଦିନେ ବହି ଲେଖା ଆରମ୍ଭ କରିଦେଲି । ଏ ଉଦ୍ୟମରେ ମୋତେ ବିଶେଷ ଉତ୍ସାହିତ କରିଥିଲେ ପ୍ରାଧ୍ୟାପକ ଡକ୍ଟର ନରେନ୍ଦ୍ରନାଥ ମିଶ୍ର ।

ଗବେଷଣା ମାଧ୍ୟମରେ ନୂତନ ଦିଗ୍‌ବଳୟର ସନ୍ଧାନ ଦେବା ମୋର ଲକ୍ଷ୍ୟ ନୁହେଁ—ତାହା ବହୁ ବୈଦଗ୍ଧ୍ୟର ଅପେକ୍ଷା ରଖେ । ଇଂରେଜୀ ସାହିତ୍ୟର ବିକାଶ ଓ ବିଶିଷ୍ଟ ଲେଖକଙ୍କ ସମ୍ବନ୍ଧରେ ସାଧାରଣ ଭାବରେ ଗୃହୀତ କିଛି ତଥ୍ୟ ମାତ୍ର ମୁଁ ଉପସ୍ଥାପିତ କରିଛି । ଇଂରେଜୀ ସାହିତ୍ୟ ଜଗତରେ ପ୍ରବେଶ ପାଇଁ ଏହାକୁ ଆଦ୍ୟ ସୋପାନ ହିସାବରେ ବ୍ୟବହାର କରାଯାଇପାରେ ।

ପୁସ୍ତକଟି ପାଇଁ ବିଭିନ୍ନ ସୂତ୍ରରୁ ଉପାଦାନ ସଂଗ୍ରହ କରିଥିଲେ ମଧ୍ୟ ଜେ. ପି. ଲିଂ ଓ ଆଲବାର୍ଟଙ୍କ ଗ୍ରନ୍ଥ ଦୁଇଟିକୁ ମୁଁ ବିଶେଷ ଭାବରେ ଅନୁସରଣ କରିଛି; ଆଲବାର୍ଟଙ୍କ ଯୁଗବିଭାଜନ ଓ ଯୁଗଚେତନା ବିଶ୍ଳେଷଣକୁ ଆଦର୍ଶ ଭାବରେ ଗ୍ରହଣ କରିଛି; ଆବଶ୍ୟକ ସ୍ଥଳେ କାଜାମିଆନ୍, ଲିଗୁଇ, ଗ୍ରିଅର୍ସନ୍ ଓ ଏ. ସି. ଓ୍ୱାର୍ଡ଼ ଆଦିଙ୍କ ଗ୍ରନ୍ଥର ସାହାଯ୍ୟ ନେଇଛି; ବଙ୍ଗଳାର ବିମଳକୃଷ୍ଣ ଦତ୍ତ ଓ ହିନ୍ଦୀର ଡକ୍ଟର ଏମ୍. ପି. ଖତ୍ରୀଙ୍କ ଗ୍ରନ୍ଥଦ୍ୱୟ ମଧ୍ୟ ମୋର ସହାୟକ ହୋଇଛି । ଏ ସମସ୍ତ ଲେଖକଙ୍କ ନିକଟରେ ମୁଁ ଋଣୀ ।

ଲେଖାର ବିଭିନ୍ନ ପର୍ଯ୍ୟାୟରେ ମୂଲ୍ୟବାନ୍ ପରାମର୍ଶ ଓ ଉତ୍ସାହ ଦେଇଛନ୍ତି ପ୍ରଫେସର ଖଗେଶ୍ୱର ମହାପାତ୍ର, ଡକ୍ଟର ନୀଳାଦ୍ରିଭୂଷଣ ହରିଚନ୍ଦନ, ଡକ୍ଟର ବନମାଳୀ ରଥ ଓ ଇଂରେଜୀ ଅଧ୍ୟାପକ ଶ୍ୟାମଳ ସରକାର । ଆମ ଛାତ୍ରଛାତ୍ରୀଙ୍କ ଅବଦାନ ମଧ୍ୟ ଊଣା ନୁହେଁ । ଇଂରେଜୀ ବିଭାଗର ଶ୍ରୀ ଲଲାଟେନ୍ଦୁ ପଣ୍ଡା, ଓଡ଼ିଆ ବିଭାଗର ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ, ମନୋରଞ୍ଜନ ରାଉତ, କୁମାରୀ କାଞ୍ଚନ ଦାସ ଓ ଗୀତା ଗିରି ପାଣ୍ଡୁଲିପି ପ୍ରସ୍ତୁତ କାମ ଆଗେଇ ନେଇ ଗୁରୁଭାର ଲାଘବ କରିଛନ୍ତି ।

ପାଣ୍ଡୁଲିପିର ଅର୍ଦ୍ଧାଧିକ ଚୂଡ଼ାନ୍ତ ଲିପି ପ୍ରସ୍ତୁତ କରିଛନ୍ତି ମୟୂରଭଞ୍ଜ ଅନ୍ତର୍ଗତ ନହରା ସ୍କୁଲର ପ୍ରଧାନଶିକ୍ଷକ ଶ୍ରୀ ରାମକୃଷ୍ଣ ବେହେରା ଓ ତାଙ୍କର ଅନୁରାଗିଣୀ ପତ୍ନୀ ଶ୍ରୀମତୀ ସୌଭାଗ୍ୟମଞ୍ଜରୀ । ଜ୍ୟେଷ୍ଠମାସ ଦ୍ୱିପହରିଆ ଖରାବେଳେ ପ୍ରାୟ ପନ୍ଦରଦିନ ଧରି ମିଳିତ ଉଦ୍ୟମ କରି ସେ ଦୁହେଁ ମୋ କାମ ଅନେକ ଆଗେଇ ନେଇଥିଲେ । ତଥାପି ଯାହା ବାକି ରହିଲା ତାକୁ ସାଉଁଟିନେଲେ ସହଧର୍ମିଣୀ ରୂପା । ଭ୍ରାତୃଷ୍ପୁତ୍ର ଶ୍ରୀମାନ୍ ବିଜୟକୃଷ୍ଣ—ଶୀଘ୍ରଲୁଚିଂଟାପାକ ଶୁଣ୍ଡିସମ୍ପୂର୍ଣ୍ଣ କେତେ ଶ୍ରେଷ୍ଠ ଶ୍ରେଷ୍ଠ ଦାୟିତ୍ୱ ସେ ତୁଲାଇଛି । ଠାକୁରେ ତାକୁ ଦୀର୍ଘାୟୁ କରନ୍ତୁ । ବିଶ୍ୱଭାରତୀ କଳାଭବନର ଛାତ୍ର ଏ ବହିରେ ସନ୍ନିବିଷ୍ଟ ଲେଖକଙ୍କ ଚିତ୍ରଗୁଡ଼ିକ ଆଙ୍କି ଦେଇଛନ୍ତି । ସାଧାରଣ ନାମସୂଚୀ ପ୍ରସ୍ତୁତ କରିଛନ୍ତି ଶ୍ରୀମାନ୍ ନରସିଂହ ସାହୁ ଓ ସରୋଜକୁମାର ହୋତା ।

ପ୍ରକାଶକ ଶ୍ରୀ ଅଭିରାମ ମହାପାତ୍ରଙ୍କ ଉତ୍ସାହ ବିନା ମୋ ବହିଲେଖା ବୃଦ୍ଧ କଚ୍ଛପ ଗତିରେ ଆହୁରି କେତେଦିନ ଚାଲିଥାନ୍ତା । ବହିରେ ଚିତ୍ର ଦେବାର ପରିକଳ୍ପନା ତାଙ୍କର । ତାଙ୍କ ଆନ୍ତରିକତା ଭୁଲିବାର ନୁହେଁ ।

ପୁସ୍ତକଟି ସମ୍ପୂର୍ଣ୍ଣ ତ୍ରୁଟିମୁକ୍ତ ହୋଇପାରିଲା ନାହିଁ । ଦ୍ୱିତୀୟ ସଂସ୍କରଣର ସୁଯୋଗ ଭାଗ୍ୟକୁ ଯୁଟିଲେ ହୁଏତ ଏହାକୁ ଅଧିକ ତ୍ରୁଟିଶୂନ୍ୟ ତଥା ଉପାଦେୟ କରାଯାଇ-ପାରିବ ।

**ଲେଖକ**

୧୫ । ୬ । ୭୮

# ସୂଚୀପତ୍ର

# ପ୍ରଥମ ଅଧ୍ୟାୟ

## ଆଂଗ୍ଲୋ ସାକ୍‌ସନ୍ ଯୁଗ

[ ଖ୍ରୀ : ୪୫୦—୧୦୫୦ ]

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ଇଂରେଜୀ ସାହିତ୍ୟର ଉଷାକାଳ । ପ୍ରାଚୀନ ପାଣ୍ଡୁଲିପିରୁ ଏହାର ଅସ୍ତିତ୍ୱ ଓ ସ୍ୱରୂପ ଉଦ୍‌ଘାଟିତ । ପଣ୍ଡିତମାନେ ଏହାକୁ ଆଂଗ୍ଲୋ ସାକ୍‌ସନ୍ ସାହିତ୍ୟ କହିଥାନ୍ତି ।

ପଞ୍ଚମ ଶତାବ୍ଦୀର ମଧ୍ୟଭାଗରେ ହୁନ୍‌ମାନଙ୍କଦ୍ୱାରା ବିତାଡ଼ିତ ହୋଇ ଜର୍ମାନୀର ଏଙ୍ଗ୍‌ଲସ (Angles), ସାକ୍‌ସନ୍‌ସ୍ (Saxons) ଓ ଜୁଟ୍‌ସ୍ (Jutes) ନାମକ ତିନୋଟି ଉପଜାତି ଗ୍ରେଟ୍ ବ୍ରିଟେନର ପୂର୍ବାଞ୍ଚଳ ଅଧିକାର କଲେ । ଏଙ୍ଗ୍‌ଲସମାନେ ହମ୍ବର (Humber)ର ଉତ୍ତରାଞ୍ଚଳ, ଜୁଟ୍‌ମାନେ କେଣ୍ଟ (Kent) ଓ ସାକ୍‌ସନମାନେ ଟେମ୍‌ସ୍ ନଦୀର ଦକ୍ଷିଣପାର୍ଶ୍ୱସ୍ଥ ଅବଶିଷ୍ଟ ଅଞ୍ଚଳ ଉପରେ ଆଧିପତ୍ୟ ବିସ୍ତାର କଲେ । ଇଂଲଣ୍ଡର କେଲ୍‌ଟ୍ (Celt) ବା ବ୍ରିଟନ (Briton) ନାମକ ଆଦିମ ଅଧିବାସୀ ଏହି ଆକ୍ରମଣରେ ବିଧ୍ୱସ୍ତ ଓ ନିଶ୍ଚିହ୍ନପ୍ରାୟ ହୋଇଗଲେ । ସେମାନଙ୍କ ଭାଷା ଓ ସାହିତ୍ୟ ମଧ୍ୟ ଏଥିସହିତ ଲୁପ୍ତ ହେଲା । ଏହି ଜର୍ମାନୀ ଉପଜାତିର ଲୋକେ ଅତ୍ୟନ୍ତ ବର୍ବର, ଯୁଦ୍ଧଖୋର ଓ ଯାଯାବର ଶ୍ରେଣୀର । ଏମାନେ ପ୍ରକୃତିର ବିଭିନ୍ନ ବସ୍ତୁକୁ ଦେବତାବୋଲି ପୂଜା କରୁଥିବାରୁ ଏମାନଙ୍କୁ ହିଦେନ୍ ବା ପାଗାନ୍ କୁହାଯାଏ । ଜର୍ମାନୀ ବିଦେଶୀମାନଙ୍କଦ୍ୱାରା ଅଧିକୃତ ହେବାରୁ ସେମାନେ ପୁଣି ନିଜ ଜନ୍ମଭୂମିକୁ ଫେରିବାର ସ୍ୱପ୍ନ ପରିତ୍ୟାଗ କରି ଇଂଲଣ୍ଡକୁ ହିଁ ନିଜର ସ୍ଥାୟୀ ବାସଭୂମି ଭାବରେ ଗ୍ରହଣ କରିନେଇଥିଲେ, ସ୍ଥାୟୀ ବସତି ସ୍ଥାପନକରି କୃଷିକର୍ମ ଉପରେ ଜୀବିକା ନିର୍ବାହ କରିବାକୁ ଲାଗିଲେ । ଏହି ସମୟରେ ଧର୍ମଯାଜକ ଅଗଷ୍ଟାଇନ୍ (Saint Augustine)ଙ୍କ ଖ୍ରୀଷ୍ଟଧର୍ମପ୍ରଚାର ଏମାନଙ୍କ ସାମାଜିକ ଜୀବନକୁ ବହୁମାତ୍ରାରେ ପ୍ରଭାବିତ କଲା । ସେଣ୍ଟ ଅଗଷ୍ଟାଇନ୍ ରୋମରୁ ୫୯୭ ଖ୍ରୀ:ରେ ଆସି କେଣ୍ଟ ଜିଲ୍ଲାରେ ଧର୍ମପ୍ରଚାର ଆରମ୍ଭକଲେ । ସୁବିଖ୍ୟାତ କାଣ୍ଟରବରୀ ଗୀର୍ଜା (Canterbury) ତାଙ୍କର ଦ୍ୱାରା ପ୍ରତିଷ୍ଠିତ । ସ୍ଥାନୀୟ ଅଧିବାସୀ ଜୁଟ୍‌ଗଣ ପ୍ରଥମେ ତାଙ୍କ ଧର୍ମ ଗ୍ରହଣ କଲେ । ଏହି ସମୟରେ ଆୟାରଲ୍ୟାଣ୍ଡରୁ ମଧ୍ୟ ଖ୍ରୀଷ୍ଟଧର୍ମ ପ୍ରଚାରକଗଣ ନର୍ଦାମ୍ବ୍ରିଆରେ ଗୀର୍ଜା (monasteries) ନିର୍ମାଣ କରି ଖ୍ରୀଷ୍ଟଧର୍ମ ପ୍ରଚାର କରିବାକୁ ଲାଗିଲେ । ଏହି

ଉଭୟ ଧର୍ମୀୟଗୋଷ୍ଠୀ ମଧ୍ୟରେ ସଂଘର୍ଷର ସଙ୍କେତ ସାହିତ୍ୟରେ ପ୍ରତିଫଳିତ । ସମଗ୍ର ଇଂଲଣ୍ଡରେ କ୍ରମେ ଖ୍ରୀଷ୍ଟଧର୍ମ ପରିବ୍ୟାପ୍ତ ହେଲା । ଜର୍ମାନୀ ଉପଜାତିରୁ ଲୋକେ ବର୍ବରତା ପରିତ୍ୟାଗକରି ଖ୍ରୀଷ୍ଟଧର୍ମର ଆଦର୍ଶ ଦୟା, କ୍ଷମା, ସେବା ଓ ପ୍ରେମ ମନ୍ତ୍ରରେ ଦୀକ୍ଷିତ ହେଲେ । ତଥାପି ପୂର୍ବର ବର୍ବରତା ଏକାବେଳକେ ଲୋପ ପାଇ ନ ଥିଲା । ଏଣୁ ଏହି ଯୁଗର ସାହିତ୍ୟରେ ମିଳେ ରକ୍ତପାତ, ପ୍ରତିଶୋଧ, ଶିକାର, ଭ୍ରମଣ, ତଥା ଅମାର୍ଜିତ ଜୀବନର ପ୍ରତିଛବି । ଅତୀତର ଯାଯାବର ଜୀବନର ସ୍ମୃତିସଜଳ ଶୋକଗୀତ ତଥା ଧର୍ମୀୟ ଗାଥା ଏହି ସାହିତ୍ୟର ଅଙ୍ଗ ।

ଇଂଲଣ୍ଡର ମାଟିରେ ଏଙ୍ଗ୍ଲସ୍, ସାକସନ୍ସ୍ ଓ ଜୁଟ୍ସ୍ଙ୍କ ସହ ଡେନସ୍ ଉପଜାତିର ଗୋଟିଏ ଶାଖା ମିଶି ଏକାକାର ହୋଇଯାଇଥିଲା । ଡେନସମାନେ ନବମ ଶତାବ୍ଦୀରେ ଧାରାବାହିକ ଭାବରେ ଇଂଲଣ୍ଡ ଆକ୍ରମଣ କରୁଥିଲେ । କିନ୍ତୁ କ୍ରମେ ସେମାନେ ସ୍ଥାୟୀ ବାସିନ୍ଦାଙ୍କ ସହ ଭ୍ରାତୃତ୍ୱର ବନ୍ଧନରେ ଆବଦ୍ଧ ହୋଇ ଇଂଲଣ୍ଡକୁ ନିଜର ବାସଭୂମି ରୂପେ ଆଦରିନେଲେ । ପ୍ରାଚୀନ ଇଂରେଜୀ ସାହିତ୍ୟ ଏହି ସଂଘର୍ଷ ଓ ସମନ୍ୱୟର ମୁଦ୍ରାଙ୍କ ବହନକରେ ।

ଚାରୋଟି ପ୍ରାଚୀନ ପାଣ୍ଡୁଲିପିରୁ ଆଂଗ୍ଲୋସାକ୍ସନ୍ କାବ୍ୟକୃତିର ନମୁନା ମିଳେ ।

(୧) ଜୁନିଆସ୍ (Junius) ପାଣ୍ଡୁଲିପି : ଜୁନିଆସ୍ ନାମକ ଜନୈକ ଡଚ୍ ପଣ୍ଡିତ ଏହାକୁ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ବଡ୍ଲିୟାନ (Bodleian) ଲାଇବ୍ରେରୀକୁ ପ୍ରଦାନ କରିଥିଲେ । ଏହା ତାଙ୍କର ନାମାନୁସାରେ ନାମିତ । ବାଇବେଲର କଥାବସ୍ତୁ ଅବଲମ୍ବନରେ ରଚିତ କେତୋଟି କବିତା ଏଥିରେ ଅଛି । ଏଗୁଡ଼ିକୁ କାଡ୍ମନିଆନ୍ କବିତା କୁହାଯାଏ ।

(୨) ଏକ୍ଜାଟାର ପାଣ୍ଡୁଲିପି ( Exeter Book ) : ଏହାର ପ୍ରକୃତ ନାମ କୋଡେକ୍ସ ଏକସୋନିଏନ୍ସିସ୍ ( Codex Exoniensis ) । ଏକ୍ଜାଟାର କେଥେଡ୍ରାଲ୍‌ରେ ସଂରକ୍ଷିତ ହୋଇଥିବାରୁ ଏହା ସେହି ନାମରେ ପରିଚିତ । ବିଶପ୍ ଲିଓଫ୍ରିକ୍ ନାମକ ଜନୈକ ପାଦ୍ରୀ ଏକାଦଶ ଶତାବ୍ଦୀରେ ଏହାକୁ ଉକ୍ତ କେଥେଡ୍ରାଲ୍‌କୁ ପ୍ରଦାନ କରିଥିଲେ । ୧୮୭୨ ଖ୍ରୀ : ପର୍ଯ୍ୟନ୍ତ ପାଣ୍ଡୁଲିପିଟି ସେହିଠାରେ ବିସ୍ମୃତ ହୋଇ ପଡ଼ିଥିଲା । ଏଥିରେ ଅଛି—କେତେକ ଧର୍ମୀୟ କବିତା, ଆଂଶିକ ବର୍ବର ଜୀବନଚିତ୍ର ସମ୍ବଳିତ ଗୀତିଧର୍ମୀ ଓ ଶୋକାତ୍ମକ କବିତା, ପହେଳି ( riddles ) ଓ ଉପଦେଶାତ୍ମକ ( sententious ) କବିତା ।

(୩) ବିଉଲଫ୍ (Beowulf) ପାଣ୍ଡୁଲିପି : ଏହା ସାର୍ ରବାର୍ଟ କଟନ୍ (Sir Robert Cotton)ଙ୍କ ଦ୍ୱାରା ସଂଗୃହୀତ ହୋଇ ବର୍ତ୍ତମାନ ବ୍ରିଟିଶ ମ୍ୟୁଜିୟମ୍‌ରେ ସଂରକ୍ଷିତ । ଏଥିରେ ଇଂରେଜୀ ସାହିତ୍ୟର ପ୍ରାଚୀନତମ ମହାକାବ୍ୟ ବିଉଲଫ୍

( Beowulf ) ଓ ବାଇବେଲ୍‌ର ଏକ ଅଂଶ ଜୁଡ଼ିଥ୍ (Judith) ଦେଖିବାକୁ ମିଳେ । ଏହା ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ଅଜ୍ଞାତ ଥିଲା ।

(୪) ଭର୍ସେଲି ପାଣ୍ଡୁଲିପି : ଏହା ଖ୍ରୀ: ୧୮୩୨ ରେ ଉତ୍ତର ଇଟାଲିର ଭର୍ସେଲି ( Vercelli ) ଠାରୁ ଆବିଷ୍କୃତ ହୋଇଥିଲା । ଏହା କେତେଗୁଡ଼ିଏ ନିଛକ ଧର୍ମୀୟ କବିତା ଓ ମନୀଷୀଙ୍କ ଜୀବନୀ ସମ୍ବଳିତ ।

ଉପରୋକ୍ତ ପାଣ୍ଡୁଲିପି ସହିତ ନବାବିଷ୍କୃତ ଆଉ କେତୋଟି କ୍ଷୁଦ୍ରାକୃତ କାବ୍ୟାଂଶର ନାମ ଉଲ୍ଲେଖଯୋଗ୍ୟ । ସେଥିରୁ ଦୁଇଟି ହେଲା ଫିନ୍‌ସବାର୍ ( Finnesburh ) ଓ ମ୍ୟାଲଡନ ( Maldon ) ଯୁଦ୍ଧସମ୍ବନ୍ଧୀୟ ଓ ତୃତୀୟଟି ଓ୍ୱାଲଡେର (Waldhere)ଙ୍କ ଜୀବନୀ ସମ୍ବଳିତ ।

ଏହାହିଁ ସଂକ୍ଷେପତଃ ଆଂଲୋସାକ୍‌ସନ୍ ସାହିତ୍ୟର ପୁଞ୍ଜି । ଏହାକୁ ନିମ୍ନ କେତୋଟି ବିଭାଗରେ ବିଭକ୍ତ କରାଯାଇପାରେ ।

(୧) ଏପିକ୍‌ଧର୍ମୀ କାବ୍ୟ

(୨) ବ୍ୟକ୍ତିନିଷ୍ଠ କବିତା (ସୁଖଦୁଃଖାତ୍ମକ)

(୩) ଯୁଦ୍ଧଗୀତ

(୪) ପହେଳି

(୫) ଧର୍ମୀୟ କାବ୍ୟ

(୬) ଗଦ୍ୟକୃତି

(୭) ଲାଟିନ୍ ରଚନା

ଧର୍ମ ପ୍ରଭାବ ଦୃଷ୍ଟିରୁ ଏଗୁଡ଼ିକ ମୁଖ୍ୟତଃ ଦୁଇ ଶ୍ରେଣୀରେ ବିଭକ୍ତ—ଅଖ୍ରୀଷ୍ଟୀୟ ଓ ଖ୍ରୀଷ୍ଟୀୟ ।

## ଅଖ୍ରୀଷ୍ଟୀୟ (ପାଗାନ) କବିତା :

ଅଖ୍ରୀଷ୍ଟୀୟ କବିତା ମଧ୍ୟରେ ଏପିକ୍‌ଧର୍ମୀ କାବ୍ୟ ବିଓଲ୍‌ଫ୍ (Beowulf) ପ୍ରଧାନ । କେତେକଙ୍କ ମତରେ ଏହି ମହାକାବ୍ୟର କଥାବସ୍ତୁ ଷଷ୍ଠ ଶତାବ୍ଦୀରେ ଜର୍ମାନୀ ଉପଜାତିର ଏଙ୍ଗ୍‌ଲସ୍‌ଙ୍କ ସହିତ ଇଂଲଣ୍ଡକୁ ଆସି ଏକାହଜାର ଖ୍ରୀଷ୍ଟାବ୍ଦବେଳକୁ କାବ୍ୟରୂପ ପାଇଥିଲା । ଏହା ସ୍କାଣ୍ଡିନେଭିଆର ପୃଷ୍ଠଭୂମି ଉପରେ ଲିଖିତ ।

ଏକଦା ଡେନ୍‌ମାର୍କର ରାଜା ହ୍ରୁଥଗାର ଏକ ଦାନବର ଅତ୍ୟାଚାରରେ ଅତିଷ୍ଠ ହୋଇପଡ଼ିଲେ । ଏହି ଦାନବ ଗ୍ରେଣ୍ଡେଲ୍ ପ୍ରତ୍ୟେକ ରାତିରେ ପାହାଡ଼ର ଉପତ୍ୟକାରୁ ଆସି ରାଜାଙ୍କର ଜଣେ ନା ଜଣେ ପରିଜନଙ୍କୁ ଆହାର କରୁଥିଲା । ରାଜା ଅତ୍ୟନ୍ତ ଅସହାୟ ହୋଇପଡ଼ିଲେ । ଏହି ଅବସ୍ଥାରେ ତରୁଣବୀର ବିଓଲ୍‌ଫ୍ ଦାନବର ସମ୍ମୁଖୀନ ହେବାକୁ ନିଜର ସହଚରଙ୍କ ସହ ଆଗେଇ ଆସିଲେ । ବିଓଲ୍‌ଫ ଓ ଗ୍ରେଣ୍ଡେଲ ମଧ୍ୟରେ ଭୁମୂଳ

ବାହୁଯୁଦ୍ଧ ହେଲା । ଛିନ୍ନବାହୁ ପଳାୟମାନ ଗ୍ରେଣ୍ଡେଲ ଆପଣା ଗହ୍ୱରରେ ମୃତ୍ୟୁବରଣ କଲା । ଏଥିରେ କିନ୍ତୁ ରାଜା ହ୍ରଥଗାରଙ୍କ ଦୁଃଖ ମେଣ୍ଟିଲି ନାହିଁ । ପ୍ରତିଶୋଧ ନେବାକୁ ଆସିଲା ଗ୍ରେଣ୍ଡେଲ୍‌ର ମାତା । ଅବଶେଷରେ ବିଉଲଫ୍ ତାହାକୁ ମଧ୍ୟ ସାଗରର ନିମ୍ନଦେଶରେ ଏକ ଭୟଙ୍କର ସଂଗ୍ରାମରେ ପରାଭୂତ ତଥା ନିହତ କଲେ । ତାପରେ ବୀର ବିଉଲ୍‌ଫ୍ ପଚାଶ ବର୍ଷ ଧରି ସୁଖଶାନ୍ତିରେ ନିଜ ରାଜ୍ୟର ଶାସନକାର୍ଯ୍ୟ ତୁଲାଇଲେ । କିନ୍ତୁ ବୃଦ୍ଧାବସ୍ଥାରେ ଏକ ଅଗ୍ନି ଦାନବ ସହ ତାଙ୍କୁ ଯୁଦ୍ଧ କରିବାକୁ ପଡ଼ିଲା । ସେ ଉକ୍ତ ଦାନବକୁ ନିହତ କଲେ ମଧ୍ୟ ତାହାର ବିଷାକ୍ତ ଦନ୍ତର ଆଘାତରେ ନିଜେ ମଧ୍ୟ ମୃତ୍ୟୁବରଣ କଲେ । ପ୍ରଜାଙ୍କ ପାଇଁ ଦାନବର ଅସୀମ ସମ୍ପଦ ଛାଡ଼ିଯାଉଥିବାରୁ ଉତ୍ସର୍ଗପ୍ରାଣ ବିଉଲଫ୍ ପରମ ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ପ୍ରଜାମାନେ ମହା ଆଡ଼ମ୍ବରରେ ଶେଷକୃତ୍ୟ ସମାପନ କଲେ ।

'ବିଉଲ୍‌ଫ'ରେ ଅନେକ ଅଖ୍ରୀଷ୍ଟୀୟ ଉପାଦାନ ରହିଛି । ଏଥିରେ ସେହି ସମୟର ସାମାଜିକ ଅବସ୍ଥା, ରାଜସଭାର ଚିତ୍ର, ବୀରପୁରୁଷଙ୍କର ଜୀବନଯାତ୍ରା ପ୍ରଣାଳୀ, କର୍ମପ୍ରବଣତା, ସୁରାପାନ, ବୀରଗାଥାଗାନ, ଉପହାର ପ୍ରଦାନ ଆଦିର ବର୍ଣ୍ଣନା ରହିଛି । ପାଗାନ ଜାତିର ଦୁଃସାହସିକ କର୍ମପ୍ରବଣତା, ପୂର୍ବପୁରୁଷଙ୍କର ବନ୍ୟଜୀବନ ଓ ରୂପକଥା ଏଥିରେ ସ୍ଥାନ ପାଇଛି । ତଥାପି କବିତାର ଅନ୍ତଃସ୍ୱର ଦୁଃଖାତ୍ମକ । ଧନ, ଜୀବନ, ସୌନ୍ଦର୍ଯ୍ୟ ଓ ଖ୍ୟାତିର ଅନିତ୍ୟତା ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଦୁଃଖବାଦ ଓ ଭାଗ୍ୟବାଦର ସ୍ୱର ସ୍ପଷ୍ଟ । ରାଜା ବିଉଲ୍‌ଫଙ୍କ ଆଦର୍ଶ, ତ୍ୟାଗ ଓ ପ୍ରଜାପାଳନ ଭିତରେ ଖ୍ରୀଷ୍ଟୀୟ ପ୍ରଭାବ ଲକ୍ଷଣୀୟ । ଏଠାରେ ସ୍ମରଣୀୟ ଯେ ଇଂଲଣ୍ଡରେ ଖ୍ରୀଷ୍ଟଧର୍ମ ପ୍ରଚାରର ପ୍ରାକ୍‌କାଳରେ ପାଦ୍ରୀଗଣ ସମଗ୍ର ବିଶିଷ୍ଟ ପାଗାନ ସାହିତ୍ୟ କୃତିକୁ ଖ୍ରୀଷ୍ଟଧର୍ମର ଆଦର୍ଶରେ ଅନୁରଞ୍ଜିତ କରିଥିଲେ ।

ବହୁ ଦୋଷଦୁର୍ବଳତା ସତ୍ତ୍ୱେ ଏହାକୁ ଏକ ପ୍ରାଚୀନ ମହାକାବ୍ୟ ଭାବରେ ଗ୍ରହଣ କରାଯାଇଥାଏ । ମହାକାବ୍ୟ ପରି ବିଶିଷ୍ଟ ଆଦର୍ଶର ପ୍ରଖ୍ୟାପନ, ଗଭୀର ଜୀବନବୋଧର ଅଭିବ୍ୟକ୍ତି ଏଥିରେ ଥିଲେ ମଧ୍ୟ ଏହାର ଜାତୀୟସ୍ୱଭାବ ନାହିଁ । ବିଉଲ୍‌ଫର କାହାଣୀ ଇଂରେଜର ଜାତୀୟଜୀବନର କାହାଣୀ ନୁହେଁ । ଏହାର ପୃଷ୍ଠଭୂମି ଓ ଚରିତ୍ର ସ୍କାଣ୍ଡିନେଭିଆର । ଏହାର ଦୁଃଖାତ୍ମକ ଅନ୍ତଃସ୍ୱର ମହାକାବ୍ୟସୁଲଭ ନୁହେଁ । ପ୍ରକୃତ ମହାକାବ୍ୟରେ ବହୁ ବିୟୋଗାତ୍ମକ ଘଟଣା ବର୍ଣ୍ଣିତ ହେଲେ ମଧ୍ୟ ସାମଗ୍ରିକ ଭାବରେ ଜୀବନର ଜୟଧ୍ୱନି ଶୁଣିବାକୁ ମିଳିଥାଏ । ବିଉଲ୍‌ଫ ଏହି ଗୌରବରୁ ବଞ୍ଚିତ । ପୁନଶ୍ଚ ଏହାର ଗଳ୍ପାଂଶ ଦୁର୍ବଳ ଏବଂ ଏକ ଲୋକଗାଥା ଉପରେ ପ୍ରତିଷ୍ଠିତ । ଦୀର୍ଘ ଭାଷଣ ଓ ଅସଂଲଗ୍ନ କାହାଣୀ ସାହାଯ୍ୟରେ ଏହା ଦୀର୍ଘ ତିନିହଜାର ପଙ୍‌କ୍ତି ପର୍ଯ୍ୟନ୍ତ ପ୍ରସାରିତ ହୋଇଛି ମାତ୍ର । ଏହି ସବୁ ଦୃଷ୍ଟିରୁ ଏହାକୁ ଅନେକେ ମହାକାବ୍ୟର ଗୌରବ ପ୍ରଦାନ କରିବାକୁ କୁଣ୍ଠାବୋଧ କରିଥାନ୍ତି । ଏହାର ଭାଷା ଓ ଶୈଳୀ 'ଆଙ୍ଗ୍ଲୋ-ସାକ୍‌ସନ୍' କବିତାର ଶୈଳୀ ପ୍ରସଙ୍ଗରେ ଆଲୋଚ୍ୟ ।

ବିଉଲ୍ଫ ବ୍ୟତୀତ 'ଦି ଫାଇଟ୍ ଆଟ୍ ଫିନ୍ସ୍ବର୍ଗ' (The Fight at Finnesburgh), ବେଟଲ୍ ଅଫ୍ ମାଲ୍ଡନ (Battle of Maldon) ଏବଂ ୱାଲ୍ଡେୟାର (Waldhere) ରେ ମଧ୍ୟ ମହାକାବ୍ୟର ଲକ୍ଷଣ ଦେଖାଯାଏ ।

## ବ୍ୟକ୍ତିନିଷ୍ଠ କବିତା (ସୁଖଦୁଃଖାତ୍ମକ)

ଉଇଡ୍ସିଥ (Widsith) ଓ ଡିୟର (Deor) ବିଉଲଫ୍ ପରି ଦୁଇଟି ଅଖ୍ରୀଷ୍ଟୀୟ କ୍ଷୁଦ୍ର କବିତା । ଏଗୁଡ଼ିକ ଜର୍ମାନ୍ ଉପଜାତିର ପ୍ରାଚୀନ ସ୍ମୃତି ବହନକରେ । ଉଇଡ୍ସିଥ୍ (ଦୂର ପରିବ୍ରାଜକ) ବହୁସ୍ଥାନ ପରିଭ୍ରମଣ କରିଛି । ଜର୍ମାନ ସାମନ୍ତରାଜାଙ୍କ ଦରବାରମାନଙ୍କରେ, ରାଜସ୍ତୁତିମୂଳକ ଗୀତ ପରିବେଷଣ କରି ପ୍ରଶଂସା ଓ ଉପହାର ପାଇଛି । କବିତାର ଶେଷରେ ସେ ନିଜ କଳାର ପ୍ରଶଂସା କରିଛି, କାରଣ ଜୀବନର ବହୁ ଦୁଃଖଦୁର୍ଦ୍ଦଶା ମଧ୍ୟରେ କଳା ହିଁ ସବୁବେଳେ ତାକୁ ସାନ୍ତ୍ୱନା ଦେଇଆସିଛି । ଏଥିରେ ପ୍ରାଚୀନ ଜର୍ମାନୀର ଇତିହାସ ତଥା ଆଖ୍ୟାୟିକାର ବହୁ ପ୍ରସିଦ୍ଧ ଚରିତ୍ର ଓ ସ୍ଥାନର ନାମ ଉଲ୍ଲେଖ କରାଯାଇଛି ।

'ଦି କମ୍ପ୍ଲେଣ୍ଟ ଅଫ୍ ଡିୟର୍' (The Complaint of Deor)ରେ ଡିୟର ମଧ୍ୟ ଜଣେ କବି, କିନ୍ତୁ ପରିବ୍ରାଜକ ନୁହେଁ । ସେ ତାର ପୃଷ୍ଠପୋଷକଠାରୁ ବିଚ୍ଛିନ୍ନ । ପୃଷ୍ଠପୋଷକ ଜଣକ ଡିୟରକୁ ପରିତ୍ୟାଗକରି ତାହାର ପ୍ରତିଦ୍ୱନ୍ଦ୍ୱୀକୁ ଗ୍ରହଣ କରିଛନ୍ତି । ଏହାହିଁ ତାର ଦୁଃଖର କାରଣ । 'ଉଇଡ୍ସିଥ୍' କବିତାରେ ବର୍ଣ୍ଣିତ କବିର ସୁଖମୟ ଜୀବନର ଠିକ୍ ବିପରୀତ ପାର୍ଶ୍ୱ ଏଠାରେ ଅଙ୍କିତ । ଏଥିରେ ପଦ ଶେଷରେ ଘୋଷାର ବ୍ୟବହାର ହୋଇଛି । ଏହା ହିଁ ଇଂରାଜୀ ସାହିତ୍ୟର ପ୍ରଥମ ଗୀତିକବିତା । ବିଉଲ୍ଫ ପରି ଏ ଦୁଇଟି କବିତା ମଧ୍ୟ ପରବର୍ତ୍ତୀ କାଳରେ ଖ୍ରୀଷ୍ଟଧର୍ମାଦର୍ଶରେ ପ୍ରକ୍ଷାଳିତ ।

ପ୍ରେମିକର ବାର୍ତ୍ତା (Lover's Message) : ନିର୍ବାସିତ ପ୍ରେମିକ ଭାଗ୍ୟଦେବୀଙ୍କ ପ୍ରସାଦରୁ ପ୍ରାଚୁର୍ଯ୍ୟ ମଧ୍ୟରେ ରହିଛି । ପ୍ରେମିକା ତା ସହିତ ମିଳିତ ହେବାଲାଗି ଖଣ୍ଡିଏ କାଷ୍ଠ-ଫଳକରେ ବାର୍ତ୍ତା ପଠାଇଛି ।

ବିଉଲଫ୍ ପରି ଏଗୁଡ଼ିକରୁ ମଧ୍ୟ ଏକ ବିମର୍ଷଭାବ ଓ ଭାଗ୍ୟବାଦର ପରିଚୟ ମିଳେ । ଏଗୁଡ଼ିକ ଅଖ୍ରୀଷ୍ଟୀୟ । କେବଳ କେତେକ କ୍ଷେତ୍ରରେ ଉପସଂହାରଟି ଖ୍ରୀଷ୍ଟୀୟ ଧର୍ମାଦର୍ଶରେ ଅନୁକୂଳ ।

ରୁଇନ୍ଡ୍ବାର୍ (The Ruined Burg) କବିତାଟି ସମ୍ଭବତଃ ରୋମାନମାନଙ୍କ ନିର୍ମିତ ବାଥ୍ (Bath) ନଗରୀର ପତନ କାହାଣୀ ବହନ କରେ । ଏକଦା ସମୃଦ୍ଧ ଓ ବିଭବଶାଳୀ ବାଥ୍ନଗରୀର ପତନରେ କବି ମର୍ମାହତ । ଏହା ଭାଗ୍ୟ (Fate)ର ଏକ ପରିହାସ ବୋଲି କବିଙ୍କ ବିଶ୍ୱାସ ।

କବିଙ୍କ ଭାଷାରେ :

Many were the mead-halls, full of mirth of men, Till the strong-willed Wyrd whiled that all to change.

(S. Brookes)

ପତ୍ନୀର ଶୋକ (The Wife's Complaint) : ଏଥିରେ ଜଣେ ସାଧ୍ୱୀ ସ୍ତ୍ରୀ ଲୋକାପବାଦ ହେତୁ ଜନବସତିରୁ ଦୂରରେ ଗୋଟିଏ ପର୍ବତ ଗୁହାରେ ବାସ କରିବାକୁ ବାଧ୍ୟହୋଇଛି । ଓକ୍‌ଗଛମୂଳରେ ବସି ସାରାଦିନ ସେ ବ୍ୟାକୁଳ ଭାବରେ ରୋଦନ କରେ; କଳ୍ପନା କରେ ସ୍ୱାମୀ ତାର ସତେ ଅବା ତା'ର ସମ୍ମୁଖରେ ପର୍ବତର ପାଖରେ ବସିଛନ୍ତି ।

ଭ୍ରମଣକାରୀ (Wanderer) : ଜଣେ ଚାରଣକବି ନିଜ ପୃଷ୍ଠପୋଷକର ମୃତ୍ୟୁରେ ମୂହ୍ୟମାନ । ଅନ୍ୟ କେହି ଆଶ୍ରୟଦାତା ସନ୍ଧାନରେ ତାକୁ ସାଗରପାରି ଯିବାକୁ ହେବ । ବିଶ୍ରାମକାଳରେ ସେ ସ୍ୱପ୍ନ ଦେଖୁଛି ପ୍ରଭୁ ତାର ତାକୁ ଆଦର କରି ଚୁମ୍ବନଦେଇ କୋଳାଗତ କରୁଛନ୍ତି । ସ୍ୱପ୍ନ ଭଙ୍ଗ ହେବା ପରେ ଦୁଃଖ ଦ୍ୱିଗୁଣିତ ହେଉଛି ।

ସାଗରଯାତ୍ରୀ (The Sea Farer) : ଗୀତିକବିତା ଭାବରେ ଏହାର ଯଥେଷ୍ଟ ଗୁରୁତ୍ୱ ରହିଛି । କିନ୍ତୁ ଏହା ଦୁର୍ବୋଧତା ଦୋଷଦୁଷ୍ଟ । ଏଥିରୁ ବିଭିନ୍ନ ଅର୍ଥ ନିଷ୍ପନ୍ନ ହୋଇପାରେ । ତୁଷାର ଝଡ଼ ଓ ବାତ୍ୟାବିକ୍ଷୋଭିତ ଉତ୍ତର ସାଗରର ବର୍ଣ୍ଣନା ଏହାର ଏକ ଆକର୍ଷଣ । ବାଇରନ୍‌ଙ୍କ ଭଳି ପରବର୍ତ୍ତୀ କବିଙ୍କୁ ଏହା ପ୍ରଭାବିତ କରିଥିଲା ।

ଯୁଦ୍ଧଗୀତ (Songs of War) ରେ ଆଙ୍ଗ୍ଲୋସାକ୍ସନଙ୍କର ଅଖ୍ରୀଷ୍ଟୀୟ ସ୍ୱଭାବ ତଥା ବର୍ବରତା ଅଧିକ ମାତ୍ରାରେ ପରିସ୍ଫୁଟ । ଦୁଇଟି ମାତ୍ର ଯୁଦ୍ଧଗୀତର ସନ୍ଧାନ ମିଳେ ।

ବ୍ରୁନାନ୍‌ବାର୍ ( Brunanburh )ରେ ଓ୍ୱେସେକ୍ସ ଓ ମର୍ସିଆର ରାଜା ଏଥେଲ୍‌ସ୍ଟନ୍‌ଙ୍କ ବୀରତ୍ୱ କାହାଣୀ ବର୍ଣ୍ଣିତ । ସେ ୯୩୭ ଖ୍ରୀ: ରେ ବ୍ରୁନାନ୍‌ବାର୍‌ଠାରେ ସ୍କଟ୍ ଓ ଡେନ୍‌ମାନଙ୍କୁ ପରାସ୍ତ କରିଥିଲେ । ରକ୍ତଧୌତ- ପ୍ରାନ୍ତରରେ ସୂର୍ଯ୍ୟୋଦୟ, ଶ୍ୱାନଶୃଗାଳ ପରିବେଷ୍ଟିତ ଶବ, ଛିନ୍ନ ଅବୟବ, ନରମୁଣ୍ଡ ଆଦିର ସଂଦର୍ଶନରେ ଆନନ୍ଦଉଦ୍‌ବେଳ ହେବାପରି ବର୍ବରତା ଏଥିରେ ପ୍ରକାଶପାଇଛି ।

ମାଲ୍‌ଡନ ଯୁଦ୍ଧ (Battle of Maldon) : କବିତାଟିରେ ବିର୍‌ଟ୍ ନଥ୍ (Byrhtnoth)ଙ୍କ ନେତୃତ୍ୱରେ ସାକ୍ସନ ଜାତି ଓ ଡେନସ୍‌ଙ୍କ ମଧ୍ୟରେ ୯୯୩ ଖ୍ରୀ : ରେ ସଙ୍ଘଟିତ ଯୁଦ୍ଧ ବର୍ଣ୍ଣିତ । ଏହା ଏକ ମହାକାବ୍ୟର ଅଂଶବିଶେଷ; ତିନି ଶହ ପଙ୍‌କ୍ତିରେ ରଚିତ । ହୋମର୍‌ଙ୍କ ଇଲିଆଡ୍‌ର ଛାୟା ଏଥିରେ ସ୍ପଷ୍ଟ । ଯୁଦ୍ଧର ବାତାବରଣ ସୃଷ୍ଟି, ଆତ୍ମୋତ୍ସର୍ଗର ପ୍ରତିଷ୍ଠା ଓ ବୀରତ୍ୱର ଆଦର୍ଶ ପ୍ରଖ୍ୟାପନ ଦୃଷ୍ଟିରୁ ଏହା ବିଉଲ୍‌ଫଙ୍କ ମଧ୍ୟ ବଳିଯାଇଛି । ସେନାପତି ବିର୍‌ଟ୍‌ନଥ ଶତ୍ରୁ-ସୈନ୍ୟଙ୍କୁ ନଦୀ ପାରିହେବାକୁ ସୁଯୋଗ ଦେଇଛନ୍ତି । ଦୁର୍ବଳ ମୂହୂର୍ତ୍ତର ସୁଯୋଗ ନେଇ ସେ ଶତ୍ରୁର ମୁକାବିଲା କରିବାକୁ ଚାହାନ୍ତି

ନାହିଁ । ନିଜର କର୍ତ୍ତବ୍ୟ ପାଳନ କରିଥିବାରୁ ଯୁଦ୍ଧକ୍ଷେତ୍ରରେ ଆନନ୍ଦରେ ସେ ମୃତ୍ୟୁ ବରଣ କରିଛନ୍ତି । ଅନ୍ୟ ଜଣେ ବୃଦ୍ଧ ସେନାପତି ବିର୍ହ୍ଟ୍‌ଓ୍ଵାଲ୍ଡ୍ (Byrhtwold) ମୁଖ୍ୟ ସେନାପତିଙ୍କ ମୃତ୍ୟୁରେ ହତାଶ ନହୋଇ ନିଜର ଶକ୍ତି ହ୍ରାସ ପାଇବା ବେଳକୁ ମନର ବଳ ଓ ସାହସ ଅଧିକରୁ ଅଧିକ ହେବା ଉଚିତ ବୋଲି ସହଯୋଦ୍ଧାଙ୍କୁ ଉତ୍ସାହ ଦେଇଛନ୍ତି :

The braver shall thou be, bolder the heart
The more the mood, as lessens our might.

ଇଂରେଜ ଜାତି ପ୍ରାଣରେ ଦେଶପ୍ରେମର ବୀଜ ବୋଧହୁଏ ଏଇଠାରୁ ହିଁ ପ୍ରୋଥିତ ।

**ଫିନ୍‌ସ୍‌ବାର୍‌ର ଯୁଦ୍ଧ** (The fight at Finnsburh) : ଏହା ଅଠଚାଳିଶ ପଙ୍କ୍ତିବିଶିଷ୍ଟ ଏକ କାବ୍ୟାଂଶ । ରାତ୍ରିକାଳରେ ଶତ୍ରୁ ଶିବିର ଉପରେ ଆକ୍ରମଣ, ପାଞ୍ଚ ଦିନ ବ୍ୟାପୀ ଯୁଦ୍ଧ ଓ ହତାହତ ସୈନ୍ୟଙ୍କ ବିବରଣୀ ଏଥିରେ ପ୍ରଦତ୍ତ । ଯୁଦ୍ଧର ଫଳାଫଳ ସମ୍ବନ୍ଧରେ କବି ନୀରବ ।

## ପହେଳି :

ଆଙ୍ଗ୍ଲୋସାକ୍‌ସନ୍ ସମାଜରେ ପହେଳିର ବ୍ୟବହାର ଥିଲା ବ୍ୟାପକ । ଖ୍ରୀଷ୍ଟୀୟ ଉପାଦାନ ଏଥିରେ ନାହିଁ । କିନ୍ତୁ ଏହି ପହେଳି ଲାଟିନ୍ ପହେଳିର ରୂପାନ୍ତର ମାତ୍ର । କିନ୍ତୁ ଲାଟିନ ପହେଳି ତୁଳନାରେ ଏଗୁଡ଼ିକ ଅଧିକ ସରସ, ସୁନ୍ଦର ଓ ଗୀତିମୟ । ବନ୍ଧୁ-ମିଳନୋତ୍ସବରେ ସ୍ମରଣ କବି ପହେଳି ମାଧ୍ୟମରେ ଅତିଥିଙ୍କ ବୁଦ୍ଧି ପରୀକ୍ଷା କରେ । ଏଗୁଡ଼ିକ ପଶୁ, ପକ୍ଷୀ ଓ ଦୈନନ୍ଦିନ ଜୀବନ ସମ୍ବନ୍ଧୀୟ । ଶ୍ରୋତାମାନଙ୍କରେ କୌତୂହଳ-ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏଗୁଡ଼ିକ ଅସୀମ ଆନନ୍ଦ ଦେଉଥାଏ । ଏଥିରେ ରୂପକଥାର ଚରିତ୍ର ପରି ପଶୁ ପକ୍ଷୀ ଓ ନିର୍ଜୀବ ପଦାର୍ଥ କଥା କହିପାରନ୍ତି । ନିମ୍ନରେ ଗୋଟିଏ ପହେଳିର ଅନୁବାଦ ପ୍ରଦତ୍ତ ହେଲା ।

ଧରଣୀ ଭ୍ରମଣକାଳେ ଥିର ରହେ ମୋ ଅଙ୍ଗର ବାସ
ମୋ ମହାର୍ଘ ପରିଚ୍ଛଦ ଛିଡ଼ି ଗୃହେ, ଅବା ଊର୍ମିମାଳେ
ମୋ ଚିକ ଉଠାଇ ନିଏ ଅଳପକେ ଛୁଏଁ ମୁହିଁ ସୁନୀଳ ଆକାଶ
ଶୂରବୀରଙ୍କର ସୌଧ ଦେଖୁଥାଏ ହର୍ଷେ ପଦତଳେ ।
ନରଜନ ଊର୍ଦ୍ଧ୍ୱେ ଦେଖେ ମହାନନ୍ଦେ ବତାସେ ମୁଁ ଦୋଳେ
ମୋ ପକ୍ଷର ସଞ୍ଚାଳନେ ସ୍ୱନେ ମୁହିଁ ସଙ୍ଗୀତ ସ୍ୱପ୍ନିଳ,
ସଙ୍ଗୀତର ତାଳେ ତାଳେ ଗତି ମୋର, ମୋ କହାର କାଳେ
ଛୁଏଁ ନାହିଁ ଧରଣୀର ମାଟି, ଛୁଏଁ ନା ମୁଁ କେବେ ଊର୍ମିମାଳ । (ହଂସ)

କିନ୍ତୁ ଆଙ୍ଗ୍ଲୋସାକ୍‌ସନଙ୍କ ମଧ୍ୟରେ ପହେଳିଗୁଡ଼ିକ ବୁଦ୍ଧିଦୀପ୍ତ ହେବା ପରିବର୍ତ୍ତେ କଳ୍ପନାରଞ୍ଜିତ ଗୀତିକବିତାରେ ପରିଣତ ହୋଇପଡ଼ିଛି । ବୁଦ୍ଧି ପରୀକ୍ଷାକରିବା

ଆବଶ୍ୟକତା କବି ବୋଧହୁଏ ଅନୁଭବ କରନାହାନ୍ତି । ଏ ପଦ୍ୟଟି ଅପେକ୍ଷାକୃତ ଦୀର୍ଘ ଓ ଛନ୍ଦିତ ବର୍ଣ୍ଣନାରେ ପରପୂର୍ଣ୍ଣ ।

## ଖ୍ରୀଷ୍ଟୀୟ କବିତା (Christian Poetry) :

ଆଙ୍ଗ୍ଲୋସାକ୍ସନ ଯୁଗର ଅଖ୍ରୀଷ୍ଟୀୟ କାବ୍ୟ ଅପେକ୍ଷା ଧର୍ମୀୟ କାବ୍ୟର ସଂଖ୍ୟା ଅଧିକ । ଅଖ୍ରୀଷ୍ଟୀୟ ବା ପାଗାନ ସାହିତ୍ୟ ପାଦ୍ରୀମାନଙ୍କଦ୍ୱାରା ପରିବର୍ତ୍ତିତ ହୋଇଥିବାରୁ ସେଗୁଡ଼ିକରେ ଖ୍ରୀଷ୍ଟଧର୍ମର ଉପାଦାନ ଦେଖାଯାଏ । ଅନ୍ୟପକ୍ଷରେ ଧର୍ମୀୟ କବିତା ସେହି ସମୟରେ ପାଦ୍ରୀମାନଙ୍କଦ୍ୱାରା ଲିଖିତ ହୋଇଥିଲେ ମଧ୍ୟ ପାଗାନ ପ୍ରଭାବରୁ ମୁକ୍ତ ନୁହେଁ । ଦୁଇଟି ସଂସ୍କୃତିର ମିଳନ ଲଗ୍ନରେ ଏପରି ହେବା ସ୍ୱାଭାବିକ । ଧର୍ମୀୟ କାବ୍ୟର ସ୍ରଷ୍ଟାଙ୍କ ମଧ୍ୟରେ କ୍ୟାଡ଼ମନ ଓ କିନେଉଲ୍‌ଫଙ୍କ ନାମ ଉଲ୍ଲେଖଯୋଗ୍ୟ । କ୍ୟାଡ଼ମନ (Caedmon)ଙ୍କ ସମ୍ବନ୍ଧରେ ସପ୍ତମ ଶତାବ୍ଦୀର ଲେଖକ ବିଡ଼ା (Bede) ତାଙ୍କ ପ୍ରଖ୍ୟାତ ଇତିହାସରେ ଏକ ସୁନ୍ଦର କାହାଣୀ ଉଲ୍ଲେଖ କରିଛନ୍ତି । କେଡ଼ମନ୍ ଜଣେ ନିରକ୍ଷର ବାଳକ । ସେ ଥିଲେ ହ୍ୱିଟ୍‌ବିର ଗୋଟିଏ ଖ୍ରୀଷ୍ଟୀୟମଠର ଅଶ୍ୱ ରକ୍ଷୀଆଳ । କୌଣସି ଦେବଦୂତଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇ ସେ ବାଇବେଲର କାହାଣୀ ଅବଲମ୍ବନରେ କାବ୍ୟମାନ ଲେଖିଛନ୍ତି :

(କ) ଜେନେସିସ୍ (Genesis)ରେ ସ୍ୱର୍ଗରୁ ଦେବଦୂତଙ୍କର ପତନ ତଥା ମାନବଜାତିର ଉତ୍ପତ୍ତି କାହାଣୀ ବର୍ଣ୍ଣିତ । (ଖ) ଏକ୍‌ସୋଡ଼ାସ୍ (Exodus)ରେ ମୋଜେସ୍‌ଙ୍କର ଇହୁଦୀବାହିନୀ ସହିତ ଇଜିପ୍ଟରୁ ଇସ୍ରାଏଲ ପଳାୟନ ଓ (ଗ) 'ଡାନିଏଲ୍'ରେ ଅଲୌକିକଶକ୍ତିସମ୍ପନ୍ନ ଡାନିଏଲଙ୍କ ପ୍ରସଙ୍ଗ ବର୍ଣ୍ଣିତ । ଏହି ତିନୋଟି ଗ୍ରନ୍ଥକୁ ଏକତ୍ର 'କେଡ଼ମନଙ୍କ ପାରାଫ୍ରେଜ୍' ବୋଲି କୁହାଯାଏ । ବାଇବେଲ ପରି ଏଗୁଡ଼ିକରେ ଭାଷାର ସଂଯମ, ସଂକ୍ଷିପ୍ତତା ଓ ଗାମ୍ଭୀର୍ଯ୍ୟ ନାହିଁ । ବାଗାଡ଼ମ୍ବର ଏହାର ପ୍ରସାଦଗୁଣ (sublimity)କୁ ନଷ୍ଟ କରିଛି । ଏହି ପାରାଫ୍ରେଜ୍ ବ୍ୟତୀତ ଅନ୍ୟ କେତେକ କବିତା ମଧ୍ୟ କ୍ୟାଡ଼ମନ ବା ତାଙ୍କ ଗୋଷ୍ଠୀଦ୍ୱାରା ଲେଖା ହୋଇଥିବା ଅନୁମାନ କରାଯାଏ । ଏଥିମଧ୍ୟରୁ ଜୁଡ଼ିଥ୍ (Judith) କବିତାଟି ଉଲ୍ଲେଖଯୋଗ୍ୟ । ଏଥିରେ ଇହୁଦୀ ରମଣୀ ଜୁଡ଼ିଥ୍ କିପରି ଅଗ୍ନିମୟୀ ଭାଷାରେ ଜନତାକୁ ଉଦ୍‌ବୋଧନ ଦେଇ ଅତ୍ୟାଚାରୀ ହଲୋଫାର୍ନେସ୍ (Holofernes)କୁ ହତ୍ୟା କରିଥିଲେ, ତାହା ହିଁ ବର୍ଣ୍ଣିତ ।

## କିନେଉଲ୍‌ଫ୍ (Cynewulf) :

୮୪୦ ଖ୍ରୀ: ପର୍ଯ୍ୟନ୍ତ ଏହି କବି ଅଜ୍ଞାତ ଥିଲେ । ଗବେଷଣାରୁ ଜଣାପଡ଼ିଛି ଯେ ଦି କ୍ରାଇଷ୍ଟ, ଜୁଲିଆନା, ଏଲେନା ଓ 'ଦି ଫେଟ୍‌ସ୍ ଅଫ୍ ଦି ଏପୋସ୍‌ଟଲ୍‌ସ' ତାଙ୍କଦ୍ୱାରା ଲିଖିତ । ଏଗୁଡ଼ିକରେ ତାଙ୍କର ସ୍ୱାକ୍ଷର ରହିଛି । ଖ୍ରୀଷ୍ଟକାବ୍ୟରେ ଯୀଶୁଙ୍କ ଜନ୍ମ, ସ୍ୱର୍ଗାରୋହଣ, ଶେଷ ବିଚାର ଦିନ ଓ ତାଙ୍କ ପ୍ରତ୍ୟାଗମନ ପ୍ରସଙ୍ଗ ବର୍ଣ୍ଣିତ । ଏତଦ୍‌ବ୍ୟତୀତ 'ଡ୍ରିମ୍ ଅଫ ଦି

ରୁଡ୍' (Dream of the Rood) ଓ 'ଫିନିକ୍ସ୍' (The Phoenix) ପରି କେତେକ କବିତା ସେ ନିଜେ ବା ତାଙ୍କ ଗୋଷ୍ଠୀର କେହି ଲେଖିଥାଇପାରନ୍ତି । ପ୍ରଥମ କବିତାଟିରେ ଗୋଟିଏ ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣିତ । ଯେଉଁ କ୍ରୁଶରେ ଯୀଶୁଙ୍କୁ ହତ୍ୟା କରାଯାଇଥିଲା ସେହି ପବିତ୍ର କ୍ରୁଶ ସ୍ୱପ୍ନରେ କବିଙ୍କ ଆଗରେ ଆବିର୍ଭୂତ ହୋଇ ଯୀଶୁଙ୍କ ମୃତ୍ୟୁରେ ନିଜର ନିର୍ଦ୍ଦୋଷତା ବ୍ୟାଖ୍ୟାନ କରିଛି । 'ଫିନିକ୍ସ୍' କବିତାଟି ମଧ୍ୟ ରୂପକାତ୍ମକ । ଗୋଟିଏ ପକ୍ଷୀ ଫିନିକ୍ସ୍ ଅଗ୍ନିରେ ଝାସଦେଇ ଚିତାଭସ୍ମରୁ ପୁଣି ଦିବ୍ୟଜୀବନ ଲାଭକରିଛି । ଏହା ଯୀଶୁଖ୍ରୀଷ୍ଟ ଓ ଖ୍ରୀଷ୍ଟିଆନ ଆତ୍ମାର ରୂପକାତ୍ମକ ଉପସ୍ଥାପନା ମାତ୍ର । ଫିନିକ୍ସର ବାସଭୂମି ସୂର୍ଯ୍ୟକିରଣ-ଧୌତ, ଲତାପୁଷ୍ପବିଶୋଭିତ, ଉଜ୍ଜ୍ୱଳ ପବିତ୍ର ଭୂମିର ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ।

କାନେୱଲ୍‌ଫଙ୍କ କବିତା ଅନେକ ମାତ୍ରାରେ ଗୀତିଧର୍ମୀ । ସରଳ ପ୍ରକାଶଭଙ୍ଗୀ, ବର୍ଣ୍ଣନାପଟୁତା ଓ ଗଭୀର ଭାବାବେଗରେ ଏଗୁଡ଼ିକ ପ୍ରାଣବନ୍ତ ।

## ଆଙ୍ଗ୍ଲୋସାକ୍ସନ କବିତାର ଶୈଳୀଗତ ବୈଶିଷ୍ଟ୍ୟ :

ଏହି କବିତା ଆବୃତ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ । କବିମାନେ ଏହାକୁ ଗାନକରୁଥିଲେ । ଅନ୍ତ୍ୟମେଳ ନଥିଲା । ପ୍ରତ୍ୟେକ ପାଦର ମାତ୍ରାସଂଖ୍ୟା ସମାନ ନଥିଲା । ଆଙ୍ଗ୍ଲୋସାକ୍ସନ୍ ଭାଷା ଜର୍ମାନ ଭାଷା ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଫ୍ରେଞ୍ଚ୍ ଭାଷା ତୁଳନାରେ ଏହା ଅଧିକ କର୍କଶ । ବ୍ୟଞ୍ଜନ ବର୍ଣ୍ଣ ଓ ଶ୍ୱାସାଘାତଯୁକ୍ତ (Stressed) ଧ୍ୱନି ଅଧିକ ସଂଖ୍ୟାରେ ବ୍ୟବହୃତ । କବିତାର ପ୍ରତ୍ୟେକ ପାଦ ଦୁଇ ଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗରେ ଦୁଇଟି ଶ୍ୱାସାଘାତଯୁକ୍ତ ଧ୍ୱନି (Syllable) ଥାଏ । ଏଥିରୁ ପ୍ରଥମ ଭାଗର ଦୁଇଟି ଧ୍ୱନି ଓ ଦ୍ୱିତୀୟ ଭାଗର ପ୍ରଥମ ଧ୍ୱନି ଅନୁପ୍ରାସ ସମ୍ବନ୍ଧିତ । ଶ୍ୱାସାଘାତଯୁକ୍ତ ଧ୍ୱନି ହିଁ ଅନୁପ୍ରାସ ସଂଯୋଜନାରେ ବ୍ୟବହୃତ ହୋଇଥାଏ । ନିମ୍ନ ଉଦାହରଣରୁ ଏହା ସ୍ପଷ୍ଟ ହେବ :

St'eap st'anhlitho–st'ige ne'arwe (Beowulf, II, l. 159)
(Steep stone-slopes—Paths narrow)

ଏ ଭାଷା ଆଧୁନିକ ଇଂରେଜୀ ଭାଷାପରି ବିଶ୍ଳେଷଣଧର୍ମୀ ନୁହେଁ; ଲାଟିନ୍ ବା ସଂସ୍କୃତ ପରି ସଂଶ୍ଳେଷଣଧର୍ମୀ (synthetic) । ଏଥିରେ ଧାତୁରୂପଦ୍ୱାରା କାଳ, ବଚନ ଓ ପୁରୁଷର ନିର୍ଦ୍ଦେଶ କରାଯାଇଥାଏ । ସଂସ୍କୃତଭାଷା ପରି ଏଥିରେ କାରକ ଓ ବିଭକ୍ତିର ବ୍ୟବହାର ରହିଛି; କିନ୍ତୁ ଲିଙ୍ଗର ପ୍ରଚଳନ ବିଧି ସୁନିର୍ଦ୍ଦିଷ୍ଟ ନୁହେଁ । ସଂସ୍କୃତର ସମାସାନ୍ତ ପଦପରି ସଂଯୁକ୍ତପଦ ସୃଷ୍ଟି କରାଯାଇଥାଏ । ଏହି ସଂଯୁକ୍ତ ପଦରେ ଚିତ୍ରଧର୍ମିତା ପ୍ରକାଶ ପାଇଥାଏ । 'ସମୁଦ୍ର' ପରିବର୍ତ୍ତେ 'ବୋଇତ ପଥ', 'ବନ୍ୟା' ପରିବର୍ତ୍ତେ 'ତରଙ୍ଗ ପ୍ରବାହ', 'କୁହୁଡ଼ି' ପରିବର୍ତ୍ତେ 'ପବନ ଶିରସ୍ତ୍ରାଣ', 'ରାଜା' ପରିବର୍ତ୍ତେ 'ଧନପ୍ରଦାୟକ' ପରି ଶବ୍ଦ ସମଷ୍ଟି ବ୍ୟବହୃତ ହୋଇଥାଏ । ଏହିପରି ଶବ୍ଦ ସଂଯୋଜନାରୁ ଅନେକ କ୍ଷେତ୍ରରେ ସେମାନଙ୍କର ଆଦିମ ବର୍ବରତାର ସୂଚନା ମିଳେ । ଯୁଦ୍ଧକୁ 'କଉଡ଼ି ଖେଳ', ଖଣ୍ଡାକୁ 'ରଣ ବିଜୁଳି', ରକ୍ତକୁ 'ସମର ସ୍ୱେଦ' କହିବା ମୂଳରେ ସେହି ମନୋଭାବ ନିହିତ ।

## ଅଙ୍ଗ୍ଲୋସାକ୍ସନ ଗଦ୍ୟ

ପୃଥିବୀର ଅନ୍ୟାନ୍ୟ ସାହିତ୍ୟପରି ଇଂରେଜୀ ସାହିତ୍ୟରେ ମଧ୍ୟ ପଦ୍ୟର ବହୁ ପରେ ଗଦ୍ୟର ସୂତ୍ରପାତ ହୋଇଛି । ରାଜା ଆଲ୍‌ଫ୍ରେଡ଼ଙ୍କ ରାଜତ୍ୱକାଳ (ଖ୍ରୀ: ୮୭୧-୯୦୧ ଖ୍ରୀ:)ରେ ଆଙ୍ଗ୍ଲୋସାକ୍ସନ ଗଦ୍ୟର ଭୂୟୋବିକାଶ ସାଧିତ ହୋଇଥିଲା । ଆଲ୍‌ଫ୍ରେଡ଼ଙ୍କ ପୂର୍ବବର୍ତ୍ତୀ ଇଂରାଜୀ ଗଦ୍ୟର ଅତ୍ୟନ୍ତ ଅମାର୍ଜିତ ରୂପ କେତେକ ଆଇନଗ୍ରନ୍ଥ ଓ ଖ୍ରୀଷ୍ଟୀୟ ମଠର ଘଟଣାଲିପିଙ୍ଗନଙ୍କରେ ଦେଖିବାକୁ ମିଳେ । ରାଜା ଆଲଫ୍ରେଡ୍ ୨୨ ବର୍ଷ ବୟସରେ ଡେନ୍‌ମାନଙ୍କ ଆକ୍ରମଣରେ ବିପର୍ଯ୍ୟସ୍ତ ଇଂଲଣ୍ଡରେ ସୁଶାସନ ପ୍ରତିଷ୍ଠା କରିଥିଲେ । ସେ ଜଣେ ବିଚକ୍ଷଣ ରାଜନୀତିଜ୍ଞ ତଥା ପଣ୍ଡିତ । ବିପର୍ଯ୍ୟସ୍ତ ଇଂଲଣ୍ଡର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ ସେ ଶିକ୍ଷାକୁ ବିଶେଷ ଗୁରୁତ୍ୱ ଦେଲେ । ପାଦ୍ରୀମାନଙ୍କର ଶିକ୍ଷାପାଇଁ କେତେକ ଲାଟିନ୍ ଗ୍ରନ୍ଥକୁ ନିଜେ ଇଂରେଜୀରେ ଅନୁବାଦ କରିଥିଲେ । ବିଦ୍ୱାନ୍‌ମାନଙ୍କୁ ଉପଢ଼ୌକନ ଦେଇ ସୃଜନଶୀଳ ସାହିତ୍ୟ ପାଇଁ ଉତ୍ସାହିତ କରୁଥିଲେ । ତାଙ୍କ ଅନୂଦିତ ଗ୍ରନ୍ଥ ମଧ୍ୟରେ ପୋପ୍ ଗ୍ରିଗରିଙ୍କର 'ପାଶ୍‌ଟୋରାଲ କେଆର' (Pastoral Care), ବେଡ଼େଙ୍କ ଧର୍ମୀୟ ଇତିବୃତ୍ତ (Ecclesiastical History) ଓ ଅରୋସିଅସ୍ (Orosius)ଙ୍କ 'ହିଷ୍ଟ୍ରି ଅଫ୍ ଦ ଓ୍ୱାର୍ଲ୍ଡ' (History of the World) ପ୍ରଧାନ । ତାଙ୍କର ଅନ୍ୟତମ ଅକ୍ଷୟ କୀର୍ତ୍ତି ଆଙ୍ଗ୍ଲୋସାକ୍ସନ୍ କ୍ରନିକଲ୍ (Anglo-Saxon Chronicle) । ଏଥିରେ ଜୁଲିଅସ ସିଜରଙ୍କ ମୃତ୍ୟୁଠାରୁ ଇଂଲଣ୍ଡର ଇତିହାସ ଲିପିବଦ୍ଧ । କେତେଜଣ ପଣ୍ଡିତଙ୍କ ତତ୍ତ୍ୱାବଧାନରେ ବିଭିନ୍ନ ଗିର୍ଜା ଓ ମଠରୁ ଦଲିଲ୍ ଦସ୍ତାବିଜ ସଂଗ୍ରହକରି ସେ ଏହି ଜାତୀୟ ଇତିହାସ ରଚନାରେ ବ୍ରତୀ ହୋଇଥିଲେ । ୯୦୧ ଖ୍ରୀ: ରେ ତାଙ୍କର ମୃତ୍ୟୁ ପରେ ମଧ୍ୟ ଏହି ଇତିହାସ ପ୍ରାୟ ୧୧୫୫ ଖ୍ରୀ: ପର୍ଯ୍ୟନ୍ତ ଲିଖିତ ହୋଇଆସୁଥିଲା । ଆଲ୍‌ଫ୍ରେଡ୍‌ଙ୍କ ଗଦ୍ୟଶୈଳୀ ଅତିମାତ୍ରାରେ ଲାଟିନ ପ୍ରଭାବିତ; ଭାବଧାରାର ସ୍ୱଚ୍ଛ ପ୍ରକାଶ ଦେଖାଯାଏ ନାହିଁ । ରଚନାଗୁଡ଼ିକ ତଥ୍ୟନିଷ୍ଠ ଓ ଆବେଗବର୍ଜିତ । ତଥାପି ଏହାକୁ ପ୍ରାଚୀନ ଗଦ୍ୟର ଶ୍ରେଷ୍ଠ କୀର୍ତ୍ତି ଭାବରେ ଗ୍ରହଣ କରାଯାଏ । ଇତିହାସ ଦୃଷ୍ଟିରୁ ଏହାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ ।

ଗଦ୍ୟରଚନା କ୍ଷେତ୍ରରେ ଆଲଫ୍ରିକ୍ ( Aelfric ) ଓ ଉଲ୍‌ଫ୍‌ଷ୍ଟାନ (Wulfstan) ନାମକ ଦୁଇ ଜଣ ଧର୍ମଯାଜକଙ୍କ ନାମ ସ୍ମରଣୀୟ । ଆଲଫ୍ରିକଙ୍କ ଲେଖନୀରେ ଆଙ୍ଗ୍ଲୋସାକ୍ସନ୍ ଗଦ୍ୟ ଅଧିକ ମାର୍ଜିତହେଲା । ତାଙ୍କର ମୁଖ୍ୟ ରଚନା ମଧ୍ୟରୁ ଖଣ୍ଡିଏ ହେଉଛି ବ୍ୟାଖ୍ୟାମୂଳକ ଧର୍ମୋପଦେଶ ( Catholic Homilies ), ଅନ୍ୟଟି ଖ୍ରୀଷ୍ଟୀୟ ମନୀଷୀଙ୍କ ଜୀବନୀ (Lives of Saints) । ସ୍ୱାଭାବିକତା, ସୁବୋଧତା, ଅନୁପ୍ରାସର ପ୍ରୟୋଗ ଓ କାବ୍ୟିକ ଛନ୍ଦ ତାଙ୍କ ଗଦ୍ୟଶୈଳୀର ବିଶେଷତ୍ୱ ।

ଉଲ୍‌ଫ୍‌ଷ୍ଟାନ ୟର୍କର ଆର୍ଚ୍ଚ ବିସପ୍ ଥିଲେ (୧୦୦୨-୨୩) । ଡେନସ୍ ଆକ୍ରମଣରେ ମ୍ରିୟମାଣ ଇଂଲଣ୍ଡ ଜାତି ପ୍ରତି ତାଙ୍କର ଦାନ ଅସୀମ । ସେ ବୁଝିଥିଲେ ଯେ ଇଂରେଜ

ଜାତିର ଅଧଃପତନର କାରଣ ନୀତିବୋଧ ଓ ଆଧ୍ୟାତ୍ମିକ ଚେତନାର ଅଭାବ । ୧୦୧୪ରେ ରଚିତ ତାଙ୍କର ଖଣ୍ଡିଏ ଗ୍ରନ୍ଥ (Sermo lupi ad Anglos)ରେ ଧର୍ମ ଉପଦେଶ ଛଳରେ ସେ ଇଂରେଜ ଜାତିକୁ ଚେତାବନୀ ଶୁଣାଇଛନ୍ତି । ତାହାଙ୍କ ଗଦ୍ୟରେ ଚନ୍ଦ୍ରାର ପୁନରାବୃତ୍ତି ଓ ଅନୁପ୍ରାସର ପ୍ରୟୋଗ ଦେଖାଯାଏ ।

ତତ୍କାଳୀନ କାବ୍ୟ ଅପେକ୍ଷା ଗଦ୍ୟ କଥିତ ଭାଷାର ନିକଟତର ଥିଲା । କାବ୍ୟିକବୃତ୍ତା ମୁଖ୍ୟତଃ ଅତୀତର ଘଟଣାକୁ ଭିତ୍ତିକରି ରଚିତ ହେଉଥିଲା । ଏହାର ଶୈଳୀ ମଧ୍ୟ ଥିଲା ପରମ୍ପରାନୁସାରୀ । ଅନ୍ୟ ପକ୍ଷରେ ଗଦ୍ୟ ଦୈନନ୍ଦିନ ଜୀବନର ଆବଶ୍ୟକତା ମେଣ୍ଟାଇବା ସଙ୍ଗେ ସଙ୍ଗେ ଭବିଷ୍ୟତ ପ୍ରତି ଇଙ୍ଗିତ ଦେବାପାଇଁ ଉଦ୍ଦିଷ୍ଟ ଥିଲା । ଏହିପରି ଭାବରେ କାବ୍ୟିକବୃତ୍ତା ଅତୀତକୁ ନିର୍ଦ୍ଦେଶ କରୁଥିବାବେଳେ ଗଦ୍ୟ ଥିଲା ଭବିଷ୍ୟତମୁଖୀ । ଏଣୁ ପ୍ରାଚୀନ କାବ୍ୟ ଓ ଆଧୁନିକ କାବ୍ୟଠାରୁ ପ୍ରାଚୀନ ଗଦ୍ୟ ଓ ଆଧୁନିକ ଗଦ୍ୟ ମଧ୍ୟରେ ଅଧିକ ସାମ୍ୟ ଦେଖାଯାଏ ।

## ଆଙ୍ଗ୍ଲୋସାକ୍ସନ୍ ଲାଟିନ୍ ଲେଖକ

ଆଙ୍ଗ୍ଲୋସାକ୍ସନ୍ ଯୁଗରେ ଇଂଲଣ୍ଡରେ ଲାଟିନ ପ୍ରଭାବ ଅକ୍ଷୁଣ୍ଣ ଥିଲା । ଶିକ୍ଷିତ-ଗୋଷ୍ଠୀ ଏଥିପ୍ରତି ବିଶେଷ ଆକୃଷ୍ଟ ହେଉଥିଲା । ଏଣୁ ଲାଟିନ୍ ଭାଷାରେ ମଧ୍ୟ ଏହି ସମୟରେ କେତେକ ଗ୍ରନ୍ଥ ରଚିତ ହୋଇଛି । ଏହି ରଚୟିତାଙ୍କ ମଧ୍ୟରେ ଭେନେରେବଲ୍ ବେଡ଼େ (Bede ୬୭୩-୭୩୫)ଙ୍କ ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କର ଏକ୍‌ଲେସିଆଷ୍ଟିକ୍ୟାଲ ହିଷ୍ଟ୍ରି ଅଫ୍ ଦି ଇଙ୍ଗ୍ଲିସ ପିପୁଲ (Ecclesiastical History of the English People) ଇଂରେଜୀ ଇତିହାସ ଓ ସାହିତ୍ୟ କ୍ଷେତ୍ରରେ ଏକ କୀର୍ତ୍ତିସ୍ତମ୍ଭ । ଏତଦ୍‌ବ୍ୟତୀତ ଆଲ୍‌ଡ୍ହେମ୍ (Aldhelm) ଓ ଆଲ୍‌କୁଇନ୍(Alcuin)ଙ୍କ ଦାନ ସ୍ମରଣୀୟ । ଏମାନେ ଲାଟିନରେ ଲେଖିଲେ ମଧ୍ୟ ମନପ୍ରାଣରେ ଥିଲେ ଜାତୀୟତାବାଦୀ । ଏମାନେ କେତେକ ଇଂରେଜୀ କବିତା ମଧ୍ୟ ଲେଖିଥିଲେ । ତାଙ୍କ ଲେଖାରେ ପରୋକ୍ଷୋକ୍ତି (Periphrasis) 'ପହିଲି' ଓ ପ୍ରୟୋଗର ପ୍ରବଣତା ଦେଖାଯାଏ । ଯଥା—

> What is body ? —the spirit's lodging.
> What is hair ? —the clothing of the head.

□□□

# ଦ୍ୱିତୀୟ ଅଧ୍ୟାୟ

# ଆଙ୍ଗ୍ଲୋ ନର୍ମାନ୍ ଯୁଗ

## [ଖ୍ରୀ: ୧୦୬୬–୧୩୫୦]

୧୦୬୬ ଖ୍ରୀଷ୍ଟାବ୍ଦରେ ନର୍ମାନ୍‌ମାନେ ହେଷ୍ଟିଂସ୍ ଯୁଦ୍ଧରେ ଜୟଲାଭକରି ଇଂଲଣ୍ଡ ଅଧିକାର କଲେ । ସେମାନଙ୍କର ଅଧିନାୟକ ଥିଲେ ଉଇଲିୟମ । ଇତିପୂର୍ବରୁ ଡେନ୍‌ମାର୍କ-ବାସୀଗଣ ବାରମ୍ବାର ଇଂଲଣ୍ଡ ଆକ୍ରମଣ କରିଥିଲେ; କିନ୍ତୁ ସଭ୍ୟତା ଓ ସଂସ୍କୃତିର ସାମ୍ୟହେତୁ ବିଜୟ ପରେ ଡେନ୍ସମାନେ କ୍ଷତିକୁଟୁମ୍ବ ଭଳି ଇଂଲଣ୍ଡର ଅଧିବାସୀଙ୍କ ସହ ମିଶିଯାଇଥିଲେ । ନର୍ମାନ୍‌ମାନଙ୍କ ଇଂଲଣ୍ଡ ବିଜୟ ଏ ଦିଗରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ଡେନ୍ସ ଓ ନର୍ମାନ୍‌ମାନେ ଏକବଂଶୋଦ୍‌ଭବ; କିନ୍ତୁ ଏମାନେ ଫ୍ରାନ୍‌ସର ନର୍ମାଣ୍ଡି ଅଞ୍ଚଳରେ ବହୁକାଳ ବସବାସ କରିବା ଫଳରେ ଡେନ୍‌ମାର୍କର ଐତିହ୍ୟ ଭୁଲିଯାଇ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସମ୍ପୂର୍ଣ୍ଣ ଫରାସୀ ପାଲଟିଯାଇଥିଲେ । ଏଣୁ ନର୍ମାନ୍ ବିଜୟ ଫଳରେ ଫରାସୀ ଓ ଇଂରେଜୀ ସଂସ୍କୃତିର ସମନ୍ୱୟ ଘଟିଲା । ନର୍ମାନଙ୍କ ଅଧିନାୟକ ଉଇଲିୟମ ରାଷ୍ଟ୍ର, ସମାଜ ଓ ଧର୍ମଜୀବନରେ ଅନେକ ପରିବର୍ତ୍ତନ ଆଣିଲେ । ନର୍ମାନ୍‌ମାନେ ବିଜେତା ଜାତି ହୋଇଥିବାରୁ ଇଂଲଣ୍ଡରେ ଫରାସୀଭାଷା ଓ ସଂସ୍କୃତି ପ୍ରାଧାନ୍ୟ ଲାଭକଲା । ଫରାସୀ ସାହିତ୍ୟ ଇଂରେଜୀ ସାହିତ୍ୟ ତୁଳନାରେ ସେତେବେଳେ ଉନ୍ନତ ନଥିଲା । ଫରାସୀ ଜାତୀୟ-ମହାକାବ୍ୟମାନ ସେତେବେଳକୁ ରଚିତ ହୋଇନଥାଏ । ଏଣୁ ସାହିତ୍ୟ ଅପେକ୍ଷା ଇଂରେଜୀ ଭାଷା ଅଧିକ ପ୍ରଭାବିତ ହେଲା । ଇଂରେଜୀ ସାହିତ୍ୟ, ସଂସ୍କୃତି ଓ ଫେସନ୍ ସମ୍ବନ୍ଧୀୟ ବହୁ ଶବ୍ଦ ଫରାସୀରୁ ଆହୃତ । ଶିକ୍ଷିତ ସମ୍ପ୍ରଦାୟ ଲାଟିନ ବା ଫରାସୀ ଭାଷା ବ୍ୟବହାର କଲେ । ଆଙ୍ଗ୍ଲୋସାକ୍‌ସନ ଭାଷା ବିସ୍ମୃତ ହେଲା । ଜାତୀୟ ସ୍ୱରୂପ ହରାଇ ଏହା କେତୋଟି ଉପଭାଷାରେ ପରିଣତହେଲା । ଏହା ପରେ ପ୍ରାୟ ଦୁଇ ଶହ ବର୍ଷଧରି ଇଂରେଜୀ ଭାଷାରେ ଉନ୍ନତ ସାହିତ୍ୟିକ ରଚନା ପ୍ରକାଶ ପାଇଲା ନାହିଁ । ଏଣୁ ଏହି ସମୟକୁ ଇଂରେଜୀ ସାହିତ୍ୟର ଅନ୍ଧକାରଯୁଗ କୁହାଯାଏ ।

ନର୍ମାଣ୍ଡି ବିଦେଶୀକର୍ତ୍ତୃକ ଅଧିକୃତ ହେବାରୁ ବିଜେତା ନର୍ମାନ୍‌ମାନେ କ୍ରମେ ଇଂଲଣ୍ଡକୁ ହିଁ ନିଜର ବାସଭୂମିରୂପେ ଗ୍ରହଣ କରିନେଲେ । ଇଂରେଜ ଜାତିର ବିରାଟ ଗଣ୍ଡି ଭିତରେ ଏମାନେ ବିଲୀନ ହୋଇଗଲେ । ଉଭୟ ସଭ୍ୟତାର ମିଳନରେ ଏକ

ନୂତନ ଜାତି ମଥାଟେକଲା । ଇଂରେଜ ଜାତିର ଦୁଃସାହସିକତା, ବୀରତ୍ୱ ଓ ଧର୍ମାନୁରାଗ ସହ ଫରାସୀଜାତିର ଉନ୍ନତ ରୁଚି, ବୁଦ୍ଧି ଓ ଅନୁଭୂତିର ସୂକ୍ଷ୍ମତା, ଆଭିଜାତ୍ୟ ଓ ଲାଳିତ୍ୟ ମିଶି ସାମାଜିକ ତଥା ସାଂସ୍କୃତିକ ଜୀବନକୁ ଅଧିକ ସୁଷମାମଣ୍ଡିତ କଲା । ଫରାସୀ ପ୍ରଭାବରେ ଅଳଙ୍କାରବହୁଳ, ଅମାର୍ଜିତ ଇଂରେଜୀ ଭାଷା ସହଜ ଓ ସରଳ ଭାବପ୍ରକାଶ ରୀତି ଗ୍ରହଣ କଲା । ଇଂରେଜୀ ଭାଷାରେ ଅନ୍ୟାନ୍ୟ ଭାଷାର ଶବ୍ଦ ତୁଳନାରେ ଫରାସୀ ଶବ୍ଦ ହିଁ ସର୍ବାଧିକ । ଇଂରେଜ ଥିଲା ଭୃତ୍ୟ, ଫରାସୀ ତାର ପ୍ରଭୁ । ଭୃତ୍ୟର ଭାଷା ଇଂରେଜୀ, କିନ୍ତୁ ପ୍ରଭୁ ସଂସ୍ପର୍ଶରେ ଆସିଲେ ସେ ଫରାସୀ ବ୍ୟବହାର କରେ । ମେଣ୍ଢା ଜଗିବା ଭୃତ୍ୟର କାମ—ଏଣୁ ମେଣ୍ଢାକୁ ଇଂରେଜୀରେ ସିପ (sheep) କହିଲେ ବାଧା ନାହିଁ; କିନ୍ତୁ ମେଣ୍ଢାମାଂସ ପ୍ରସ୍ତୁତ ହୋଇ ପ୍ରଭୁର ଟେବୁଲକୁ ଗଲାବେଳକୁ ଫରାସୀନାମ ଗ୍ରହଣ କରେ—ମାଟନ୍ (mutton) । ସେହିପରି ଘୁଷୁରି ଲୁଆର ଇଂରେଜୀ ପ୍ରତିଶବ୍ଦ ପିଗ୍ (pig), ମାତ୍ର ତାର ମାଂସ ପାଇଁ ଫରାସୀଶବ୍ଦ ବ୍ୟବହୃତ—ବ୍ୟାକନ୍ (Bacon) । ଗୋରୁ (Ox)—ମାଂସ ହୁଏ ବିଫ୍ (Beef) । ଏହିପରି ଭାବରେ ଇଂରେଜୀ ସାହିତ୍ୟ ଓ ସଂସ୍କୃତିକୁ ଫରାସୀଙ୍କ ଦାନ ଅପରିମିତ ।

ନର୍ମାନ୍ ଶାସନ ଫଳରେ ଇଂଲଣ୍ଡର ବିଭିନ୍ନ ଜନପଦ ମଧ୍ୟରେ ଐକ୍ୟ ସ୍ଥାପିତ ହେଲା । ଜାତୀୟଚେତନାର ସୂତ୍ରପାତ ହେଲା । ନର୍ମାନ୍‌ମାନେ ଇଂରେଜୀ ସମାଜସହ ଏକାକାର ହୋଇଯିବା ଫଳରେ ଏକ ସୁସଂସ୍କୃତ, ଉନ୍ନତକାମୀ ଐକ୍ୟବଦ୍ଧ ଜାତିର ଅଭ୍ୟୁଦୟ ଘଟିଲା । ଅଙ୍ଗ୍ଲୋସାକ୍ସନ ନୈରାଶ୍ୟବାଦ ବର୍ତ୍ତମାନ ଅତୀତର ସ୍ମୃତି । ଏହି ଜାତି ୧୨୧୫ ଖ୍ରୀ: ରେ ରାଜା ଜନ୍‌ଙ୍କ ହାତରୁ "ଜନସାଧାରଣଙ୍କର ସ୍ୱାଧୀନତାର ସନନ୍ଦ" (Magna Charta) ଆଦାୟ କରିନେଇଥିଲେ । ଏହି ସମୟର ସାହିତ୍ୟକୁ ନିମ୍ନ କେତୋଟି ବିଭାଗରେ ବିଭକ୍ତ କରାଯାଇପାରେ—

(୧) ଧାର୍ମିକ କୃତି (ନୀତିମୂଳକ କବିତା)

(୨) ଇତିବୃତ୍ତମୂଳକ କବିତା

(୩) ରୋମାନସ୍

(୪) ଗୀତିକାବ୍ୟ

(୫) ଗଦ୍ୟ

## ଧାର୍ମିକ କୃତି

(କ) ପଏମା ମରାଲ (Poema Morale : ଖ୍ରୀ: ୧୧୫୦) : ଜୀବନର ନଶ୍ୱରତା, ପାପବୋଧ, ନରକଯନ୍ତ୍ରଣା, ଈଶ୍ୱରଙ୍କ କରୁଣା ଓ ବିଚାର, ସ୍ୱର୍ଗର ଆନନ୍ଦ ଆଦି ଏହାର ବିଷୟବସ୍ତୁ । ନର୍କର ପ୍ରଶସ୍ତ ପଥ ତ୍ୟାଗକରି ସ୍ୱର୍ଗର ସଙ୍କୀର୍ଣ୍ଣ ପଥ ଅନୁସରଣ କରିବାକୁ ଲେଖକ ଆହ୍ୱାନ ଦେଇଛନ୍ତି । ଅନୁଭୂତିରେ ଆନ୍ତରିକତା ଅଛି; କିନ୍ତୁ ଏହାର ଅନ୍ତଃସ୍ୱର କରୁଣ । ଏହା ଚାରି ଶହ ପଙ୍କ୍ତି ବିଶିଷ୍ଟ । ପଙ୍କ୍ତି ଗୁଡ଼ିକରେ ଅନ୍ତ୍ୟମେଳ ସଂରକ୍ଷିତ ।

(ଖ) ଅର୍ମୁ୍ୟଲମ (Ormulum) ପ୍ରାୟ ୧୨୦୦ ଖ୍ରୀ: ବେଳକୁ ଲିଖିତ । ଅର୍ମ (Orm) ନାମକ ଜଣେ ମହନ୍ତ ଏହାର ରଚୟିତା । ଏଥିରେ ପ୍ରାୟ ଦଶ ହଜାର ପଙ୍କ୍ତି ରହିଛି । ବାଇବେଲ୍‌ର ବାଣୀ ପ୍ରଚାର ଏହାର ଉଦ୍ଦେଶ୍ୟ ।

(ଗ) କର୍ସର ମଣ୍ଡି (Cursor Mundi) ପ୍ରାୟ ୧୩୨୦ ଖ୍ରୀ: ବେଳକୁ ରଚିତ । ନିଉ ଟେଷ୍ଟାମେଣ୍ଟ ଉପରେ ଏହା ଆଧାରିତ । ସୃଜନଠାରୁ ପ୍ରଳୟ ପର୍ଯ୍ୟନ୍ତ ବାଇବେଲର କାହାଣୀ ଏଥିରେ ବିବୃତ । ଏଥିରୁ ପରବର୍ତ୍ତୀ କାଳର 'ମିରାକ୍‌ଲ ପ୍ଲେ' '(Miracle Play)ର ଆଭାସ ମିଳେ ।

(ଘ) ଦ ଆଉଲ ଏଣ୍ଡ ଦ ନାଇଟିଙ୍ଗେଲ୍ (The Owl and the Nightingale) ମଧ୍ୟଯୁଗୀୟ ଇଂରେଜୀ ସାହିତ୍ୟରେ ଏକ ବିଶିଷ୍ଟ ରଚନା । ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରେ ଏହା ରଚିତ । କବିତାଟି ରୂପକଧର୍ମୀ । ଏଥିରେ ପେଚକ ଓ ବୁଲ୍‌ବୁଲ୍ ପକ୍ଷୀଦ୍ୱୟ ଯଥାକ୍ରମେ ଆଧ୍ୟାତ୍ମବାଦୀ ଓ ଭୋଗଲିପ୍ସୁ ଜୀବନର ପ୍ରତୀକ ଓ ଲେଖକଙ୍କ ଦୁଇ ବିପରୀତମୁଖୀ ପ୍ରବୃତ୍ତିର ଦ୍ୟୋତକ । ଶାଣିତ ଯୁକ୍ତିତର୍କ ମଧ୍ୟରେ ଉଭୟେ ସ୍ୱ ସ୍ୱ ଉତ୍କର୍ଷ ପ୍ରତିପାଦନ କରିବାର ପ୍ରୟାସ କରିଛନ୍ତି । ଅବଶେଷରେ ମାଷ୍ଟର ନିକୋଲସ (Master Nicholas)ଙ୍କୁ ଏହାର ସମାଧାନ ଦାୟିତ୍ୱ ଦେବାକୁ ଉଭୟେ ରାଜିହୋଇଛନ୍ତି । ସମ୍ଭବତଃ ମାଷ୍ଟର ନିକୋଲସ ହିଁ କବିତାଟିର ଲେଖକ । ତାର୍କିକତା, ନାଟକୀୟତା ଓ ବ୍ୟଙ୍ଗ ଏହାର ବୈଶିଷ୍ଟ୍ୟ । ଏହିପରି ଅନ୍ୟ ଏକ ବିତର୍କମୂଳକ କବିତା ହେଉଛି "ଡିସ୍‌ପ୍ୟୁଟେସନ୍ ବିଟୁଇନ ଦ ବଡ଼ି ଆଣ୍ଡ୍ ଦ ସୋଲ୍" (Disputisoun between the Body and the Soul) ।

(ଙ) ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀରେ ଲିଖିତ ପାର୍ଲ, ପ୍ୟୁରିଟି ଓ ପେସେନ୍‌ସ (Pearl, Purity, Patience) ନାମକ ତିନୋଟି ନୀତିବୋଧାତ୍ମକ କବିତା ଉଲ୍ଲେଖଯୋଗ୍ୟ । ଗୋଟିଏ କନ୍ୟାହରା ପିତାର ବ୍ୟାକୁଳତା ଓ ସାନ୍ତ୍ୱନା ପାର୍ଲ କବିତାଟିର ବିଷୟବସ୍ତୁ । ଏହା ରୂପକାତ୍ମକ । ମୃତାକନ୍ୟା ମାର୍ଗାରେଟ୍ ହିଁ କବିତା ବର୍ଣ୍ଣିତ ମୁକ୍ତା (Pearl) । ଦୁଃଖରେ ମୁହ୍ୟମାନ ହୋଇ କବି ନିଦ୍ରାଯାଇଛନ୍ତି । ସ୍ୱପ୍ନରେ ଦେଖିଛନ୍ତି ସେହି ପାର୍ଲକୁ । ପରମପୁରୁଷଙ୍କ ସହିତ ତାର ପରିଣୟ ସମାହିତ ହୋଇଛି । କବିଙ୍କର ସ୍ୱପ୍ନ ଅପସରି ଯାଇଛି । ଶାନ୍ତି କଭାବରେ ହୃଦୟ ତାଙ୍କର ପରିପୂର୍ଣ୍ଣ ହୋଇଛି । କବିତାଟି ବାରଶହବାର ପଙ୍କ୍ତି ବିଶିଷ୍ଟ । ପ୍ରତ୍ୟେକ ବାର ପଙ୍କ୍ତିରେ ଗୋଟିଏ ଗୋଟିଏ ସ୍ତବକ । ଏହାର ଫର୍ମ ababab-bcbc ।

'ପ୍ୟୁରିଟି' ବାଇବେଲ୍‌ର କେତୋଟି ଗଳ୍ପର ସମନ୍ୱୟ । ସବୁ ପ୍ରକାରର ଦୋଷ, ପାପ ଉପରେ ଈଶ୍ୱରଙ୍କର ଅପ୍ରିୟ ତାହା ହିଁ କବିତାଟିର ପ୍ରତିପାଦ୍ୟ ।

'ପେସେନ୍‌ସ' (Patience)ରେ ଧୈର୍ଯ୍ୟର ମହିମା ପ୍ରକାଶିତ । ବାଇବେଲ୍‌ର ଏକ ଅଂଶ (Book of Jonah)ର ଏହା ରୂପାନ୍ତର ମାତ୍ର ।

(ଚ) ଏତଦ୍‌ବ୍ୟତୀତ 'ଦି ଫାଇଭ୍ ଜଏଜ୍ ଅଫ ଦି ଭର୍ଜିନ' (The five joys of the virgin) ପ୍ରଭୃତି ସ୍ତୁତିମୂଳକ କେତୋଟି କବିତା ରହିଛି ।

## ଇତିବୃତ୍ତମୂଳକ କବିତାବଳୀ

ଲୟାମନ (Layamon) ନାମକ ଜଣେ ପାଦ୍ରୀଙ୍କଦ୍ୱାରା ୧୨୦୫ ଖ୍ରୀ:ରେ ଏକ ଐତିହାସିକ କୃତି 'ବ୍ରୁଟ୍' (Brut) ଲିଖିତ (ଖ୍ରୀ: ୧୨୦୫) । ବ୍ରୁଟାସ୍‌ଙ୍କ ଇଂଲଣ୍ଡ ଆଗମନଠାରୁ ୭ମ ଶତାବ୍ଦୀ ପର୍ଯ୍ୟନ୍ତ ଇଂଲଣ୍ଡର ଇତିହାସ ଏଥିରୁ ମିଳେ । ଏହି 'ବ୍ରୁଟ୍' ପରବର୍ତ୍ତୀକାଳରେ ସେକ୍‌ସପିଅରଙ୍କ ଜୁଲିଅସ ସିଜାର ନାଟକର ଏକ ମୁଖ୍ୟ ଚରିତ (Brutus)ରେ ପରିଣତ ହୋଇଛି । ରଚନାଟିରେ ଲୟାମନଙ୍କର କୌଣସି ସ୍ୱକୀୟତା ନାହିଁ । ଏହା ଫ୍ରେଞ୍ଚ୍ ଲେଖକ ଓ୍ୱାସ (Wace)ଙ୍କ 'ବ୍ରୁଟ୍'ର ଇଂରେଜୀ ରୂପାନ୍ତର ମାତ୍ର; କିନ୍ତୁ ଲୟାମନ ହିଁ ପ୍ରଥମେ ଇଂଲଣ୍ଡବାସୀଙ୍କୁ ଇଂରେଜୀ ଭାଷାରେ ସୁବିଖ୍ୟାତ ଆର୍ଥାରୀୟ କାହାଣୀ (Arthurian legend)ର ସ୍ୱାଦ ଚଖାଇଥିଲେ । ଲୟାମନଙ୍କ ରଚନାରେ ଉତ୍କଟ ଦେଶପ୍ରୀତିର ପରିଚୟ ମିଳେ ।

ତାହାଙ୍କ ପରେ 'ରବାର୍ଟ ଅଫ୍ ଗ୍ଲସଟାର' (Robert of Gloucester) ଆର୍ଥାରଙ୍କୁ କାବ୍ୟର ନାୟକ ସ୍ଥଳକୁ ଉନ୍ନୀତ କରିଛନ୍ତି । ଏତଦ୍‌ବ୍ୟତୀତ ରୋବାର୍ଟ ମ୍ୟାନିଂଙ୍କ ଇତିବୃତ୍ତମୂଳକ ଗ୍ରନ୍ଥରେ ବାଇବେଲ କାହାଣୀଠାରୁ ପ୍ରଥମ ଏଡ୍‌ଓ୍ୱାର୍ଡ୍‌ଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବିବରଣୀ ଲିପିବଦ୍ଧ ।

ରୋମାନ୍‌ସ—ଆଙ୍ଗ୍ଲୋ ନର୍ମାନ ସାହିତ୍ୟରେ ଅନ୍ୟ ଏକ ମୁଖ୍ୟବିଭାବ ରୋମାନ୍‌ସ । ଏହା ତତ୍କାଳୀନ ଇଂଲଣ୍ଡରେ ଅତ୍ୟନ୍ତ ଲୋକପ୍ରିୟତା ଅର୍ଜନ କରିଥିଲା । ଦୁଃସାହସିକ ବୀରଙ୍କର ଦୁର୍ଗମ ପଥରେ ଅଭିଯାନ, ପ୍ରେମ, ଯୁଦ୍ଧ ଆଦି ଏହାର ବିଷୟବସ୍ତୁ । ବିଷୟବସ୍ତୁ ଦୃଷ୍ଟିରୁ ଏଗୁଡ଼ିକ ଫ୍ରାନ୍‌ସ, ରୋମ, ଗ୍ରୀସ୍ ବା ଇଂଲଣ୍ଡର ଉପାଦାନ ଉପରେ ଆଧାରିତ । ଆରବିଆନ ନାଇଟ୍ ପରି ପ୍ରାଚ୍ୟର ଉପାଦାନ ମଧ୍ୟ ଏହାର ଭିତ୍ତି । ଫରାସୀ ଉପାଦାନ ମଧ୍ୟରେ ଫରାସୀବୀର ସାର୍ଲମେନ (Charlemagne) ଓ ତାହାଙ୍କ ସହଚରଙ୍କ କାହାଣୀ ମୁଖ୍ୟ । 'ରୋଲେଣ୍ଡ୍ ଆଣ୍ଡ୍ ଭର୍ନାଗୁ' (Roland and Vernagu) ଏ ମଧ୍ୟରେ ଶ୍ରେଷ୍ଠ ରଚନା । ରୋମ୍ ଓ ଗ୍ରୀକ୍ ଉପାଦାନ ଆଧାରିତ ରୋମାନ୍‌ସଗୁଡ଼ିକରେ ଟ୍ରୟ ନଗରୀର ପତନ କାହାଣୀ ଓ ଆଲେକ୍‌ଜାଣ୍ଡରଙ୍କ ବୀରତ୍ୱ ବର୍ଣ୍ଣିତ । ଇଂଲଣ୍ଡୀୟ ଉପାଦାନରେ ପରିପୁଷ୍ଟ ରୋମାନ୍‌ସ ମଧ୍ୟରେ ହ୍ୟାଭଲକ୍ (Havelok), କିଙ୍ଗ୍ ହର୍ନ (King Horn) ଓ ରାଜା ଆର୍ଥାର ତଥା ତାହାଙ୍କ ନାଇଟ୍‌ଙ୍କ ସମ୍ବନ୍ଧୀୟ ଆଖ୍ୟାୟିକାମାନ ପ୍ରଧାନ ।

ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗବେଳକୁ 'ଜେଫ୍ରି ଅଫ୍ ମନମାଉଥ୍' (Geoffrey of Monmouth) ଲାଟିନ ଭାଷାରେ ବ୍ରିଟନ୍‌ଙ୍କ ଇତିହାସ (Historia Regum

Britannic) ରଚନା କରିଥିଲେ । ଏଥିରେ ବହୁ ଆର୍ଥାରିଆନ କାହାଣୀ ସନ୍ନିବିଷ୍ଟ । ପୂର୍ବୋକ୍ତ ଲସ୍ଗୁଡ଼ିକ ଏହି ରଚନାଦ୍ୱାରା ପ୍ରଭାବିତ ହୋଇଥିବା ସମ୍ଭବ । ରାଜା ଆର୍ଥାର ଓ ତାହାଙ୍କ ଗୋଲଟେବୁଲ (King Arthur and his round table) କିମ୍ବଦନ୍ତୀ ଭିତ୍ତିକ କାହାଣୀରୁ ବହୁ ରୋମାନ୍ସ ଜନ୍ମନେଇଛି । ନାଇଟ୍‌ଗଣ ରାଜା ଆର୍ଥାରଙ୍କ ଗୋଲଟେବୁଲ ବୈଠକରେ ଏକତ୍ରିତ ହୁଅନ୍ତି । ବୀରତ୍ୱର ଆଦର୍ଶ ଅନୁଯାୟୀ ନାନା ଦୁଃସାହସିକ କର୍ମରେ ବ୍ୟାପୃତ ହୁଅନ୍ତି । ଏହି ବୀରଙ୍କ ମଧ୍ୟରେ ସାର ଗଓ୍ୱାନ୍, ଲାନ୍‌ସଲଟ୍, ଟ୍ରିସ୍‌ଟ୍ରେମ, ପାର୍ସିଭ୍ୟାଲ୍, ମାର୍‌ଲିନ୍ ଆଦି ପ୍ରଧାନ । ଏଥି ସମ୍ପୃକ୍ତ ହୋଲି ଗ୍ରେଲ (Holy Grail) ବା ଯୀଶୁଖ୍ରୀଷ୍ଟଙ୍କ ପବିତ୍ର ରକ୍ତପାତ୍ର ସମ୍ବନ୍ଧୀୟ କିମ୍ବଦନ୍ତୀଟି ଅତ୍ୟନ୍ତ ଚିତ୍ତାକର୍ଷକ । ରାଜା ଆର୍ଥାରଙ୍କ ରାଣୀ ଗିନିଭିର (Guinevere) ନାଇଟ୍ ଲାନ୍‌ସ୍‌ଲଟ (Lancelot)ଙ୍କ ସହ ପାପପ୍ରଣୟାସକ୍ତା । ଏଣୁ ଯୀଶୁଖ୍ରୀଷ୍ଟଙ୍କ ପବିତ୍ର ରକ୍ତପାତ୍ର ଅନୁସନ୍ଧାନରେ ସେ ବ୍ୟର୍ଥ ହୋଇଛନ୍ତି । କ୍ରମେ ରାଜା ଆର୍ଥାରଙ୍କୁ ବାଦ୍‌ଦେଇ ତାହାଙ୍କ ନାଇଟ୍ ସମ୍ବନ୍ଧୀୟ କାହାଣୀ ଅଧିକ ପ୍ରଚଳିତ ହୋଇଛି । ଏଥି ମଧ୍ୟରୁ ସାର୍ ଗଓ୍ୱାନ୍ ଆଣ୍ଡ ଦି ଗ୍ରିନ୍ ନାଇଟ୍ (Sir Gawaine and the Green knight) ସର୍ବପ୍ରଧାନ ।

ନବବର୍ଷ ଉପଲକ୍ଷେ ରାଜା ଆର୍ଥାର ଓ ତାହାଙ୍କ ନାଇଟ୍‌ଗଣ ଭୋଜି ସଭାରେ ଆଳାପରତ । ଏତିକିବେଳେ ସବୁଜପୋଷାକଧାରୀ ଏକ ଭୀମକାୟ ନାଇଟ୍ ସେଠାରେ ଉପସ୍ଥିତ ହୋଇଛି । ରାଜାଙ୍କ ନାଇଟ୍‌ଙ୍କୁ ସେ ବୀରତ୍ୱ ପରୀକ୍ଷାର ଆହ୍ୱାନ ଦେଇଛି । ସର୍ତ୍ତ ତାର ବଚନ—ରାଜାଙ୍କର ଯେକୌଣସି ବୀର ଗୋଟିଏ ଧାରୁଆ କୁରାଢ଼ୀରେ ତା ବେକରେ ଗୋଟିଏ ଷ୍ଟ୍ରୋକ ଦେବ, ପରେ ତାଙ୍କଠାରୁ ସେହିପରି ଏକ ଆଘାତ ଗ୍ରହଣ କରିବ । ଗଓ୍ୱାନଙ୍କ କୁରାଢ଼ୀ ଷ୍ଟ୍ରୋକରେ ଗ୍ରୀନନାଇଟଙ୍କ ମସ୍ତକ ବିଚ୍ଛିନ୍ନ ହୋଇଯାଇଛି । କିନ୍ତୁ ତାଙ୍କ ଶକ୍ତି ଟି ବିଚ୍ଛିନ୍ନ ମସ୍ତକକୁ ଧରି ଗଓ୍ୱାନ୍‌ଙ୍କୁ ବର୍ଷକ ପରେ ଭେଟିବାକୁ କହି ଚାଲିଯାଇଛି । ଯଥାସମୟରେ ଗଓ୍ୱାନ ଗ୍ରୀନ୍‌ନାଇଟର ଘରେ ଉପସ୍ଥିତ ହୋଇଛନ୍ତି । ଗ୍ରୀନ୍‌ନାଇଟ୍‌ର ସ୍ତ୍ରୀ ତାଙ୍କ ପ୍ରତି ଆକୃଷ୍ଟ ହୋଇଛି । କିନ୍ତୁ ସାର୍ ଗଓ୍ୱାନ ଆଦର୍ଶ ବୀର ହୋଇଥିବାରୁ ତାହାର ପ୍ରଣୟ ପ୍ରତ୍ୟାଖ୍ୟାନ କରିଛନ୍ତି; କିଛି ଉପହାର ଗ୍ରହଣ କରିଛନ୍ତି ମାତ୍ର । ଏହି ଦୋଷ ହେତୁ ଗ୍ରୀନ୍‌ନାଇଟ୍‌ଙ୍କ ଷ୍ଟ୍ରୋକରେ ତାଙ୍କ ମସ୍ତକ ଛିନ୍ନ ହୋଇନାହିଁ ସତ୍ୟ, ମାତ୍ର ସେ ସାମାନ୍ୟ ଆଘାତ ପାଇଛନ୍ତି ।

ରୋମାନ୍‌ସଗୁଡ଼ିକରେ ତତ୍କାଳୀନ ରୋମାଣ୍ଟିକ ମନୋବୃତ୍ତି ରୂପପାଇଛି । ପ୍ରେମ, ବୀରତ୍ୱ ବା ଧର୍ମ ଉପରେ ଏଗୁଡ଼ିକ ଆଧାରିତ । ତତ୍କାଳୀନ ପ୍ରାସାଦ ଓ ଦରବାରର ଚିତ୍ର ଏଥିରୁ ମିଳେ । ପ୍ରକୃତି, ବିଶେଷତଃ ବନ୍ୟ ପ୍ରକୃତିର ବିଶିଷ୍ଟ ଭୂମିକା ରହିଛି । ଏଗୁଡ଼ିକର ପଟ୍ଟଭୂମି ସୁବିସ୍ତୀର୍ଣ୍ଣ । ଅନେକ କ୍ଷେତ୍ରରେ ଅସଂଲଗ୍ନ ଓ ଅବାନ୍ତର ବିଷୟର ଅବତାରଣା ଦେଖିବାକୁ ମିଳେ । ଏହା କେତେବେଳେ ଅନ୍ତ୍ୟମେଳହୀନ ଓ କେତେବେଳେ ଅନ୍ତ୍ୟମେଳଯୁକ୍ତ । ଅନୁପ୍ରାସର ପ୍ରାଧାନ୍ୟ ରହିଛି ।

## ଗୀତିକବିତା

ଗାଥା ଓ ରୋମାନ୍ସ ଅପେକ୍ଷା ଏ ଯୁଗର ଗୀତିକବିତା କାବ୍ୟିକ ସାଫଲ୍ୟ ତଥା ଆବେଦନ ଦୃଷ୍ଟିରୁ ଉତ୍କୃଷ୍ଟତର । ଏଗୁଡ଼ିକରେ ହୃଦୟର ସୁଖ-ଦୁଃଖାତ୍ମକ ଆବେଗ ରୂପାୟିତ । ଏଥି ମଧ୍ୟରୁ 'ଲଭରୁନ' ବିଶେଷ ସମାଦୃତ । ଏହି ପ୍ରେମପତ୍ର ( Love rune or letter )ଟି ଖ୍ରୀ: ୧୨୫୦ରେ ହେଲସ୍ (Thomas de Hales)ଙ୍କ ଦ୍ୱାରା ରଚିତ । କୌଣସି ମହିଳାଙ୍କ ଅନୁରୋଧରେ କବି ଏହା ରଚନା କରିଥିବାରୁ କବିତାର ସ୍ୱର ଉପଦେଶାତ୍ମକ :

A maid of Christ entreatedme
A love song for her to indite
That thus she may instructed be
To choose a lover true aright
The best to guard a woman free
Of all men born, most loyal knight,
Nor shall her wish refused be,
To teach her this be my delight.

ସ୍ପ୍ରିଙ୍ଗ୍ ଟାଇମ (Spring Time—୧୩୦୦) କବିତାଟିରେ ବସନ୍ତର ଆବାହନ କରାଯାଇଛି । "Lenten (Spring) Ys come with luve to toune" ଅନ୍ୟ ଏକ ପ୍ରେମକବିତା ଏଲିସନ (Alysoun)ର ଛନ୍ଦ ଚସାର୍‌ଙ୍କ ଆଗମନର ସୂଚନା ଦିଏ ।

## ଗଦ୍ୟ :

ଗଦ୍ୟ ରଚନା ମଧ୍ୟରେ ଖ୍ରୀ: ୧୨୦୦ ରେ ରଚିତ ଆନକ୍ରେନ୍ ରିଉଲ୍ (Ancrene Riwle : Rule for Anchoresses) ପ୍ରଧାନ । ଏହା ସମ୍ଭ୍ରାନ୍ତବଂଶୀୟା ତିନି ଭଗ୍ନୀଙ୍କ ଉଦ୍ଦେଶ୍ୟରେ ଲିଖିତ । ଧର୍ମଜୀବନଯାପନରେ ସହାୟକ ହେବାଭଳି ନୀତିନିୟମ ଏଥିରେ ବର୍ଣ୍ଣିତ । ଏଥିରୁ ଲେଖକଙ୍କ ଉଦାର ହୃଦୟବତ୍ତାର ପରିଚୟ ମିଳେ । ହାସ୍ୟରସ, ଈଷତ୍ ବକ୍ରଦୃଷ୍ଟି ଓ ସାର୍ଥକ ଉପମା ପ୍ରୟୋଗ ହେତୁ ଏହା ତତ୍କାଳୀନ ନୀରସତାରୁ କେତେକ ପରିମାଣରେ ମୁକ୍ତ । ଉଦାହରଣ ସ୍ୱରୂପ ଆଳସ୍ୟ ପରିହାର କରିବାକୁ ଉପଦେଶ ଦେଇ ଲେଖକ କହିଛନ୍ତି—

Iron that lieth still soon gathereth rust,
And water that is not stirred soon stinketh.

ଏତଦ୍‌ବ୍ୟତୀତ 'ଦି ସେଫ୍ ଗାର୍ଡିଂ ଅଫ୍ ସୋଲ୍', 'ସେଣ୍ଟ କାଥାରିନ୍', 'ସେଣ୍ଟ ମାର୍ଗାରେଟ୍', 'ସେଣ୍ଟ ଜୁଲିଆନା' ଆଦି ଅନ୍ୟ କେତୋଟି ଧର୍ମଭିତ୍ତିକ ଗଦ୍ୟଗ୍ରନ୍ଥ ରଚିତ ହୋଇଛି ।



# ତୃତୀୟ ଅଧ୍ୟାୟ

## ଚସାର୍ ଯୁଗ

[ ଖ୍ରୀ: ୧୩୫୦— ୧୪୦୦ ]

ଚତୁର୍ଦ୍ଦଶ ଶତାବ୍ଦୀର ବ୍ରିଟିଶ ଜୀବନ-ପ୍ରବାହରେ ଦୁଇଟି ଧାରା ମୁଖ୍ୟ—ଗୋଟିଏ ରାଜନୈତିକ, ଅନ୍ୟଟି ସାମାଜିକ । ଶତବର୍ଷବ୍ୟାପୀ ଫ୍ରାନ୍ସ୍-ଇଂଲଣ୍ଡ ଯୁଦ୍ଧ ଆଣିଥିଲା ଧ୍ବଂସ ଓ ରକ୍ତପାତ; କିନ୍ତୁ ପରିଣତି ଥିଲା ଲାଭଦାୟକ । ତୃତୀୟ ଏଡ୍‌ଓ୍ୱାର୍ଡ ଓ ବ୍ଲାକ୍ ପ୍ରିନ୍ସଙ୍କ ନେତୃତ୍ବରେ ଇଂଲଣ୍ଡ ବାରମ୍ବାର ଫ୍ରାନ୍ସ ଉପରେ ବିଜୟ ହାସଲ କଲା, ଏହାଦ୍ୱାରା ଏକ ଶକ୍ତିଶାଳୀ ଜାତିରୂପେ ତାହାର ଆତ୍ମବିଶ୍ୱାସ ବଢ଼ିଲା; ଜାତୀୟତାର ଏକ ଅଭୂତପୂର୍ବ ସ୍ପନ୍ଦନ ଅନୁଭୂତ ହେଲା । ଯୁଦ୍ଧର ଘନଘଟା ମଧ୍ୟରେ ଇଂରେଜ ଜାତି ଫ୍ରାନ୍ସର ରକ୍ତଗତ ବନ୍ଧନ ଓ ରୋମର ଧର୍ମୀୟ ବନ୍ଧନରୁ ମୁକ୍ତହେଲା । ଫରାସୀ ଭାଷା ସ୍ଥାନରେ ଇଂରେଜୀ ଭାଷା କୋର୍ଟ କଚେରୀରେ ବ୍ୟବହୃତ ହେଲା । ବିଭିନ୍ନ ଆଞ୍ଚଳିକ ଭାଷା ମଧ୍ୟରୁ ଓଏଷ୍ଟ ମିଡ୍‌ଲ୍ୟାଣ୍ଡ୍ ଭାଷା ସାହିତ୍ୟିକ ଭାଷାଭାବରେ ଗୃହୀତ ହେଲା । ବସ୍ତୁତଃ ଏହି ସମୟରୁ ହିଁ ଇଂଲଣ୍ଡ ଏକ ଐକ୍ୟବଦ୍ଧ ରାଷ୍ଟ୍ରଭାବରେ ଆତ୍ମପ୍ରକାଶ କଲା ।

ଆର୍ଥିକ ଓ ସାମାଜିକ ଦିଗରୁ ଇଂଲଣ୍ଡପକ୍ଷେ ଏହା ଥିଲା ଦୁଃସମୟ । ଧନୀ ଓ ଦରିଦ୍ରଙ୍କ ମଧ୍ୟରେ ଦେଖାଦେଇଥିଲା ବିରାଟ ଆର୍ଥିକ ବ୍ୟବଧାନ । ଧନୀମାନେ ବିଳାସ-ବ୍ୟସନରେ ମାତିଥିବାବେଳେ କୃଷକମାନେ କରଭାରରେ ଅତିଷ୍ଠ ହୋଇପଡ଼ିଥିଲେ । ଏହି କାରଣରୁ ୧୩୮୧ ମସିହାର କୃଷକ-ବିପ୍ଳବ । ଧର୍ମକ୍ଷେତ୍ରରେ ମଧ୍ୟ ବିପ୍ଳବର ବାଣୀ ଶୁଣାଯାଇଥିଲା । ଜନ ଉଇକ୍ଲିଫ୍ ଅନ୍ଧବିଶ୍ୱାସ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଖ୍ରୀ: ୧୩୪୮ର ପ୍ଳେଗ୍ ମହାମାରୀ (Black death) ରେ ମୃତ୍ୟୁର କରାଳ ଛାୟା ଇଂଲଣ୍ଡକୁ ଗ୍ରାସକରିଥିଲା ।

ଅନ୍ୟ ପକ୍ଷରେ ଇଂରେଜ ଜାତି ଏକ ବଣିକଜାତିରୂପେ ଆତ୍ମପ୍ରକାଶ କଲା । ପୃଥିବୀର ବିଭିନ୍ନ ପ୍ରାନ୍ତରେ ଉପନିବେଶମାନ ସ୍ଥାପିତ ହେବା ସଙ୍ଗେ ସଙ୍ଗେ ଜାତୀୟ ସାହିତ୍ୟର ଏକ ଦୃଢ଼ ମୂଳଦୁଆ ପଡ଼ିଥିଲା । ଏହି ପରିବେଶରେ ଲ୍ୟାଙ୍ଗଲ୍ୟାଣ୍ଡ, ଗର୍ଓ୍ୱାର, ମାଣ୍ଡଭିଲ୍, ଓ୍ୱିକ୍ଲିଫ୍ ଆଦି ଚସାର୍‌ଙ୍କ ପରି ବିଶିଷ୍ଟ ସାହିତ୍ୟିକଙ୍କ ଅଭ୍ୟୁଦୟ । ଚସାର୍ ଏମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ସାହିତ୍ୟର ଇତିହାସରେ ଏହି ଯୁଗ ଚସାର୍-ଯୁଗ ନାମରେ ପରିଚିତ ।

## ଚସାର୍ (Geoffrey Chaucer : ଖ୍ରୀ: ୧୩୪୦—୧୪୦୦)

ଜେଫ୍ରି ଚସାର ଆଧୁନିକ ଇଂରେଜୀ କବିତାର ଜନକ । ମାର୍ଜିତ ଇଂରେଜୀ ଭାଷା ଓ ଶୈଳୀର ସେ ପ୍ରବର୍ତ୍ତକ । ଲଣ୍ଡନର ଏକ ସୁରା ବ୍ୟବସାୟୀ ପରିବାରରେ ତାଙ୍କର ଜନ୍ମ । ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରି ସେ ସମାଜ ଓ ଜୀବନ ସମ୍ବନ୍ଧରେ ବହୁମୁଖୀ ଅଭିଜ୍ଞତା ଅର୍ଜନ କରିଥିଲେ । ସତରବର୍ଷ ବୟସରେ ସେ ହୁଅନ୍ତି ରାଜକୁମାରୀ ଏଲିଜାବେଥଙ୍କ ପରିଚର (Page) ; ଊଣେଇଶ ବର୍ଷ ବୟସରେ ରାଜାଙ୍କ ପାର୍ଶ୍ୱଚର ଭାବରେ ଫ୍ରାନ୍ସର ଯୁଦ୍ଧଭୂମିକୁ ଯାଆନ୍ତି; କୂଟନୈତିକ କାର୍ଯ୍ୟରେ ଇଟାଲିକୁ ମଧ୍ୟ ପ୍ରେରିତ ହୁଅନ୍ତି । ଶେଷଜୀବନ ତାଙ୍କର ବିତିଥିଲା ଇଂଲଣ୍ଡରେ । ଏହିପରି ଭାବରେ ଇଂଲଣ୍ଡ, ଫ୍ରାନ୍ସ ଓ ଇଟାଲି ଥିଲା ତାଙ୍କର ମୁଖ୍ୟ କର୍ମପୀଠ । ତାହାଙ୍କ ସାହିତ୍ୟିକ ଜୀବନରେ ମଧ୍ୟ ତିନୋଟି ପର୍ଯ୍ୟାୟ—ଫରାସୀ, ଇତାଲୀୟ ଓ ଇଂଲଣ ।

### ଫରାସୀ ପର୍ଯ୍ୟାୟ :

ଚସାରଙ୍କ ଆଦ୍ୟଜୀବନର ରଚନା ବିଶେଷଭାବରେ ଫରାସୀସାହିତ୍ୟ ପ୍ରଭାବିତ । କବିଙ୍କର ଏକ ବିଶିଷ୍ଟ କୃତି 'ରୋମଣ୍ଟ ଅଫ୍ ଦି ରୋଜ' (Romaunt of the Rose) ପ୍ରଖ୍ୟାତ ଫରାସୀ ରୂପକକାବ୍ୟ ( allegory ) 'ରୋମାଁ ଦ୍ୟ ଲ ରୋଜ' ( Roman de la Rose )ର ଅନୁବାଦ । ଏଥିରେ ପ୍ରେମର ବିଭିନ୍ନ ପର୍ଯ୍ୟାୟ ରୂପକ ମାଧ୍ୟମରେ ବର୍ଣ୍ଣିତ । ଏକ ରହସ୍ୟମୟ ଉଦ୍ୟାନରେ ପ୍ରସ୍ଫୁଟିତ ଗୋଲାପ ପ୍ରେମିକାର ପ୍ରତୀକ । ପ୍ରେମ, ଈର୍ଷା, ଆଳସ୍ୟ ପରି ବିମୂର୍ତ୍ତ ଗୁଣ ଉପରେ ବ୍ୟକ୍ତିତ୍ୱ ଆରୋପ କରାଯାଇଛି । ବର୍ତ୍ତମାନ ମିଳୁଥିବା ରୋମଣ୍ଟ ଗ୍ରନ୍ଥଟିର ପ୍ରଥମ ସତରଶହ ପଙ୍କ୍ତି ହିଁ ସମ୍ଭବତଃ ଚସାରଙ୍କଦ୍ୱାରା ଲିଖିତ ।

'ଦି ବୁକ୍ ଅଫ୍ ଦି ଡଚେସ୍' ( The Boke of the Duchesse ) ଏହି ପର୍ଯ୍ୟାୟର ଶ୍ରେଷ୍ଠ ରଚନା । ଚସାରଙ୍କ ପୃଷ୍ଠପୋଷକ ଜନ୍ ଅଫ୍ ଗଣ୍ଟଙ୍କ ପତ୍ନୀ ବିୟୋଗରେ ଏହା ରଚିତ । ନାଟକୀୟତା ଓ ଆବେଗ ଏହାକୁ ହୃଦୟସ୍ପର୍ଶୀ କରିଛି ।

'କମ୍ପଲେଣ୍ଟ୍ ଆନ୍ଟୁ ପିଟି' ( Compleynt un to pite ) ଏକ ମଞ୍ଜୁଳ ପ୍ରେମକବିତା । ଏ. ବି. ସି. ( A. B. C. ) ନାମକ ଅନ୍ୟ ଏକ ଗ୍ରନ୍ଥ ଫରାସୀ ଭାଷାରୁ ଅନୂଦିତ । ଏହା ଭର୍ଜିନ ମେରିଙ୍କ ଉଦ୍ଦେଶ୍ୟରେ ଏକ ପ୍ରାର୍ଥନା । ପଙ୍କ୍ତିଗୁଡ଼ିକ ଅକ୍ଷର-କ୍ରମରେ ସଜ୍ଜିତ ।

### ଇତାଲୀୟ ପର୍ଯ୍ୟାୟ :

କବିଙ୍କ ଏହି ପର୍ଯ୍ୟାୟର ଶ୍ରେଷ୍ଠ କୃତି 'ଟ୍ରୟଲସ୍ ଆଣ୍ଡ କ୍ରିସେଡ୍' (Troilus and Criseyde) । ଏକ ମଧ୍ୟଯୁଗୀୟ କାହାଣୀ ଏହାର ବିଷୟବସ୍ତୁ । ଇତାଲୀୟ କବି ବୋକାଚିଓ (Boccaccio)ଙ୍କ 'ଇଲ୍ ଫିଲସ୍ଟ୍ରାଟୋ' ( Il Filostrato :

ପ୍ରୀତଦଂଶିତ ) ତାହାଙ୍କ ପ୍ରେରଣାର ଉତ୍ସ; କିନ୍ତୁ ନିଜ ସମୟ ଓ ସମାଜର ଛବି ଏଥିରେ ପ୍ରତିଫଳିତ ।

ଇଟାଲୀୟ କବି ଦାନ୍ତେ (Dante), ଓଭିଡ (Ovid) ଓ ଭର୍ଜିଲ (Virgil)ଙ୍କ ପ୍ରଭାବପୁଷ୍ଟ 'ହାଉସ୍ ଅଫ୍ ଫେମ୍' (Hous of Fame) ତିନିସର୍ଗବିଶିଷ୍ଟ ରଚନା । ଯଶ ଓ ପ୍ରତିଷ୍ଠା କିପରି ଅଳୀକ ଓ ଜନରବ କିପରି ବିଚିତ୍ର ଭାବରେ ପ୍ରସୃତ ହୁଏ, କବିତାର ରୂପକାତ୍ମକ ଚିତ୍ରଣରେ ପ୍ରୟାସୀ । ଉତ୍ତୁଙ୍ଗ ବରଫ ପର୍ବତଶିଖରରେ ଯଶୋମନ୍ଦିର । କବି ସ୍ୱପ୍ନ ଦେଖୁଛନ୍ତି ଗୋଟିଏ ସୁନାର ଇଗଲପକ୍ଷୀ ତାଙ୍କୁ ସେଠାକୁ ଉଡ଼ାଇନେଇଛି । ମନ୍ଦିର ମଧ୍ୟରେ ବାକ୍ଦେବୀ ବିଚିତ୍ର ଭାବରେ ଯଶ ବିତରଣ କରିବାରେ ବ୍ୟସ୍ତ । ତା ପରେ ସେ ଗୁଜବ ପ୍ରକୋଷ୍ଠ ପରିଦର୍ଶନ କରିଛନ୍ତି । ଚତୁର୍ଦ୍ଦିଗରୁ ସମ୍ବାଦବାହକମାନେ ସତ୍ୟ ଓ ମିଥ୍ୟା ସମ୍ବାଦ ନେଇ ଅହରହ ଆସିବାରେ ଲାଗିଛନ୍ତି । ପ୍ରବଳ ହଟ୍ଟଗୋଳରେ କାନରୁ ଅତଡ଼ା ଖସିପଡ଼ୁଛି । କବିତାଟି ଅପୂର୍ଣ୍ଣ । ଏହା ଅଷ୍ଟଘାତୀ ଯୁଗ୍ମକ ଛନ୍ଦ (Octosyllabic Couplet)ରେ ଲେଖା । ଇଗଲପକ୍ଷୀର ସ୍ୱଭାବ ଚିତ୍ରଣରେ କବିଙ୍କ ହାସ୍ୟରସିକତା ଧରାପଡ଼େ ।

'ଲେଜେଣ୍ଡ ଅଫ୍ ଗୁଡ ଉଇମେନ' (Legend of good women) ଅନ୍ୟ ଏକ ଅସମ୍ପୂର୍ଣ୍ଣ କବିତା । ତ୍ୟାଗଶୀଳା ମହୀୟସୀ ନାରୀ-ପ୍ରତିଭା ଚିତ୍ରଣ ଏହାର ଉଦ୍ଦେଶ୍ୟ । ଓଭିଡ୍ (Ovid)ଙ୍କ 'ହେରୋଇଡ୍ସ୍' (Heroides) ଓ ଥିସ୍‌ବି, ଲୁକ୍ରିସ୍, ଫିଲୋମେଲ (Thisbe, Lucretia, Philomela) ପ୍ରଭୃତି ଚରିତ୍ର ଗୃହୀତ । ଏଥିରେ ଅସହାୟା, ନିର୍ଯ୍ୟାତିତା ରମଣୀକୁ ସର୍ବଗୁଣସମ୍ପନ୍ନା ରୂପସୀ ଓ ସଖୀତ୍ୱ-ହରଣକାରୀଙ୍କୁ କୁତ୍ସିତ ଓ ଘୃଣ୍ୟଭାବରେ ଚିତ୍ରଣ କରିବାକୁ ପଡ଼ିଛି । ସମ୍ଭବତଃ ଏହା ଅବାସ୍ତବ ବୋଧହେବାରୁ ନଅଟି ଉପାଖ୍ୟାନ ପରେ କବିତାଟି ପରିତ୍ୟକ୍ତ ହୋଇଛି ।

## ଇଂଲଣ୍ଡ ପର୍ଯ୍ୟାୟ :

ଇଂରେଜୀ ସାହିତ୍ୟକୁ ଚସାରଙ୍କ ସର୍ବଶ୍ରେଷ୍ଠ ଦାନ କ୍ୟାଣ୍ଟାରବରି ଟେଲସ୍ (Canterbury Tales) । ଏହା କବିଙ୍କ ତୃତୀୟ ପର୍ଯ୍ୟାୟର ରଚନା ଭାବରେ ଗୃହୀତ ହେଉଥିଲେ ମଧ୍ୟ ବାସ୍ତବରେ ଏହାର କେତେକାଂଶ ଯଥେଷ୍ଟ ପୂର୍ବରୁ ରଚିତ । ଏହା କବିଙ୍କ ସ୍ୱକୀୟତାରେ ଭାସ୍ୱର । ତତ୍କାଳୀନ ଇଂଲଣ୍ଡର ସମାଜଜୀବନ ଚିତ୍ର ଏଥିରେ ଯେପରି ରୂପାୟିତ ତାହା ଅନ୍ୟତ୍ର ବିରଳ ।

କେଣ୍ଟ ଜିଲ୍ଲା ଅନ୍ତର୍ଗତ କ୍ୟାଣ୍ଟାରବରୀ ଗିର୍ଜା ସେଣ୍ଟ ଅଗଷ୍ଟାଇନଙ୍କଦ୍ୱାରା ଷଷ୍ଠ ଶତାବ୍ଦୀରେ ପ୍ରତିଷ୍ଠିତ ହୋଇଥିଲା । ଏହା ପ୍ରତ୍ୟେକ ଖ୍ରୀଷ୍ଟିଆନର ପବିତ୍ର ତୀର୍ଥ । ସମ୍ଭବତଃ ଚସାର ସ୍ୱୟଂ ସେଠାକୁ ଯାତ୍ରା କରିଥିଲେ । ତାହାକୁ ହିଁ ଭିତ୍ତିକରି କ୍ୟାଣ୍ଟାରବରି ଟେଲ୍ସର ପରିକଳ୍ପନା ।

ବସନ୍ତର ଗୋଟିଏ ସନ୍ଧ୍ୟାରେ କବି ତତ୍କାଳୀନ ଲଣ୍ଡନସ୍ଥ ଟାବାର୍ଡ ଇନ୍‌ରେ ଉପସ୍ଥିତ ହୁଅନ୍ତି । ସେତେବେଳକୁ କ୍ୟାଣ୍ଟାରବରି ଯାତ୍ରାପାଇଁ ସେଠାରେ ସମାଜର ବିଭିନ୍ନ ସ୍ତରର ଲୋକ ଏକତ୍ରିତ ହୋଇଥାଆନ୍ତି । ଚସାର ଏହି ଦଳରେ ଯୋଗଦେଲେ । ଟାବାର୍ଡ ଇନ୍‌ର ମାଲିକ ଏହାର ନେତୃତ୍ୱ ନିଅନ୍ତି । ସର୍ବମୋଟ ବତିଶ ଜଣଙ୍କର ଏ ତୀର୍ଥଯାତ୍ରା । ଇନ୍ ମାଲିକଙ୍କ ପ୍ରସ୍ତାବକ୍ରମେ ପଥଶ୍ରମ ଲାଘବ କରିବା ପାଇଁ ଏକ ଯୋଜନା ପ୍ରସ୍ତୁତ ହୁଏ । ତଦନୁଯାୟୀ ପ୍ରତ୍ୟେକ ଯାତ୍ରୀ ଯିବା ବାଟରେ ଦୁଇଟି ଓ ଫେରିବାବେଳକୁ ଦୁଇଟି ଏହିପରି ଚାରୋଟି ହିସାବରେ ଗଳ୍ପ କହିବା କଥା । ଯାହାର ଗଳ୍ପ ଶ୍ରେଷ୍ଠ ବିବେଚିତ ହେବ ଫେରିବା ପରେ ତାକୁ ସାଧାରଣ ଗୃହାରୁ ଟାବାର୍ଡ ଇନ୍‌ରେ ଏକ ଉତ୍ତମ ଭୋଜନରେ ଆପ୍ୟାୟିତ କରିବା ସ୍ଥିରହେଲା । ଏହିପରିଭାବରେ କ୍ୟାଣ୍ଟାରବରି ଟେଲ୍‌ସରେ ଚସାର ପ୍ରାୟ ଏକଶହ ଅଠାଇଶଟି ଗଳ୍ପ ସଯୋଜନ କରିବାର ପରିକଳ୍ପନା କରିଥିଲେ; ମାତ୍ର ଉକ୍ତ ଗ୍ରନ୍ଥଟିରେ ଦୀର୍ଘ ଉପକ୍ରମଣିକା (prologue) ବ୍ୟତୀତ ଚବିଶଟି ମାତ୍ର ଗଳ୍ପ ରହିଛି । ଏଥିରୁ କେତୋଟି ଅପୂର୍ଣ୍ଣ । ଏହାର ବିଷୟବସ୍ତୁ ଅତ୍ୟନ୍ତ ବ୍ୟାପକ । ଏଗୁଡ଼ିକ ପ୍ରେମ, ବୀରତ୍ୱ, ଧର୍ମୀୟ ଜୀବନ, ସମସାମୟିକ ସମାଜ, ଦୁଃସାହସିକ ଯାତ୍ରା, ଜୀବଜନ୍ତୁ ସମ୍ବନ୍ଧୀୟ ରୂପକ ଆଦିରେ ସମୃଦ୍ଧ । ହାସ୍ୟରସ ଓ ବ୍ୟଙ୍ଗ ଏଗୁଡ଼ିକୁ ପ୍ରାଣବନ୍ତ କରିଛି । ତନ୍ମଧ୍ୟରୁ 'ନାଇଟ୍‌ସ୍' ଟେଲ (Knight's Tale)ଟି ସର୍ବୋତ୍କୃଷ୍ଟ ବିବେଚିତ ହୁଏ । ଦୁଇ ସୈନିକବନ୍ଧୁ ଏମିଲି ନାମକ ରୂପସୀ ପ୍ରତି ଆକୃଷ୍ଟ ହୋଇ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ହେବାରୁ ବିଚାରୀ ଏମିଲି ଏ ଉଭୟଙ୍କର କବଳରୁ ମୁକ୍ତ ରହିଛି । ଏହାହିଁ ଗଳ୍ପଟିର କଥାବସ୍ତୁ । ତତ୍କାଳୀନ ସମାଜର ରୋମାଣ୍ଟିକ୍ ପ୍ରେମ ଓ ନାଇଟ୍‌ର କର୍ତ୍ତବ୍ୟ ସମ୍ବନ୍ଧରେ ଏଥିରୁ ସୂଚନା ମିଳେ । ପ୍ରତ୍ୟେକଟି ଗଳ୍ପ କଥକର ପେଷା ଓ ସ୍ୱଭାବ ଅନୁସାରୀ ହୋଇଛି । କ୍ୟାଣ୍ଟରବରି ଟେଲ୍‌ସ୍‌ର ପ୍ରଧାନ ଆକର୍ଷଣ ଏହାର ଉପକ୍ରମଣିକା । ତୀର୍ଥଯାତ୍ରୀଙ୍କର ବିଭିନ୍ନ ବିଷୟକ ଅସଲଗ୍ନ ଗଳ୍ପଗୁଡ଼ିକ ମଧ୍ୟରେ ଏହି ଉପକ୍ରମଣିକା ଐକ୍ୟ ସାଧନ କରେ । ଏହା ସତେ ଅବା ଗୋଟିଏ ଚିତ୍ରଶାଳା । ସୈନିକ (Knight), ଧର୍ମଯାଜକ, ଆଇନଜ୍ଞ, ନାବିକ, ଡାକ୍ତର, ମିଲ୍‌ଚାଳକ, କବି, କୃଷକ ପରି ସମାଜର ବିଭିନ୍ନ ଶ୍ରେଣୀର ନାଗରିକ ଏଥିରେ ପ୍ରତିନିଧିତ୍ୱ କରୁଛନ୍ତି । ଆକୃତି, ପୋଷାକ, ଚାଲିଚଳନ ଓ ଜୀବନାଦର୍ଶ ଅତି ନିପୁଣତାର ସହ ଚିତ୍ରିତ ହୋଇଥିବାରୁ ଚରିତ୍ରଗୁଡ଼ିକ ଜୀବନ୍ତ ହୋଇପାରିଛି । ଅବଶ୍ୟ ରାଜା ଓ ସାମନ୍ତଙ୍କ ଭଳି ସମାଜର ଉଚ୍ଚତମ ବା ନିମ୍ନତମ ଶ୍ରେଣୀର ରୂପାୟନ ଏଥିରେ ଦେଖିବାକୁ ମିଳେନାହିଁ । ମଧ୍ୟଯୁଗୀୟ ସାହିତ୍ୟର ବୀର ଯୋଦ୍ଧାଙ୍କୁ ସାଧାରଣ ପାଠକ ଆପଣାର ଲୋକ ବୋଲି ଭାବିପାରେନାହିଁ; କିନ୍ତୁ ଚସାରଙ୍କ ଚରିତ୍ରଗୁଡ଼ିକ ସ୍ୱାଭାବିକ ଦୋଷତ୍ରୁଟିସମ୍ପନ୍ନ ରକ୍ତମାଂସର ସାଧାରଣ ମଣିଷ, ସତେ ଅବା ପାଠକର ପ୍ରତିବେଶୀ । ସମାଜ ଓ ଜୀବନକୁ ସେ ବାସ୍ତବବାଦୀ ଦୃଷ୍ଟିକୋଣରୁ ଦେଖିଛନ୍ତି । ମନୁଷ୍ୟ ଜୀବନ କେତେ ବୈଚିତ୍ର୍ୟପୂର୍ଣ୍ଣ ଓ ତାହାକୁ କିଭଳି ଚିତ୍ତାକର୍ଷକ ଭାବରେ ପରିବେଷଣ

କହ୍ୱାଯାଇପାରେ ଇଂରାଜୀ ସାହିତ୍ୟରେ ଚସାରହିଁ ତାହାର ପ୍ରଥମ ଆଦର୍ଶ ଦେଖାଇଗଲେ । ତାଙ୍କର ପରିବେଷଣ ଶୈଳୀ ଅତ୍ୟନ୍ତ ନାଟକୀୟ । ହାସ୍ୟ, ବ୍ୟଙ୍ଗ, ବକ୍ରୋକ୍ତିର ସାର୍ଥକ ପ୍ରୟୋଗ କ୍ୟାଣ୍ଟରବେରି ଟେଲ୍‌ସ୍‌କୁ ଉତ୍ତମାନର କାବ୍ୟଗ୍ରନ୍ଥରେ ପରିଣତ କରିଛି । ବ୍ୟଙ୍ଗ ବିଦ୍ରୂପ ଭିତରେ ବି ଦୁଷ୍ଟ ଚରିତ୍ର ପ୍ରତି ଲେଖକଙ୍କ ସମବେଦନଶୀଳତା ଲକ୍ଷଣୀୟ । ଲେଖକ ନିଜକୁ ମଧ୍ୟ ବିଦ୍ରୂପ କରିବାକୁ କ୍ରୁଣ୍ଠିତ ନାହାନ୍ତି । ଜଣେ ଅନାସକ୍ତ ନିରପେକ୍ଷ ଦ୍ରଷ୍ଟା ଭାବରେ ସେ ସମାଜ ଉପରେ ଦୃଷ୍ଟିପାତ କରିଛନ୍ତି । ମଧ୍ୟଯୁଗୀୟ ପାପବୋଧ (Seven deadly sins) ତାଙ୍କ ଲେଖାରେ ନାହିଁ । ଲୋଭାସକ୍ତ, ଅଧଃପତିତ ଧର୍ମଯାଜକଙ୍କର ସେ ତୀବ୍ର ସମାଲୋଚନା କରିଛନ୍ତି । ଏହା ଆଧୁନିକ ଦୃଷ୍ଟିଭଙ୍ଗୀର ପରିଚାୟକ । ଏହିପରି ଭାବରେ ଚସାରଙ୍କ କାବ୍ୟରେ ରେନାସାଁର ପୂର୍ବ ସଙ୍କେତ ପରିଦୃଷ୍ଟ ହୋଇଥିବାର କୁହାଯାଇଥାଏ "Chaucer, who begins English poetry ends the Middle Ages." ଆଧୁନିକ ଗଳ୍ପସାହିତ୍ୟର ବୀଜ ମଧ୍ୟ ଚସାରଙ୍କ କୃତିରେ ନିହିତ ।

ଭାଷା ଓ ଶୈଳୀ ଦୃଷ୍ଟିରୁ ଚସାରଙ୍କ ଦାନ ଅତୁଳନୀୟ । ଇଂଲଣ୍ଡର ବହୁ ଉପଭାଷା ମଧ୍ୟରୁ ମିଡଲ୍ୟାଣ୍ଡ ଡାଇଲେକ୍ଟ (Midland dialect)କୁ ସେ ଇଂଲଣ୍ଡର ପ୍ରାମାଣିକ ଭାଷା (Standard language) ଭାବରେ ପ୍ରତିଷ୍ଠିତ କରିଛନ୍ତି । ତାଙ୍କ କାବ୍ୟ-କବିତାରେ ମୁଖ୍ୟତଃ ତିନୋଟି ଛନ୍ଦର ପ୍ରୟୋଗ ଦେଖିବାକୁ ମିଳେ । ସେଥି-ମଧ୍ୟରୁ ଦଶ ଶ୍ୱାସାଘାତ ବିଶିଷ୍ଟ ଯୁଗ୍ମକ ଛନ୍ଦ (Heroic couplet) ପ୍ରଧାନ । ଏଥିରେ ଦୁଇଟି ପାଦରେ ଗୋଟିଏ ପଦ ହୁଏ । ପ୍ରତ୍ୟେକ ପଦରେ ଦଶଟି ଧ୍ୱନି (syllable) । ସେଥିରୁ ପାଞ୍ଚଟି ଶ୍ୱାସାଘାତଯୁକ୍ତ (accented) । ଦି କ୍ୟାଣ୍ଟରବେରି ଟେଲ୍‌ସର ବହୁ ଅଂଶ ଏହି ଛନ୍ଦରେ ଲିଖିତ । ଅନ୍ୟ ଏକ ଛନ୍ଦ ହେଉଛି ରାଇମ୍-ରୟାଲ୍ (Rime Royal) । ଏଥିରେ ସାତଟି ପାଦରେ ଗୋଟିଏ ସ୍ତବକ (Stanza) ହୁଏ । ହିରୋଇକ୍ କପ୍‌ଲେଟ ପରି ପ୍ରତ୍ୟେକ ପଙ୍‌କ୍ତିର ବିନ୍ୟାସ; କିନ୍ତୁ ଏହାର ଅନ୍ତ୍ୟମେଳ ସ୍ୱତନ୍ତ୍ର ଧରଣର । ଅନ୍ୟ ଏକ ଛନ୍ଦ ହେଉଛି ଅଷ୍ଟଧ୍ୱନିବିଶିଷ୍ଟ ଯୁଗ୍ମକ (octosyllabic couplet) । ଏଥିରେ ଚାରୋଟି ଧ୍ୱନି ଶ୍ୱାସାଘାତଯୁକ୍ତ । ଚସାରଙ୍କ କାବ୍ୟକୃତିରୁ ବିପୁଳ ଇଂରେଜୀ ଶବ୍ଦଭଣ୍ଡାରର ପ୍ରଥମ ପରିଚୟ ମିଳେ । ଛନ୍ଦର ସାର୍ଥକ ପ୍ରୟୋଗ ଚସାରଙ୍କର ଏକ ବୈଶିଷ୍ଟ୍ୟ । ଦର୍ଶନେନ୍ଦ୍ରିୟ ଅପେକ୍ଷା ଶ୍ରବଣେନ୍ଦ୍ରିୟ ପ୍ରତି ତାଙ୍କ ରଚନାର ଆବେଦନ ଅଧିକ ।

## ଚସାରଙ୍କ ସମସାମୟିକ କବି :

(୧) **ଉଇଲିୟମ ଲ୍ୟାଙ୍ଗଲ୍ୟାଣ୍ଡ** (William Lang Land : ୧୩୩୨—୧୪୦୦)ଙ୍କ ଅମର କୃତି 'ପିଅର୍ସ ପ୍ଲାଉମ୍ୟାନ' (Piers Plowman) । ପନ୍ଦରହିକାର

ପଙ୍କ୍ତିବିଶିଷ୍ଟ ଏଇ ରୂପକଟି ଏକାଧିକ ବ୍ୟକ୍ତିଙ୍କ ପ୍ରୟାସର ଫଳ ହୋଇଥାଇପାରେ । ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣନା ମାଧ୍ୟମରେ ଶିକ୍ଷାଦାନ ଏହାର ଉଦ୍ଦେଶ୍ୟ । ଗୋଟିଏ ମେ ମାସର ମନୋରମ ସକାଳରେ କବି କୌଣସି ପାହାଡ଼ ଉପରେ ନିଦ୍ରାଭିଭୂତ । ନିମ୍ନଦେଶରେ ଏକ ସବୁଜ ପ୍ରାନ୍ତର । ସମାଜର ବିଭିନ୍ନ ଶ୍ରେଣୀର ଲୋକ—ଧନୀ, ଦରିଦ୍ର, ଶ୍ରମଜୀବୀ, ଆଳସ୍ୟପରାୟଣ ବ୍ୟକ୍ତି, ଭ୍ରଷ୍ଟ ଧର୍ମଯାଜକ, ଧନିକ, ବଣିକ ଇତ୍ୟାଦି ସେଠାରେ ସମବେତ । ଏମାନଙ୍କ ଭିତରେ ସବୁଠାରୁ ବିଜ୍ଞବ୍ୟକ୍ତି ମାନନୀୟା କଳାପୋଟିତେଇ (Lady Bribery) ହେଉଛନ୍ତି । ଭିତରେ ମାନନୀୟା ପୂର୍ଣ୍ଣମୟୀ ଚର୍ଚ୍ଚ (Lady Holy Church) ଆବିର୍ଭୂତା ହୋଇଛନ୍ତି । ଚର୍ଚ୍ଚଙ୍କ ପ୍ରେରଣାରେ ସମସ୍ତେ ମହର୍ଷି ସତ୍ୟ (Seint Treuthe)ଙ୍କ ସନ୍ଧାନରେ ବାହାରିଛନ୍ତି; କିନ୍ତୁ ପଥପ୍ରଦର୍ଶକ ମିଳୁନାହିଁ । କୃଷକ ପିଅର ପଥପ୍ରଦର୍ଶକ ହେବାକୁ ପ୍ରସ୍ତୁତ; କିନ୍ତୁ ପ୍ରଥମେ ସେମାନଙ୍କୁ ତାର ଅଧିଏକର ଜମି ଚାଷ କରିବାରେ ସାହାଯ୍ୟ କରିବାକୁ ହେବ । ପନ୍ଦର ବର୍ଷ ଧରି କର୍ମ-ମାଧ୍ୟମରେ ସେ ସତ୍ୟର ସନ୍ଧାନ କରନ୍ତି । ପବିତ୍ର କର୍ମ ସମସ୍ତ ପାପ କ୍ଷାଳନ କରିପାରେ; ଏହାହିଁ ମୁକ୍ତିର ପଥ ବୋଲି ସେ ନିର୍ଦ୍ଦେଶ କରନ୍ତି । କବି ଏହିପରି ଏଗାରଟି ସ୍ୱପ୍ନବୃତ୍ତାନ୍ତ ମଧ୍ୟରେ ତତ୍କାଳୀନ ଅଧଃପତିତ ସମାଜକୁ ଚେତାବନୀ ଶୁଣାଇଛନ୍ତି ।

ସ୍ୱପ୍ନବୃତ୍ତାନ୍ତକୁ କେନ୍ଦ୍ରକରି କବିତା ଲେଖିବା ଏ ସମୟର ଏକ ସାଧାରଣ ପ୍ରବୃତ୍ତି । ସୁବିଖ୍ୟାତ ଫରାସୀ ରୋମାନ୍ସ (Roman de la Rose)ର ପ୍ରଭାବରେ ଏହା ହୋଇଥିବା ସମ୍ଭବ ।

(୨) ଜନ୍ ଗଓ୍ୱାର—(John Gower : ୧୩୩୦—୧୪୦୮) ଇଂରେଜୀ ବ୍ୟତୀତ ଲାଟିନ ଓ ଫରାସୀ ଭାଷାରେ ସୁପଣ୍ଡିତ ଥିଲେ । ଏହି ତିନିଭାଷାରେ ସେ କାବ୍ୟମାନ ରଚନା କରିଛନ୍ତି । କବିତ୍ୱ ଅପେକ୍ଷା ନୀତିବାଦିତାପାଇଁ ସେ ଅଧିକ ସୁପରିଚିତ । ଏଣୁ ଚସାର୍ ତାଙ୍କୁ ମୋରାଲ୍ ଗଓ୍ୱାର୍ (Moral Gower) ବୋଲି କହୁଥିଲେ । ତାଙ୍କର ଶ୍ରେଷ୍ଠ ଲୋକପ୍ରିୟ କାବ୍ୟ 'କନ୍‌ଫେସିଓ ଆମାଣ୍ଟିସ୍' (Confessio Amantis) । ଏଥିରେ ପ୍ରେମିକ କବି ଧର୍ମଯାଜକଙ୍କ ନିକଟରେ ନିଜର ପ୍ରଣୟ କାହାଣୀ ପ୍ରକାଶ କରିଛନ୍ତି ।

(୩) ଜନ୍ ଉଇକ୍ଲିଫ୍ (John Wyclif : ୧୩୨୪ ?—୧୩୮୪) ଓ ତାଙ୍କ ଅନୁସରଣକାରୀ ସଂସ୍କାରବାଦୀ ଲୋଲାର୍ଡ଼ (Lollard) ଗୋଷ୍ଠୀ ଇଂଲଣ୍ଡର ଧର୍ମ-ଜଗତରେ ବିପ୍ଳବ ସୃଷ୍ଟି କରିଥିଲେ । ସ୍ଥାନୀୟ ଭାଷାରେ ସେ ଧର୍ମତତ୍ତ୍ୱ ପ୍ରଚାର କରୁଥିଲେ । ଅଭିଜାତଗୋଷ୍ଠୀ ଅପେକ୍ଷା ସାଧାରଣ ଦୁସ୍ଥ ମଣିଷ ପ୍ରତି ସେ ଥିଲେ ଅଧିକ ସମବେଦନଶୀଳ । ଇଂରେଜୀ ସାହିତ୍ୟକୁ ତାଙ୍କର ବିଶିଷ୍ଟ ଦାନ ବାଇବେଲ୍‌ର ଇଂରେଜୀ ଅନୁବାଦ । ଏଥିପାଇଁ ତାଙ୍କୁ ଇଂରେଜୀ ଗଦ୍ୟ-ସାହିତ୍ୟର ଜନକ ଗୌରବ ପ୍ରଦାନ କରାଯାଇଥାଏ ।

(୪) ମ୍ୟାଣ୍ଡେଭିଲ୍ (John Mandeville)—ଖ୍ରୀ: ୧୩୫୦ରେ ପ୍ରକାଶିତ 'ଭଏଜ୍ ଆଣ୍ଡ୍ ଟ୍ରାଭେଲ୍ ଅଫ୍ ସାର୍ ଜନ୍ ମ୍ୟାଣ୍ଡେଭିଲ୍' (Voyage and Travail

of Sir John Mandeville)ର ରଚୟିତା ଭାବରେ ପରିଚିତ । ଚସାର୍ ପ୍ରାଧାନ୍ୟ ଦେଇଥିବା ମିଡ଼୍‌ଲ୍ୟାଣ୍ଡ୍ ଉପଭାଷାରେ ଏହି ଭ୍ରମଣ କାହାଣୀ ଲିଖିତ । ଲେଖକଙ୍କ ପରିଚୟ ଏବେ ମଧ୍ୟ ଅଜ୍ଞାତ । ମ୍ୟାଣ୍ଡେଭିଲ୍ ଏକ ଛଦ୍ମନାମ ହୋଇପାରେ । ଗ୍ରନ୍ଥଟି ଓଡ଼ୋରିକ୍ ଓ ମାର୍କୋପୋଲୋ ଆଦି ବିଶିଷ୍ଟ ଭ୍ରମଣକାରୀଙ୍କ ଭ୍ରମଣକାହାଣୀର ସଙ୍କଳନ ମାତ୍ର । ଗ୍ରନ୍ଥଟି ଏହି ସମୟର ମାର୍ଜିତ ଭାଷାରେ ଶ୍ରେଷ୍ଠ ଗଦ୍ୟ ରଚନା । □□□

# ଚତୁର୍ଥ ଅଧ୍ୟାୟ

## ପଞ୍ଚଦଶ ଶତାବ୍ଦୀର ସାହିତ୍ୟ

ଚସାର୍‌ଙ୍କ ମୃତ୍ୟୁ (ଖ୍ରୀ: ୧୪୦୦) ପରେ ପ୍ରାୟ ଦେଢ଼ଶହ ବର୍ଷଧରି ଇଂରେଜୀ ସାହିତ୍ୟର କୌଣସି ଉଚ୍ଚକୋଟୀର ସୃଷ୍ଟି ଦେଖାଯାଏନାହିଁ । ଇଂରେଜୀ ସାହିତ୍ୟର ଏହି ବନ୍ଧ୍ୟାକାଳ (barren period) ସମ୍ବନ୍ଧରେ ନାନା କାରଣ ନିର୍ଦ୍ଦେଶ କରାଯାଇଥାଏ । ପ୍ରଥମତଃ ଇଂଲଣ୍ଡରେ ସେତେବେଳେ ଗୃହଯୁଦ୍ଧ ଲାଗିରହିଥିଲା । ଏହା 'ଓ୍ୱାର୍ସ ଅଫ ଦ ରୋଜେସ୍' (Wars of the Roses) ନାମରେ ପରିଚିତ । ଦ୍ୱିତୀୟତଃ ଇଟାଲି ଓ ଫ୍ରାନ୍ସ ଦେଇ ଗ୍ରୀକ୍ ସଭ୍ୟତାର ପ୍ରଭାବ ଇଂଲଣ୍ଡ ଉପରେ ପଡ଼ିବାକୁ ଆରମ୍ଭକରିଥିଲା । ପୁରାତନକୁ ତ୍ୟାଗକରି ନୂତନକୁ ଗ୍ରହଣ କରିବା ମଧ୍ୟରେ ଏହା ଏକ ଅନ୍ତର୍ଦ୍ୱନ୍ଦ୍ୱର ସମୟ । ଧର୍ମ, ସମାଜ, ସାହିତ୍ୟ ଓ କଳାକ୍ଷେତ୍ରରେ ଉନ୍ନତ ଗ୍ରୀକ୍ ସଭ୍ୟତାର ଚିନ୍ତାଧାରା ଓ ଦୃଷ୍ଟିଭଙ୍ଗୀକୁ ଗ୍ରହଣ କରିନେବାପାଇଁ ଇଂଲଣ୍ଡର ଅଧିବାସୀଙ୍କୁ ଯଥେଷ୍ଟ ସମୟ ଲାଗିଥିବ । ତୃତୀୟତଃ ବଳିଷ୍ଠ ପ୍ରତିଭାର ଅଭାବ ମଧ୍ୟ ଏହାର କାରଣ ହୋଇପାରେ । ଯେହେତୁ ପ୍ରତିଭାଶାଳୀ କବିପକ୍ଷରେ ପ୍ରତିକୂଳ ଅବସ୍ଥାରେ ମଧ୍ୟ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରିବା ସମ୍ଭବ, ଏ ସମୟର ଶିକ୍ଷିତଗୋଷ୍ଠୀ ନୂତନ ସୃଷ୍ଟି କରିବା ପରିବର୍ତ୍ତେ ପ୍ରାଚୀନ ଗ୍ରୀକ୍ ସାହିତ୍ୟର କ୍ଲାସିକ୍ ଦିଗ ପ୍ରତି ମନୋନିବେଶ କରୁଥିଲେ ।

ସ୍କଟ୍‌ଲ୍ୟାଣ୍ଡରେ ବରଂ ଏଇ ସମୟରେ ଅପେକ୍ଷାକୃତ ଉନ୍ନତତର କବିପ୍ରତିଭାର ଉନ୍ମେଷ ଘଟିଥିଲା । ତତ୍କାଳୀନ କବିଙ୍କ ମଧ୍ୟରେ ସ୍କଟଲ୍ୟାଣ୍ଡର ରାଜା ପ୍ରଥମ ଜେମ୍ସ, ରୋବର୍ଟ ହେନ୍‌ରିସନ୍, ଉଇଲିୟମ ଡାନବାର ଓ ଇଂଲଣ୍ଡର ଜନ୍ ଲିଡ୍‌ଗେଟ୍, ଟମାସ୍ ଅକ୍‌ଲିଭ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନେ ଚସାରଙ୍କ ରୋମାନସ୍ ଓ ରୂପକଧର୍ମୀ କାବ୍ୟର ଅନୁସରଣ କରୁଥିଲେ ମଧ୍ୟ ତାଙ୍କର ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ପ୍ରତି ଅବହିତ ନଥିଲେ ।

### ଲୋକଗାଥା

ପ୍ରତିଭାର ବିରଳତା ସତ୍ତ୍ୱେ ଅନ୍ତତଃ ଗୋଟିଏ ସାହିତ୍ୟିକ ଧାରା ଏ ସମୟରେ ଅବାରିତ ଥିଲା; ତାହା ଲୋକଗାଥା । ଗାଥାଗୁଡ଼ିକ କାହାଣୀଧର୍ମୀ କବିତା । ଏହାର କଥାବସ୍ତୁ ଅପ୍ରାସଙ୍ଗିକ ବିଷୟ ବର୍ଜନ କରି ସହଜ ଓ ସରଳ ଭଙ୍ଗୀରେ ଗୋଟିଏ ସରଳ ରେଖାରେ ଗତିକରେ; ଆଖ୍ୟାନସ୍ରୋତ ଅତ୍ୟନ୍ତ ଦ୍ରୁତ ତଥା ନାଟକୀୟ । କୌଣସି କୌଣସି ପଦର ପୁନରୁକ୍ତି ହୋଇଥାଏ । ନୈର୍ବ୍ୟକ୍ତିକତା ଏହାର ବିଶିଷ୍ଟ ଲକ୍ଷଣ । ଏଗୁଡ଼ିକ ତତ୍କାଳୀନ

ଭ୍ରମଣଶୀଳ ଗାୟକ (bards) ଓ ଲୋକକଣ୍ଠରେ ଗୀତ ହେଉଥିଲା । ପ୍ରେମ, ବିରହ, ଈର୍ଷା, ବୀରତ୍ୱ ଆଦି ବହୁବିଧ ବିଷୟକୁ ନେଇ ଏଇ ଗାଥା ରଚିତ । ଇଂଲଣ୍ଡ ଓ ସ୍କଟଲଣ୍ଡର ସୀମା ଲଢ଼େଇକୁ କେନ୍ଦ୍ର କରି ରଚିତ ଗାଥା ମଧ୍ୟରେ ଚେଭି ଚେଜ (Chevy Chase) ଉଲ୍ଲେଖଯୋଗ୍ୟ । ଏଥିରେ ଇଂରେଜୀ ବୀର ପାର୍ଶି ଓ ସ୍କଟିସ୍ ବୀର ଡଗଲସ୍‌ଙ୍କ ଦ୍ୱନ୍ଦ୍ୱଯୁଦ୍ଧ ବର୍ଣ୍ଣିତ । ଡଗଲସ୍‌ର ପରାଜୟ ଓ ମୃତ୍ୟୁରେ ପାର୍ଶିର ସମବେଦନା ଓ ମର୍ମାନ୍ତିକ ଦୁଃଖ ପାଠକକୁ ଅଭିଭୂତ କରେ ।

'ସାର୍ ପେଟ୍ରିକ୍ ସେନସ୍' ଓ 'ଦି ନାଟ୍ ବ୍ରାଉନ ମେଡ୍' (The Nut Brown Maid) ଗାଥା ଦୁଇଟି ସେହିପରି ଜନପ୍ରିୟ । ଜଣେ ଆତ୍ମଗୋପନକାରୀ ଦୁର୍ଦ୍ଧର୍ଷ ଡକାୟତ ସହିତ ଜନୈକା ରୂପସୀର ପ୍ରଣୟ କାହାଣୀ ଏହାର କଥାବସ୍ତୁ ।

ଦସ୍ୟୁ ରବିନ୍‌ହୁଡ୍ ସମ୍ବନ୍ଧୀୟ ଗାଥା ମଧ୍ୟ ଅତ୍ୟନ୍ତ ଲୋକପ୍ରିୟ । ପୂର୍ବୋକ୍ତ ଗାଥା-ଗୁଡ଼ିକର ରଚନାରେ ଜନସାଧାରଣଙ୍କ ଅଂଶ ଥିବାବେଳେ ରବିନ୍‌ହୁଡ୍ ଗାଥା ଗ୍ରାମ୍ୟ କବି (Minisbel)ଙ୍କ ଦ୍ୱାରା ଲିଖିତ ତଥା ଗୀତ ହେଉଥିଲା । ଏଗୁଡ଼ିକ ଅପେକ୍ଷାକୃତ ଦୀର୍ଘତର, ଚାରିପଙ୍କ୍ତିବିଶିଷ୍ଟ ସ୍ତବକରେ ଲିଖିତ; ପ୍ରଥମ ଓ ଚତୁର୍ଥ ପାଦରେ ଅନ୍ତ୍ୟମେଳ ଥାଏ ।

## ଗଦ୍ୟ-ସାହିତ୍ୟ

ଏ ଯୁଗରେ କବିତାର ଗତି ବ୍ୟାହତ ହେଲେ ମଧ୍ୟ ଗଦ୍ୟ ଥିଲା ଅବାରିତ । ଏହା ମୁଖ୍ୟତଃ ଧର୍ମବିଷୟକ । ହ୍ୟୁ ଲଟିମାର୍, ଉଇଲିୟମ କ୍ୟାକ୍‌ସଟନ, ଜନ୍ ଫିସାର୍, ରେଜିନାଲ୍ଡ୍ ପିକକ୍, ସାର୍ ଟମାସ୍ ମୁର୍ ଓ ମ୍ୟାଲୋରି ଆଦି ଏ ଯୁଗର ଉଲ୍ଲେଖଯୋଗ୍ୟ ଗଦ୍ୟଲେଖକ ।

ରେଜିନାଲଡ୍ ପିକକ୍ (Reginald Pecock : ୧୩୯୦ ? —୧୪୬୧ ? ) ଜଣେ ଧର୍ମଯାଜକ । ସେ ଲୋଲର୍ଡ଼ ଗୋଷ୍ଠୀର ବିରୋଧୀ ଓ ପ୍ରାଚୀନପନ୍ଥୀ । 'ଦି ରିପ୍ରେସନ୍ ଅଫ୍ ଓଭର୍‌ମାର୍ ବ୍ଲେମିଂ ଅଫ୍ ଦି କ୍ଲର୍ଜି' ଓ 'ଦି ବୁକ୍ ଅଫ୍ ଫେଥ୍' ତାଙ୍କର ଦୁଇଟି ଆଧ୍ୟାତ୍ମିକ ଗଦ୍ୟରଚନା । ଖ୍ରୀଷ୍ଟୀୟ ଧର୍ମତତ୍ତ୍ୱକୁ ଯୁକ୍ତି ମାଧ୍ୟମରେ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିବାରୁ ସେ ଜଣେ ଧର୍ମବିରୋଧୀ ବ୍ୟକ୍ତିଭାବରେ କାରାରୁଦ୍ଧ ହୋଇଥିଲେ । ତାଙ୍କ ଗ୍ରନ୍ଥକୁ ମଧ୍ୟ ପୋଡ଼ିଦିଆଯାଇଥିଲା । ଲାଟିନ୍ ଶବ୍ଦ ଅପେକ୍ଷା ଇଂରେଜୀ ଓ ଫ୍ରେଞ୍ଚ୍ ଶବ୍ଦର ବ୍ୟବହାରକୁ ସେ ଅଧିକ ପସନ୍ଦ କରୁଥିଲେ । ତାଙ୍କର ଭାଷା ସରଳ; ଉଦାହରଣଗୁଡ଼ିକ ସୁବୋଧ । ବାକ୍ୟ ମଧ୍ୟରେ ସମାର୍ଥବୋଧକ ବହୁ ଶବ୍ଦର ବ୍ୟବହାର ଦେଖାଯାଏ ।

କ୍ୟାକ୍‌ସଟନ୍ (William Caxton : ୧୪୨୨ ?— ୧୪୯୧) ଇଂଲଣ୍ଡର ପ୍ରଥମ ମୁଦ୍ରାଯନ୍ତ୍ର ଖ୍ରୀ: ୧୪୭୬ରେ ସ୍ଥାପନ କରିଥିଲେ । ସେ ସମୟରେ ଜଣାଶୁଣା ପ୍ରାୟ ସମସ୍ତ ମୌଳିକ ଗ୍ରନ୍ଥ ସେ ପ୍ରକାଶ କରିଛନ୍ତି । ଚସାର୍ ଓ ମ୍ୟାଲୋରିଙ୍କ ଗ୍ରନ୍ଥ ଏହାର ଅନ୍ତର୍ଗତ ।

କ୍ୟାକ୍‌ସ୍‌ଟନ ନିଜେ ମଧ୍ୟ ଜଣେ ଗଦ୍ୟଲେଖକ । ସେ ଫ୍ରେଞ୍ଚ୍, ଡ୍ଡଚ ଓ ଲାଟିନରୁ ପ୍ରାୟ ଚବିଶଟି ଗ୍ରନ୍ଥ ନିଜେ ଅନୁବାଦ କରି ପ୍ରକାଶ କରିଛନ୍ତି । ହ୍ୟୁ ଲାଟିମାର୍ ( Hugh Latimer : ୧୪୮୫-୧୫୫୫)ଙ୍କ ଧର୍ମୋପଦେଶ (ସର୍ମନ୍) ଗୁଡ଼ିକ ଖ୍ରୀ: ୧୫୪୯ରେ ଦୁଇଟି ଖଣ୍ଡରେ ପ୍ରକାଶିତ ହୋଇଥିଲା । ତାଙ୍କର ରଚନାଶୈଳୀ ସରଳ ଓ ବିଶ୍ଳେଷଣାତ୍ମକ । ଏଭଳି ସରଳ ଓ ଆବେଦନଶୀଳ ଗଦ୍ୟରଚନା ଇତିପୂର୍ବେ ଇଂରାଜୀ ସାହିତ୍ୟରେ ଦେଖା ଦେଇନଥିଲା ।

ମ୍ୟାଲୋରି (Sir Thomas Malory : ମୃତ୍ୟୁ ଖ୍ରୀ: ୧୪୭୧) : ପଞ୍ଚଦଶ ଶତାବ୍ଦୀର ଇଂଲଣ୍ଡରେ ବୁଦ୍ଧିଜୀବୀମାନେ ଗ୍ରୀସ୍ ଓ ରୋମ୍‌ର ଚିରସ୍ମୃତ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇପଡ଼ିଥିବାବେଳେ ମ୍ୟାଲୋରି ଦେଶୀୟ ଅତିକଥା (Legend) ଓ କାବ୍ୟକବିତାର ସଂରକ୍ଷଣରେ ବ୍ରତୀ ହୋଇଥିଲେ । ମାର୍ଟେଡ଼ାର୍ଥାର (Marte de Arthur) ତାଙ୍କର ଅମର କୃତି । ଏହା ଆର୍ଥରୀୟ ଅତିକଥାର ସଂକଳନ ।

ପରବର୍ତ୍ତୀ ସାହିତ୍ୟ ଉପରେ ଏହା ଯଥେଷ୍ଟ ପ୍ରଭାବ ପକାଇଛି । ଖ୍ରୀ: ୧୪୬୦ରେ ଏହି ସଂକଳନର କାର୍ଯ୍ୟ ସମାପ୍ତ ହୋଇଥିଲା । ପନ୍ଦରବର୍ଷ ପରେ କ୍ୟାକ୍‌ସଟନ ଏହାର ମୁଦ୍ରଣ ଦାୟିତ୍ୱ ନେଇଥିଲେ । ରାଜା ଆର୍ଥରଙ୍କ ରାଜତ୍ୱର ଅବସାନ, ଗୋଲଟେବୁଲର ବିଲୋପ ଓ ଯୀଶୁଙ୍କର ପବିତ୍ର ରକ୍ତପାତ୍ର (Holy Grail)ର ସନ୍ଧାନ ଏହି ଗଳ୍ପଗୁଡ଼ିକର ମୁଖ୍ୟ ବିଷୟବସ୍ତୁ । ପାଗାନ୍ ଉପାଦାନ ଥିବା କେତୋଟି ଗଳ୍ପକୁ ମ୍ୟାଲରି ଖ୍ରୀଷ୍ଟିଆନ ରୁଚି ଅନୁଯାୟୀ ମାର୍ଜିତ କରିଛନ୍ତି । ସେକ୍‌ସପିଅର, ଟେନିସନ, ଆର୍ନଲଡ଼୍, ସ୍ୱିନବର୍ଣ୍ଣ, ମରିସ୍ ପରି ପରବର୍ତ୍ତୀ ବହୁ ବିଶିଷ୍ଟ କବି ଏହି ଗ୍ରନ୍ଥଦ୍ୱାରା ବିଶେଷ ଭାବରେ ପ୍ରଭାବିତ ।

ସମକାଳୀନ ଅନ୍ୟ ଏକ ନିଦର୍ଶନ ପାସ୍‌ଟନ୍ ଲେଟରସ୍ (Pâston Letters)— ଏହା ପ୍ରାୟ ଏକହଜାର-ଏକଶହ ଚିଠିପତ୍ରର ଏକ ସଂକଳନ । ଏଗୁଡ଼ିକ ନରଫକ୍‌ର ବିଖ୍ୟାତ ପାସ୍‌ଟନ୍ ପରିବାରର ଲୋକେ ଲେଖିଥିବା ବା ପାଇଥିବା ପତ୍ର । ରଚନାଶୈଳୀ ଅତ୍ୟନ୍ତ ଆକର୍ଷଣୀୟ । ସେ ସମୟର ଇତିହାସ, ସାମାଜିକ ଅବସ୍ଥା, ବ୍ୟବସାୟ-ବାଣିଜ୍ୟ, ପାରିବାରିକ ସଂପର୍କ ଆଦି ଏଥିରୁ ବୁଝାପଡ଼େ ।

## ନାଟକର ଉନ୍ମେଷ :

ପ୍ରାଚୀନ ଇଂଲଣ୍ଡରେ ବିଭିନ୍ନ ଚର୍ଚ୍ଚ ଉଦ୍ୟମରେ ନାଟକ ପରିବେଷିତ ହେଉଥିଲା । ଉତ୍ସବ ଅନୁଷ୍ଠାନକୁ ଆକର୍ଷଣୀୟ କରିବା ଓ ନୀତିଶିକ୍ଷା ଦେବା ଏହାର ଉଦ୍ଦେଶ୍ୟ । ଦୋଷୀ ଦଣ୍ଡିତ ହେବା ଓ ନିର୍ଦ୍ଦୋଷ ପୁରସ୍କୃତ ହେବା ଭଳି ବିଷୟବସ୍ତୁ ଏଥିରେ ପ୍ରାଧାନ୍ୟ ଲାଭ-କରିଥାଏ । ସ୍ୱୟଂ ଯୀଶୁଖ୍ରୀଷ୍ଟ ବା ଖ୍ରୀଷ୍ଟୀୟ ସନ୍ଥଙ୍କ ଜୀବନୀ, ଅଲୌକିକ କର୍ମ ବା ସତ୍ ଅସତ୍ ଗୁଣାବଳୀକୁ କେନ୍ଦ୍ରକରି ଏଗୁଡ଼ିକ ଲିଖିତ । ଏତଦ୍‌ବ୍ୟତୀତ ହାସ୍ୟରସାତ୍ମକ କେତେକ ପ୍ରହସନ ମଧ୍ୟ ଦେଖାଯାଏ । ଏ ଦୃଷ୍ଟିରୁ ଉକ୍ତ ନାଟକକୁ ନିମ୍ନ କେତୋଟି ଶ୍ରେଣୀରେ ବିଭକ୍ତ

କରାଯାଇପାରେ .: ମିରାକଲ୍ (Miracle), ମିଷ୍ଟ୍ରି (Mystery), ମୋରାଲିଟିଜ୍ (Moralities) ଓ ଇଣ୍ଟରଲ୍ୟୁଡ୍ (Interlude) ।

ଯୀଶୁଖ୍ରୀଷ୍ଟଙ୍କ ଜୀବନକୁ କେନ୍ଦ୍ର କରି ରଚିତ ନାଟକକୁ ମିଷ୍ଟ୍ରି ଓ ଖ୍ରୀଷ୍ଟୀୟ ସାଧୁ ସନ୍ଥ (saints)ଙ୍କ ଜୀବନୀ-ଆଧାରିତ ନାଟକକୁ ମିରାକଲ୍ କୁହାଯାଏ । ପ୍ରାଚୀନ ଇଂଲଣ୍ଡରେ ମିଷ୍ଟ୍ରି ବୋଲି ନାଟକର ଏକ ସ୍ୱତନ୍ତ୍ର ଶ୍ରେଣୀ ନଥିଲା । ଯୀଶୁଖ୍ରୀଷ୍ଟ ଓ ଖ୍ରୀଷ୍ଟୀୟ ସାଧୁସନ୍ଥ ଜୀବନୀ-ସମ୍ବଳିତ ଉଭୟ ନାଟକକୁ ମିରାକଲ୍ କୁହାଯାଉଥିଲା । ଧର୍ମୀୟ ନାଟକର ଯୁଗ ପରେ ହିଁ ଏହିଭଳି ଶ୍ରେଣୀବିଭାଗର ଉଦ୍ୟମ ହୋଇଛି । ଫରାସୀ ଧର୍ମୀୟ ନାଟକର ଶ୍ରେଣୀ ବିଭାଗ ଅନୁସରଣରେ ଏହା ହୋଇଥାଇପାରେ । କ୍ରମେ ମିରାକଲ୍ ନାଟକରେ ମନୋରଞ୍ଜନ କାର୍ଯ୍ୟକ୍ରମ ଅଧିକରୁ ଅଧିକ ସ୍ଥାନ ପାଇବାରୁ ଖ୍ରୀ: ୧୩୦୦ ବେଳକୁ ଏହା ଗିର୍ଜା ପରିସରରୁ ନିର୍ବାସିତ ହୋଇ ସହର ଭିତରେ ଅଭିନୀତ ହେବାକୁ ଲାଗିଲା । ଇଂଲଣ୍ଡରେ ମିରାକଲ୍ ଜାତୀୟ ନାଟକର ପ୍ରାଚୀନତମ ନିଦର୍ଶନ ଲୁଡାସ ଡି ସାଙ୍କଟା କ୍ୟାଥରିଆନ୍ (Ludas de Sancta Katharian) । ଏହା ଖ୍ରୀ. ୧୧୧୦ରେ ଅଭିନୀତ ହୋଇଥିଲା ।

ଅଭିନୟର ଉପଲକ୍ଷ୍ୟ ଅନୁଯାୟୀ ମିରାକଲ୍ ନାଟକକୁ ପୁଣି ଦୁଇଶ୍ରେଣୀରେ ବିଭକ୍ତ କରାଯାଏ । ପ୍ରଥମତଃ ଯୀଶୁଙ୍କ ଜନ୍ମକୁ କେନ୍ଦ୍ର କରି ଲିଖିତ ନାଟକକୁ ନିଆଯାଇପାରେ । ଏଗୁଡ଼ିକ କ୍ରିଷ୍ଟମାସ ପର୍ବରେ ଅଭିନୀତ ହେଉଥିଲା । ଦ୍ୱିତୀୟତଃ ଯୀଶୁଙ୍କ ମୃତ୍ୟୁ ଓ ଲୀଳା (triumph) ସମ୍ବନ୍ଧୀୟ ନାଟକ । ଏଗୁଡ଼ିକ ଇଷ୍ଟର୍ ପର୍ବରେ ଅଭିନୀତ ହେଉଥିଲା । ଇଂଲଣ୍ଡର ବିଭିନ୍ନ ଅଞ୍ଚଳରେ ନାଟ୍ୟଚକ୍ରମାନ ପରିଦୃଷ୍ଟ ହେଉଥିଲା । ଏଥିରେ ବିଶ୍ୱର ସୃଷ୍ଟିଠାରୁ ଆରମ୍ଭକରି ଶେଷ ବିଚାରର ଦିନ (Day of Judgement) ପର୍ଯ୍ୟନ୍ତ ବିଷୟକୁ କ୍ରମାନ୍ୱୟରେ ରୂପ ଦିଆହେଉଥିଲା । ଏଥିମଧ୍ୟରୁ ନିମ୍ନଲିଖିତ କେତୋଟି ଚକ୍ର (Cycle) ପ୍ରଧାନ; ଯଥା—କରନିସ୍ ସାଇକଲ୍ (The Cornish Cycle), ଦି ଚେଷ୍ଟାର୍ ସାଇକଲ (The Chester Cycle), ଦି ୟାର୍କ ସାଇକଲ୍ (The Yark Cycle), ଦି ଓ୍ୱେକ୍‌ଫିଲଡ୍ ସାଇକଲ୍ (The Wakefield Cycle) ।

ମିରାକଲ୍ ଓ ମିଷ୍ଟ୍ରି ନାଟକରେ ଯୀଶୁଖ୍ରୀଷ୍ଟ ଓ ଖ୍ରୀଷ୍ଟୀୟ ସନ୍ଥଙ୍କ ଜୀବନୀର ବିଭିନ୍ନ ଅଧ୍ୟାୟ ବା ବାଇବେଲ୍‌ର ଅଂଶବିଶେଷ ଅଭିନୀତ ହେଉଥିବାବେଳେ ମୋରାଲିଟି ନାଟକରେ ଉପଦେଶାବଳୀ (Sermon)କୁ ନାଟ୍ୟରୂପ ଦିଆହେଉଥିଲା । ଏଥିପାଇଁ ସଦ୍‌ଗୁଣ, ଅସଦ୍‌ଗୁଣ, ସୌନ୍ଦର୍ଯ୍ୟ, ଶକ୍ତି, ଲୋଭ, ମୋହ, ଈର୍ଷାପରି ଅମୂର୍ତ୍ତ ଗୁଣ ଉପରେ ବ୍ୟକ୍ତିତ୍ୱ ଆରୋପ କରାଯାଇଥାଏ । ଏଇମାନେହିଁ ନାଟକର ଚରିତ୍ର । ଅସତ୍‌ଶକ୍ତିର ପରାଜୟ ଘଟିଥାଏ । ଏହି ଭୂମିକାରେ ଅବତୀର୍ଣ୍ଣ ଚରିତ୍ର ହାସ୍ୟରସ ସୃଷ୍ଟିରେ ସହାୟକ ହୁଏ । ନାଟକର ବିକାଶରେ ମୋରାଲିଟିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ମିରାକଲ୍ ନାଟକଗୁଡ଼ିକ ଯଥାସମ୍ଭବ ବାଇବେଲକୁ ଅନୁସରଣ କରୁଥିବାବେଳେ ମୋରାଲିଟିରେ ଲେଖକ ନିଜ କଳ୍ପନାକୁ ରୂପ ଦେବାପାଇଁ ଅଧିକ ସୁଯୋଗ ପାଉଥିଲା । ଇଂରାଜୀ ସାହିତ୍ୟର ସୁବିଖ୍ୟାତ ମୋରାଲିଟି ନାଟକ ମଧ୍ୟରେ

'ଦି ମ୍ୟାରେଜ୍ ଅଫ୍ ଉଇଟ୍ ଆଣ୍ଡ ଉଇଜଡ଼ମ୍', 'ଏଭ୍ରି ମ୍ୟାନ୍' ଓ 'ଦି ଫୋର୍ ଏଲିମେଣ୍ଟସ୍' ପ୍ରଧାନ।

ଇଣ୍ଟରଲ୍ୟୁଡ଼ରେ ହାସ୍ୟରସର ପ୍ରାଧାନ୍ୟ ଥାଏ । ବିଭିନ୍ନ ସାମାଜିକ ଅନୁଷ୍ଠାନରେ ଚିତ୍ତବିନୋଦନ ଏହାର ଉଦ୍ଦେଶ୍ୟ । କ୍ରମେ ମୋରାଲିଟି ନାଟକରେ ଗୁରୁଗମ୍ଭୀର ଦୃଶ୍ୟ ମଝିରେ ଦର୍ଶକଙ୍କୁ ଆମୋଦ ଦେବା ଉଦ୍ଦେଶ୍ୟରେ ଏହା ସଂଯୋଜିତ ହେଲା । ପରବର୍ତ୍ତୀକାଳରେ ଏହି ଶ୍ରେଣୀର ପ୍ରହସନ ମିଳନାତ୍ମକ ନାଟକ (Comedy)ର ରୂପ ଗ୍ରହଣକଲା । ପ୍ରହସନ ରଚନା କ୍ଷେତ୍ରରେ ଜନ୍ ହେଉଡ୍ (John Heywood : ୧୪୯୭-୧୫୮୦)ଙ୍କ ଦାନ ଅବିସ୍ମରଣୀୟ । 'ଦି ଫୋର୍ ପି'ଜ୍' (the Four P's) ଓ ଦି ପ୍ଲେ ଅଫ୍ ଦି ୱେଦାର (The Play of the Weather) ତାଙ୍କର ଉଲ୍ଲେଖଯୋଗ୍ୟ ରଚନା । □□□

## ପଞ୍ଚମ ଅଧ୍ୟାୟ

# ଏଲିଜାବେଥ୍ ଯୁଗ

### [ ଖ୍ରୀ: ୧୫୫୦-୧୬୩୦ ]

ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରୁ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ଭିତରେ ଇଂରେଜୀ ସାହିତ୍ୟର ପୁଷ୍କଳ ବିକାଶ ପରିଲକ୍ଷିତ ହୁଏ । ଇଂଲଣ୍ଡର ଏହା ନବଜାଗରଣ ବା ରେନାସାଁ (Renaissance) ଯୁଗ । ରେନାସାଁର ଆକ୍ଷରିକ ଅର୍ଥ ପୁନର୍ଜନ୍ମ (Re-birth) । ସମସାମୟିକ ଇଂଲଣ୍ଡର ସମାଜ, ସାହିତ୍ୟ, ଧର୍ମ ଓ ଦର୍ଶନ ପ୍ରତ୍ୟେକ କ୍ଷେତ୍ରରେ ନୂତନ ଚେତନାର ଅଭ୍ୟୁଦୟ ଦେଖିଲେ ପ୍ରକୃତରେ ଇଂଲଣ୍ଡ ନବଜନ୍ମ ଲାଭକରିଥିଲା ବୋଲି କହିବାକୁ ହେବ । ଏହି ସମୟ ପରିସର ମଧ୍ୟରେ ଏଲିଜାବେଥ୍ (୧୫୫୮-୧୬୦୩), ପ୍ରଥମ ଜେମ୍ସ (୧୬୦୩-୧୬୨୫) ଓ ପ୍ରଥମ ଚାର୍ଲସ (୧୬୨୫-୧୬୪୯) ରାଜତ୍ୱ କରିଛନ୍ତି । ପୃଥକ୍-ଭାବରେ ଏମାନଙ୍କ ଶାସନକାଳ ଯଥାକ୍ରମେ ଏଲିଜାବେଥାନ୍, ଜାକୋବିଅନ୍ ଓ କେରୋଲିନ୍ ଯୁଗ ନାମରେ ପରିଚିତ । ବସ୍ତୁତଃ ଏଲିଜାବେଥଙ୍କ ସମୟରେହିଁ ରେନାସାଁ ସାହିତ୍ୟର ଚରମ ବିକାଶ । ଏଣୁ ଏହି ସମଗ୍ର ସମୟପରିଧି ମଧ୍ୟରେ ଲିଖିତ ସାହିତ୍ୟକୁ ରେନାସାଁ ସାହିତ୍ୟ ବା ଏଲିଜାବେଥାନ୍ ସାହିତ୍ୟ କୁହାଯାଇଥାଏ । ଷୋଡ଼ଶ ଶତାବ୍ଦୀର ଆଦ୍ୟଭାଗରେ ଏହାର ଉନ୍ମେଷ (period of preparation), ଏଲିଜାବେଥାନ୍ ଯୁଗରେ ଏହାର ଯୌବନାବସ୍ଥା (youth), ଜାକୋବିଅନ ପିରିଅଡ଼ରେ ଏହାର ପୌଢ଼ାବସ୍ଥା (man-hood) ଓ କେରୋଲିନ୍ ପିରିଅଡ୍‌ରେ ଏହାର ବାର୍ଦ୍ଧକ୍ୟ (old age) ।

ଅବଶ୍ୟ ପଞ୍ଚଦଶ ଶତାବ୍ଦୀର ଶେଷଭାଗରୁ ଚସାର୍ ଓ ଲ୍ୟାଙ୍ଗ୍‌ଲଣ୍ଡ ଆଦି ଯୁଗ-ଜନ୍ମାଙ୍କ ସାହିତ୍ୟରେ ଏହି ନବଚେତନାର ଉନ୍ମେଷ ରହିଛି । ଏକ ଐତିହାସିକ ଘଟଣା-ପ୍ରବାହରେ ଇଂଲଣ୍ଡ ଗ୍ରୀକ୍ ସଂସ୍କୃତିର ପ୍ରଭାବରେ ଆସିବାରୁ ଏହି ନବଯୁଗର ଅଭ୍ୟୁଦୟ ।

## ରେନାସାଁର ପୃଷ୍ଠଭୂମି :

ପଞ୍ଚଦଶ ଶତାବ୍ଦୀ ବେଳକୁ ବିଶାଳ ରୋମାନ୍ ସାମ୍ରାଜ୍ୟ ଯଥେଷ୍ଟ ସଙ୍କୁଚିତ ହୋଇ ଇଷ୍ଟର୍ଣ୍ଣ ଏମ୍ପାୟାର ନାମରେ ପରିଚିତ ହେଉଥିଲା । ତାହାର ସାମାଜିକ ଓ ରାଜନୈତିକ ପ୍ରାଣକେନ୍ଦ୍ର ଥିଲା କନ୍‌ଷ୍ଟାଣ୍ଟିନୋପଲ । ୧୪୫୩ ଖ୍ରୀଷ୍ଟାବ୍ଦରେ ମହମ୍ମଦ ଦ୍ୱିତୀୟଙ୍କ ନେତୃତ୍ୱରେ ତୁର୍କ (Turk) ମାନଙ୍କ ଆକ୍ରମଣରେ କନ୍‌ଷ୍ଟାଣ୍ଟିନୋପଲର ପତନ ଘଟିଲା ।

ଏଣୁ ଗ୍ରୀକ୍ ପଣ୍ଡିତଗଣ ସାହିତ୍ୟ, ଦର୍ଶନ, କଳା, ସଂସ୍କୃତିସମ୍ବଳିତ ବହୁ ପ୍ରାଚୀନ ମୂଲ୍ୟବାନ୍ ଗ୍ରନ୍ଥ ଧରି ଇଟାଲିକୁ ପଳାୟନକଲେ । ପଞ୍ଚଦଶ ଶତାବ୍ଦୀର ଶେଷଭାଗକୁ ଗ୍ରୀକ୍ ସଂସ୍କୃତି ସଂସ୍ପର୍ଶରେ ଇଟାଲୀରେ ନବଜାଗରଣ ଦେଖାଦେଲା । ଜଳପଥ ଉନ୍ମୁକ୍ତ ହେବା ପରେ, ଇଉରୋପର ବିଭିନ୍ନ ଅଞ୍ଚଳରୁ ପର୍ଯ୍ୟଟକମାନେ ଇଟାଲୀକୁ, ବିଶେଷକରି ସୌନ୍ଦର୍ଯ୍ୟମୟୀ ନଗରୀ ଫ୍ଲରେନ୍ସକୁ ଆସୁଥିଲେ । କ୍ରମେ ଗ୍ରୀକ୍ ସଂସ୍କୃତିର ପ୍ରଭାବ ଇଉରୋପର ବିଭିନ୍ନ ଅଞ୍ଚଳରେ ଅନୁଭୂତ ହେବାକୁ ଲାଗିଲା । ପ୍ରାଚୀନ ଗ୍ରୀକ୍ ବିଦ୍ୟାର ଏହି ପୁନଃପ୍ରଚଳନକୁ ରିଭାଇଭାଲ୍ ଅଫ୍ ଲର୍ଣ୍ଣିଂ (Revival of Learning) କୁହାଯାଏ । ଇଟାଲୀ ଓ ଫ୍ରାନ୍ସର ନବଜାଗରଣକୁ ଯଥାକ୍ରମେ ଇଟାଲିଆନ୍ ରେନାସାଁ ଓ ଫ୍ରେଞ୍ଚ୍ ରେନାସାଁ କୁହାଯାଏ । ଇଉରୋପୀୟ ରେନାସାଁର ସମସ୍ତ ବିଶିଷ୍ଟ ଲକ୍ଷଣ ଇଂଲଣ୍ଡର ରେନାସାଁରେ ପରିଲକ୍ଷିତ ହୁଏ ।

## ଇଂଲଣ୍ଡୀୟ ରେନାସାଁ :

ଇଂଲଣ୍ଡର ନବଜାଗରଣ ଆନୟନରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର କେତେଜଣ ବିଦ୍ୱାନ୍‌ଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଟମାସ୍ ଲିନାକର୍ (Thomas Linacre), ଉଇଲିଅମ୍ ଗ୍ରୋସିନ୍ (William Grocyn : ୧୪୪୬-୧୫୧୯) ଓ ଜନ୍ କୋଲେଟ୍ (John Colet : ୧୪୬୭-୧୫୧୯)ଙ୍କ ନାମ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ଲିନାକର୍ ଓ ଗ୍ରୋସିନ୍ ଅକ୍ସଫୋର୍ଡ଼ରେ ଗ୍ରୀକ୍‌ବିଦ୍ୟାଚର୍ଚ୍ଚାର ସୂତ୍ରପାତ କରିଥିଲେ । ଜନ୍ କୋଲେଟ୍ ଇଟାଲୀରୁ ଫେରି ଖ୍ରୀ: ୧୫୦୪ରେ ସେଣ୍ଟପଲସ୍ ସ୍କୁଲ ପ୍ରତିଷ୍ଠାକଲେ । ଏଥିରେ ଲାଟିନ ଓ ଗ୍ରୀକ୍ ମାଧ୍ୟମରେ ଶିକ୍ଷାଦାନର ବ୍ୟବସ୍ଥା କରିଥିଲେ; ଏହି ସ୍କୁଲପାଇଁ ଉଇଲିଅମ୍ ଲିଲି (William Lily : ୧୪୬୮-୧୫୨୨)ଙ୍କୁ ନିଯୁକ୍ତକରି ଏକ ଲାଟିନ୍ ବ୍ୟାକରଣ ମଧ୍ୟ ରଚନା କରାଇଥିଲେ । ନିଉ ଟେଷ୍ଟାମେଣ୍ଟର ମୂଳରୂପ ସମ୍ବନ୍ଧରେ ଇଟାଲୀରେ ଅବହିତ ହୋଇ ସେ ଲଣ୍ଡନ ଓ ଅକ୍ସଫୋର୍ଡ଼ଠାରେ ବିଶୁଦ୍ଧ ଖ୍ରୀଷ୍ଟଧର୍ମତତ୍ତ୍ୱ ପ୍ରଚାର କରିଥିଲେ ।

ଏହି ତିନିଜଣଙ୍କ ଉଦ୍ୟମ ଫଳରେ ଇଂଲଣ୍ଡରେ ଗ୍ରୀକ୍ ବିଦ୍ୟାର ପ୍ରସାର ଘଟିଥିଲା । ଏଣୁ ଫରାସୀ ପଣ୍ଡିତ ଇରାସମସ୍ (Erasmus) ଦାରିଦ୍ର୍ୟ ହେତୁ ଇଟାଲୀକୁ ଯାଇନପାରି ଖ୍ରୀ: ୧୪୯୯ ପରେ ବହୁବାର ଇଂଲଣ୍ଡକୁ ଆସିଥିଲେ । କୋଲେଟ୍‌ଙ୍କ ସହ ସେ କୁସଂସ୍କାର-ମୁକ୍ତ ପବିତ୍ର ଖ୍ରୀଷ୍ଟୀୟ ଧର୍ମତତ୍ତ୍ୱ ପ୍ରଚାର କରିଥିଲେ ।

ରେନାସାର ଅନ୍ୟ ଏକ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଟମାସ୍ ମୋର୍ (Thomas More)ଙ୍କ ବିଶ୍ୱବିଶ୍ରୁତ ଗ୍ରନ୍ଥ 'ୟୁଟୋପିଆ' (Utopia)ରେ ଇଂଲଣ୍ଡୀୟ ନବ-ଜାଗରଣର ପ୍ରଣବ ଉଚ୍ଚାରିତ ହୋଇଥିଲା । ପ୍ରଥମେ ଲାଟିନଭାଷାରେ ଲିଖିତ ଓ ପ୍ରକାଶିତ (୧୫୧୬) ହୋଇଥିବାରୁ ଏହାର ପ୍ରଭାବ ବହୁ ବିଳମ୍ବରେ ଅନୁଭୂତ ହୋଇଥିଲା । ଖ୍ରୀ: ୧୫୫୧ରେ ଏହା ଇଂରେଜୀ ଭାଷାକୁ ଅନୂଦିତ ହୋଇଥିଲା । ଗ୍ରନ୍ଥଟି ପ୍ଲାଟୋଙ୍କ

'ରିପବ୍ଲିକ୍' ଧାରାରେ ଲିଖିତ । ଏହା ଉପରେ ଆମେରିଗୋ ଭେସ୍ପୁଚି ଓ ପର୍ତ୍ତୁଗୀଜ ତଥା ସ୍ପେନୀୟ ନାବିକଙ୍କ ଆବିଷ୍କାରର ପ୍ରଭାବ ପଡ଼ିଛି । ମଣିଷର ସ୍ୱାଧୀନ ଭାବରେ ଚିନ୍ତାକରିବା ଅଧିକାର ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି; ଏଥିରେ ବାଧା ସୃଷ୍ଟି କରୁଥିବା ଧର୍ମଯାଜକ-ଗୋଷ୍ଠୀଙ୍କୁ ବିଦ୍ରୂପ କରିଛନ୍ତି । ମୁର୍ ଅନ୍ତମାନ୍ତାରେ ମାନବବାଦୀ । ତାଙ୍କ ମତରେ ଯୁଦ୍ଧ, ରକ୍ତପାତ ଓ ଅଯଥା ବୀରତ୍ୱ ପ୍ରଦର୍ଶନ (chivalry) ଅବାଞ୍ଛିତ । ତାଙ୍କ ଦୃଷ୍ଟିରେ ସୈନିକମାନେ ନରହନ୍ତା; ଯୁଦ୍ଧକୁ କେବଳ ଶେଷ ଅସ୍ତ୍ର ଭାବରେ ପ୍ରୟୋଗ କରାଯାଇପାରେ । ଏହାକୁ ସାମାଜିକ ଆବଶ୍ୟକତା (utilitarian spirit) ଦୃଷ୍ଟିରୁ ବିଚାର କରିବା ଉଚିତ । ଏଣୁ ଯୁଦ୍ଧରେ ଗୁପ୍ତଚରବୃତ୍ତି ଓ ବିଶ୍ୱାସଘାତକତା ବରଂ ଗ୍ରହଣୀୟ ।

ମୁର୍‌ଙ୍କ ସାମ୍ୟବାଦୀ ଦୃଷ୍ଟିଭଙ୍ଗୀ ଉଲ୍ଲେଖଯୋଗ୍ୟ । ସମ୍ପତ୍ତିର ଏକଚାଟିଆ ଅଧିକାରକୁ ସେ ନିନ୍ଦା କରିଛନ୍ତି । ତାଙ୍କ ମତରେ ପ୍ରତ୍ୟେକ ବ୍ୟକ୍ତି ପାଇଁ ଦିନକୁ ଅନ୍ତତଃ ନଅ ଘଣ୍ଟା ପରିଶ୍ରମ ବାଧ୍ୟତାମୂଳକ ହେବା ଉଚିତ । ତା'ହେଲେ ସମାଜରେ ଗରିବ, ଭିକାରୀ ହେବେନାହିଁ । ମଣିଷର ପ୍ରବୃତ୍ତିକୁ ସେ ସ୍ୱୀକାର କରିଛନ୍ତି । ସନ୍ନ୍ୟାସ ଗ୍ରହଣ ତାଙ୍କ ମତରେ ନିନ୍ଦନୀୟ । ଏଣୁ ୟୁଟୋପିଆରେ କୃଚ୍ଛ୍ରସାଧନା ତଥା ପ୍ରକୃତିର ବିରୋଧିତା ନିନ୍ଦନୀୟ । ୟୁଟୋପିଆରେ ସମସ୍ତ ଧର୍ମର ସହାବସ୍ଥାନ ନୀତି ଅନୁସୃତ । ଉଦାରତା ଓ ସହନଶୀଳତା ଏଠାକାର ଅଧିବାସୀଙ୍କ ବିଶିଷ୍ଟ ଗୁଣ । ଗ୍ରନ୍ଥଟିରେ ଲେଖକଙ୍କ ଉନ୍ନତ ଚିନ୍ତାଧାରାର ପରିଚୟ ମିଳୁଥିଲେ ମଧ୍ୟ କେତେକ କ୍ଷେତ୍ରରେ ତାହା ପରସ୍ପରବିରୋଧୀ । ଉଦାହରଣସ୍ୱରୂପ ୟୁଟୋପିଆର ସ୍ରଷ୍ଟା ଜଣେ କ୍ୟାଥୋଲିକ୍ ସନ୍ନ୍ୟାସୀ । ତାଙ୍କଠାରେ ଉଦାରତା ଓ ସହନଶୀଳତା ଭଳି ଗୁଣ ଆଦୌ ନାହିଁ । ମୁର୍‌ଙ୍କ ବୌଦ୍ଧିକତା, ହାସ୍ୟରସିକତା, ଉଲ୍ଲାସଭାବ, ସମାଜ ଓ ଜୀବନ ପ୍ରତି ତାର୍କିକ ଦୃଷ୍ଟିଭଙ୍ଗୀ ତାଙ୍କର ରଚନାଶୈଳୀକୁ ମନୋଜ୍ଞ କରିଛି ।

## ରେନାସାଁର ରୂପରେଖ :

'ୟୁଟୋପିଆ'ର ପ୍ରଭାବ ଓ ଅକସ୍‌ଫୋର୍ଡ଼ ବିଦ୍ୱାନ୍‌ଙ୍କ ଉଦ୍ୟମ ବ୍ୟତୀତ ଏ ଯୁଗର ନୂତନ ଆବିଷ୍କାର ଇଂଲଣ୍ଡୀୟ ନବଜାଗରଣକୁ ତ୍ୱରାନ୍ୱିତ କରିଥିଲା । କୁପାରନିକାସ୍ (ଖ୍ରୀ: ୧୪୭୩-୧୫୪୩) ପୃଥିବୀ ସୂର୍ଯ୍ୟ ଚାରିପାଖରେ ବୁଲୁଛି ବୋଲି ପ୍ରମାଣକଲେ । କଲମ୍ବସ୍‌ଙ୍କ ଆମେରିକା ଆବିଷ୍କାର (ଖ୍ରୀ: ୧୪୯୨) ଏକ ଯୁଗାନ୍ତକାରୀ ଘଟଣା । ଏହିପରି ଭାବରେ ଜଳ, ସ୍ଥଳ ଓ ଆକାଶମାର୍ଗରେ ନୂତନ ଦିଗନ୍ତର ସନ୍ଧାନ ଫଳରେ ମଣିଷ ବିସ୍ମୟାଭିଭୂତ ହୋଇ ଆକାଶ ଓ ପୃଥିବୀକୁ ପ୍ରତ୍ୟକ୍ଷ କଲା । ଧର୍ମ, ସମାଜ, ଦର୍ଶନ ଓ ସାହିତ୍ୟ ଆଦି ସକଳ କ୍ଷେତ୍ରରେ ଏହି ନବଚେତନାର ପ୍ରଭାବ ଅନୁଭୂତ ହେଲା ।

ମଧ୍ୟଯୁଗୀୟ ଧର୍ମ ପ୍ରଭାବିତ ସମାଜରେ ମଣିଷ ସ୍ୱାଧୀନଭାବରେ ଚିନ୍ତା କରିବାର ଅଧିକାର ମଧ୍ୟ ହରାଇଥିଲା । ବାଇବେଲ୍‌ର ତଥ୍ୟକୁ ସିଦ୍ଧାନ୍ତ ଭାବରେ ଗ୍ରହଣ କରିବାକୁ

ପଡ଼ୁଥିଲା । ସ୍ୱାଧୀନ ଚିନ୍ତା ପାପବୋଲି ବିବେଚିତ ହେଉଥିଲା । ଉଦାହରଣସ୍ୱରୂପ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି, ମଣିଷର ସୃଷ୍ଟି, ପୃଥିବୀ ଓ ଗ୍ରହନକ୍ଷତ୍ର ସମ୍ବନ୍ଧରେ ବାଇବେଲ୍‌ରେ ଉଲ୍ଲିଖିତ ତଥ୍ୟ ବିଷୟରେ ପ୍ରଶ୍ନ କରୁଥିବା ବ୍ୟକ୍ତି ବିଧର୍ମୀରୂପେ ବିବେଚିତ ହେଉଥିଲା । ଅବଶେଷରେ ଏ ପରିସ୍ଥିତିର ଅବସାନ ଘଟିଲା; ରେନାସାଁର ପ୍ରଭାବରେ ମଣିଷର ଚିନ୍ତାଧାରା ଚର୍ଚ୍ଚ କବଳରୁ ମୁକ୍ତହେଲା ।

ରେନାସାଁର ଅନ୍ୟ ଏକ ବିଶେଷତ୍ୱ ମାନବବାଦର ପ୍ରତିଷ୍ଠା । ମଧ୍ୟଯୁଗୀୟ ଇଂଲଣ୍ଡରେ ଚର୍ଚ୍ଚର ପ୍ରଭାବରେ ମାନବ-ଜୀବନକୁ ଏକ ଅଭିଶାପ ବୋଲି ମନେକରାଯାଉଥିଲା । ଜନ୍ମଲାଭ କରିବା, ଦେହଧାରଣ କରିବା, ସ୍ୱାଭାବିକ ପ୍ରବୃତ୍ତିକୁ ଚରିତାର୍ଥ କରିବାକୁ ମଧ୍ୟ ଏଇ ଦୃଷ୍ଟିରେ ଦେଖାଯାଉଥିଲା । ସାତଟି ମାରାତ୍ମକ ପାପ (Seven deadly sins) କଥା କହି ଧର୍ମଯାଜକମାନେ ସାଧାରଣ ମଣିଷ ମନରେ ଭୀତି ସଞ୍ଚାର କରୁଥିଲେ । ଆଦିମାନବ ଆଡ଼ାମ ଓ ଇଭ୍‌ଙ୍କ ପାପପ୍ରଣୟ ହେତୁ ପ୍ରତ୍ୟେକ ମଣିଷ ସେହି ମୌଳିକ ପାପ (Original Sin)ର ଭାଗୀଦାର ବୋଲି ଧରାଯାଉଥିଲା; କିନ୍ତୁ ନବଚେତନାର ପ୍ରସାର ଫଳରେ ଜୀବନ ପ୍ରତି ଏଇ ଦୃଷ୍ଟିଭଙ୍ଗୀ ବଦଳିଗଲା । ଜନ୍ମରୁ ମଣିଷ ପାପୀ ନୁହେଁ, ମଣିଷ ମଣିଷ ମଧ୍ୟରେ ସ୍ନେହ, ପ୍ରୀତି, ଈଶ୍ୱର ପ୍ରୀତିର ଅନ୍ତରାୟ ନୁହେଁ ବୋଲି ଗ୍ରହଣ କରାଗଲା । ରେନାସାଁର ବସ୍ତୁମୟବୋଧ ସହିତ ମାନବ-ଜୀବନର ଜୟଗାନ ସେକ୍‌ସପିଅରଙ୍କ ନିମ୍ନ ଉକ୍ତିରେ ଦେଖିବାକୁ ମିଳେ :

What a piece of work is man ! In action how like an angel ! In apprehension how like a god ! The beauty of the world ! The paragon of animals !

—Hamlet.

## ଧର୍ମୀୟ ସଂସ୍କାର

ଖ୍ରୀ: ୧୫୨୫ରୁ ୧୫୬୮ ମଧ୍ୟରେ ଇଂଲଣ୍ଡରେ ଧର୍ମୀୟ ସଙ୍କଟ ଦେଖାଦେଇଥିଲା । ପରମ୍ପରାପନ୍ଥୀ ପୋପ୍‌ଙ୍କ ସମର୍ଥକ ଓ ସଂସ୍କାରବାଦୀଙ୍କ ମଧ୍ୟରେ ତୀବ୍ର ସଂଘର୍ଷ ଲାଗିରହିଥିଲା । ମାର୍ଟିନ ଲୁଥାର ଏହି ସମୟର ବିଶିଷ୍ଟ ସଂସ୍କାରବାଦୀ । ସେ କହିଲେ ଯେ, ପ୍ରକୃତ ଦେବତା-ପୂଜା ହୃଦୟମଧ୍ୟରେ ହୋଇପାରେ, ଉତ୍ସବ ମାଧ୍ୟମରେ ନୁହେଁ । ତାଙ୍କଦ୍ୱାରା ଅନୁପ୍ରାଣୀତ ହୋଇ ଉଇଲିୟମ ଟିଣ୍ଡେଲ (William Tindale : ୧୪୮୪—୧୫୩୬) ପ୍ରଥମେ ବାଇବେଲ୍‌କୁ ଇଂରେଜୀରେ ଅନୁବାଦ କଲେ । ରାଜାଙ୍କ ଭୟରେ ସେ ଦେଶର ଗ୍ରାମାଞ୍ଚଳରେ ଆତ୍ମଗୋପନକରି ଏହି ଅନୁବାଦ କାର୍ଯ୍ୟ ଚଳାଇଥିଲେ । ଟିଣ୍ଡେଲ୍‌ଙ୍କ ଗ୍ରନ୍ଥ ଧର୍ମକ୍ଷେତ୍ରରେ ତୀବ୍ର ବାଦାନୁବାଦର ସୂତ୍ରପାତ କରିଥିଲା । ଏପରି କି ସେଥିପାଇଁ ତାଙ୍କୁ ପ୍ରାଣଦଣ୍ଡ ଭୋଗ-କରିବାକୁ ପଡ଼ିଥିଲା; କିନ୍ତୁ ରାଜା ତୃତୀୟ ହେନେରୀଙ୍କ ପ୍ରତିକୂଳ ମନୋଭାବସତ୍ତ୍ୱେ କ୍ରମେ

ଟିଣ୍ଡେଲ୍‌ଙ୍କ ବାଇବେଲ୍ ଲଣ୍ଡନରେ ଲୋକପ୍ରିୟ ହେଲା । ସେତେବେଳକୁ ଉଇକ୍ଲିଫ୍ ଓ ଲୋଲର୍ଡ଼ମାନଙ୍କଦ୍ୱାରା ଏଥିପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି ହୋଇସାରିଥିଲା ।

ମଧ୍ୟଯୁଗୀୟ ଇଂଲଣ୍ଡରେ ଧର୍ମଯାଜକଙ୍କ ଯଥେଚ୍ଛାଚାରର ଚରମସୀମା ସ୍ପର୍ଶ କରିଥିଲା । ଧର୍ମଯାଜକମାନେ ଈଶ୍ୱର ଓ ସାଧାରଣ ମଣିଷ ମଧ୍ୟରେ ଯୋଗସୂତ୍ର ବୋଲି ବିବେଚିତ ହେଉଥିଲେ । ଧର୍ମ ଥିଲା ସେମାନଙ୍କ ଜୀବିକା ଉପାର୍ଜନର ପନ୍ଥା । ପାପକ୍ଷାଳନ ପାଇଁ ଧର୍ମଯାଜକଙ୍କୁ ପ୍ରଭୂତ ଅର୍ଥ ପ୍ରଦାନ କରିବାକୁ ହେଉଥିଲା । ସ୍ୱର୍ଗର ପ୍ରଲୋଭନ ଓ ନର୍କର ଭୀତି ପ୍ରଦର୍ଶନକରି ଏମାନେ ସ୍ୱଚ୍ଛନ୍ଦ ଜୀବନ ଯାପନ କରୁଥିଲେ; କିନ୍ତୁ ସଂସ୍କାରବାଦୀମାନେ ପୋପ୍‌ଙ୍କୁ ସ୍ୱୀକାର କଲେନାହିଁ । ଦୁର୍ନୀତିଗ୍ରସ୍ତ ଧର୍ମଯାଜକଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଏଥିପୂର୍ବରୁ ବ୍ୟାଲଟ୍ (ballot) ଦ୍ୱାରା ଧର୍ମଯାଜକ ନିର୍ବାଚିତ ହୁଅନ୍ତୁ ବୋଲି ଟମାସ ମୋର୍ ମତ ବ୍ୟକ୍ତ କରିସାରିଥିଲେ । ଇରାସମାସ୍ ମଧ୍ୟ ତାଙ୍କ 'ପ୍ରେଜ୍ ଅଫ୍ ଫଲି' (Praise of Folly) ଗ୍ରନ୍ଥରେ ଧର୍ମଯାଜକଙ୍କ ସ୍ୱାର୍ଥପରତା ଓ ଅଜ୍ଞତାର କଟୁ ସମାଲୋଚନା କରିଥିଲେ ।

ରେନାସାଁର ଚିନ୍ତାଧାରା ଓ ସଂସ୍କାରବାଦୀ ଚିନ୍ତାଧାରା ମଧ୍ୟରେ ମଝିରେ ମଝିରେ ସଂଘର୍ଷ ଘଟୁଥିଲେ ମଧ୍ୟ ଉଭୟେ ପରସ୍ପରର ପରିପୂରକ ଥିଲେ । ଇଂଲଣ୍ଡର ରାଜନୈତିକ ଓ ସାମାଜିକ ଜୀବନରେ ମଧ୍ୟ ପରିବର୍ତ୍ତନପାଇଁ ଆହ୍ୱାନ ଶୁଣାଯାଇଛି । ଟମାସ୍ ମୋର୍ 'ୟୁଟୋପିଆ'ରେ ଶ୍ରମ, ସରକାର, ସମାଜ ଓ ଧର୍ମ ସମ୍ବନ୍ଧୀୟ ସମସ୍ୟାର ସମାଧାନସୂତ୍ର ଉପସ୍ଥାପନପୂର୍ବକ ସାମ୍ୟ, ମୈତ୍ରୀ, ସ୍ୱାଧୀନତା (Liberty, Fraternity, Equality) ଭଳି ଆଧୁନିକ ସଭ୍ୟସମାଜର ଭିତ୍ତି ସମ୍ପର୍କରେ ସୂଚନା ଦେଇଛନ୍ତି । ଇରାସ୍‌ମସ୍ ମଧ୍ୟ ପ୍ରଚଳିତ ସାମାଜିକ ବ୍ୟବସ୍ଥାର ତୀବ୍ର ସମାଲୋଚନା କରିଛନ୍ତି । ରାଜା-ରାଜୁଡ଼ାଙ୍କର ନୀତିହୀନତା ତଥା ନିର୍ଦ୍ଦୟତା ଓ ତ୍ରୁଟିବହୁଳ ଶିକ୍ଷାପ୍ରଣାଳୀ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ରେନାସାଁର ପ୍ରଭାବରେ ଶିକ୍ଷାରୀତିର ଆମୂଳ ପରିବର୍ତ୍ତନ ଘଟିଛି । ପ୍ରଚଳିତ ଶିକ୍ଷା ଧର୍ମାନୁବର୍ତ୍ତୀ ହୋଇଥିଲା; କିନ୍ତୁ ଏହି ସମୟରୁ ଧର୍ମପ୍ରଭାବ ମୁକ୍ତ (secular), ଲୌକିକ ଶିକ୍ଷାର ପ୍ରଚଳନ ହେଲା ।

ଇଂରେଜ ଜାତି ମଧ୍ୟରେ ଜାତୀୟତା ଭାବ ପ୍ରସାରିତ ହେଲା । ଖ୍ରୀ: ୧୫୮୮ରେ ସ୍ପେନୀୟ ରଣତରୀ (Spanish Armada)କୁ ପରାଭୂତକରି ଏ ଜାତି ଦେଶାତ୍ମବୋଧରେ ଅଧିକରୁ ଅଧିକ ଉଦ୍‌ବୁଦ୍ଧ ହେବାକୁ ଲାଗିଲା ।

ସମସାମୟିକ ଯୁଗଚେତନାରେ ରୋମାଣ୍ଟିସିଜିମ୍‌ର ପ୍ରାଧାନ୍ୟ ଦେଖାଯାଏ । ସୁଦୂରର ମୋହ, ସୌନ୍ଦର୍ଯ୍ୟ ପିପାସା, ଜ୍ଞାନ ପିପାସା, ଦୁଃସାହସିକତା ଓ ତୀବ୍ର ଅନୁସନ୍ଧିତ୍ସା ରୂପରେ ଏହା ପ୍ରକାଶିତ । ବସ୍ତୁତଃ ଇଂରେଜୀ ସମାଜରେ ଆଧୁନିକ ଜୀବନର ଭିତ୍ତି ଏହି ସମୟରୁ ହିଁ ପଡ଼ିଥିଲା । ସାମାଜିକ ଅଭିବୃଦ୍ଧି ସହ ତାଳଦେଇ ସାହିତ୍ୟ ମଧ୍ୟ ସମୃଦ୍ଧ । ରୂପ ଓ ଭାବଗତ ବୈଚିତ୍ର୍ୟ ଭିତରେ ସତେ ଅବା ଏହା ନବଜନ୍ମ ଲାଭକରିଛି !

## କାବ୍ୟ .

ରେନାସାଁ ସାହିତ୍ୟ ଅତି ମାତ୍ରାରେ ମାନବବାଦୀ—ଧର୍ମୀୟ ପ୍ରଭାବରୁ ଏହା ମୁକ୍ତ । ମଣିଷର ଆବେଗ, କଳ୍ପନା, ଚିନ୍ତା ଓ ଚେତନାର ଅବାଧ ପରିପ୍ରକାଶ ଏଥିରେ ଘଟିଛି । ଯୁଗର ପ୍ରାଣସ୍ପନ୍ଦନ ଏଥିରେ ଅନୁରଣିତ । ସଂସ୍କାରବାଦୀଙ୍କ ଚକ୍ଷୁରେ ଏହା ହୋଇଥିଲା ଅପାଙ୍କ୍ତେୟ; ତଥାପି ଏହାର ଅଗ୍ରଗତି ଥିଲା ଅବାରିତ ।

କାବ୍ୟରେ ନୂତନ ଆଙ୍ଗିକ ଓ ଚେତନାର ସୂତ୍ରପାତ କଲେ ଦୁଇଜଣ ତରୁଣ—ସାର୍ ଟମାସ୍ ଓ୍ୱାଟ୍ (Sir Thomas Wyatt : ୧୫୦୩-୪୨) ଓ ହେନ୍‌ରି ହାଓ୍ୱାର୍ଡ (Earl of Surrey : ୧୫୧୭-୪୭) । ଉଭୟେ ଥିଲେ ଅଳ୍ପାୟୁ । ସାରେ ପ୍ରାଣଦଣ୍ଡ ଭୋଗକରିଥିବାବେଳେ ଓ୍ୱାଟ୍ ହୋଇଥିଲେ ରାଜବନ୍ଦୀ; କିନ୍ତୁ ତାଙ୍କର ସାହିତ୍ୟିକ କୀର୍ତ୍ତି ଯୁଗୋତ୍ତୀର୍ଣ୍ଣ । ଓ୍ୱାଟ୍ ଇଟାଲୀୟ କବି ପେଟ୍ରାର୍କ୍ (Petrarch)ଙ୍କ ରୀତିରେ ଚତୁର୍ଦ୍ଦଶପଦୀ କବିତା (Sonnet) ଲେଖାର ଶୁଭଦେଲେ । ଏଗୁଡ଼ିକ ପ୍ରେମମୂଳକ । ପ୍ରତ୍ୟେକ ସନେଟ୍‌ରେ ଦୁଇଟି ସବୃତ୍ତ ଚତୁଷ୍କ (closed quatrain) ପରେ ଦୁଇଟି ତ୍ରିକ (tercet) ଥାଏ । ସାରେ କିନ୍ତୁ ଇଟାଲୀୟ ରୀତିରେ ବିଶେଷ ପ୍ରଭାବିତ ହୋଇନାହାନ୍ତି । ତାଙ୍କ ସନେଟ୍ ବିଭିନ୍ନ ମେଳବନ୍ଧନର ତିନୋଟି ଚତୁଷ୍କ ଓ ଗୋଟିଏ ମିତ୍ରାକ୍ଷର ଯୁଗ୍ମକ (couplet)ରେ ଗଠିତ । ପରବର୍ତ୍ତୀ କବି ସେକ୍‌ସପିଅର ଏହି ରୀତିକୁ ଗ୍ରହଣ କରିଥିଲେ ।

ଓ୍ୱାଟ୍ କେତେକ ବ୍ୟଙ୍ଗକବିତା ମଧ୍ୟ ଲେଖିଛନ୍ତି । ରାଜସଭାର ଅହେତୁକ ସ୍ତାବକତା ଓ ଦୁର୍ନୀତି ତାଙ୍କର ଶରବ୍ୟ । ଧନଲୋଭରେ ବୃଦ୍ଧା ବିଧବା ବିବାହ କରୁଥିବା ବ୍ୟକ୍ତିଙ୍କର କଟୁ ସମାଲୋଚନା କରିଛନ୍ତି । ସାଟାୟାର ରଚନାରେ ହୋରାସ୍ (Horace) ତାଙ୍କର ଆଦର୍ଶ ।

ସନେଟ୍ ବ୍ୟତୀତ ସାରେଙ୍କର ଅନ୍ୟ ଏକ ବିଶିଷ୍ଟ ଦାନ ଅମିତ୍ରାକ୍ଷର ଛନ୍ଦ (Blank Verse)ର ପ୍ରଚଳନ । ସେ ଏନିଡ୍ (Aeneid)ଙ୍କ ମହାକାବ୍ୟର ଦ୍ୱିତୀୟ ଓ ଚତୁର୍ଥ ଖଣ୍ଡକୁ ଅମିତ୍ରାକ୍ଷର ଛନ୍ଦରେ ଇଂରେଜୀକୁ ଅନୁବାଦ କରିଛନ୍ତି । ଜୀବଦ୍ଦଶାରେ ଓ୍ୱାଟ୍ ଓ ସାରେଙ୍କ କବିତା ପ୍ରକାଶିତ ହୋଇନଥିଲା । ପରେ ଟୋଟେଲ ନାମକ ଜଣେ ପ୍ରକାଶକ 'ଟୋଟେଲ୍‌ସ୍ ମିସ୍‌ସେଲାନି' (Tottel's Miscellany) ନାମକ ସଂକଳନରେ ଅନ୍ୟାନ୍ୟ କେତେକ କବିଙ୍କ କୃତିସହ ଏ ଦୁହିଙ୍କ କବିତା ପ୍ରକାଶକରିଥିଲେ (ଖ୍ରୀ : ୧୫୫୭) ।

## ସାର୍ ଫିଲିପ୍ ସିଡ୍‌ନି ( Sir Philip Sidney ; ଖ୍ରୀ ୧୫୫୪-୧୫୮୬ )

ସମସାମୟିକ ଇଂଲଣ୍ଡରେ ସିଡ୍‌ନି ତାଙ୍କର ସାହିତ୍ୟିକ କୃତି ତଥା ଆଦର୍ଶ ବ୍ୟକ୍ତିତ୍ୱ ପାଇଁ ସୁନାମ ଅର୍ଜିଥିଲେ । ସେ ଥିଲେ ଉଚ୍ଚବଂଶଜ । ତାଙ୍କ ବ୍ୟକ୍ତିତ୍ୱରେ ମଧ୍ୟଯୁଗୀୟ ଦୁଃସାହସିକତା ସହିତ ରେନାସାଁର ରୁଚି ଓ ସୌଜନ୍ୟବୋଧର ସମନ୍ୱୟ ଘଟିଥିଲା ।

ସତ୍କାର୍ଯ୍ୟରେ ଜୀବନକୁ ଉତ୍ସର୍ଗ କରିଦେବାପାଇଁ ସେ ସବୁବେଳେ ପ୍ରସ୍ତୁତ ଥିଲେ । ତାଙ୍କର ଆତ୍ମସମ୍ମାନବୋଧ ଓ ଶାଳୀନତା ସେ ଯୁଗର କମ୍ବଦନ୍ତୀରେ ପରିଣତ ହୋଇଥିଲା । ଉଭୟ ଗଦ୍ୟ ଓ ପଦ୍ୟ ରଚନାରେ ସେ ଜଣେ ସଫଳ-ଶିଳ୍ପୀ ।

'ଏଷ୍ଟ୍ରୋଫେଲ ଆଣ୍ଡ ଷ୍ଟେଲା' (Astrophel and Stella) ନାମକ ସନେଟ୍ ସଙ୍କଳନ (ଖ୍ରୀ: ୧୫୯୧), ଆରକାଡ଼ିଆ (Arcadia) ନାମକ ରୋମାନସ୍ (ଖ୍ରୀ; ୧୫୯୦) ଓ 'ଆପୋଲୋଜି ଫର ପୋଏଟ୍ରି' ( Apologie for Poetrie ; ୧୫୯୫ ) ନାମକ ସମାଲୋଚନା ଗ୍ରନ୍ଥ ତାଙ୍କର ତିନୋଟି ବିଶିଷ୍ଟକୃତି ।

'ଏଷ୍ଟ୍ରୋଫେଲ ଆଣ୍ଡ ଷ୍ଟେଲା' ଏକ ସନେଟ୍ ଗୁଚ୍ଛ । ଏଲିଜାବେଥ ଯୁଗରେ ବହୁ କବି ସନେଟ୍ ଗୁଚ୍ଛ ଲେଖିବାର ଦେଖାଯାଏ । ଏଥିରେ ପ୍ରେମିକା ସାଧାରଣତଃ ନିଷ୍ଠୁର ବା ଦୁଷ୍ପ୍ରାପ୍ୟ କିନ୍ତୁ ପ୍ରେମିକ ନିଷ୍ଠାପର । ପ୍ରେମିକର ଚିତ୍ତବୃତ୍ତି ଓ ପ୍ରେମର ବିଭିନ୍ନ ପର୍ଯ୍ୟାୟ ଏଥିରେ କ୍ରମାନ୍ୱୟରେ ରୂପପାଇଥାଏ । 'ଏଷ୍ଟ୍ରୋଫେଲ ଆଣ୍ଡ ଷ୍ଟେଲା' ଏହି ଢଙ୍ଗରେ ଲେଖା ପ୍ରଥମ ସନେଟ୍ଗୁଚ୍ଛ । ସନେଟ୍ଗୁଡ଼ିକ ପେନଲୋପ୍ (Lady Penelope Devereux)ଙ୍କ ଉଦ୍ଦେଶ୍ୟରେ ଲିଖିତ । ସେ ଏକଦା କବିଙ୍କ ବାଗ୍‌ଦତ୍ତା ଥିଲେ, କିନ୍ତୁ ଅବସ୍ଥାଚକ୍ରରେ ଅନ୍ୟକୁ ବିବାହ କରିଯାଇଥିଲେ । ସନେଟ୍ ରଚନାର ସାଫଲ୍ୟ ଦୃଷ୍ଟିରୁ ସିଡ୍ନିଙ୍କ ସ୍ଥାନ ସେକ୍ସପିଅରଙ୍କ ପରେ । କବିତା ରଚନା-ରୀତି ସମ୍ବନ୍ଧରେ ତାଙ୍କର ଆତ୍ମନିର୍ଦ୍ଦେଶ ଥିଲା, "ନିଜ ଅନ୍ତରକୁ ଚାହିଁ, ତାକୁ କବିତାରେ ରୂପ ଦିଅ' (Look into thy heart and write) ।

'ଆର୍କାଡ଼ିଆ' ପଶୁପାଳକଙ୍କ ଜୀବନଭିତ୍ତିକ ଏକ ଗଦ୍ୟ ରଚନା (Romance) । ମଝିରେ ମଝିରେ ନାରୀ ଓ ପୁରୁଷ ଚରିତ୍ର ମୁଖରେ ସଂଗୀତମାନ ଖଞ୍ଜାଯାଇଛି । ରାଜ-ଦରବାରରୁ ସାମୟିକ ନିର୍ବାସନ ଅବସରରେ ସେ ଏହା ରଚନା କରିଥିଲେ । ସମସାମୟିକ କବିଙ୍କ ଉପରେ ଏହାର ଯଥେଷ୍ଟ ପ୍ରଭାବ ପଡ଼ିଥିଲା । 'ଦି ଆପୋଲଜି ଫର୍ ପୋଏଟ୍ରି' (The Apologie for Poetrie) ସମାଲୋଚନା ଗ୍ରନ୍ଥଟି 'ଡିଫେନସ୍ ଅଫ ପଏଜି' (Defense of Poesie) ନାମରେ ସୁପରିଚିତ । ସମସାମୟିକ କବିମାନେ ବିଷୟ ନିର୍ବାଚନ ଓ ପ୍ରକାଶଭଙ୍ଗୀରେ କ୍ରମେ ସ୍ୱେଚ୍ଛାଚାରୀ ହେଉଥିବା ଦର୍ଶାଇ ଷ୍ଟିଫେନ୍ ଗସ୍ (Stephen Gosson) ନାମକ ଜନୈକ ବ୍ୟକ୍ତି ପୁସ୍ତିକାଟିଏ ପ୍ରକାଶ କରିଥିଲେ । ସିଡ୍ନିଙ୍କ ଗ୍ରନ୍ଥଟି ତାର ଉତ୍ତରରେ ଲିଖିତ ।

## ସ୍ପେନସାର୍ (Edmund Spenser ; ଖ୍ରୀ ୧୫୫୨-୧୫୯୯)

ଲଣ୍ଡନର ଏକ ଦରିଦ୍ର ପରିବାରରେ କବିଙ୍କ ଜନ୍ମ । ସ୍କୁଲ ଶିକ୍ଷା ପରେ ସେ କେମ୍ବ୍ରିଜ-ବିଶ୍ୱବିଦ୍ୟାଳୟରେ ଯୋଗଦେଇଥିଲେ । ଧନିକଶ୍ରେଣୀର ଛାତ୍ରଙ୍କ କାମ କରି ସେ କିଛି

ଶ୍ରେଜଗାର କରୁଥିଲେ । ଏହିଠାରେ ହିଁ ସେ ପ୍ରାଚୀନ କାବ୍ୟକୃତି (classic) ପଢ଼ିବାର ସୁଯୋଗ ପାଇଲେ, ଇତାଲୀୟ ଲେଖକଙ୍କ ସହ ସମ୍ବନ୍ଧ ସ୍ଥାପିତହେଲା । କେମ୍ବ୍ରିଜ ଶିକ୍ଷା ପରେ ସ୍ପେନସାର୍ ଇଂଲଣ୍ଡର ଉତ୍ତରାଞ୍ଚଳରେ ବସବାସ କରିବାକୁ ଲାଗିଲେ ; ବନ୍ଧୁ ହାର୍ଭେ (Harvey)ଙ୍କ ପ୍ରସ୍ତାବକ୍ରମେ ସେ ପୁଣି ଇଂଲଣ୍ଡକୁ ଫେରିଆସିଲେ । ଲାଇସାସ୍ଟର (Leicester), ସିଡ଼ନି (Sidney) ଓ ରାଣୀଙ୍କ ଅନ୍ୟାନ୍ୟ ସଭାସଦ ତଥା ପ୍ରିୟପାତ୍ରଙ୍କ ସହ ସମ୍ବନ୍ଧ ସ୍ଥାପିତହେଲା । ଲାଇସାସ୍ଟରଙ୍କ ପ୍ରଭାବରେ ସେ ଆୟାରଲାଣ୍ଡସ୍ଥ ରାଣୀଙ୍କ ସହକାରୀ ଲର୍ଡ଼ ଗ୍ରେଙ୍କ ସେକ୍ରେଟାରୀ ଭାବରେ ଯୋଗଦେଲେ । ଏଠାରେ ତାଙ୍କର ଶାସନ ଦକ୍ଷତାର ପରିଚୟ ମିଳିଥିଲା । ଏହା ପରେ ତାଙ୍କ ଜୀବନ ମୁଖ୍ୟତଃ ଲଣ୍ଡନ ଓ ଆୟାରଲଣ୍ଡ ମଧ୍ୟରେ କଟିଥିଲା । ଏଲିଜାବେଥ୍‌ନାମ୍ନୀ ଏକ ଆଇରିସ୍ ବାଳିକା ପ୍ରତି ଆକୃଷ୍ଟହୋଇ କବି ତାଙ୍କୁ ଖ୍ରୀ: ୧୫୯୪ ରେ ବିବାହକରିଥିଲେ । ଆୟାରଲଣ୍ଡର ଏକ ବିଦ୍ରୋହ ବେଳେ ତାଙ୍କ ବାସଗୃହ ଉପରେ ଆକ୍ରମଣ ହୋଇଥିଲା । ସେଥିରୁ ସେ, ତାଙ୍କ ସ୍ତ୍ରୀ ଓ ଦୁଇ ସନ୍ତାନଙ୍କ ସହ ଅଳ୍ପକେ ରକ୍ଷାପାଇଥିଲେ । ଏହି ଘଟଣା ତାଙ୍କ ମନରେ ଦାରୁଣ ରେଖାପାତ କରିଥିଲା । ଏହି ଦୁର୍ଘଟଣାର ବର୍ଷକ ପରେ ଭଗ୍ନ-ସ୍ୱାସ୍ଥ୍ୟ ନେଇ ସେ ଇଂଲଣ୍ଡକୁ ଫେରିଆସିଲେ; ପରବର୍ଷ ମୃତ୍ୟୁମୁଖରେ ପତିତ ହେଲେ । ଓ୍ୱେଷ୍ଟ ମିନିଷ୍ଟର ଆବେ ( West Minister Abbey)ରେ କବି ଚସରଙ୍କ ପାଖକୁ ତାଙ୍କର କବର ସ୍ଥାନ ନିର୍ଦ୍ଦିଷ୍ଟ ହେଲା ।

ସ୍ପେନ୍‌ସାର ଏଯୁଗର ଅନ୍ୟତମ ଶ୍ରେଷ୍ଠ କବି । ସିଡ଼ନିଙ୍କ କବିତା ବହୁ ଡେରିରେ, ତାଙ୍କ ମୃତ୍ୟୁ ପରେ ପ୍ରକାଶିତ ହୋଇଥିବାରୁ ମୁଖ୍ୟତଃ ସ୍ପେନ୍‌ସାରଙ୍କ ମାଧ୍ୟମରେହିଁ ଇଂଲଣ୍ଡବାସୀ ରେନାସାଁ କବିତା ଆସ୍ୱାଦନର ସୁଯୋଗ ପାଇଥିଲେ ।

'ଦି ଫେଆରୀ କୁଇନ୍' (The Faery Queene : ୧୫୯୦-୧୬୦୯) କବିଙ୍କ ଅମରକୃତି । ତାଙ୍କର କବିଯଶ ମୁଖ୍ୟତଃ ଏହାରି ଉପରେ ନିର୍ଭରକରେ । ଗ୍ରୀକ୍ ଓ ଲାଟିନ ମହାକାବ୍ୟପରି ଇଂରେଜୀରେ ଏକ ମହାକାବ୍ୟ ରଚନା କରିବା ଦିଗରେ ଏହା ଏକ ସୁମହାନ୍ ପରିକଳ୍ପନା । ଚବିଶ ଖଣ୍ଡରେ ପୂର୍ଣ୍ଣାଙ୍ଗ ହେବାର ଯୋଜନା ଥିଲେ ମଧ୍ୟ ଛଅଖଣ୍ଡ ମାତ୍ର ସମ୍ପୂର୍ଣ୍ଣ । ସପ୍ତମ ଖଣ୍ଡର କିଛି ଅଂଶ ମିଳେ । ଅବଶିଷ୍ଟ ଅଂଶ ହୁଏତ ଅଲିଖିତ ବା ଗୃହଦାହରେ ବିନଷ୍ଟ । ମଧ୍ୟଯୁଗୀୟ ଅତିକଥାର ନାୟକ ଆର୍ଥାର କାହାଣୀ ସମ୍ବଳିତ ମ୍ୟାଲୋରିଙ୍କ 'ମର୍ଟଡ଼ି ଆର୍ଥାର (Morte de Arthur) ଏହାର ମୂଳଭିତ୍ତି । ଇତାଲୀୟ କବି ଅରିଅସ୍ତୋ (Ariosto)ଙ୍କ ଅରଲାଣ୍ଡୋ ଫୁରିଅସୋ (Orlando Furioso) ମଧ୍ୟ ତାଙ୍କର ପ୍ରେରଣାର ଉତ୍ସ ।

ପରୀରାଜ୍ୟରେ ପରୀରାଣୀଙ୍କ ଦରବାରର ଉତ୍ସବକୁ କେନ୍ଦ୍ରକରି କାବ୍ୟଟିର କଥାବସ୍ତୁ ଗଢ଼ିଉଠିଛି । ଚଉଦ ଦିନ ଧରି ଏ ଉତ୍ସବ ଚାଲିଛି । ରାଜା ଆର୍ଥାର (ରାଜା ହେବା ପୂର୍ବରୁ)

ଏହି ଦରବାରରେ ଜଣେ ଅଭିଜାତକର୍ମୀ ବୀର (ନାଇଟ୍) । ଏହିପରି ବାରଜଣ ନାଇଟ୍ ଏ ଦରବାର ମଣ୍ଡନ କରୁଛନ୍ତି । ପ୍ରତ୍ୟେକ ବୀର ଆରିଷ୍ଟୋଟଲ୍‌ଙ୍କ ବର୍ଣ୍ଣିତ ପବିତ୍ରତା, ସଂଯମ, ସୌଜନ୍ୟବୋଧ, ବଚ୍ଚୁତପରାୟଣତା ଆଦି ଚଉଦଟି ଗୁଣ ମଧ୍ୟରୁ ଗୋଟିଏ ଗୋଟିଏ ଗୁଣର ପ୍ରତୀକ । ଆର୍ଥାରଙ୍କ ଭିତରେ ସବୁଗୁଣର ସମନ୍ୱୟ ଘଟିଛି । ଉତ୍ସବର ପ୍ରତ୍ୟେକ ଦିନରେ ସଙ୍କଟରେ ପଡ଼ିଥିବା ବ୍ୟକ୍ତିବିଶେଷଙ୍କ ସମ୍ବାଦ ଦରବାରରେ ପହଞ୍ଚେ—ଅସୁର, ମାୟାବିନୀ ନାରୀ (enchantress) ଅଥବା ବିପଦରେ ପଡ଼ିଥିବା ରୂପସୀ ବା ସାଧୁସନ୍ଥଙ୍କ ସମ୍ବାଦ । ଦରବାରର କୌଣସି ବୀର ଏହାର ସମାଧାନ କରିବାର ଦାୟିତ୍ୱ ନିଅନ୍ତି । ଗ୍ରନ୍ଥଟିର ପ୍ରତ୍ୟେକ ଖଣ୍ଡରେ ଏହିପରି ଜଣେ ଜଣେ ବୀରଙ୍କ ଦୁଃସାହସିକ ଅଭିଯାନର କାହାଣୀ ବର୍ଣ୍ଣିତ ।

ଗ୍ରନ୍ଥଟି ବହୁ ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ମଧ୍ୟଯୁଗୀୟ ଦୁଃସାହସିକ ରୋମାଞ୍ଚକର ଜୀବନ-ପ୍ରୀତି ଆଗ୍ରହ ସହିତ ରେନାସାଁର ଅପୂର୍ବ ସମନ୍ୱୟ ଏଥିରେ ଘଟିଛି । ଗୋଟିଏ ଗୋଟିଏ ସଦ୍‌ଗୁଣର ପ୍ରତୀକ ଉକ୍ତ ବୀରଙ୍କ ଅଭିଯାନ ଭିତରେ ଜୀବନର ଏକ ଚିରନ୍ତନ ସତ୍ୟ ସତ୍ ଅସତ୍ ସଂଘର୍ଷର ରୂପକାତ୍ମକ ପରିପ୍ରକାଶ ଘଟିଛି । ରାଜନୈତିକ ଦୃଷ୍ଟିରୁ ମଧ୍ୟ ଏହା ଗୁରୁତ୍ୱପୂର୍ଣ୍ଣ । ପରୀରାଣୀ ସ୍ୱୟଂ ଇଂଲଣ୍ଡର ରାଣୀ ଏଲିଜାବେଥଙ୍କର ଏକ ଭାବମୂର୍ତ୍ତି । କବି ରାଣୀଙ୍କର ଗୁଣଗାନ କରିଛନ୍ତି । ସମକାଳୀନ କବି ସିଡ୍‌ନି ଓ ଲିଇସାସ୍ଟାର ଯଥାକ୍ରମେ 'ଦ ରେଡ୍‌କ୍ରସ ନାଇଟ୍' ଓ 'ଆର୍ଥାର୍' ଭାବରେ ରୂପାୟିତ । ଆର୍ଥାର ଓ ପରୀରାଣୀଙ୍କ ପ୍ରଣୟାସକ୍ତି କାବ୍ୟର ଚମତ୍କାରିତା ବୃଦ୍ଧି କରେ । ଧର୍ମଦିଗରୁ ଫେଆରି କୁଇନ୍ ସଂସ୍କାର ମନୋବୃତ୍ତିର ପରିଚାୟକ ହୁଏ । 'ଫେଆରି କୁଇନ୍'ରେ କବି ଏକ ନୂତନ ଆଙ୍ଗିକ (Verse Form)ର ପ୍ରୟୋଗ କରିଛନ୍ତି । ଇଟାଲୀୟ କବି ଅରିଅସ୍ତୋଙ୍କ ଅଷ୍ଟପଦୀ ସ୍ତବକ (Ottavarima)ର ଆଦର୍ଶରେ ଏହା ପରିକଳ୍ପିତ । ପ୍ରତ୍ୟେକ ସ୍ତବକ ନଅଚରଣବିଶିଷ୍ଟ, ପ୍ରଥମ ଆଠଟି ପଞ୍ଚମାତ୍ରିକ ( Iambic pentameter ) ଓ ଶେଷ ଚରଣ ଛ ମାତ୍ରିକ (Alexandrine) । ଏହାରି ଅନ୍ତ୍ୟ ମେଳର ବିନ୍ୟାସ ab ab bc c କ୍ରମରେ ହୋଇଥାଏ । କବିଙ୍କ ନାମ ଅନୁସାରେ ଏଇ ସ୍ତବକ ସ୍ପେନ୍‌ସାରିଆନ୍ ଷ୍ଟାଞ୍ଜା ନାମରେ ସୁପରିଚିତ ।

'ଫେଆରି କୁଇନ୍'ର ରସାସ୍ୱାଦନ ସାଧାରଣ ପାଠକଙ୍କ ପାଇଁ ସହଜ ନୁହେଁ । ଶିକ୍ଷିତଗୋଷ୍ଠୀ ବା କବିଙ୍କ ଉଦ୍ଦେଶ୍ୟରେ ସ୍ପେନ୍‌ସାର ଏହା ଲେଖିଥିବାର ଜଣାଯାଏ । ସମସାମୟିକ ବହୁକବି ତାଙ୍କଦ୍ୱାରା ପ୍ରଭାବିତ । ତେଣୁ ଚାର୍ଲସ ଲ୍ୟାମ୍ବ ତାଙ୍କୁ 'କବିଙ୍କର କବି' (Poets poet) ଆଖ୍ୟା ପ୍ରଦାନ କରିଛନ୍ତି । ଗୀତିମୟତା, ସୌନ୍ଦର୍ଯ୍ୟବୋଧ, କଳ୍ପନା-ପ୍ରବଣତା, ଚିତ୍ରଧର୍ମିତା (pictorial quality) ଏହାର କେତୋଟି ବୈଶିଷ୍ଟ୍ୟ ।

'ଦ ସେଫାର୍ଡସ୍ କ୍ୟାଲେଣ୍ଡର୍' ( The Shepherd's Calendar, ଖ୍ରୀ: ୧୫୭୯ ) ତାଙ୍କର ପ୍ରଥମ ସଫଳକୃତି । ଏହା ମେଷପାଳକ ଜୀବନ ସମ୍ବଳିତ ବାରଟି

କବିତାର ସଂକଳନ । ଗ୍ରାମ୍ୟ-ଜୀବନ, ପ୍ରକୃତି ଓ ପ୍ରେମ ମୁଖ୍ୟତଃ ଏହାର ବିଶେଷତ୍ୱ । ସଂକଳନଟି ଚସାରଙ୍କ ଦୁଇଶହ ବର୍ଷ ପରେ ଜଣେ ଜାତୀୟ କବିଙ୍କ ଆବିର୍ଭାବର ସୂଚନା ଦେଇଥିଲା । ଏହାର ଅନୁସରଣରେ ପରବର୍ତ୍ତୀ ବହୁ କବି ମେଷପାଳକ ଜୀବନ ସମ୍ପର୍କିତ କବିତା (Pastoral Poetry) ଲେଖିଛନ୍ତି । ରେନାସାଁ କବିତାର-ସ୍ୱତଃସ୍ଫୂର୍ତ୍ତିତା ଏହିଠାରୁ ଲକ୍ଷଣୀୟ ।

'ସେଫାର୍ଡ଼ସ୍ କ୍ୟାଲେଣ୍ଡର' ରଚନାକାଳରେ 'ଫୋର ହିମସ୍' (Four Hymns) ମଧ୍ୟ ଲିଖିତ । ପ୍ରେମ ଓ ସୌନ୍ଦର୍ଯ୍ୟ ସମ୍ବନ୍ଧରେ କବିଙ୍କ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଏଥିରେ ପ୍ରକାଶିତ । ପ୍ରେମ ଓ ଚରିତ୍ରବତ୍ତା, ବିବିରତା ଓ ଖ୍ରୀଷ୍ଟଧର୍ମୀଦର୍ଶ, ରେନାସାଁ ଓ ରିଫରମେସନ୍ ମଧ୍ୟରେ ତାଙ୍କର ମାନସିକ ଦୋଳନ ଏଥିରେ ସ୍ପଷ୍ଟ ।

'ମଦର୍ ହାବାର୍ଡ଼ସ୍ ଟେଲ୍' (Mother Hubberd's Tale) ମଧ୍ୟ ଏହି ସମୟର ରଚନା । ଚସାରଙ୍କ ଧାରାରେ ଲିଖିତ ଏହା ଏକ ବ୍ୟଙ୍ଗକବିତା । ତତ୍କାଳୀନ ସମାଜ, ବିଶେଷକରି ଧର୍ମ ଓ ରାଣୀଙ୍କ ଦରବାରର ଦୁର୍ନୀତି ତାଙ୍କର ଶରବ୍ୟ । ରାଣୀଙ୍କର କୋଷାଧ୍ୟକ୍ଷ ଶୃଗାଳ ଓ ତାଙ୍କର ଜନୈକ ପ୍ରଣୟପ୍ରାର୍ଥୀ ମର୍କଟରୂପରେ ଚିତ୍ରିତ ।

'ଏମୋରେଟି' (Amoretti : ୧୫୯୫ ) ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ରଚନା । ଏହା ଏକ ସନେଟଗୁଚ୍ଛ—ପ୍ରେୟସୀ ଏଲିଜାବେଥଙ୍କ ଉଦ୍ଦେଶ୍ୟରେ ଲିଖିତ । ସନେଟଗୁଚ୍ଛରେ ପ୍ରଥମେ ଅନାସକ୍ତି ପରେ ନମନୀୟତା, ଅବଶେଷରେ ପୁନର୍ବାର ଔଦାସିନ୍ୟ ପ୍ରକାଶପାଇଛି । 'ଏପିଥାଲମିଆନ୍' (Epithalamion : ୧୫୯୫)ରେ କବିଙ୍କ ପ୍ରଣୟାସକ୍ତ ଭାବାବେଗ ଅଧିକ ପ୍ରାଣବନ୍ତ । ବିବାହ ଦିବସର ସକାଳଠାରୁ ରାତ୍ରିର ମିଳନ ମୁହୂର୍ତ୍ତ ପର୍ଯ୍ୟନ୍ତ କବିଙ୍କ ଅନୁଭୂତି ଏଥିରେ ବର୍ଣ୍ଣିତ । ଜନୈକ ବନ୍ଧୁଙ୍କ ବିବାହରେ ଲିଖିତ 'ପ୍ରୋଥାଲମିଆନ୍' (Prothalamion) ସେହିଭଳି ଏକ ସଫଳ କବିତା । 'ଏସ୍ଟ୍ରୋଫେଲ୍' (Astrophel) ନାମକ-ଶୋକଗୀତଟି (୧୫୯୬) କବି ସିଡ୍‌ନିଙ୍କ ମୃତ୍ୟୁରେ ଲିଖିତ । ଏତଦ୍‌ବ୍ୟତୀତ 'କମ୍ପ୍ଲେଣ୍ଟସ୍' (Complaints) ନାମକ କବିତା ସଂକଳନ୍ ଓ 'କଲିନ୍ କ୍ଲଉଟସ୍ କମ୍ ହୋମ୍ ଏଗେନ୍' (Colin Clout's Come Home Again : ୧୫୯୫) ଆଦି ତାଙ୍କର କେତୋଟି ଉଲ୍ଲେଖଯୋଗ୍ୟ କୃତି ।

ଏଯୁଗର ବିଶିଷ୍ଟ ନାଟ୍ୟକାର ମାର୍ଲୋ ଓ ସେକ୍‌ସପିଅର ମଧ୍ୟ କେତେକ ଉଲ୍ଲେଖଯୋଗ୍ୟ ଆଖ୍ୟାନଧର୍ମୀ ଦୀର୍ଘକବିତା ରଚନା କରିଥିବାର ଦେଖାଯାଏ । ମାର୍ଲୋଙ୍କର 'ହିରୋ ଆଣ୍ଡ ଲିଏଣ୍ଡର' (Hero and Leander) ପୌରାଣିକ କଥାବସ୍ତୁ ଅବଲମ୍ବନରେ ଲିଖିତ ଏକ ଅପୂର୍ଣ୍ଣ ପ୍ରେମକାବ୍ୟ । ସମ୍ଭବତଃ ଏହାର ପ୍ରଭାବରେ ତତ୍କାଳୀନ ତରୁଣ ସେକ୍‌ସପିଅର 'ଭେନାସ୍ ଆଣ୍ଡ ଏଡ଼ୋନିସ୍' (Venus and Adonais) ଲେଖିଥିଲେ ।

**ସାମୁଏଲ ଡାନିଏଲ** ( ୧୫୬୨-୧୬୧୯ )ଙ୍କ 'ଦି ସିଭିଲ୍ ୱାରସ୍' ( The Civil Wars) ଓ ମାଇକେଲ ଡେଟନ୍‌ଙ୍କ 'ପଲି ଅଲବିଅନ୍' (Poly Olbion)

ଏକ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ଆବେଗ ଓ କଳ୍ପନା ବଦଳରେ ମନନଶୀଳତା ତାଙ୍କ ଏଲିଜାବେଥ କବିତାର ବୈଶିଷ୍ଟ୍ୟ । ତାଙ୍କର କବିତା ଗଦ୍ୟଧର୍ମୀ । ଡ୍ରେଟନଙ୍କ 'ପଲି ଅଲବିଅନ' କେତେ ସହସ୍ର ପଦବିଶିଷ୍ଟ ଏକ ସୁଦୀର୍ଘ କବିତା । ବ୍ରିଟେନ୍‌ର ନଦୀ, ପର୍ବତ, ସହରର ବିସ୍ତୃତ ବର୍ଣ୍ଣନା ଓ ଏଥି ସହିତ ଜଡ଼ିତ କାହାଣୀ (legend) ଏହାର ଉପଜୀବ୍ୟ । ସୁଦୀର୍ଘ ଭୌଗୋଳିକ ବିବରଣୀ ପାଠକର ଧୈର୍ଯ୍ୟଚ୍ୟୁତ ଘଟାଏ ।

ଗୀତିକବିତାର ଅଭୂତପୂର୍ବ ବିକାଶ ହେତୁ ଏ ଯୁଗକୁ 'ସଙ୍ଗୀତମୁଖର ପକ୍ଷିନୀଡ଼' (A nest of singing birds) ବୋଲି କୁହାଯାଏ ।

## ଗଦ୍ୟ :

ସମକାଳୀନ ଗଦ୍ୟରଚନା ଯଥେଷ୍ଟ ବହୁ ବୈଚିତ୍ର୍ୟପୂର୍ଣ୍ଣ । କେତେବେଳେ ଏହା କବି କଳ୍ପନାର ଲୀଳାକ୍ଷେତ୍ର ତ କେତେବେଳେ ଅତିଭାଷଣ, ଅତିରଞ୍ଜନ, ଅଯଥା ପାଣ୍ଡିତ୍ୟ ପ୍ରଦର୍ଶନ ଓ ବାଗାଡ଼ମ୍ବର ଦୋଷଦୁଷ୍ଟ । ତଥାପି ଇଂରେଜୀରେ ଅନୂଦିତ ବାଇବେଲ୍ ଓ ବେକନ୍‌ଙ୍କ ପ୍ରବନ୍ଧ ଭଳି କେତେକ ଗ୍ରନ୍ଥ ଇଂରେଜୀ ଗଦ୍ୟଶୈଳୀର ଦୃଢ଼ ଭିତ୍ତି ପକାଇଥିଲା । ଜନ୍ ଲିଲି (Lyly) : (୧୫୫୪-୧୬୦୬), ସାର୍ ଫିଲିପ୍ ସିଡ଼୍‌ନି, ହୁକ୍‌କାର (୧୫୫୪-୧୬୦୦) ଓ ବେକନ୍ (୧୫୬୧-୧୬୨୬) ଏହି ସମୟର ବିଶିଷ୍ଟ ଗଦ୍ୟକାର । ସାର୍ ଟମାସ୍ ମୋରଙ୍କ ଦାନ ମଧ୍ୟ ଏପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

ସାର୍ ଟମାସ୍ ମୋର୍‌ଙ୍କ 'ୟୁଟୋପିଆ' (Utopia)ର ଇଂରେଜୀ ଅନୁବାଦ ଖ୍ରୀ: ୧୫୫୧ରେ ପ୍ରକାଶ ପାଇଥିଲା । ରେନାସାଁ ପ୍ରସଙ୍ଗରେ ଏହାର କଥାବସ୍ତୁ ଆଲୋଚିତ । ଶୈଳୀ ଦୃଷ୍ଟିରୁ ଇଂରେଜୀ ଗଦ୍ୟ ଉପରେ ଏହାର ବିଶେଷ ପ୍ରଭାବ ପଡ଼ିନଥିଲା । ଗଦ୍ୟର ଶୃଙ୍ଖଳା ଓ ପରିମିତିବୋଧ ତାଙ୍କ ରଚନାରେ ଦେଖାଯାଏନାହିଁ । ସମୟେ ସମୟେ ବାକ୍ୟଗୁଡ଼ିକ ଅତି ମାତ୍ରାରେ ଦୀର୍ଘ । ଗଦ୍ୟକୁ ମାର୍ଜିତ ରୂପ ଦେବା ଦାୟିତ୍ୱ ସତେ ଅବା ସେ ଅପେକ୍ଷାକୃତ ନିକୃଷ୍ଟତର ସାହିତ୍ୟିକଙ୍କ ଉପରେ ଛାଡ଼ିଯାଇଥିଲେ ।

ଲିଲିଙ୍କର 'ଇଉଫିଉସ୍' (Euphues) ଏକ ଗଦ୍ୟ ରୋମାନ୍‌ସ । ଅଧର୍ମ ଓ ଭ୍ରଷ୍ଟାଚାରର ବିରୋଧ କରିବା ସଙ୍ଗେ ସଙ୍ଗେ ନୀତିଶିକ୍ଷା ଦେବା ଗ୍ରନ୍ଥଟିର ଉଦ୍ଦେଶ୍ୟ । ରୋମାନ୍‌ସଟିର ନାୟକ ଇଉଫିୟୁସ୍ ନାମକ ଜଣେ ଯୁବକ । ଲେଖକ ଇଟାଲି ସଂସ୍କୃତି-ପ୍ରଭାବିତ ଲଣ୍ଡନରେ ଅକ୍‌ସ୍‌ଫୋର୍ଡ଼ ଗ୍ରାଜୁଏଟର ସ୍ଖଳନ ସୂଚାଇଛନ୍ତି ।

କବି ସିଡ଼ନି ଜଣେ ବିଶିଷ୍ଟ ଗଦ୍ୟରଚୟିତା ମଧ୍ୟ । ତାଙ୍କର 'ଆର୍କାଡ଼ିଆ' (Arcadia : ୧୫୯୦) ପଶୁପାଳକ ଜୀବନୀଭିତ୍ତିକ ଏକ ଗଦ୍ୟ ରୋମାନ୍‌ସ (prose romance) । ମଝିରେ ମଝିରେ ନାରୀ ଓ ପୁରୁଷ ଚରିତ୍ର ମୁଖରେ ସଂଗୀତ ଖଞ୍ଜାଯାଇଛି । ଅନେକାଂଶରେ ଏହା ଗଦ୍ୟ-କବିତା ସ୍ତରକୁ ଉତ୍ତୀର୍ଣ୍ଣ । ଲିଲିଙ୍କ ପରି ଅଳଙ୍କାର ପ୍ରୟୋଗ

ପ୍ରତି ବିଶେଷ ଆକର୍ଷଣ ଦେଖାଯାଏ । ତାଙ୍କ ଗଦ୍ୟ ବିପରୀତ ଭାବଦ୍ୟୋତକ ଶବ୍ଦାବଳୀ (antithesis) ଓ ଅତିକଳ୍ପିତ ଚିତ୍ରକଳ୍ପ (fanciful images)ରେ ଭାରାକ୍ରାନ୍ତ ।

ଇଂରେଜୀ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ସିଡନିଙ୍କ 'ଏପୋଲୋଜି ଫର୍ ପୋଏଟ୍ରି' (The Aphology for Poetry : ୧୫୯୫) ପ୍ରଥମ ଉଲ୍ଲେଖଯୋଗ୍ୟ ରଚନା । 'ଡିଫେନସ ଅଫ୍ ପଏଜି' (Defense of Poesie) ନାମରେ ଏହା ସୁପରିଚିତ । ଏହା ସମସାମୟିକ ସମାଲୋଚକ ଷ୍ଟିଫେନ୍ ଗସନ୍ (Stephen Gosson)ଙ୍କ ପୁସ୍ତିକା 'ସ୍କୁଲ ଅଫ୍ ଏବ୍ୟୁଜ୍' (School of Abuse)ର ପ୍ରତିବାଦରେ ଲିଖିତ । ଗସନ୍ ତତ୍କାଳୀନ କାବ୍ୟ-କବିତାର ବିଷୟବସ୍ତୁ ଓ ପ୍ରକାଶଭଙ୍ଗି କ୍ରମେ ଶୃଙ୍ଖଳାହୀନ ହୋଇପଡ଼ୁଛି ବୋଲି ଦର୍ଶାଇଥିଲେ । ସହଜ, ସରଳ ଓ ସାବଲୀଳ ପ୍ରକାଶଭଙ୍ଗୀ ଏହାର ବୈଶିଷ୍ଟ୍ୟ । ଇଂରେଜୀ ଗଦ୍ୟଶୈଳୀକୁ ଏହା ତାଙ୍କର ବିଶିଷ୍ଟ ଦାନ ।

ବେକନ୍ (ଖ୍ରୀ; ୧୫୬୧-୧୬୨୬)ଙ୍କୁ ଇଂରେଜୀ ପ୍ରବନ୍ଧ ସାହିତ୍ୟର ଜନକ କୁହାଯାଇଥାଏ । ସେ ଜଣେ ବିଶିଷ୍ଟ ଆଇନ୍ ବ୍ୟବସାୟୀ ତଥା ଶାସକଙ୍କ ପୁତ୍ର । ବେକନ୍ ନିଜେ ମଧ୍ୟ ଆଇନ୍ ବ୍ୟବସାୟ କରୁଥିଲେ; ରାଣୀଙ୍କ ଆଇନ୍ ପରାମର୍ଶଦାତାଠାରୁ ଆରମ୍ଭକରି ପ୍ରଥମ ଜେମ୍ସଙ୍କ ସମୟରେ ଏଟର୍ଣ୍ଣି ଜେନେରାଲ, ପ୍ରିଭି କାଉନ୍‌ସିଲର, ଲର୍ଡ଼ କିପର୍ ଆଦି ଉଚ୍ଚ ରାଜକୀୟ ପଦମର୍ଯ୍ୟାଦାରେ ଅଧିଷ୍ଠିତ ହୋଇଥିଲେ; ସୁବକ୍ତାଭାବରେ ଖ୍ୟାତି ଅର୍ଜିଥିଲେ; ତା'ପରେ ଦୁର୍ନୀତି ଅପରାଧରେ ଅଭିଯୁକ୍ତ ହୋଇ ପାର୍ଲିଆମେଣ୍ଟ ଓ କୋର୍ଟରୁ ବହିଷ୍କୃତ ହୋଇଥିଲେ । ରାଜନୀତି, କୂଟନୀତି ଓ ବ୍ୟବହାର ବିଧି ସମ୍ପର୍କୀୟ ତାଙ୍କର ଗଭୀର ଅଭିଜ୍ଞତା, ଅସାଧାରଣ ମନନଶୀଳତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରବନ୍ଧଗୁଡ଼ିକରେ ପରିସ୍ଫୁଟ । ଶାସକଙ୍କ ପାଇଁ ଏଗୁଡ଼ିକ ପଥପ୍ରଦର୍ଶକ ସ୍ୱରୂପ । ଏତଦ୍‌ବ୍ୟତୀତ ଶିକ୍ଷା, ଧର୍ମ, ବ୍ୟବସାୟ, ବନ୍ଧୁତା, ପ୍ରେମ, ପ୍ରଭୁତ୍ୱ ଆଦି ଦୈନନ୍ଦିନ ଜୀବନ ସଂପୃକ୍ତ ବହୁବିଧ ସମସ୍ୟା ଉପରେ ତାଙ୍କର ଚିନ୍ତାଶୀଳ ପ୍ରବନ୍ଧଗୁଡ଼ିକ ଆଧାରିତ । କିନ୍ତୁ ଏକ ଦିଗରେ ସେ ଯେପରି ଦକ୍ଷ ଶାସକ, ପଣ୍ଡିତ, ଓ ଲେଖକ, ଅନ୍ୟ ଦିଗରେ ସେହିପରି ନୀଚମନା । ସ୍ୱାର୍ଥପାଇଁ ହୀନ ଆଚରଣ କରିବାକୁ ସେ କୁଣ୍ଠା ବୋଧକରୁନଥିଲେ । ତାଙ୍କର ଏହି ସୁବିଧାବାଦୀ ଦୃଷ୍ଟିଭଙ୍ଗୀ ମଧ୍ୟ କେତେକ ପ୍ରବନ୍ଧରେ ଲକ୍ଷଣୀୟ । ଏଣ୍ତ୍ରି ପୋପଙ୍କ ଭାଷାରେ ବେକନ୍ ଥିଲେ, "The wisest, the brightest, and the meanest of mankind."

ବେକନ୍ ଲାଟିନ୍ ଭାଷା ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ; ଉତ୍ତମମାନର ଲେଖା କେବଳ ଲାଟିନ୍‌ରେ ଲେଖାଯାଇପାରେ ବୋଲି ମନେକରୁଥିଲେ । ତାଙ୍କର ଏକ ଅସମାପ୍ତ ମହାନ୍ କୃତି, 'ଦି ଇନସ୍ଟରାସିଓ ମାଗନା' (The Instauratio Magna)ର ପ୍ରଥମ ଦୁଇ ପର୍ବ ଲାଟିନ୍‌ରେ ଲିଖିତ । ନୋଭମ୍ ଅର୍ଗାନମ୍ (Novum Organum) ଏହାର ଅଂଶବିଶେଷ । ସେ ଏଥିରେ ଜ୍ଞାନ ଆହରଣ କ୍ଷେତ୍ରରେ ଆରିଷ୍ଟଟେଲୀୟ ଦାର୍ଶନିକତା ପରିହାର କରି ଯୌକ୍ତିକତା ଓ ପରୀକ୍ଷା (reason and experiment) ଉପରେ

ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ବୈଜ୍ଞାନିକଶ୍ରେଣୀ ସନ୍ଧାନୀଙ୍କଦ୍ୱାରା ଶାସ୍ତ୍ରଟିର ବହୁ ଅଂଶ ଲିଖିତ ।

ବେକନଙ୍କ ଇଂରେଜୀ ଲେଖା ମଧ୍ୟରେ 'ଏସେଜ' (Essayes : ୧୫୯୭-୧୬୨୨), 'ଏଡ୍‌ଭାନ୍‌ସମେଣ୍ଟ ଅଫ୍ ଲର୍ଣ୍ଣିଂ' (Advancement of Learning : ୧୬୦୫), 'ହିଷ୍ଟ୍ରି ଅଫ୍ ଦ ରେନ୍ ଅଫ୍ ହେନେରି ସେଭେନ୍' (Historie of the Raigne of Henry VII : ୧୬୨୨) ଓ ଅସମାପ୍ତ 'ଦ ନିଉ ଆଟଲାଣ୍ଟିସ' (New Atlantis) ପ୍ରଧାନ । ଏଥିମଧ୍ୟରୁ 'ଏସେଜ' ଇଂରାଜୀ ସାହିତ୍ୟକୁ ତାଙ୍କର ବିଶିଷ୍ଟ ଦାନ । ତାଙ୍କର ଦଶଟି ପ୍ରବନ୍ଧର ଏକ ସଂକଳନ ପ୍ରଥମେ ଖ୍ରୀ: ୧୫୯୭ରେ ପ୍ରକାଶ ପାଇଥିଲା । ବର୍ତ୍ତମାନ ମିଳୁଥିବା ଅଠାବନଟି ପ୍ରବନ୍ଧ ପୁନର୍ଲିଖିତ ବା ସଂଶୋଧିତ ହୋଇ ବେକନଙ୍କ ମୃତ୍ୟୁର ବର୍ଷେକ ପୂର୍ବରୁ ଖ୍ରୀ: ୧୬୨୫ରେ ପ୍ରକାଶିତ ।

ପ୍ରବନ୍ଧ-ସାହିତ୍ୟର ପ୍ରଥମ ପ୍ରବର୍ତ୍ତକ ଫରାସୀ ପଣ୍ଡିତ ମଣ୍ଟେନ୍ (Montaigne)ଙ୍କ ଅନୁସରଣରେ ସେ ପ୍ରବନ୍ଧ ଲେଖିଥିଲେ; କିନ୍ତୁ ମଣ୍ଟେନଙ୍କ ପ୍ରବନ୍ଧ ବ୍ୟକ୍ତିନିଷ୍ଠ ହୋଇଥିବାବେଳେ ବେକନଙ୍କ ପ୍ରବନ୍ଧ ବସ୍ତୁନିଷ୍ଠ । ଶୈଳୀଦୃଷ୍ଟିରୁ ଇଂରେଜୀ ସାହିତ୍ୟରେ ଏଗୁଡ଼ିକ ଆଦର୍ଶ ସ୍ଥାନୀୟ । ଏଲିଜାବେଥୀୟ କଳ୍ପନାପ୍ରବଣତା ଏଥିରେ ନାହିଁ ଏଗୁଡ଼ିକ ଯୁକ୍ତି-ଭିତ୍ତିକ । ଲଙ୍ଗ୍‌ଙ୍କ ଭାଷାରେ ଏହା "Marvelous English, terse pithy, packed with thought, in an age that used endless circumlocutions." ବାକ୍ୟଗୁଡ଼ିକ ସଂକ୍ଷିପ୍ତ କିନ୍ତୁ ଭାବଗୁମ୍ଫିତ । ଏହାର ଆବେଦନ ଅତ୍ୟନ୍ତ ତୀବ୍ର । ଆବଶ୍ୟକ ସ୍ଥଳରେ ଅଳଙ୍କାର ପ୍ରୟୋଗ କରିଥାନ୍ତି; ରୂପକ ଓ ଉପମାଗୁଡ଼ିକ ପାଠକ ମନରେ ଆବଶ୍ୟକୀୟ ଚିନ୍ତା ଉଦ୍ଭାସିତ କରାଇଦେବା ସଙ୍ଗେ ସଙ୍ଗେ ସ୍ଥାୟୀ ରେଖା ଟାଣି-ଦେବାକୁ ସକ୍ଷମ । ତାଙ୍କର ଉକ୍ତି ଆପ୍ତବାକ୍ୟ ସଦୃଶ, ଯେପରି "Some books are to be tested, Others to be swallowed, Some Few to be chewed and Digested."

'ଦ ନିଉ ଆଟଲାଣ୍ଟିସ' (The New Atlantis)କୁ ଏକ ବୈଜ୍ଞାନିକ ଉପନ୍ୟାସ କୁହାଯାଇପାରେ । ମୁରଙ୍କ ୟୁଟୋପିଆ ପରି ଏହା ବେକନ୍‌ଙ୍କର ଏକ କାଳ୍ପନିକ ରାଜ୍ୟ । ଏଠାକାର ବାସିନ୍ଦା ଦାର୍ଶନିକତାକୁ ପରିତ୍ୟାଗକରି ବେକନ୍‌ଙ୍କ ବୈଜ୍ଞାନିକ ପଦ୍ଧତିରେ ପ୍ରକୃତିର ଅନୁଶୀଳନ କରନ୍ତି । ଆଧୁନିକ ବିଜ୍ଞାନ ସମୃଦ୍ଧ ସମାଜର ଆଭାସ ଚିନ୍ତା ଏଥିରୁ ମିଳେ ।

ଏକମାତ୍ର ଚରିତମୂଳକ ରଚନା 'ସପ୍ତମ ହେନେରି' (History of Henry VII)ରେ ଲେଖକଙ୍କ ନିରପେକ୍ଷ ଦୃଷ୍ଟିଭଙ୍ଗୀ ପ୍ରଶଂସାର୍ହ ।

ଅମିତ ଜ୍ଞାନପିପାସା, ଧନ, ପ୍ରଭୁତ୍ୱ ଓ ପ୍ରତିଷ୍ଠାଲିପ୍ସା, ଧର୍ମ ଓ ନୀତି ପ୍ରତି ଲଘୁ ମନୋଭାବ ଭିତରେ ବେକନ୍ ରେନାସାଁର ଜଣେ ଯୁଗମାନବ ଭାବରେ ପ୍ରତିଭାତ ହୁଅନ୍ତି ।

## ରିଚାର୍ଡ଼ ହୁକାର (Richard Hooker : ୧୫୫୪-୧୬୦୦)

ବ୍ୟକ୍ତିତ୍ୱ ଓ ସାଧନା ଦୃଷ୍ଟିରୁ ବେକନଙ୍କ ପ୍ରତିଭାର ବୈପରୀତ୍ୟ ଦେଖୁଁ ହୁକାରଙ୍କ ଭିତରେ । ଜୀବନ ତାଙ୍କର ଉଚ୍ଚାକାଂକ୍ଷାହୀନ, ସରଳ ଓ ନିରାଡ଼ମ୍ବର । ବେକନ୍ ଜଗତର ସମସ୍ତ ଜ୍ଞାନର ଅଧିକାରୀ ହେବାକୁ ଚେଷ୍ଟାକରି- କୌଣସି ଗୋଟିଏ ଦିଗରେ ଅପ୍ରତିଦ୍ୱନ୍ଦ୍ୱୀ ପରାକାଷ୍ଠା ପ୍ରଦର୍ଶନ କରିପାରିନାହାନ୍ତି; କିନ୍ତୁ ହୁକାରଙ୍କର ସାଧନା ଜ୍ଞାନର ଗୋଟିଏ ନିର୍ଦ୍ଦିଷ୍ଟ ମାର୍ଗକୁ ଅନୁସରଣ କରି । ନିଜ ବିଷୟ ସମ୍ବନ୍ଧରେ ସେ ଅସାଧାରଣ ତତ୍ତ୍ୱବିଦ୍ । ଏହି ଦୃଷ୍ଟିରୁ 'ଦି ଲିଜ୍ ଅଫ୍ ଏକ୍ଲେସିଏସ୍ଟିକାଲ ପଲିଟି' ( The Laws of Ecclesiastical Polity ) ଉଲ୍ଲେଖଯୋଗ୍ୟ । ଇଂଲଣ୍ଡ ଚର୍ଚ୍ଚର ଗଠନରୀତି ଓ ପରିଚାଳନା ସମ୍ବନ୍ଧୀୟ ଏଭଳି ତତ୍ତ୍ୱପୂର୍ଣ୍ଣ, ଯୁକ୍ତିନିଷ୍ଠ, ସୁଚିନ୍ତିତ, ବିଶ୍ଳେଷଣାତ୍ମକ ଗ୍ରନ୍ଥ ଆଉ ରଚିତ ହୋଇନାହିଁ । ଏହାର ଶୈଳୀ ଲାଟିନ୍ ପ୍ରଭାବିତ ହେଲେ ମଧ୍ୟ ସ୍ୱକୀୟତାରେ ଭାସ୍ୱର । ବାକ୍ୟଗୁଡ଼ିକ ଦୀର୍ଘ ହେଲେ ମଧ୍ୟ ସୁବିସ୍ତୀର୍ଣ୍ଣ । ବ୍ୟବହାରିକ ଶବ୍ଦ, ଛନ୍ଦ ଓ ଗୀତିମୟତାରେ ଏଗୁଡ଼ିକ ପ୍ରାଣବନ୍ତ ।

**ଅନୂଦିତ ବାଇବେଲ :** ବାଇବେଲର ଇଂରେଜୀ ଅନୁବାଦ ରେନାସାଁ ଗଦ୍ୟ ସାହିତ୍ୟର ଶ୍ରେଷ୍ଠ କୀର୍ତ୍ତି । ରାଜା ପ୍ରଥମ ଜେମ୍ସଙ୍କ ନିର୍ଦ୍ଦେଶ ଓ ପୃଷ୍ଠପୋଷକତାରେ ଚଉବନଜଣ ପଣ୍ଡିତ ଏଥିପାଇଁ ନିଯୁକ୍ତ ହୋଇଥିଲେ । ଏହା ବାଇବେଲର ଏକ ଶୁଦ୍ଧ ଓ ପ୍ରାମାଣିକ ସଂସ୍କରଣ (Authorised Version of the Bible), ପ୍ରକାଶକାଳ ୧୬୧୧ ଖ୍ରୀଷ୍ଟାବ୍ଦ । ଏହାର ପ୍ରକାଶଭଙ୍ଗୀ ଅତ୍ୟନ୍ତ ସରଳ ଓ ସୁବୋଧ । ଅନୁବାଦକମାନେ ପୂର୍ବରୁ ଅନୂଦିତ ବାଇବେଲର ଅତି ପ୍ରାଚୀନ ଶବ୍ଦ ପରିହାର କରି ଏହାକୁ କଥିତ ଭାଷାର ନିକଟବର୍ତ୍ତୀ କରିଥିଲେ । କାବ୍ୟିକ ଛନ୍ଦ ଓ ଚିତ୍ରଧର୍ମୀ ଭାଷା ଏହାର ଅନ୍ୟ ଦୁଇଟି ବୈଶିଷ୍ଟ୍ୟ । ଉନ୍ନତ ଚିନ୍ତା, ଆଦର୍ଶ, ଆବେଗ ଓ କଳ୍ପନା ଯେ ସହଜ, ସରଳ ପ୍ରାଣମୟ ଭାଷାରେ, ଛନ୍ଦର ଦୋଳନ ମଧ୍ୟରେ ପ୍ରକାଶ ପାଇପାରେ, ବାଇବେଲର ଗଦ୍ୟ ତାହାର ପ୍ରମାଣ । ଭାବ ପ୍ରକାଶରେ ଇଂରେଜୀ ଗଦ୍ୟର ଅନ୍ତର୍ନିହିତ ଶକ୍ତି ଏହି ଅନୁବାଦରେ ପ୍ରତିପାଦିତ ହେଲା । ବୁନିଆନଙ୍କ (Bunyan) ଭଳି ପରବର୍ତ୍ତୀ ବହୁ ଗଦ୍ୟଲେଖକଙ୍କ ଉପରେ ଏହାର ପ୍ରଭାବ ପଡ଼ିଥିଲା ।

ବାର୍ଟନ (Burton, ଖ୍ରୀ: ୧୫୭୭-୧୬୪୦)ଙ୍କ 'ଆନାଟୋମି ଅଫ୍ ମେଲାଙ୍କୋଲି' (Anatomy of Melancholy)ରେ ଏକ ସ୍ୱତନ୍ତ୍ର ଗଦ୍ୟରୀତିର ପରିଚୟ ମିଳେ । ଗ୍ରନ୍ଥଟି ବିଷାଦବାଦ ସମ୍ବନ୍ଧୀୟ ଏକ ଆଲୋଚନା । ବିଷାଦବାଦକୁ ଏକ ରୋଗଭାବେ ଗ୍ରହଣ-କରି ଲେଖକ ବହୁ ଅନୁଶୀଳନପୂର୍ବକ ଏହାର ପ୍ରକୃତି, କାରଣ ଓ ନିରାକରଣର ଉପାୟ ନିର୍ଦ୍ଦେଶ କରିଛନ୍ତି । ତାଙ୍କର ଦୃଷ୍ଟିଭଙ୍ଗୀ ଅବୈଜ୍ଞାନିକ, ସିଦ୍ଧାନ୍ତ ହାସ୍ୟକର । ଜଣା ଅଜଣା ଅସଂଖ୍ୟ ଲେଖକଙ୍କର ଉଦ୍ଧୃତି ଓ ମତାମତର ଉଲ୍ଲେଖ ଏହାକୁ ଏକ ଉଦ୍ଭଟ ଗ୍ରନ୍ଥରେ

ପରିଣତ କରିଛି । ଏଥିରୁ ସତେ ଅବା ପ୍ରମାଣିତ ହୁଏ—"Much study is a weariness to flesh".

ପ୍ରବନ୍ଧ ଓ ଅନ୍ୟାନ୍ୟ ଗଦ୍ୟରଚନା ବ୍ୟତୀତ ନାଟକରେ ମଧ୍ୟ ଗଦ୍ୟର କ୍ରମବିକାଶ ଲକ୍ଷ୍ୟକରାଯାଇପାରେ ।

## ପ୍ରାକ୍ ସେକ୍ସପିଅରୀୟ ନାଟକ :

ରେନାସାଁ ପୂର୍ବରୁ ଇଂଲଣ୍ଡରେ ମିରାକଲ ଓ ମରାଲିଟି ଆଦି ଧର୍ମୀୟ ନାଟକ ପ୍ରଚଳିତ ଥିଲା । ରେନାସାଁର ପ୍ରାରମ୍ଭରେ ଇଟାଲୀୟ ନାଟକର ପ୍ରଭାବ ପଡ଼ିଥିଲା । ଜନୈକ ସ୍କୁଲ ଶିକ୍ଷକ ଉଡ଼ଲ୍ (Udall) କେତେକ ଇଟାଲୀୟ ନାଟକ ଅନୁବାଦ କରି ସ୍କୁଲ ଛାତ୍ର-ଛାତ୍ରୀଙ୍କୁ ନେଇ ମଞ୍ଚସ୍ଥ କରାଇଥିଲେ । 'ରାଲଫ୍ ରଏଷ୍ଟାର୍ ଡଏଷ୍ଟାର' (Ralph Roister Doister : ଖ୍ରୀ:୧୫୫୩) ତାଙ୍କର ଉଲ୍ଲେଖଯୋଗ୍ୟ ରଚନା । ଏହା ପାଞ୍ଚ ଅଙ୍କରେ ବିଭକ୍ତ । ଚରିତ୍ରଚିତ୍ରଣ ଓ ଘଟଣା ସଂଯୋଜନରେ ରୋମାନ୍ କମେଡ଼ିର ପ୍ରଭାବ ସ୍ପଷ୍ଟ । ଇଂରେଜୀ ସାହିତ୍ୟରେ ଏହା ପ୍ରଥମ କମେଡ଼ି ।

'ଗାମାର୍ ଗାର୍ଟନସ ନିଡ଼ଲ୍' (Gammer Gurton's Needle) ନାମକ ଅନ୍ୟ ଏକ କମେଡ଼ି ମିଳେ । ୱିଲିୟମ ଷ୍ଟିଭେନସନ୍ (William Stevenson) ଏହାର ଲେଖକ ବୋଲି ଜଣାଯାଇଛି । ଏହା ଏକ ପାରିବାରିକ ହାସ୍ୟରସାତ୍ମକ ନାଟକ । ଶ୍ରମିକ ଶ୍ରେଣୀର ଜୀବନ ଏଥିରେ ଚର୍ଚ୍ଚିତ । ଇଂଲଣ୍ଡର ସାମାଜିକ ଜୀବନ ଚିତ୍ରଣ ଦୃଷ୍ଟିରୁ ଏହା କେତେକ ପରିମାଣରେ ବାସ୍ତବଧର୍ମୀ ।

ସେକ୍‌ଭିଲ୍ (Thomas Sackville) ଓ ନର୍ଟନ (Thomas Norton)ଙ୍କ ଦ୍ୱାରା ଲିଖିତ 'ଗର୍ବୋଡ଼ାକ୍' (Gorboduc) ଇଂରେଜୀ ସାହିତ୍ୟର ପ୍ରଥମ ବିୟୋଗାନ୍ତକ ନାଟକ । ଇଟାଲୀୟ ନାଟ୍ୟକାର ସେନେକାଙ୍କ ପ୍ରଭାବରେ ଏହା ଲିଖିତ । ଇଂଲଣ୍ଡର ପ୍ରାଚୀନ ଇତିହାସରୁ କଥାବସ୍ତୁ ଗ୍ରହଣ କରାଯାଇଛି । ଏହା ପରବର୍ତ୍ତୀ ନାଟ୍ୟକାର ସେକ୍ସପିଅରଙ୍କ 'କିଙ୍ଗ୍ ଲିଅର୍'ର କଥାବସ୍ତୁ ଅନୁରୂପ । ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ ଏହାର ଅନ୍ୟତମ ବୈଶିଷ୍ଟ୍ୟ ।

ରେନାସାଁ ନାଟକ କ୍ରମେ ଇଟାଲୀୟ ପ୍ରଭାବରୁ ମୁକ୍ତହୋଇଛି । ନାଟକରେ ଇଂଲଣ୍ଡ ଜାତୀୟତାବାଦୀ ଦୃଷ୍ଟିଭଙ୍ଗୀ ପ୍ରକାଶପାଇଛି । ଇଟାଲୀୟ ନାଟକରେ ସ୍ଥାନ, କାଳ ଓ ବିଷୟର ଐକ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା । ଏହାଦ୍ୱାରା ଘଟଣାବଳୀ ଗୋଟିଏ ସ୍ଥାନରେ ସୀମାବଦ୍ଧ ହୋଇ ରହୁଥିଲା । ଅଳ୍ପ କେତେ ଘଣ୍ଟା ଭିତରେ ଘଟିଥିବା ଘଟଣା ଏଥିରେ ସ୍ଥାନ ପାଉଥିଲା । ଚରିତ୍ର ସବୁ ଅପରିବର୍ତ୍ତିତ ରହୁଥିଲେ; ଶିଶୁଟିକୁ କିଛି କ୍ଷଣ ପରେ ବୟସ୍କଭାବରେ ଦେଖିବାର ସୁଯୋଗ ନଥିଲା । ଯୁଦ୍ଧ ରକ୍ତପାତ ପରି ଘଟଣା (Vigorous Actions) ରଙ୍ଗମଞ୍ଚ ଉପରେ ପ୍ରଦର୍ଶିତ ନହୋଇ କେବଳ ଘୋଷିତ ହେଉଥିଲା । ଇଂରେଜୀ ନାଟକ

ଏଇ ନିଗଡ଼ ଶୃଙ୍ଖଳରୁ ମୁକ୍ତହେଲା । ଦୃଶ୍ୟପଟର ଦ୍ରୁତ ପରିବର୍ତ୍ତନଦ୍ୱାରା ସ୍ଥାନ ପରିବର୍ତ୍ତନର ସୂଚନା ଦିଆଗଲା । ନାଟ୍ୟକାର ଜୀବନର ସାମଗ୍ରିକ ରୂପ ପରିବେଷଣ କରିବା ପାଇଁ ଅଧିକ ସୁଯୋଗ ପାଇଲେ । ଅକ୍ସଫୋର୍ଡ଼ ଓ କେମ୍ବ୍ରିଜର ବିଦ୍ୱାନ୍‌ମାନେ ନୂତନ ନାଟକ ସୃଷ୍ଟିରେ ମନୋନିବେଶ କଲେ । ଏମାନଙ୍କ ମଧ୍ୟରେ ଜନ ଲିଲି, ଜର୍ଜ ପିଲ୍, ରବାର୍ଟ ଗ୍ରୀନ୍, ଟମାସ୍ ଲଜ୍, ଟମାସ ନ୍ୟାସ୍, କିଡ୍ ଓ ମାର୍ଲୋ ପ୍ରଧାନ । ଏମାନଙ୍କୁ 'ଇଉନିଭରସିଟି ଉଇଟସ' (University Wits) କୁହାଯାଏ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଅକ୍ସଫୋର୍ଡ ବା କେମ୍ବ୍ରିଜ୍‌ରେ ଉଚ୍ଚଶିକ୍ଷା ଲାଭକରିଥିଲେ । ଏମାନଙ୍କ ଲେଖନୀରେ ଇଂରାଜୀ ମିଳନାନ୍ତକ ଓ ବିୟୋଗାନ୍ତକ ନାଟକ ସ୍ତରେ ସ୍ତରେ ଉନ୍ନୀତହୋଇ ସେକ୍ସପିଅରଙ୍କଠାରେ ଚରମ ପର୍ଯ୍ୟାୟରେ ଉପନୀତ ହୋଇଥିଲା । ଏମାନଙ୍କ ମଧ୍ୟରୁ କେତେକ ପ୍ରଭାବଶାଳୀ ଲେଖକଙ୍କ ବ୍ୟକ୍ତିଗତ କୃତି ଓ ବୈଶିଷ୍ଟ୍ୟ ଏଠାରେ ଆଲୋଚ୍ୟ ।

ଲିଲି ( Lyly ) ଖ୍ରୀ: ୧୫୫୪—୧୬୦୬—'ଇଉଫିଉସ୍' ( Euphues ) ଗଦ୍ୟ ରଚନା ପାଇଁ ଲିଲି ସୁପରିଚିତ; ଏଲିଜାବେଥୀୟ ଗଦ୍ୟ ପ୍ରସଙ୍ଗରେ ଏହା ଆଲୋଚିତ ହୋଇଛି । ଉକ୍ତ ଗଦ୍ୟ ରଚନା ବ୍ୟତୀତ ନାଟ୍ୟସାହିତ୍ୟକୁ ମଧ୍ୟ ତାଙ୍କର ବିଶିଷ୍ଟ ଅବଦାନ ରହିଛି । ତାଙ୍କ ନାଟକର ବିଷୟବସ୍ତୁ ପୁରାଣ ବା ପ୍ରାଚୀନ ଲୋକକାହାଣୀରୁ ଗୃହୀତ । ଲେଖକଙ୍କ 'ଏଣ୍ଡିମିୟନ' ( Endimion ) ନାଟକଟି ଅତ୍ୟନ୍ତ ଜନପ୍ରିୟ । ଏହା ପ୍ରେମଭିତ୍ତିକ । ଏଣ୍ଡିମିଅନ ଓ ସିନଥିଆ ( ଚନ୍ଦ୍ରମା ) ପରସ୍ପର ପ୍ରତି ପ୍ରେମାସକ୍ତ । ଏଥିରେ ଟେଲସ ( ପୃଥିବୀ ) ଈର୍ଷାନ୍ୱିତା ହୋଇ ଜଣେ କୁହୁକିନୀ ସାହାଯ୍ୟରେ ଏଣ୍ଡିମିଅନକୁ ଚାଳିଶ ବର୍ଷ ପାଇଁ ମୋହନିଦ୍ରାରେ ଅଚେତନ କରିରଖିଛି । ଅବଶେଷରେ ସିନ୍‌ଥିଆର ଅଧର ସ୍ପର୍ଶରେ ସେ ଚେତନା ଫେରିପାଇଛି । ଇଂଲଣ୍ଡର ରାଣୀ ଏଲିଜାବେଥ୍ ଓ ସ୍କଟଲଣ୍ଡର ରାଣୀ ମେରି ଉଭୟେ ଆର୍ଲ ଅଫ୍ ଲିଇସେସ୍ଟର (Leicestar)ଙ୍କ ପ୍ରତି ପ୍ରେମାସକ୍ତ ହେବା ଘଟଣାରୁ ଲିଲି ଏଇ ନାଟକର ପରିକଳ୍ପନା କରିଥିବା ସମ୍ଭବ । ଏତଦ୍-ବ୍ୟତୀତ 'ଆଲେକ୍‌ଜାଣ୍ଡାର ଆଣ୍ଡ୍ କ୍ୟାମ୍ପସପେ' (Alexander and Campaspe), 'ସ୍ୟାଫୋ ଆଣ୍ଡ୍ ଫାୟୋ' (Sapho and Phao), 'ଦି ଓମାନ୍ ଇନ୍ ଦି ମୁନ୍' (The Woman in the Moon) ତାଙ୍କର ଉଲ୍ଲେଖଯୋଗ୍ୟ ନାଟକ । ରୋମାଣ୍ଟିକ୍ କମେଡ଼ିର ବିକାଶରେ ତାଙ୍କର ଦାନ ଅବଶ୍ୟ ସ୍ୱୀକାର୍ଯ୍ୟ । ନାଟ୍ୟକଳାର ସଫଳପ୍ରୟୋଗ, ବିଶେଷ କରି ନାଟକୀୟ ଐକ୍ୟ ଓ ବୁଦ୍ଧିଦୀପ୍ତ ନାଟକୀୟ ସଂଳାପ ପ୍ରୟୋଗକ୍ଷେତ୍ରରେ ପରବର୍ତ୍ତୀ ନାଟ୍ୟକାରଙ୍କର ସେ ପଥପ୍ରଦର୍ଶକ । "ଇଉଫିଉସ୍"ର ଗଦ୍ୟଶୈଳୀ ତାଙ୍କ ନାଟକକୁ ମଧ୍ୟ ପ୍ରଭାବିତ କରିଥିବାର ଦେଖାଯାଏ । ରାଜପରିବାରର ଚିତ୍ତବିନୋଦନ ପାଇଁ ଅଧିକାଂଶ ନାଟକ ଉଦ୍ଦିଷ୍ଟ ହୋଇଥିବାରୁ ଏଥିରେ ସୁରୁଚିବୋଧର ପରିଚୟ ମିଳେ । ଲିଲିଙ୍କ ନାଟ୍ୟଶୈଳୀର ପ୍ରଭାବ ସେକ୍‌ସପିଅରଙ୍କ ଉପରେ ପଡ଼ିଥିଲା ।

ଗ୍ରୀନ୍ (Robert Greene : ଖ୍ରୀ: ୧୫୫୮-୯୨)ଙ୍କର ଯାଞ୍ଚୋଟି ନାଟକ ମଧ୍ୟରୁ 'ଫ୍ରାୟାର୍ ବେକନ୍ ଆଣ୍ଡ୍ ଫ୍ରାୟାର୍ ବାଙ୍ଗେ' (Friar Bacon and Friar Bungay) ପ୍ରଧାନ । ଏଥିରେ ବେକନ୍ ଓ ବାଙ୍ଗେ ନାମକ ଦୁଇଜଣ ଯାଦୁକରଙ୍କ କଳାନୈପୁଣ୍ୟ ପ୍ରଦର୍ଶନ ପ୍ରସଙ୍ଗ ସହିତ ଗୋଟିଏ ରୋମାଣ୍ଟିକ ପ୍ରେମ କାହାଣୀ ସଂଯୋଜିତ । ଜଣେ ନାୟିକା (ଅରଣ୍ୟାଞ୍ଚଳର ସୁନ୍ଦରୀ ମାର୍ଗାରେଟ୍) ଓ ଦୁଇ ପ୍ରେମିକ (ରାଜପୁତ୍ର ଏଡ଼ୱାର୍ଡ୍ ଓ ଅନୁଚର ଲେସି)ଙ୍କୁ ନେଇ ଏହାର କଥାବସ୍ତୁ ଗଢ଼ିଉଠିଛି । ଏଥିରେ ଗ୍ରାମ୍ୟ ପରିବେଶର ଚିତ୍ର ଲକ୍ଷଣୀୟ ।

ରୋମାଣ୍ଟିକ ପରିବେଶ ସୃଷ୍ଟି କରିବା ବ୍ୟତୀତ କଥାବସ୍ତୁର ବିନ୍ୟାସ ଓ ଚରିତ୍ର-ଚିତ୍ରଣରେ ତାଙ୍କର ପାରଦର୍ଶିତା ପରିଲକ୍ଷିତ ହୁଏ । ନାରୀଚରିତ୍ର ଚିତ୍ରଣରେ ସେ ସେକ୍‌ସପିଅରଙ୍କ ପୂର୍ବସୂରୀ । ତାଙ୍କର ନାରୀଚରିତ୍ର ବାସ୍ତବ ଓ ଜୀବନ୍ତ ମନେହେଲେ ମଧ୍ୟ କେତେକ ମାତ୍ରାରେ ଆଦର୍ଶବାଦୀ ।

ପିଲ୍ (George Peele : ଖ୍ରୀ: ୧୫୫୮-୧୫୯୭) ଖଣ୍ଡିଏ ରୋମାଣ୍ଟିକ୍ କମେଡ଼ି ବ୍ୟତୀତ ରାଜପରିବାରର ଇତିହାସ ଓ ବାଇବେଲ୍‌ର କାହାଣୀ ଭିତ୍ତିକ ନାଟକ ଲେଖିଛନ୍ତି । ତାଙ୍କର ସର୍ବୋତ୍କୃଷ୍ଟ ନାଟକ 'ଦ ଓଲ୍ଡ଼ ୱାଇଭ୍‌ସ ଟେଲ୍' (The Old Wives Tale) । ସମସାମୟିକ ନାଟକ ସମ୍ବନ୍ଧରେ ଏହା ଏକ ବ୍ୟଙ୍ଗ, ବିଦ୍ରୂପ ତଥା ହାସ୍ୟ-ରସାତ୍ମକ ରଚନା । ସାହିତ୍ୟର ବ୍ୟଙ୍ଗ ବିଦ୍ରୂପାତ୍ମକ ସମାଲୋଚନା ଦୃଷ୍ଟିରୁ ଏହା ପ୍ରଥମ କୃତି । ସେ ନାଟକରେ କାବ୍ୟିକଶୈଳୀ, ବିଶେଷକରି ଅମିତ୍ରାକ୍ଷର ଛନ୍ଦର ସାର୍ଥକ ପ୍ରୟୋଗ କରିଛନ୍ତି ।

କିଡ଼୍ (Thomas Kyd : ଖ୍ରୀ: ୧୫୫୮-୧୫୯୪) 'ସ୍ପେନିସ ଟ୍ରାଜେଡ଼ି' (Spanish Tragedy)ର ଲେଖକଭାବରେ ସୁପରିଚିତ । ଏଲିଜାବେଥ୍ ଯୁଗର ରୋମାଣ୍ଟିକ ନାଟକ ତଥା ଟ୍ରାଜେଡ଼ି ରଚନା କ୍ଷେତ୍ରରେ ଏହା ପ୍ରେରଣାର ଉତ୍ସଭାବରେ କାର୍ଯ୍ୟ କରିଥିଲା । ତାଙ୍କ ନାଟକରେ ଇଟାଲୀୟ ନାଟ୍ୟକାର ସେନେକାଙ୍କ ପ୍ରଭାବ ସୁସ୍ପଷ୍ଟ । ଏହାର ପରିବେଶରେ ପ୍ରତିହିଂସା, ଷଡ଼ଯନ୍ତ୍ର, ହତ୍ୟା ଓ ରକ୍ତପାତ ଏକ ମାମୁଲି ବିଷୟ । ଅଶରୀରୀ ଆତ୍ମାର ଆବିର୍ଭାବ, ଗୀତଧର୍ମୀ ସ୍ୱଗତୋକ୍ତି, ଦୀର୍ଘ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷଣ ଏହାର ଅନ୍ୟ କେତୋଟି ବୈଶିଷ୍ଟ୍ୟ ।

ସେନାପତି ହିରୋନିମୋଙ୍କ ପୁତ୍ର ହୋରାସିଓ ସ୍ପେନୀୟ ରାଜକନ୍ୟା ବେଲିମ୍‌ପେରିଆ (Bellimperia)ଙ୍କ ପ୍ରଣୟପ୍ରାର୍ଥୀ ହୋଇ ପ୍ରତିପକ୍ଷଦ୍ୱାରା ନିହତ ହୁଅନ୍ତି । ସେନାପତି ହିରୋନିମୋ ଓ ବେଲିମ୍‌ପେରିଆ ଏହାର ପ୍ରତିଶୋଧ ଗ୍ରହିଛନ୍ତି । ହିରୋନିମୋ ପାଗଳପ୍ରାୟ ହୋଇଯାଆନ୍ତି; ପାଗଳର ଅଭିନୟ କରନ୍ତି-ମଧ୍ୟ । ହୋରାସିଓଙ୍କ ହତ୍ୟାକାରୀସହ ବେଲିମ୍-ପେରିଆଙ୍କ ବିବାହ ଆୟୋଜିତ ହୁଏ । ହିରୋନିମୋ ଏହି ଉପଲକ୍ଷ୍ୟେ ଏକ ଟ୍ରାଜେଡ଼ି

ଅଭିନୟର ଆୟୋଜନ କରନ୍ତି । ଏଇ ଅବସରରେ ହତ୍ୟାର ସୂଅଳୁଟେ । ଶିବାହ ଉତ୍ସବର ପ୍ରତ୍ୟେକ ବ୍ୟକ୍ତି ହୁଏତ ନିହତ ହୁଏ ବା ଆତ୍ମହତ୍ୟା କରେ ।

ଏଲିଜାବେଥ ଯୁଗର ହତ୍ୟା, ବିଭୀଷିକାମୟ ଅତିନାଟକ (Melodrama) ରଚନାର ସୂତ୍ରପାତ ଏହିଠାରୁହିଁ ହୋଇଥିଲା । ସେକ୍ସପିଅରଙ୍କ ହାମଲେଟ୍ ଉପରେ ଏହାର ପ୍ରଭାବ ଲକ୍ଷ୍ୟକରାଯାଏ ।

ମାର୍ଲୋ (Christopher Marlowe, ଖ୍ରୀ: ୧୫୬୪-୧୫୯୩) 'ଇଉନିଭର୍ସିଟି ଉଇଟ୍ସ'ଙ୍କ ମଧ୍ୟରେ ମୁଖ୍ୟସ୍ଥାନ ଅଧିକାର କରନ୍ତି ମାର୍ଲୋ । ସେ କାଣ୍ଟରବେରୀର ଜଣେ ଚର୍ମଶିଳ୍ପୀଙ୍କ ସନ୍ତାନ । ଉଣେଇଶ ବର୍ଷ ବୟସରେ ସେ କେମ୍ବ୍ରିଜରୁ ସ୍ନାତକ ଉପାଧି ଲାଭ-କରନ୍ତି; ତାପରେ ଲଣ୍ଡନର ରଙ୍ଗମଞ୍ଚ ସମ୍ପର୍କରେ ଆସନ୍ତି । ସେ ଥିଲେ ନିରୀଶ୍ୱରବାଦୀ । ଅଭିନେତାର ଜୀବନ ଭିତରେ ତାଙ୍କର ଶୃଙ୍ଖଳିକ ସ୍ଖଳନ ଦେଖାଦେଇଥିଲା; ସେ ଘୃଣ୍ୟ ଜୀବନ ଯାପନ କରିବାକୁ ଲାଗିଲେ । ଏଇ ପରିସ୍ଥିତିରେ ଅଣତିରିଶ ବର୍ଷ ବୟସରେ ସେ ଛୁରିକାଘାତରେ ନିହତ ହୋଇଥିଲେ । ଜୀବନର ଏଇ ସ୍ୱଳ୍ପ ପରିସର ଭିତରେ ତାଙ୍କର ଅସାଧାରଣ ନାଟ୍ୟପ୍ରତିଭାର ପରିଚୟ ମିଳିଥିଲା । ସେ ଅନ୍ତତଃ ଚାରୋଟି ଅତ୍ୟନ୍ତ ପ୍ରଭାବଶାଳୀ ଟ୍ରାଜେଡ଼ି ରଚନା କରିଯାଇଛନ୍ତି—(୧) ଟାମ୍ବୁରଲେନ୍ (Tamburlaine), (୨) ଡକ୍ଟର ଫଷ୍ଟାସ୍ (Doctor Faustus), (୩) ଦି ଜିଉ ଅଫ୍ ମାଲ୍ଟା (The Jew of Malta), (୪) ଦ୍ୱିତୀୟ ଏଡ଼ଓ୍ୱାର୍ଡ଼ (Edward II) ।

ଟାମ୍ବୁରଲେନ୍‌ରେ ତାର୍ତାରୀୟର ତୈମୁରଲଙ୍ଗଙ୍କ ଦୁଃସାହସିକତା, ରକ୍ତପିପାସା ଓ ଦିଗ୍‌ବିଜୟ ବର୍ଣ୍ଣିତ । ନାଟକଟି ଦୁଇଭାଗରେ ବିଭକ୍ତ । ପ୍ରଥମଭାଗରେ ମେଷପାଳକ ଜୀବନରୁ ତୈମୁରଲଙ୍ଗର ଅଭ୍ୟୁଦୟ ଓ ଦ୍ୱିତୀୟ ଭାଗରେ ତାର ଦିଗ୍‌ବିଜୟ ତଥା ସମଗ୍ର ଏସିଆ ଉପରେ ତାର ଆଧିପତ୍ୟ ପ୍ରଦର୍ଶିତ । ମାର୍ଲୋଙ୍କ ଆଖିରେ ତୈମୁରଲଙ୍ଗ ଜଣେ ଅତିମାନବ, ଶକ୍ତିଧର ପୁରୁଷ, ଜଣେ ବିଜୟୀ ବୀର ଯାହାର ରଥ ପରାଜିତ ରାଜାମାନେ ଟାଣନ୍ତି; ସମ୍ମୁଖରେ ରଖାଯାଏ ଜଣେ ପିଞ୍ଜରାବଦ୍ଧ ସମ୍ରାଟ । ନିଜ ପତ୍ନୀର ମୃତ୍ୟୁଶଯ୍ୟା ପାଖରେ ଠିଆହୋଇ ସେ ଦେବତାକୁ ସାବଧାନବାଣୀ ଶୁଣାଇପାରେ । ରେନାସାଁ ମାନବର ଅମିତ ଶକ୍ତି ଅଧିକାର କରିବାର ଅଭିଳାଷ ଏଥିରୁ ସୂଚିତ ।

ରେନାସାଁର ଜ୍ଞାନପିପାସାକୁ ଉପଜୀବ୍ୟ କରି ପରବର୍ତ୍ତୀ ନାଟକ ଡକ୍ଟର ଫଷ୍ଟାସ୍ ଲିଖିତ । ମଣିଷର ବିଦ୍ୟା ଓ ଜ୍ଞାନ ଫଷ୍ଟାସ୍ ପାଇଁ ଯଥେଷ୍ଟ ନୁହେଁ । ସେ ଏଭଳି ବିଦ୍ୟା ଚାହେଁ ଯାହାଦ୍ୱାରା ମଣିଷ ନିଜର ସମସ୍ତ କାମନା ଓ ପ୍ରବୃତ୍ତି ଚରିତାର୍ଥ କରିପାରିବ । ତାନ୍ତ୍ରିକ ବିଦ୍ୟା ସାଧନରେ ସେ ବ୍ରତୀ ହୋଇଛି ।

ଏଥିପାଇଁ ସେ ସଇତାନ (ଲୁସିଫାର) ସଙ୍ଗେ ଚୁକ୍ତିବଦ୍ଧ । ସଇତାନ୍‌ର ଅନୁଚରଙ୍କ ସାହାଯ୍ୟରେ ଚବିଶ ବର୍ଷ ପାଇଁ ମନର ସମସ୍ତ ଖିଆଲକୁ କାର୍ଯ୍ୟରେ ପରିଣତ କରିପାରିଛି ।

ସେ ଶୁଣିବା ମାନେ ସୁଦୂର ଅତୀତ ଗର୍ଭରୁ ଟ୍ରୟ ଯୁବକର ରୂପସୀ ହେଲେନ୍ ତା ଆଖିଆଗରେ ଛିଡ଼ାହୋଇଛି । କାମନାର ପରିପୂର୍ତ୍ତିରେ ଆନନ୍ଦ ଉଦ୍‌ବେଳିତ ଫଷ୍ଟାସ୍ କହିଉଠିଛି ।

> Was this the face that launch'd a thousand ships
> And burnt the topless towers of Ilium ?
> Sweet Helen, make me immortal with a kiss.

କିନ୍ତୁ ଠିକ୍ ଚବିଶ ବର୍ଷ ପରେ ଗୋଟିଏ ମଧ୍ୟରାତ୍ରିରେ ସଇତାନ ଚୁକ୍ତି ଅନୁଯାୟୀ ଫଷ୍ଟାସର ଅସ୍ମାଟି ଦାବୀ କରିଛି । ସେଇ ମୁହୂର୍ତ୍ତରେ ଫଷ୍ଟାସର ମାର୍ମିକ ବେଦନା, ଅସ୍ଥିରତା ଓ ମାନସିକ ଦ୍ୱନ୍ଦ୍ୱ ପ୍ରାଣମୟୀ ଭାଷାରେ ପ୍ରକାଶପାଇଛି ।

ଧନଲିପ୍‌ସାକୁ କେନ୍ଦ୍ର କରି 'ଦ ଜିଉ ଅଫ୍ ମାଲ୍‌ଟା' (The Jew of Malta) ଟ୍ରାଜେଡି ଲିଖିତ । ଏହା ସେକ୍‌ସପିଅରଙ୍କ 'ଦ ମର୍ଚ୍ଚେଣ୍ଟ ଅଫ୍ ଭେନିସ'ର ସାଇଲକ୍ ଚରିତ୍ରଟି ସ୍ମରଣ କରାଇଦିଏ । ବିଷୟ ବିନ୍ୟାସ ଓ ଶୈଳୀଦୃଷ୍ଟିରୁ 'ଏଡ଼ୱାର୍ଡ଼ ଦ ସେକେଣ୍ଡ' (Edward II) ଅନ୍ୟତମ ସାର୍ଥକ ସୃଷ୍ଟି । ଏହା ସେକ୍‌ସପିଅରଙ୍କ ଐତିହାସିକ ନାଟକ ରଚନାର ପ୍ରେରଣାର ଉତ୍ସ ହୋଇଥାଇପାରେ । ସେକ୍‌ସପିଅରଙ୍କ ଟ୍ରାଜେଡି ପରି ଏହା ମଧ୍ୟ ପାଞ୍ଚ ଅଙ୍କରେ ବିଭକ୍ତ । ନାଟକରେ ବାସ୍ତବ ଜୀବନ ରୂପାୟନର ଉଦ୍ୟମ ଏହାର ଅନ୍ୟତମ ବୈଶିଷ୍ଟ୍ୟ ।

ନାଟକର ବିକାଶ କ୍ଷେତ୍ରରେ ମାର୍ଲୋଙ୍କର କେତୋଟି ଅବଦାନ ଉଲ୍ଲେଖଯୋଗ୍ୟ । ତାଙ୍କଠାରୁ ନାଟକୀୟ କଥାବସ୍ତୁ, ଚରିତ୍ର, ଦୃଶ୍ୟ ଓ ଅଙ୍କ ବିଭାଜନ ସୁସମ୍ବନ୍ଧିତ ରୂପରେ ପ୍ରକାଶ ପାଇଲା । ନାଟକରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ ତାଙ୍କର ଏକ ବିଶିଷ୍ଟଦାନ । ଚରିତ୍ରଗୁଡ଼ିକ ଜୀବନ୍ତ ଓ ବାସ୍ତବ । ନାଟକର ଭାଷା କାବ୍ୟିକ ସୌନ୍ଦର୍ଯ୍ୟରେ ମଣ୍ଡିତ । ଏହା ଆବେଗମୟୀ ଓ ଚରିତ୍ରଧର୍ମୀ । ତାଙ୍କ ନାଟକରେ କେତେକ ତ୍ରୁଟି ମଧ୍ୟ ଦେଖାଯାଏ । ଏଥିରେ ହାସ୍ୟରସର ଅଭାବ ଅନୁଭୂତ ହୁଏ । ନାରୀ ଚରିତ୍ରଚିତ୍ରଣ କ୍ଷେତ୍ରରେ ପାରଦର୍ଶିତା ପରିଲକ୍ଷିତ ହୁଏନାହିଁ । ଗୌଣ ଚରିତ୍ରଗୁଡ଼ିକ ଅବହେଳିତ । ଏସବୁ ସତ୍ତ୍ୱେ ତାଙ୍କର ନାଟ୍ୟପ୍ରତିଭା ସେକ୍‌ସପିଅରୀୟ ପ୍ରତିଭାଠାରୁ ବିଶେଷ ନ୍ୟୂନ ନୁହେଁ ।

ଏହିପରିଭାବରେ ଇଉନିଭର୍ସିଟି ଉଇଟ୍‌ସମାନେ କମେଡ଼ି ଓ ଟ୍ରାଜେଡ଼ିର ଉଭୟ ଆଙ୍ଗିକ ଓ ଆତ୍ମିକ ବିକାଶକ୍ଷେତ୍ରରେ ନିଜନିଜର ବିଶିଷ୍ଟ ଅବଦାନ ଦେଇ ସେକ୍‌ସପିଅରଙ୍କ ପଥ ପରିଷ୍କାର କରିଥିଲେ ।

## ସେକ୍‌ସପିଅର୍ (William Shakespeare : ଖ୍ରୀ: ୧୫୬୪-୧୬୧୬)

ଷୋଡ଼ଶ ଶତାବ୍ଦୀରୁ ଏ ପର୍ଯ୍ୟନ୍ତ ସେକ୍‌ସପିଅର ନାଟ୍ୟଜଗତରେ ଏକ ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଭା । ସମସାମୟିକ ନାଟ୍ୟକାରଙ୍କ ପାଇଁ ସେ ଥିଲେ ଏକ ବିସ୍ମୟ, "The applause, delight and wonder of our Stage" । ଏହି କାଳଜୟୀ ଉଜ୍ଜ୍ୱଳ ପ୍ରତିଭା

ନିକଟରେ ନିଜର ଖଙ୍ଗଡ଼ା ଉପଲବ୍ଧି କରି ଭିକ୍ଟୋରିଆନ୍ ଯୁଗର ବିଶିଷ୍ଟ ସମାଲୋଚକ ମାଥ୍ୟୁ ଆର୍ନୋଲଡ୍ ଯଥାର୍ଥରେ କହିଥିଲେ—

Others abide our question, thou art free
Out topping knowldge.

ଏହି ବିସ୍ମୟକର ପ୍ରତିଭାର ଉନ୍ମେଷ ଓ ବିକାଶ ମଧ୍ୟ ଅନୁରୂପ ବିସ୍ମୟକର ।

ଷ୍ଟ୍ରାଟଫୋର୍ଡ ନିକଟବର୍ତ୍ତୀ ଏକ ପଲ୍ଲୀଗ୍ରାମ ସେକ୍‌ସପିଅରଙ୍କ ଜନ୍ମସ୍ଥାନ । ପିତା ଜନ୍ ସେକ୍‌ସପିଅର ଜଣେ ସାମାନ୍ୟ ଚମଡ଼ା-ଶିଳ୍ପୀ; ଖାଦ୍ୟଶସ୍ୟର ବ୍ୟବସାୟ ମଧ୍ୟ କରନ୍ତି । ନିକଟସ୍ଥ ଗ୍ରାମାର ସ୍କୁଲରେ ସମ୍ଭବତଃ ସେ କିଛି ଶିକ୍ଷା ଲାଭ କରିଥିଲେ । ପିତାଙ୍କ ବ୍ୟବସାୟରେ ତାଙ୍କୁ ସାହାଯ୍ୟ କରିବାକୁ ହୋଇଥିଲା । ଅଠର ବର୍ଷ ବୟସରେ ବିବାହ । ସ୍ତ୍ରୀ ଏନ୍ ହାଥାୱେ (Anne Hathaway) ତାଙ୍କଠାରୁ ବୟସରେ ଆଠବର୍ଷ ବଡ଼ । ତିନୋଟି ସନ୍ତାନର ଜନକ ହୁଅନ୍ତି । ଅଭାବର ତାଡ଼ନାରେ କିବା ଋଣଗ୍ରସ୍ତ ହୁଅନ୍ତି; ପରିଶୋଧ କରି ନ ପାରି ଜେଲ ଭୋଗନ୍ତି । ଦୁର୍ଯୋଗ ଏକା ହୋଇ ଆସେନା; ଟମାସ୍ ଲୁସି ନାମକ ଜଣେ ଧନିକଙ୍କ ଉଦ୍ୟାନରୁ ହରିଣ ଚୋରି ଅଭିଯୋଗରେ ବେତମାଡ଼ ଓ କାରାଦଣ୍ଡ ସଜା ମିଳେ । ଏଥିରୁ ତ୍ରାହି ପାଇବାପାଇଁ ସମ୍ଭବତଃ ଖ୍ରୀ: ୧୫୮୭ରେ ସେ ଲଣ୍ଡନ ପଳାୟନ କରିଥିଲେ ।

ଲଣ୍ଡନ ରହଣିର ପ୍ରଥମ ଛ ବର୍ଷ ତାଙ୍କୁ ଦୁର୍ଭାଗ୍ୟ ବିରୁଦ୍ଧରେ ଏକପ୍ରକାର ସଂଗ୍ରାମ କରିବାକୁ ପଡ଼ିଥିଲା । ରଙ୍ଗଶାଳାର ବାହାରେ ବିଶିଷ୍ଟ ଦର୍ଶକଙ୍କ ଘୋଡ଼ା ଜଗିଆଳି ହୁଅନ୍ତି । ଏଇଥିରୁ ତାଙ୍କର ନାଟ୍ୟଜଗତ ସହିତ ସମ୍ପର୍କ । କ୍ରମେ ଅଭିନୟରେ ଅଂଶ ଗ୍ରହଣ କରନ୍ତି; ନାଟକ ଲେଖନ୍ତି । ଅବଶେଷରେ ପାଆନ୍ତି ଶ୍ରେଷ୍ଠ ନାଟ୍ୟକାରର ସମ୍ମାନ । ରାଣୀ ଏଲିଜାବେଥ୍ ଓ ପ୍ରଥମ ଜେମସ୍‌ଙ୍କ ରାଜକୀୟ ଉତ୍ସବରେ ସେକ୍‌ସପିଅରଙ୍କ ନାଟକ ବିଶେଷ ସମାଦୃତ ହେଉଥିଲା । ଲେଖକ ସମ୍ମାନ ଓ ପ୍ରତିପତ୍ତି ସହ ବିପୁଳ ସମ୍ପଦର ଅଧିକାରୀ ହେଲେ । ନିଜ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡରେ ନିଉପ୍ଲେସ୍ ନାମକ ବିଶାଳ ବାସଭବନ କ୍ରୟକରି ଅନ୍ତିମ ସମୟ ସେଇଠାରେ ହିଁ କଟାଇଥିଲେ । ୧୬୧୬ ଖ୍ରୀଷ୍ଟାବ୍ଦରେ ୫୨ ବର୍ଷ ବୟସରେ ତାଙ୍କର ଜୀବନ ନାଟକ ସାଙ୍ଗହେଲା ।

## ସେକ୍‌ସପିଅରଙ୍କ ରଚନାସମ୍ଭାର

ପ୍ରାୟ ସଇଁତିରିଶଟି ନାଟକ, ଏକଶହ ଚଉବନଟି ସନେଟ ଓ କେତୋଟି ଖଣ୍ଡକାବ୍ୟ ଭିତରେ ସେକ୍‌ସପିଅରଙ୍କ ଶିଳ୍ପମାନସ ଆତ୍ମପ୍ରକାଶ କରିଛି । ସମ୍ଭବତଃ ନିଜ ନାଟକର କଳା ମୂଲ୍ୟ ସମ୍ବନ୍ଧରେ ସେ ସଚେତନ ନଥିଲେ । ତାଙ୍କ ମୃତ୍ୟୁର ପ୍ରାୟ ପାଞ୍ଚବର୍ଷ ପରେ ଖ୍ରୀ: ୧୬୨୩ରେ 'ପେରିକ୍ଲିସ' ବ୍ୟତୀତ ଅନ୍ୟ ଛତିଶଟି ନାଟକ ଦୁଇଜଣ ଅଭିନେତାଙ୍କ ଉଦ୍ୟମରେ ପ୍ରକାଶିତ ହୋଇଥିଲା ।

ନାଟକ ଓ କବିତାରେ କଳାତ୍ମକ ବିକାଶ ତଥା ଲେଖକଙ୍କ ମାନସିକ ଅବସ୍ଥାର ବିବର୍ତ୍ତନ ଦୃଷ୍ଟିରୁ ତାହାଙ୍କ ରଚନାକ୍ରମର ଚାରୋଟି ପର୍ଯ୍ୟାୟ ନିର୍ଦ୍ଦେଶ କରାଯାଇଥାଏ—

**ପ୍ରଥମ ପର୍ଯ୍ୟାୟ** ( ଖ୍ରୀ: ୧୫୮୭ ରୁ ଖ୍ରୀ: ୧୫୯୫ ) : ଏହି ପର୍ଯ୍ୟାୟରେ ଲେଖକ ନାଟକ ରଚନା କ୍ଷେତ୍ରରେ ପରୀକ୍ଷା ନିରୀକ୍ଷା ଚଳାଇଥିବାର ଦେଖାଯାଏ । ତାରୁଣ୍ୟର ଉଦ୍ଦାମ ଉଚ୍ଛ୍ୱାସ, କଳ୍ପନାବିଳାସ ଓ ଭାଷା ପ୍ରୟୋଗରେ ସଂଯମହୀନତା ନାଟକଗୁଡ଼ିକରେ ସୁସ୍ପଷ୍ଟ— Venus and Adonais, Rape of Lucrece: ୧୫୯୪, Titus Andronicus, Henry VI (three parts) : ୧୫୯୦-୯୨, Love's Labour's Lost : ୧୫୯୦, Comedy of Errors, Two Gentlemen of Verona : ୧୫୯୨-୯୬, Richard III : ୧୫୯୩, Richard II, King John : ୧୫୯୪-୯୫ ।

**ଦ୍ୱିତୀୟ ପର୍ଯ୍ୟାୟ** (୧୫୯୫-୧୬୦୦) : ରଚନା ତଥା ଜୀବନକ୍ଷେତ୍ରରେ ଏହା ଦ୍ରୁତ ବିକାଶର ପର୍ଯ୍ୟାୟ । ବିଷୟବସ୍ତୁର ପ୍ରଯୋଜନା, ଶିଳ୍ପନୈପୁଣ୍ୟ ତଥା ଚରିତ୍ର ଅଙ୍କନରେ ଅଧିକ ନୈପୁଣ୍ୟ ଏହି ସମୟର ନାଟକରେ ପରିଦୃଷ୍ଟ । ପ୍ରାୟ ଆଠଟି ନାଟକ ଏହି ପର୍ଯ୍ୟାୟରେ ଲିଖିତ—Romeo and Juliet, Midsummer Night's Dream : ୧୫୯୫, Merchant of Venice, Henry IV (Second Part), Merry Wives of Windsor : ୧୫୯୭, Much Ado About Nothing : ୧୫୯୮, As You Like It, Henry V : ୧୫୯୯ ।

**ତୃତୀୟ ପର୍ଯ୍ୟାୟ** (୧୬୦୦-୧୬୦୭) : ଲେଖକଙ୍କର ଏହି ପର୍ଯ୍ୟାୟରେ ଜୀବନ ତଥା ରଚନାକ୍ଷେତ୍ରରେ ଏକ ଗଭୀର ବିଷାଦବୋଧ ଲକ୍ଷ୍ୟକରାଯାଏ । କଳାର ଚରମ ଉତ୍କର୍ଷ ମଧ୍ୟ ଏହି ପର୍ଯ୍ୟାୟରେ ସାଧିତ । ବ୍ୟକ୍ତିଗତ ଜୀବନରେ ଏହି ବିଷଣ୍ଣତାର କାରଣ ଜଣାଯାଏ ନାହିଁ । ଏହା କେତେକଙ୍କ ପ୍ରିୟ ବନ୍ଧୁଙ୍କ ବିପର୍ଯ୍ୟୟର ପ୍ରତିକ୍ରିୟା ହୋଇପାରେ । ଏହି ସମୟରେ ରଚିତ ସନେଟ୍‌ରେ ମଧ୍ୟ ବିଷଣ୍ଣତାର ସ୍ୱର ଫୁଟିଉଠିଛି । ତାଙ୍କର ସୁ-ବିଖ୍ୟାତ ଟ୍ରାଜେଡ଼ିଗୁଡ଼ିକ ଏହି ପର୍ଯ୍ୟାୟର—Twelfth Night, Hamlet, King Lear, Macbeth, Othello ଓ Julius Caesar ।

**ଚତୁର୍ଥ ପର୍ଯ୍ୟାୟ** (ଖ୍ରୀ: ୧୬୦୮-୧୬୧୧)—ଏତେବେଳକୁ ଲେଖକ ବିଷଣ୍ଣତାରୁ ମୁକ୍ତ । ଝଡ଼ ପରବର୍ତ୍ତୀ ଶାନ୍ତ ପରିବେଶ ଲେଖାମାନଙ୍କରେ ରୂପପାଇଛି; କିନ୍ତୁ କଳାଦୃଷ୍ଟିରୁ ଏହି ପର୍ଯ୍ୟାୟର ନାଟକ ଅପେକ୍ଷାକୃତ ନିକୃଷ୍ଟତର—ସତେ ଅବା ଲଘୁଚେତା ଦର୍ଶକଙ୍କ ପାଇଁ ଉଦ୍ଦିଷ୍ଟ ! ନାଟ୍ୟରଚନାକ୍ଷେତ୍ରରେ ଏହା ପୁଣି ଲେଖକଙ୍କର ଗୋଟିଏ ପରୀକ୍ଷା ନିରୀକ୍ଷାର ପରିଚୟ ମନେହୁଏ । ପ୍ରାୟ ଛଅଟି ନାଟକ ଏହି ପର୍ଯ୍ୟାୟର—Corio lanus, Pericles : ୧୬୦୮, Cymbeline : ୧୬୦୯, Winter's Tale : ୧୬୧୦-୧୧, The Tempest : ୧୬୧୧, Henry VIII (ଅସମାପ୍ତ) ।

ଉପରୋକ୍ତ ନାଟକ ମଧ୍ୟରୁ ଅଳ୍ପକେତୋଟି ସେକ୍ସପିଅରଙ୍କଦ୍ୱାରା ସମ୍ପୂର୍ଣ୍ଣଭାବେ ଲିଖିତ ନୁହେଁ ବୋଲି ସନ୍ଦେହ ପ୍ରକାଶ କରାଯାଇଥାଏ—Titus Adronicus, Henry VI, Richard III, Taming of the Shrew, Timon, Pericles, Henry VIII, Edward III ଓ Two Noble Kinsman । ଏହି ସନ୍ଦେହାଚ୍ଛନ୍ନ ନାଟକଗୁଡ଼ିକ ସେ ନାଟ୍ୟକାର ମାର୍ଲୋ ବା ଫ୍ଲେଚରଙ୍କ ସହି ସମ୍ପୂର୍ଣ୍ଣ କରିଥିବାର ଅନୁମାନ କରାଯାଏ ।

ସେକ୍ସପିଅରଙ୍କ ଅଧିକାଂଶ ନାଟକର କଥାବସ୍ତୁ ଇତିହାସ, ଅତିକଥା (legend) ବା କାହାଣୀରୁ ଆହୃତ । ଐତିହାସିକ ଓ ଅତିକଥାମୂଳକ ବିଷୟବସ୍ତୁ ପାଇଁ ସେ ହଲିନସେଡ଼ଙ୍କ କ୍ରନିକଲ୍ସ ଅଫ ସ୍କଟଲ୍ୟାଣ୍ଡ ଆଣ୍ଡ ଆୟାର୍ଲାଣ୍ଡ ଓ ନର୍ଥ (North)ଙ୍କ ଅନୂଦିତ ପ୍ଲୁଟାର୍କଙ୍କ 'ଲାଇଭସ୍' ଉପରେ ମୁଖ୍ୟତଃ ନିର୍ଭର କରିଛନ୍ତି । ପ୍ରଚଳିତ ଚିତ୍ତାକର୍ଷକ କାହାଣୀ, ବିଶେଷକରି ଇଟାଲୀୟ କାହାଣୀ ତାଙ୍କର କେତୋଟି ନାଟକର ଭିତ୍ତି । 'ଲଭସ୍ ଲେବର୍ସ୍ ଲଷ୍ଟ', 'ମେରି ଓ୍ୱାଇଭସ୍ ଅଫ ଓ୍ୱିଣ୍ଡସର' ଓ 'ଦି ଟେମ୍ପେଷ୍ଟ' ପରି ଅଳ୍ପ କେତୋଟି ନାଟକର କଥାବସ୍ତୁ ଲେଖକଙ୍କର କପୋଳକଳ୍ପିତ ।

## କେତୋଟି ସାଧାରଣ ବୈଶିଷ୍ଟ୍ୟ :

ସମସାମୟିକ ନାଟ୍ୟ ପ୍ରତିଭାଠାରୁ ସେକ୍ସପିଅରୀୟ ପ୍ରତିଭାର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ । ସେକ୍ସପିଅରଙ୍କ ନାଟକର ପ୍ରଧାନ ଆକର୍ଷଣ ସେଗୁଡ଼ିକର ବିଷୟ-ବୈଚିତ୍ର୍ୟ । ସେ ପ୍ରାୟ ସଇଁତିରିଶଟି ନାଟକ ଲେଖିଥିଲେ ମଧ୍ୟ କୌଣସି ଦୁଇଟି ନାଟକ ଭିତରେ ବିଷୟଗତ ସାମଞ୍ଜସ୍ୟ ଦେଖାଯାଏ ନାହିଁ । ପ୍ରତ୍ୟେକଟିର ଆବେଦନ ମଧ୍ୟ ସ୍ୱତନ୍ତ୍ର । ଉଭୟ ଟ୍ରାଜେଡ଼ି ଓ କମେଡ଼ି ରଚନାରେ ତାଙ୍କର ଯେପରି ସାଫଲ୍ୟ, ଉଭୟ ନାରୀ ଓ ପୁରୁଷ ଚରିତ୍ର ଚିତ୍ରଣରେ ସେହିପରି ଯାଦୁକରୀ । ଇତିହାସରୁ କଙ୍କାଳ ସଂଗ୍ରହ କରି ସେ ଯେଉଁ ଚରିତ୍ର ଚିତ୍ରଣ କରିଥାନ୍ତି, ସେଗୁଡ଼ିକ ମଧ୍ୟ ଜୀବନ୍ତ ଓ ବାସ୍ତବ । ସାଧାରଣ ଜୀବନରେ ଆମେ ଯେଉଁ ବ୍ୟକ୍ତିବିଶେଷଙ୍କ ସମ୍ପର୍କରେ ଆସୁ, ସେମାନଙ୍କ ସମ୍ବନ୍ଧରେ ବହୁତ କଥା ଜାଣିଥିଲେ ବି ଆହୁରି ଅନେକ କଥା ଅଜଣା ରହିଯାଏ । ସେକ୍ସପିଅରଙ୍କ ନାଟକୀୟ ଚରିତ୍ର ସମ୍ବନ୍ଧରେ ପାଠକ ମନରେ ସେହିପରି ଅତୃପ୍ତ କୌତୂହଳ ରହିଯାଏ । ଏ ଦୃଷ୍ଟିରୁ ଚରିତ୍ରଗୁଡ଼ିକ ବାସ୍ତବଧର୍ମୀ । ନାଟକର ମୁଖ୍ୟ ଚରିତ୍ର ସାଧାରଣତଃ ସମ୍ଭ୍ରାନ୍ତ ଶ୍ରେଣୀର ହେଲେ ମଧ୍ୟ ଗୌଣ ଚରିତ୍ରଗୁଡ଼ିକ ଅବହେଳିତ ନୁହେଁ । ଅଭିନେତାଙ୍କର ଅତିଅଭିନୟକୁ ସେ ଗ୍ରହଣ କରିପାରିନାହାନ୍ତି । ଆବଶ୍ୟକ ନଥିବା ସ୍ଥଳେ ବିଦୂଷକର ବାରମ୍ବାର ଆବିର୍ଭାବ ତାଙ୍କୁ ଅସହ୍ୟ ବୋଧହୋଇଛି । ବିଦୂଷକକୁ ସେ ନାଟକର ଏକ ଅପରିହାର୍ଯ୍ୟ ଚରିତ୍ର ଭାବରେ ରୂପ ଦେଇଛନ୍ତି । ସେହିପରି ଭୂତ, ଡାହାଣୀ ଓ ପରୀ ଇତ୍ୟାଦି ଅତିପ୍ରାକୃତ ବିଷୟକୁ ପରମ୍ପରାର ଅନୁସରଣରେ ଗ୍ରହଣ କରିଥିଲେ ମଧ୍ୟ ତାହାକୁ ଅତ୍ୟନ୍ତ ବିଶ୍ୱାସଯୋଗ୍ୟ କରି ପରିବେଷଣ କରିଛନ୍ତି । ଆବଶ୍ୟକୀୟ ଦୃଶ୍ୟପଟର ଅଭାବ

ତାଙ୍କ ପକ୍ଷରେ ନାଟ୍ୟରସର ପରିବେଷଣରେ ପ୍ରତିବନ୍ଧକ ହୋଇନାହିଁ । ଗତିଶୀଳ ବିଶଦ-ବର୍ଣ୍ଣନା ମଧ୍ୟରେ ସେ ଆବଶ୍ୟକୀୟ ଦୃଶ୍ୟ ଦର୍ଶକ ମନରେ ଆଙ୍କିଦେଇପାରନ୍ତି ।

ସେକ୍ସପିଅରଙ୍କ ଅନ୍ୟତମ ବୈଶିଷ୍ଟ୍ୟ ତାଙ୍କର ନୈର୍ବ୍ୟକ୍ତିକତା (impersonality) । ବିଭିନ୍ନ ଚରିତ୍ର ଭିତରେ ଲେଖକ ନିଜକୁ ଏପରି ହଜାଇଦେଇଛନ୍ତି ଯେ ତାଙ୍କୁ ଚିହ୍ନି ବାହାର କରିବା ସମ୍ଭବ ନୁହେଁ । ବିଭିନ୍ନ ଚରିତ୍ରର ବକ୍ତବ୍ୟ ଭିତରେ ସେକ୍ସପିଅରଙ୍କ ବକ୍ତବ୍ୟ କେଉଁଟି ଜଣାପଡ଼େନାହିଁ । ସେକ୍ସପିଅରଙ୍କ ବ୍ୟକ୍ତିଗତ ଜୀବନ ବା ସମାଜ ଓ ଜୀବନ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ସମ୍ବନ୍ଧରେ ନାଟକରୁ ନିର୍ଦ୍ଦିଷ୍ଟ ସୂଚନା ମିଳେନାହିଁ । ଧର୍ମଯାଜକଙ୍କ ପରି ସେ କୌଣସି ଆଦର୍ଶ ବା ମତବାଦର ପ୍ରଖ୍ୟାପନ କରିନାହାନ୍ତି । ସତ୍-ଅସତ୍, ଶ୍ରେଷ୍ଠବଡ଼ ସମସ୍ତ ଚରିତ୍ର ପ୍ରତି ଏକପ୍ରକାର ଅସାମାନ୍ୟ ସମବେଦନାଶୀଳ ଓ ଉଦାର ଦୃଷ୍ଟିଭଙ୍ଗୀ ତାଙ୍କୁ ଏକ ସାର୍ଥକ ଶିଳ୍ପୀରେ ପରିଣତ କରିଛି । କେବଳ 'ଦି ଟେମ୍ପେଷ୍ଟ' ବ୍ୟତୀତ ସ୍ଥାନ ଓ କାଳଗତ ଐକ୍ୟ ମଧ୍ୟ ଅନ୍ୟ ନାଟକରେ ସୁରକ୍ଷିତ ନୁହେଁ । ବିଷୟ ବିନ୍ୟାସ, ଚରିତ୍ର ଚିତ୍ରଣ, ସଂଳାପ ଯୋଜନା ବ୍ୟତୀତ ଭାଷା ଓ ଶୈଳୀ କ୍ଷେତ୍ରରେ ମଧ୍ୟ ସେ ଅନନୁକରଣୀୟ । ତାଙ୍କର ପ୍ରକାଶଭଙ୍ଗୀ ବିଷୟରେ ମାଥ୍ୟୁ ଆର୍ନଲଡ୍ କହନ୍ତି "Shakespeare is the king of poetic rhythm and style, as well as the king of the realm of thought in his dazzling prose and exuberant verse. Shakespeare has succeeded in giving us the most varied, the most harmonious verse, which has ever sounded upon the human ear since the Greeks."

## ଟ୍ରାଜେଡ଼ି :

ମାନବ ହୃଦୟରେ କରୁଣ ରସର ଏକ ସ୍ୱତନ୍ତ୍ର ପ୍ରଭାବ ରହିଛି । ସାର୍ଥକ କଳାତ୍ମକ ସୃଷ୍ଟି ଭିତରେ ତାହା ଅଧିକ ପ୍ରଭାବଶାଳୀ ହୋଇଥାଏ । ଏହି ଦୃଷ୍ଟିରୁ ସେକ୍ସପିଅର ଜଣେ ସଫଳ ଶିଳ୍ପୀ । ସାମାଜିକର ହୃଦୟରେ କମେଡ଼ି ଅପେକ୍ଷା ତାଙ୍କ ଟ୍ରାଜେଡ଼ିର ଆବେଦନ ଅଧିକ ତୀବ୍ର । ରୋମିଓ ଆଣ୍ଡ ଜୁଲିଏଟ୍, ହ୍ୟାମଲେଟ୍, ଅଥେଲୋ, ମ୍ୟାକ୍‌ବେଥ୍, କିଂ ଲିଅର୍, କରିଓଲାନସ୍, ଆଣ୍ଟୋନି ଆଣ୍ଡ୍ କ୍ଲିଓପାଟ୍ରା, ଟାଇମନ୍ ଅଫ୍ ଏଥେନ୍ସ' ଆଦି ସେକ୍ସପିଅରଙ୍କ କେତୋଟି ସାର୍ଥକ ଟ୍ରାଜେଡ଼ି । ତନ୍ମଧ୍ୟରୁ ହ୍ୟାମ୍‌ଲେଟ୍, ଅଥେଲୋ, ମ୍ୟାକବେଥ୍ ଓ କିଙ୍ଗ୍ ଲିଅର ଏହି ଚାରୋଟି ଟ୍ରାଜେଡ଼ିରେ ତାଙ୍କର ନାଟ୍ୟପ୍ରତିଭାର ଚରମ ପ୍ରକାଶ ଘଟିଛି । କଥାବସ୍ତୁ ଦୃଷ୍ଟିରୁ ପ୍ରତ୍ୟେକ ନାଟକର ସ୍ୱାତନ୍ତ୍ର୍ୟ ଥିଲେ ମଧ୍ୟ ପ୍ରୟୋଜନା ଦୃଷ୍ଟିରୁ ଟ୍ରାଜେଡ଼ିଗୁଡ଼ିକ ମଧ୍ୟରେ କେତେକ ସାଧାରଣ ଲକ୍ଷଣ ଦେଖାଯାଏ ।

ସେକ୍ସପିଅରଙ୍କ ଟ୍ରାଜେଡ଼ିର ନାୟକ ସାଧାରଣତଃ ରାଜା, ରାଜପୁତ୍ର ବା ଉଚ୍ଚ ପଦ-ମର୍ଯ୍ୟାଦାର ଅଧିକାରୀ । ସାଧାରଣ ସ୍ତରର ମଣିଷ ତାଙ୍କ ଟ୍ରାଜେଡ଼ିର ନାୟକ ନାୟିକା

ହେବାର ଦେଖାଯାଏ ନାହିଁ । ହ୍ୟାମଲେଟ୍ ଜଣେ ରାଜପୁତ୍ର, ଅଥେଲୋ ଜଣେ ସେନାପତି, ମ୍ୟାକ୍‌ବେଥ ଜଣେ ଯୋଦ୍ଧା, ବୀର ଓ ନିଜର ଶୌର୍ଯ୍ୟବଳରେ ସିଂହାସନର ଅଧିକାରୀ; ଲିଅର ଜଣେ ସମ୍ରାଟ, ରୋମିଓ ଓ ଜୁଲିଏଟ୍ ଉଚ୍ଚବଂଶଜ ନାୟକ ନାୟିକା ଉଚ୍ଚପଦାଧିଷ୍ଠ ହେଲେ ମଧ୍ୟ ସେ ଯେ ସମସ୍ତ ସଦ୍‌ଗୁଣର ଆଧାର ହେବ ତା ନୁହେଁ, ସେ ଆଦର୍ଶବାଦୀ ହୋଇନପାରେ । ମ୍ୟାକ୍‌ବେଥଙ୍କ ପରି ଜଣେ ଖଳପ୍ରକୃତିର ଲୋକ ମଧ୍ୟ ତାଙ୍କ ନାଟକର-ନାୟକ । ନିଜ ନିଜ କ୍ଷେତ୍ରରେ ଏମାନେ ଅସାଧାରଣ ଶକ୍ତି ଓ ଦକ୍ଷତାର ପରିଚୟ ଦେଲେ ମଧ୍ୟ ତାହାଙ୍କ ଚରିତ୍ରରେ ଗୋଟିଏ ଗୋଟିଏ ମାରାତ୍ମକ ଦୋଷ (fatal flaw) ରହିଥାଏ । ଏହି ଦୋଷହିଁ ତାହାଙ୍କ ଅଧଃପତନର କାରଣ ହୁଏ । ଦ୍ୱିଧାବୋଧ ହ୍ୟାମଲେଟ୍‌ଙ୍କ ଚରିତ୍ରର ଦୋଷ; ସମୟ ଅନୁଯାୟୀ ସିଦ୍ଧାନ୍ତ ଗ୍ରହଣ କରିବା ତାଙ୍କ ପକ୍ଷେ ସମ୍ଭବ ନୁହେ । ମ୍ୟାକ୍‌ବେଥଙ୍କର ଦୋଷ ତାହାଙ୍କର ଉଚ୍ଚାଭିଳାଷ । ଅଥେଲୋଙ୍କର ଅତ୍ୟଧିକ ସରଳ ପ୍ରକୃତି ଓ ଲିଅର ଚରିତ୍ରରେ ଅସ୍ଥିରତା (too rash) ସେମାନଙ୍କ ଚରିତ୍ରର ଦୋଷ । ଏହି ଦୋଷପାଇଁ ସେମାନେ ବିରାଟ ବିପଦର ସମ୍ମୁଖୀନ ହୁଅନ୍ତି, ଅକଥନୀୟ ଦୁଃଖ ଓ ଯନ୍ତ୍ରଣା ଭୋଗକରନ୍ତି, ଅବଶେଷରେ ମୃତ୍ୟୁ ବରଣକରନ୍ତି । ସେକ୍‌ସପିଅରଙ୍କ ନାଟକରେ ନାୟକର ମୃତ୍ୟୁ ଅବଶ୍ୟମ୍ଭାବୀ । ଟ୍ରାଜେଡ଼ିର ହତ୍ୟା ବା ମୃତ୍ୟୁ ଦର୍ଶକ ମନରେ ଜୀବନ ସମ୍ବନ୍ଧରେ ନୈରାଶ୍ୟଭାବ ଉଦ୍ରେକ କରେନାହିଁ; ଉକ୍ତ ଘାତ, ସଂଘର୍ଷ ଓ ପରାଜୟ ଭିତରେ ମାନବ-ଜୀବନର ମହନୀୟତା ପରିସ୍ଫୁଟ ହୋଇଥାଏ ।

ଟ୍ରାଜେଡ଼ିର ପ୍ରବଳ ଦ୍ୱନ୍ଦ୍ୱ ଉଭୟ ଅନ୍ତର୍ଜଗତ ଓ ବହିର୍ଜଗତରେ ଦେଖାଦିଏ । ପ୍ରତିକୂଳ ପରିବେଶ ଓ ସମସ୍ୟାର ସମ୍ମୁଖୀନ ହୋଇ ନାୟକ ପ୍ରବଳ ଅନ୍ତର୍ଦ୍ୱନ୍ଦ୍ୱର ଅସହ୍ୟ ଯନ୍ତ୍ରଣା ଅନୁଭବ କରେ । ପ୍ରତିକୂଳ ଶକ୍ତି ସହ ମଧ୍ୟ ସେ ସଂଘର୍ଷଲିପ୍ତ ହୁଏ । ଅନ୍ତର୍ଦ୍ୱନ୍ଦ୍ୱର ସାର୍ଥକ ପରିବେଷଣ ଟ୍ରାଜେଡ଼ିଗୁଡ଼ିକୁ ମନସ୍ତାତ୍ତ୍ୱିକ ନାଟକରେ ପରିଣତ କରିଛି । ରୋମିଓ ଆଣ୍ଡ୍ ଜୁଲିଏଟ୍ ଓ ଦ୍ୱିତୀୟ ରିଚାର୍ଡ଼ ନାଟକରେ ଏ ସଂଘର୍ଷ ବାହ୍ୟ, କିନ୍ତୁ ହ୍ୟାମ୍‌ଲେଟ୍, ମ୍ୟାକବେଥ୍, ଅଥେଲୋ, କିଂଲିଆର୍ ଭଳି ନାଟକରେ ଉଭୟ ବାହ୍ୟ ଓ ଅନ୍ତର୍ଦ୍ୱନ୍ଦ୍ୱ ଦେଖାଯାଏ । ହ୍ୟାମଲେଟ୍ ତାଙ୍କର ପ୍ରତିପକ୍ଷ କ୍ଳଡ଼ିୟସ୍‌ଙ୍କୁ ହତ୍ୟାକରିବେ; କିନ୍ତୁ ତା ପୂର୍ବରୁ ପ୍ରବଳ ଅନ୍ତର୍ଦ୍ୱନ୍ଦ୍ୱରେ ସେ ଅସ୍ଥିର, ପାଗଳପ୍ରାୟ । ସରଳବିଶ୍ୱାସୀ ଅଥେଲୋ ଥରେ ଡେସ୍‌ଡ଼ିମୋନାକୁ ଅବିଶ୍ୱାସ କରିବା ପରେ ତାଙ୍କର ଅନ୍ତର୍ଦ୍ୱନ୍ଦ୍ୱ ଅବର୍ଣ୍ଣନୀୟ ।

ଟ୍ରାଜେଡିରେ ଆକସ୍ମିକ ଘଟଣା (chance or accident)ର ଗୁରୁତ୍ୱ କ୍ଷୀଣ ନୁହେଁ । କଥାବସ୍ତୁର ମୋଡ଼ ପରିବର୍ତ୍ତନରେ ଏଗୁଡ଼ିକ ସହାୟକ ହୋଇଥାଏ । ଜଳଦସ୍ୟୁଙ୍କ ଆକ୍ରମଣରେ ହ୍ୟାମଲେଟ୍ ଡେନ୍‌ମାର୍କ ଫେରିଆସିନଥିଲେ କଥାବସ୍ତୁର ଗତି ଅନ୍ୟପ୍ରକାର ହୁଅନ୍ତା । ସେହିପରି ଡେସ୍‌ଡ଼ିମୋନା ଅଲକ୍ଷ୍ୟରେ ରୁମାଲଟି ଖସାଇପକାଇବାରୁ ତାହା ଦାରୁଣ ଦୁର୍ଯୋଗର କାରଣ ହେଲା । ରୋମିଓ ଠିକ୍ ସମୟରେ ଫ୍ରାଇଆର୍‌ର ସନ୍ଦେଶ ପାଇଲେନାହିଁ, ଦୁର୍ଯୋଗକୁ ଜୁଲିଏଟଙ୍କର ନିଦ ଟିକିଏ ଆଗରୁ ଭାଙ୍ଗିଲାନାହିଁ । କେତୋଟି ମାତ୍ର ମୁହୂର୍ତ୍ତ

ପୂର୍ବରୁ ପହଞ୍ଚିଥିଲେ ଏଡ୍‌ଗାର କର୍‌ଡ୍ଡେଲିଆର ଜୀବନ ରକ୍ଷା କରିପାରିଥାନ୍ତେ । ନାଟକର ପରିବର୍ତ୍ତନ ଭିତରେ ଏଭଳି ଆକସ୍ମିକ ଘଟଣା ଅସ୍ୱାଭାବିକ ମନେହୁଏନାହିଁ ।

ପରମ୍ପରାର ପ୍ରଭାବରେ ସେକ୍‌ସପିଅର ନିଜ ଟ୍ରାଜେଡ଼ିରେ ଅତି-ପ୍ରାକୃତ ଚରିତ୍ରର ଅବତାରଣା କରିଛନ୍ତି । 'ମ୍ୟାକ୍‌ବେଥ୍'ର ଡାକିନୀଗଣ, 'ହ୍ୟାମଲେଟ୍'ରେ ନାୟକ ହ୍ୟାମଲେଟ୍‌ର ପିତାଙ୍କ ପ୍ରେତ, ଜୁଲିଆସ୍ ସିଜର୍‌ରେ ବ୍ରୁଟାସ ସମ୍ମୁଖରେ ସିଜରଙ୍କ ପ୍ରେତ ଏଠାରେ ଉଲ୍ଲେଖଯୋଗ୍ୟ । ନାୟକ ସହ ଏହି ଅତିଭୌତିକ ଚରିତ୍ରଗୁଡ଼ିକର ସମ୍ପର୍କ ନିବିଡ଼ । ଏହା ମାଧ୍ୟମରେ ଦର୍ଶକ ନାୟକର ମାନସିକ ଅବସ୍ଥା ଓ କଳ୍ପନାଜଳ୍ପନା ସମ୍ବନ୍ଧରେ ଏକ ସ୍ପଷ୍ଟ ଚିତ୍ର ପାଏ ।

ସେକ୍‌ସପିଅର ସମସ୍ତ ଟ୍ରାଜେଡ଼ିରେ କାବ୍ୟିକନ୍ୟାୟ (Poetic Justice)ର ନିୟମ ମାନିନାହାନ୍ତି । ତଥାପି ସେ କେବେ ଅସତ୍ୟ ଓ ଅନ୍ୟାୟକୁ ଗୌରବମଣ୍ଡିତ କରି-ନାହାନ୍ତି । ଇଆଗୋ, ମ୍ୟାକ୍‌ବେଥ, ଲେଡ଼ି ମ୍ୟାକ୍‌ବେଥ ପରି ଚରିତ୍ର ସେମାନଙ୍କ ଦୁଷ୍କର୍ମ ପାଇଁ ପ୍ରାୟଶ୍ଚିତ୍ତ କରିଛନ୍ତି ।

ଦର୍ଶକ ମନରେ ଏହି ନାଟକଗୁଡ଼ିକ ତୀବ୍ର ଭୟର ସଞ୍ଚାର କରିବା ସଙ୍ଗେ ସଙ୍ଗେ ସମବେଦନା (pity and fear) ସୃଷ୍ଟି କରିଥାଏ । ଆରିଷ୍ଟଟଲଙ୍କ ନାଟ୍ୟତତ୍ତ୍ୱ ଅନୁଯାୟୀ ଏହାଦ୍ୱାରା ଦର୍ଶକ ମନରେ ପୁଞ୍ଜୀଭୂତ ହିଂସା, ଦ୍ୱେଷ, କ୍ରୋଧ ଭଳି ଆବେଗର ଶୋଧନୀକରଣ ହୋଇଥାଏ ।

ସେକ୍‌ସପିଅରଙ୍କ ନାଟକର ସାଧାରଣ ବୈଶିଷ୍ଟ୍ୟ ମଧ୍ୟ ଟ୍ରାଜେଡ଼ିକ୍ଷେତ୍ରରେ ପ୍ରଯୋଜ୍ୟ ।

## କମେଡ଼ିର ବୈଶିଷ୍ଟ୍ୟ :

ସେକ୍‌ସପିଅରଙ୍କ କମେଡ଼ିକୁ ସାଧାରଣତଃ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଏ—(୧) ଆଦି, (୨) ମଧ୍ୟ ଓ (୩) ଶେଷ । ପ୍ରଥମ ପର୍ଯ୍ୟାୟର ନାଟକର ବୈଶିଷ୍ଟ୍ୟ ହାସ୍ୟ-ଉଦ୍ରେକକାରୀ, ଚତୁର୍ଯ୍ୟପୂର୍ଣ୍ଣ ସଲାପ ଓ ଶବ୍ଦାଳଙ୍କାରର ପ୍ରୟୋଗ । ଦ୍ୱିତୀୟ ପର୍ଯ୍ୟାୟରେ ଉପଯୁକ୍ତ ଚରିତ୍ର ଓ ପରିବେଶ ସୃଷ୍ଟି ଉପରେ ଗୁରୁତ୍ୱ ଦିଆଯାଇଛି । ଶେଷ ପର୍ଯ୍ୟାୟର କମେଡ଼ିଗୁଡ଼ିକ ଭାବଗମ୍ଭୀର; ପୂର୍ବର ହାସ୍ୟଉଚ୍ଛଳ ପରିବେଶ ଏଥିରେ ଦେଖାଯାଏନାହିଁ । 'ଲଭସ ଲେବର୍‌ସ ଲଷ୍ଟ' ପ୍ରଥମ ପର୍ଯ୍ୟାୟର; 'ଦି ଟ୍ୱେଲଫଥ୍ ନାଇଟ୍' ଓ 'ଆଜ ୟୁ ଲାଇକ୍ ଇଟ୍' ଦ୍ୱିତୀୟ ପର୍ଯ୍ୟାୟର ଓ ଟେମ୍ପେଷ୍ଟ ତୃତୀୟ ପର୍ଯ୍ୟାୟର; ନାଟକର ଉଦାହରଣ ।

'ଆଜ୍ ୟୁ ଲାଇକ୍ ଇଟ୍', 'ଦି ଟ୍ୱେଲ୍‌ଫଥ ନାଇଟ' ଓ 'ଏ ମିଡ଼୍ ସାମର ନାଇଟ୍‌ସ ଡ୍ରିମ୍' ପରି କମେଡ଼ିରେ ଲେଖକ ଦର୍ଶକଙ୍କୁ ଏକ ରୋମାଣ୍ଟିକ ପରିବେଶ ମଧ୍ୟକୁ ନେଇଯାଆନ୍ତି । ସମସ୍ୟାକଣ୍ଟକିତ, ଅଶ୍ରୁଜର୍ଜ୍ଜରିତ ଦୁନିଆଁ ଠାରୁ ଏହା ବହୁ ଦୂରରେ । 'ଆଜ ୟୁ ଲାଇକ୍ ଇଟ୍'ର ନାଟକୀୟ କଥାବସ୍ତୁ ଆର୍ଡ଼େନ ଜଙ୍ଗଲରେ ଅନୁଷ୍ଠିତ ହୁଏ । 'ଦି ଟ୍ୱେଲ୍‌ଫଥ୍ ନାଇଟ୍'ର

ପୃଷ୍ଠଭୂମି ସମୁଦ୍ରତୀରର ଏକ ସହର । ପରିବେଶ ରୋମାଣ୍ଟିକ୍ ହେଲେ ମଧ୍ୟ ଏହି ନାଟକ-ଗୁଡ଼ିକ ଜୀବନଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ନୁହେଁ । ଏଥିରେ କଳ୍ପନା ଓ ବାସ୍ତବତାର ମଧୁର ସମନ୍ୱୟ ଦେଖିବାକୁ ମିଳେ । କମେଡ଼ିଗୁଡ଼ିକରେ ନାରୀଚରିତ୍ରର ଭୂମିକା ଗୁରୁତ୍ୱପୂର୍ଣ୍ଣ । କୁମାରୀ କନ୍ୟାଠାରୁ ପ୍ରୌଢ଼ା ପର୍ଯ୍ୟନ୍ତ ବିଭିନ୍ନ ବୟସର ତଥା ବିଭିନ୍ନ ଶ୍ରେଣୀର ନାରୀଚରିତ୍ର ତାଙ୍କ ନାଟକରେ ଚିତ୍ରିତ । ନାରୀଚରିତ୍ରର ଏଭଳି ପ୍ରାଧାନ୍ୟ ହେତୁ ରସ୍କିନ୍ ଥରେ କହିଥିଲେ ଯେ— ସେକ୍ସପିଅରଙ୍କ ନାଟକରେ କେବଳ ନାୟିକା; ନାୟକ ନାହାନ୍ତି ।

ସେକ୍ସପିଅରଙ୍କ ହାସ୍ୟରସ ବିମଳ ଆନନ୍ଦ ପ୍ରଦାନକରେ । ଏଥିରେ ବ୍ୟଙ୍ଗ ବିଦ୍ରୂପ ପ୍ରାୟ ନଥାଏ । ମଣିଷର ଦୋଷ ଦୁର୍ବଳତା ତାଙ୍କର ହାସ୍ୟରସର ଆଧାର; କିନ୍ତୁ ଏ କ୍ଷେତ୍ରରେ ଲେଖକଙ୍କ ଦୃଷ୍ଟିଭଙ୍ଗୀ ଉଦାର ଓ ସହନଶୀଳ । ନାୟକ ନାୟିକାଙ୍କୁ ଗୁରୁତ୍ୱପୂର୍ଣ୍ଣ ସଳାପରେ ସେ ଯେପରି ଆମୋଦ ଦିଅନ୍ତି, ସେହିପରି ବିଦୂଷକ ଚରିତ୍ର ମାଧ୍ୟମରେ କୌତୁକ ସୃଷ୍ଟି କରନ୍ତି । ରୋମାଣ୍ଟିକ କବିତାଗୁଡ଼ିକରେ ପ୍ରେମର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅନେକ ସମୟରେ ବିଦୂଷକ ଓ ନିର୍ବୋଧଙ୍କ ସାକ୍ଷାତ ମିଳେ; କିନ୍ତୁ ମୂର୍ଖତାର ଆବରଣ ତଳୁ ଏମାନେ ବୁଦ୍ଧି ଓ ଜ୍ଞାନର ପରିପ୍ରକାଶ ଘଟାଇଥାନ୍ତି ।

ସଙ୍ଗୀତ ମଧ୍ୟ ନାଟକର ପରିବେଶ ସୃଷ୍ଟିକରିବାରେ ସାହାଯ୍ୟ କରେ; ନାଟକକୁ ସଜୀବ ଓ ସତେଜ କରେ । ସେକ୍ସପିଅରଙ୍କ କମେଡ଼ି ସମ୍ବନ୍ଧରେ F. S. Boas କହନ୍ତି—

"They are comedies in the first sense, not merely collections of mirth provoking incidents but pictures of life in its sunnier aspects."

## ସେକ୍ସପିଅରଙ୍କ ସମସାମୟିକ ଓ ପରବର୍ତ୍ତୀ ନାଟ୍ୟକାର

ସେକ୍ସପିଅରଙ୍କ ପରେ ପରେ ଏଲିଜାବେଥୀୟ ନାଟକରେ ଅଧଃପତନ ଦେଖାଦେଲା । ସେକ୍ସପିଅରଙ୍କ ଭଳି ଉଚ୍ଚକୋଟୀର ପ୍ରତିଭାର ଅଭ୍ୟୁଦୟ ଆଉ ହୋଇନଥିଲା; କ୍ରମେ ଦର୍ଶକଙ୍କ ରୁଚି ମଧ୍ୟ ବଦଳିଯାଇଥିଲା । ସେକ୍ସପିଅରଙ୍କ ଦର୍ଶକ ଅତ୍ୟନ୍ତ ସରଳ ମନୋଭଙ୍ଗୀ ନେଇ ଇତିହାସ ଓ ଉଚ୍ଚସ୍ତରୀୟ ସମାଜଜୀବନର ଚିତ୍ତାକର୍ଷକ କାହାଣୀର ନାଟ୍ୟରୂପ ଦେଖି ମୁଗ୍ଧ ହେଉଥିଲା । ମଣିଷର ଆବେଗ, ଅନ୍ତର୍ଦ୍ୱନ୍ଦ୍ୱ, ପାପପୁଣ୍ୟର ସଂଘର୍ଷ, ସର୍ବୋପରି ଜୀବନର ଗଭୀର ଦାର୍ଶନିକ ଅବବୋଧ ପାଇଁ ଯଥେଷ୍ଟ ଥିଲା । କିନ୍ତୁ କ୍ରମେ ନାଟକ ଆଳସ୍ୟପରାୟଣ ଅଭିଜାତଶ୍ରେଣୀର ଚିତ୍ତବିନୋଦନର ମାଧ୍ୟମ ହୋଇ-ଉଠିଲା । ରୁଚିଗର୍ହିତ ଶିହରଣ କେବଳ ସେମାନଙ୍କର କାମ୍ୟ ହୋଇପଡ଼ିଥିଲା । ବେନ୍ ଜନସନ୍ଙ୍କ ବ୍ୟତୀତ ତତ୍କାଳୀନ ଅନ୍ୟ ନାଟ୍ୟକାରଙ୍କ କୃତିରେ ନାଟକର ଏହି ଅଧଃପତନର ଧାରା ଲକ୍ଷ୍ୟକରାଯାଏ ।

ବ୍ୟୁମଣ୍ଟ ଓ ଫ୍ଲେଚର୍ (Beaumont and Fletcher) ଜୀବନର ଗଭୀର ମୂଲ୍ୟବୋଧ ଛାଡ଼ି କେବଳ ଶିଷ୍ଟବର୍ଗଙ୍କୁ ନାଟକର ଭିତ୍ତିକଲେ । ଓ୍ୱେବ୍‌ଷ୍ଟର୍ ନିଜ ଟ୍ରାଜେଡ଼ିରେ ହତ୍ୟା ଓ ରକ୍ତପାତକୁ ଉପଜୀବ୍ୟ କଲେ । ମାସିଞ୍ଜର୍ ଓ ଫୋର୍ଡ଼ (Ford) ଆଉ ପାଦେ ତଳକୁ ଖସି ରୁଚିଗର୍ହିତ ଅଶୋଭନୀୟ ଉଚ୍ଛୃଙ୍ଖଳ ଜୀବନ ଚିତ୍ର ପରିବେଷଣରେ ତତ୍ପର ହେଲେ । ଚରିତ୍ର ଓ ପରିବେଶରେ ଅନୈତିକତା ପ୍ରାଧାନ୍ୟ ପାଇଲା । ଏହାକୁ ଲକ୍ଷ୍ୟକରି 'Come Leave the Lothed Stage' ନାମକ ଏକ ସମ୍ବୋଧ ଗୀତରେ ବେନ୍ ଜନ୍‌ସନ୍ ଏ ପ୍ରକାର ଅବାଞ୍ଛିତ ରଙ୍ଗମଞ୍ଚ ପ୍ରତି କଟାକ୍ଷପାତ କରିଛନ୍ତି । ଏହାହିଁ ମୋଟାମୋଟି ତତ୍କାଳୀନ ନାଟକର ଅବସ୍ଥା ।

ବେନ୍ ଜନ୍‌ସନ୍ ( Ben Jonson : ୧୫୭୨-୧୬୩୭) : ସେକ୍‌ସପିଅରଙ୍କ ସମକକ୍ଷ ନ ହେଲେ ମଧ୍ୟ ବେନ୍ ଜନସନ୍ ଜଣେ ଉଚ୍ଚକୋଟୀର ନାଟ୍ୟକାର । ଖ୍ରୀ: ୧୫୭୨ ବା ୭୩ରେ ତାଙ୍କର ଜନ୍ମ । ତାଙ୍କ ଜନ୍ମର ମାସକ ପୂର୍ବରୁ ପିତାଙ୍କର ମୃତ୍ୟୁ ଘଟିଥିଲା । ଓ୍ୱେଷ୍ଟମିନଷ୍ଟାର୍ ସ୍କୁଲରେ କିଛିକାଳ ଅଧ୍ୟୟନ କରିଥିଲେ; କିନ୍ତୁ ପରେପରେ ଉପପିତାଙ୍କ ଇଟାତିଆରି କାମରେ ଯୋଗଦେବାକୁ ପଡ଼ିଥିଲା । କିଛିକାଳ ସୈନ୍ୟବାହିନୀରେ କାର୍ଯ୍ୟ କରିଥିଲେ । ଖ୍ରୀ: ୧୫୯୪ରେ ବିବାହ । ଖ୍ରୀ: ୧୫୯୭ ବେଳକୁ ଅଭିନୟ ଓ ନାଟ୍ୟରଚନାରେ ଆତ୍ମନିବେଶ କରିଥିଲେ । 'ଦି ଆଇଲ୍ ଅଫ୍ ଡଗ୍‌ସ୍' (The Isle of Dogs) ନାମକ ବ୍ୟଙ୍ଗାତ୍ମକ ରଚନାରେ ଅଂଶ ଗ୍ରହଣ ଓ 'ଇଷ୍ଟ୍ ଓ୍ୱାର୍ଡ଼ ହୋ' (East Ward Hoe) ନାଟକ ପାଇଁ କାରାବରଣ କରିଥିଲେ । ଜଣେ ସହକର୍ମୀ ଅଭିନେତାଙ୍କୁ ହତ୍ୟାକରି ଧର୍ମଯାଜକର ପୁତ୍ର ହିସାବରେ ଫାଶୀ ମୁହଁରୁ ଅଳ୍ପକେ ରକ୍ଷାପାଇଥିଲେ । ଦୁର୍ଯୋଗକୁ ସେ ସାହିତ୍ୟିକ ହିସାବରେ ପାଉଥିବା ରାଜକୀୟ ପୃଷ୍ଠପୋଷକତାରୁ ମଧ୍ୟ ବଞ୍ଚିତ ହେଲେ । କିନ୍ତୁ ଦୁର୍ବଳ ସ୍ୱାସ୍ଥ୍ୟ, ପ୍ରତିପକ୍ଷଙ୍କ କଟୁ ସମାଲୋଚନା ଓ ଆର୍ଥିକ ଋଣଭାର ସତ୍ତ୍ୱେ ସେ ତାଙ୍କର ସାହିତ୍ୟସାଧନା ଅବ୍ୟାହତ ରଖିଥିଲେ ।

ବେନ୍ ଜନସନ୍‌ଙ୍କ ନାଟ୍ୟାଦର୍ଶ ଓ ଦୃଷ୍ଟିଭଙ୍ଗୀ ସେକ୍‌ସପିଅରୀୟ ପ୍ରତିଭାର ବିପରୀତମୁଖୀ । ସେକ୍‌ସପିଅର ନାଟ୍ୟ ରଚନା କ୍ଷେତ୍ରରେ ପ୍ରଚଳିତ ଧାରାର ଅନୁସରଣ କରିଥିଲେ; କିନ୍ତୁ ବେନ୍ ଜନସନ୍ ଗ୍ରୀକ୍ ଲାଟିନ ନାଟ୍ୟତତ୍ତ୍ୱ ଅନୁଶୀଳନ କରି ଅତି ଦୃଢ଼ତାର ସହିତ ପ୍ରଚଳିତ ଧାରାର ବିରୋଧ କରିଥିଲେ । ପ୍ରଚଳିତ ରଙ୍ଗମଞ୍ଚର ଅବସ୍ଥା ଓ ଦର୍ଶକଙ୍କ ରୁଚି ସହିତ ସେକ୍‌ସପିଅର ସାଲିସ୍ କରିଥିବାବେଳେ ବେନ୍ ଜନ୍‌ସନ୍ ସେଥି ପ୍ରତି ଭ୍ରୂକ୍ଷେପ କରିନଥିଲେ । ସେକ୍‌ସପିଅର ନାଟକର କଥାବସ୍ତୁ ପାଇଁ ଇତିହାସ ଓ ଜନଶ୍ରୁତି ଉପରେ ନିର୍ଭର କରୁଥିବାବେଳେ ବେନ୍ ଜନ୍‌ସନ୍ ସମସାମୟିକ ଜନଜୀବନର ଚିତ୍ର ଆଙ୍କିବାର ପ୍ରୟାସ କରିଥିଲେ । ଏ ଦିଗରେ ସେ ସେକ୍‌ସପିଅରଙ୍କଠାରୁ ଅଧିକ ମୌଳିକ ।

ବେନ୍ ଜନ୍‌ସନ ବହୁ ଶାସ୍ତ୍ର ଅଧ୍ୟୟନ କରିଥିଲେ । ନାଟକରୁ ତାଙ୍କର ପାଣ୍ଡିତ୍ୟର ପରିଚୟ ମିଳେ । ପଢ଼ିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଗ୍ରନ୍ଥର ବିଶିଷ୍ଟ ଅଂଶ ସେ ନିଜ ଟିପା

ଖାତାରେ ଟିପି ରଖୁଥିଲେ । ନାଟକ ଲେଖିବା ସମୟରେ ଆବଶ୍ୟକ ସ୍ଥଳରେ ତାର ବିନିଯୋଗ କରୁଥିଲେ । ସେ ଯେଉଁ ପ୍ରାଚୀନ ବିଷୟର ଅବତାରଣା କରନ୍ତୁ ତାହା ତଥ୍ୟ-ନିଷ୍ଠ; ସେହିପରି ସମସାମୟିକ ସମାଜର ଚିତ୍ର ଦେବାବେଳେ ତାଙ୍କର ଦୃଷ୍ଟିଭଙ୍ଗୀ ବାସ୍ତବ-ଧର୍ମୀ । ସେକ୍ସପିଅର ରୋମ୍ ନଗରୀର କଥା କହିବାକୁ ଯାଇ, ଲଣ୍ଡନର ବିଷୟ ହିଁ ପରିବେଷଣ କରନ୍ତି; କିନ୍ତୁ ବେନ୍ ଜନ୍‌ସନ୍ ଏ ସମ୍ବନ୍ଧରେ ସଚେତନ ।

ସେକ୍ସପିଅରଙ୍କ ଅପରାଧ (Crime) ମୂଳକ ନାଟକ ପ୍ରତି ସେ ବୀତସ୍ପୃହ ଥିଲେ । ସାଧାରଣ ମଣିଷଚରିତ୍ରର ଦୋଷ-ଦୁର୍ବଳତାକୁ ନେଇ ହାସ୍ୟରସ ସୃଷ୍ଟି ବା ବ୍ୟଙ୍ଗ କରିବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ସେକ୍ସପିଅରଙ୍କ କମେଡ଼ିର କଳ୍ପନାପ୍ରବଣତା (Romance)କୁ ମଧ୍ୟ ସେ ନିଜ କମେଡ଼ିରେ ପ୍ରଶ୍ରୟ ଦେଇ ନ ଥିଲେ । ନିଜ ନାଟକର ପ୍ରକୃତି ସମ୍ବନ୍ଧରେ ସୂଚନା ଦେବାକୁ ଯାଇ ସେ କହିଛନ୍ତି—

> ···deeds and language, such as men doe use
> And persons, such as Comedie would Chuse
> When she would Shew an Image of the times
> And Sport with human follies, not with crimes.
> ( Prologue, Everyman in his Humour )

କମେଡ଼ିଗୁଡ଼ିକ ମଣିଷର ଗୋଟିଏ ଗୋଟିଏ ଝୁଙ୍କ ବା ପ୍ରବଣତା (humour)କୁ ଆଶ୍ରୟକରି ଲିଖିତ । ପ୍ରତ୍ୟେକ ମଣିଷ ଗୋଟିଏ ଗୋଟିଏ ପ୍ରବଣତାଦ୍ୱାରା ନିୟନ୍ତ୍ରିତ ବୋଲି ମଧ୍ୟଯୁଗୀୟ ଇଉରୋପରେ ଲୋକବିଶ୍ୱାସ ଥିଲା । ଏଇ ପ୍ରବଣତା ମୁଖ୍ୟତଃ ଚାରି ପ୍ରକାର—ବିଷଣ୍ଣତା, ଜଡ଼ତା, କ୍ରୋଧ ଓ ଆଶା । ବେନ୍ ଜନସନ୍ ଏହା ସହିତ ଅନ୍ୟ କେତୋଟି ପ୍ରବଣତା ଯୋଗ କରିଛନ୍ତି । ପ୍ରବଣତାର ଆଧିକ୍ୟ ଘଟିଲେ ମଣିଷ ହାସ୍ୟାସ୍ପଦ ହୁଏ—ଏହି ବିଶ୍ୱାସ ଉପରେ ବେନ୍ ଜନ୍‌ସନଙ୍କ ନାଟକୀୟ ଚରିତ୍ରଗୁଡ଼ିକ ଆଧାରିତ । ଏଥିପାଇଁ ନାଟକଗୁଡ଼ିକୁ 'କମେଡ଼ି ଅଫ୍ ହ୍ୟୁମର୍' କୁହାଯାଏ । କିନ୍ତୁ ମଣିଷର ଏହି ପ୍ରବଣତା ତାଙ୍କ ନାଟକରେ ଅତିରଞ୍ଜିତ ।

ଚରିତ୍ରଗୁଡ଼ିକ ମୂଳରୁ ଶେଷପର୍ଯ୍ୟନ୍ତ ଏକାପରି; ଏଗୁଡ଼ିକର ବିକାଶ ଘଟାଇବା ବୋଧହୁଏ ନାଟ୍ୟକାରଙ୍କ ଉଦ୍ଦେଶ୍ୟ ନ ଥିଲା । ସମକାଳୀନ ମଞ୍ଚରେ ସେ ଦାନବ (monster) ପରିବର୍ତ୍ତେ ମାନବର ଉପସ୍ଥାପନା କଲେ ବୋଲି ମନେକରୁଥିଲେ । କିନ୍ତୁ ଏହା ତାଙ୍କର ଭ୍ରାନ୍ତଧାରଣା । ତାଙ୍କ ଚରିତ୍ରଗୁଡ଼ିକର ପୂର୍ଣ୍ଣାଙ୍ଗସ୍ୱରୂପ ଦେଖିବାକୁ ମିଳେନାହିଁ । ନାଟକର ଉଦ୍ଦେଶ୍ୟ ଦୃଷ୍ଟିରୁ ଚରିତ୍ରର ଗୋଟିଏ ଗୋଟିଏ ଦିଗ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଉକ୍ତ ନାଟକରେ ପ୍ରକୃତ ମଣିଷକୁ ଖୋଜି ପାଇବା କଷ୍ଟକର ।

ପ୍ରବଣତାମୂଳକ ନାଟକ ଭାବରେ 'ଏଭ୍ରି ମ୍ୟାନ୍ ଇନ୍ ହିଜ୍ ହ୍ୟୁମର୍' ଲେଖକଙ୍କ ପ୍ରଥମ ସଫଳ ପ୍ରୟାସ । ଏହା ଲଣ୍ଡନ-ଜୀବନ ଉପରେ ଆଧାରିତ । କିଟ୍‌ଲି (Kitley) ପରି ସନ୍ଦେହପରାୟଣ ସ୍ୱାମୀ, ବୋବାଡ଼ିଲ (Bobadil) ପରି ମିଥ୍ୟା ବାହାସ୍ଫୋଟ ମାରୁଥିବା ଭୀରୁ ସୈନିକ ଓ ପୁତ୍ରର ଚରିତ୍ର ଗଠନପାଇଁ ବ୍ୟାକୁଳ ବୃଦ୍ଧ ନୋଓଏଲ ଭଳି ଚରିତ୍ର ତାଙ୍କର ବ୍ୟଙ୍ଗ ଓ ହାସ୍ୟର ଶରବ୍ୟ । ପରବର୍ତ୍ତୀ କମେଡ଼ି 'ଏଭ୍ରି ମ୍ୟାନ୍ ଆଉଟ୍ ଅଫ୍ ହିଜ୍ ହ୍ୟୁମର୍' ମଧ୍ୟ ଏହି ଶ୍ରେଣୀର । ଏଥିରେ ପାଣ୍ଟାର୍ଭୋଲୋ (Puntar Volo)ର ଚରିତ୍ର ଡନ୍ କ୍ୱିକ୍‌ସୋଟ୍ ପରି (Quixotic) । ନିଜ ବାସଗୃହକୁ ସେ ଗୋଟିଏ ଦୁର୍ଭେଦ୍ୟ ଦୁର୍ଗ ମନେକରି ପ୍ରବେଶକରେ, ଆଉ ନିଜ ସ୍ତ୍ରୀକୁ ଯୁଦ୍ଧର ଆହ୍ୱାନ ଦିଏ । ଫାଷ୍ଟିଡ଼ିଆସ ବ୍ରିସ୍କ ଜଣେ ସଭାସଦ୍ । ପୋଷାକପତ୍ର ସମ୍ବନ୍ଧରେ ସେ ଅତିମାତ୍ରାରେ ସଚେତନ । ଏହି ନାଟକର ଅନ୍ୟତମ ଚରିତ୍ର ଆସ୍‌ପାର୍ ଜଣେ ନିଷ୍ଠୁର ବିଦ୍ରୂପକ । ଦୁଷ୍ଟ ଓ ରୁଚିହୀନ ଚରିତ୍ର ପ୍ରତି ସେ ଅତ୍ୟନ୍ତ ଅସହିଷ୍ଣୁ । ଆସ୍‌ପାର୍‌ର ଉକ୍ତିରୁ ତାଙ୍କର ନାଟକକୁ ବ୍ୟଙ୍ଗଧର୍ମୀ କରିବାର ଉଦ୍ଦେଶ୍ୟ ଜଣାପଡ଼େ :

> I'll Strip the ragged follies of the time,
> Naked, as at their birth, and with a whip of steel,
> Print wounding lashes in their iron ribs.

ଏତଦ୍‌ବ୍ୟତୀତ ବେନ୍ ଜନସନ୍ ଅନ୍ୟ କେତୋଟି କମେଡ଼ି ମଧ୍ୟ ରଚନା କରିଛନ୍ତି । (Volpone, or The Fox; ୧୬୦୬ Epicoene or The Silent Woman : ୧୬୦୯, The Alchemist ୧୬୧୦ ଓ Barthlomew Fayre : ୧୬୧୪ ) । ଭଲପୋନର କଥାବସ୍ତୁ ଅତ୍ୟନ୍ତ ଚିତ୍ତାକର୍ଷକ । ଅର୍ଥଗୃଧ୍ନୁ ଭଲପୋନର ଉତ୍ତରାଧିକାରୀ ନାହିଁ । ସେ ଆସନ୍ନମୃତ୍ୟୁର ଛଳନା କରେ । ସମ୍ପତ୍ତିଲୋଭରେ ତାର ପ୍ରିୟଭାଜନ ହେବା ପାଇଁ ଅନେକେ ମୂଲ୍ୟବାନ୍ ଉପହାର ଦିଅନ୍ତି । କରଭିନୋ ନାମକ ଅନ୍ୟ ଜଣେ ଅର୍ଥଲିପ୍ସୁ ସମ୍ପତ୍ତିଲୋଭରେ ନିଜ ସ୍ତ୍ରୀକୁ ମଧ୍ୟ ଭଲପୋନ ନିକଟରେ ସମର୍ପି ଦେବାକୁ ପ୍ରସ୍ତୁତ । ନିର୍ବୋଧତା ଓ ଅର୍ଥଲିପ୍ସାର ଏଭଳି ବ୍ୟଙ୍ଗ ବିଦ୍ରୂପ 'ଦି ଆଲ୍‌କେମିଷ୍ଟ' ନାଟକରେ ମଧ୍ୟ ଦେଖାଯାଏ ।

କମେଡ଼ି ବ୍ୟତୀତ ବେନ୍ ଜନସନ୍ 'ସେଜାନାସ୍' (Sejanus) ଓ କ୍ୟାଟିଲିନ୍ (Catiline) ନାମକ ଦୁଇଟି ଟ୍ରାଜେଡ଼ି ମଧ୍ୟ ଲେଖିଛନ୍ତି । ଦୁଇଟି ଯାକ ରୋମାନ୍ କଥାବସ୍ତୁ ଉପରେ ଆଧାରିତ । ଐତିହାସିକ ନାଟକ ଭାବରେ ସେଜାନାସ୍ ତାଙ୍କର ଅପୂର୍ବ କୃତି । ଇତିହାସର କଥାବସ୍ତୁକୁ ଅପରିବର୍ତ୍ତିତ ରଖି ପ୍ରଭାବଶାଳୀ ନାଟକ ରଚନା କ୍ଷେତ୍ରରେ ଏହା ଆଦର୍ଶସ୍ଥାନୀୟ ।

'ବାର୍ଥଲେମ୍ୟୁ ଫେଆର' (Barthlomew Fayre) ରେ ଲେଖକ ପ୍ୟୁରିଟାନ୍‌ଙ୍କର ତୀବ୍ର ସମାଲୋଚନା କରିଛନ୍ତି; ଚ୍ୟାପ୍‌ମ୍ୟାନ୍ ଓ ମାର୍ଷ୍ଟନ୍‌ଙ୍କ ସହଯୋଗିତାରେ ଇଷ୍ଟୱାର୍ଡ଼ ହୋ ( Eastward Ho ! ) ନାମକ କମେଡ଼ି ଲେଖିଥିବାର ଜଣାଯାଏ ।

ବହୁ ବୈଶିଷ୍ଟ୍ୟ ସତ୍ତ୍ୱେ ବେନ୍ ଜନସନ୍‌ଙ୍କ ନାଟକରେ କେତେକ ତ୍ରୁଟି ପରିଲକ୍ଷିତ ହୁଏ । ସେକ୍‌ସପିଅରଙ୍କ ନାଟକର ପ୍ରାଣ-ପ୍ରାଚୁର୍ଯ୍ୟ ଏହାଙ୍କ ନାଟକରେ ନାହିଁ, କଳ୍ପନାର ରଙ୍ଗ ଦେବା ଅପେକ୍ଷା ତଥ୍ୟ ପରିବେଷଣକୁ ସେ ଗୁରୁତ୍ୱ ଦେଇଛନ୍ତି । ନାଟ୍ୟକଳା ସେକ୍‌ସପିଅରଙ୍କ ନାଟକରେ ସ୍ୱଭାବଗତ; କିନ୍ତୁ ଏହାଙ୍କ କ୍ଷେତ୍ରରେ ଚେଷ୍ଟାସାଧ୍ୟ ।

ଚ୍ୟାପମ୍ୟାନ୍ (George Chapman : ୧୫୫୯-୧୬୩୪) ନାଟ୍ୟକାର ଅପେକ୍ଷା କବିଭାବରେ ଅଧିକ ସୁପରିଚିତ । ଗ୍ରୀକ୍‌କବି ହୋମାରଙ୍କ 'ଇଲିଆଡ୍' ଓ 'ଓଡ଼ିଶୀ' ମହାକାବ୍ୟର ଇଂରେଜୀ ଅନୁବାଦ ତାଙ୍କର ମହାନ୍ କୃତି । ଉଭୟ ବିୟୋଗାନ୍ତ ଓ ମିଳନାନ୍ତ ନାଟକ ଲେଖିଥିଲେ ମଧ୍ୟ ମିଳନାନ୍ତ ନାଟକ ରଚନାରେ ଅପେକ୍ଷାକୃତ ଅଧିକ ସାଫଲ୍ୟ ଅର୍ଜନ କରିଛନ୍ତି । ବିୟୋଗାନ୍ତ ନାଟକ ମଧ୍ୟରେ 'ବୁଶି ଦା ମ୍ବୋୟା' (Bussy d' Ambois) ଓ 'ଦି କନ୍‌ସ୍ପିରେସି ଆଣ୍ଡ ଟ୍ରାଜେଡ଼ି ଅଫ୍ ଚାର୍ଲସ ଡିଉକ୍ ଅଫ୍ ବିରେଁ ମାର୍ଶାଲ୍ ଅଫ୍ ଫ୍ରାନ୍‌ସ', (୧୬୦୫) ପ୍ରଧାନ । ଏହି ବିୟୋଗାନ୍ତ ନାଟକର କଥାବସ୍ତୁ ଫରାସୀ ଇତିହାସରୁ ଆହୃତ । ଏଥିରେ କଥାବସ୍ତୁର ସୁଷ୍ଠୁ ବିନ୍ୟାସ ପରିଲକ୍ଷିତ ହୁଏ ନାହିଁ; ଘଟଣାପ୍ରବାହର ଗତି ମନ୍ଥର ।

ମିଳନାନ୍ତକ ନାଟକ ମଧ୍ୟରେ 'ଅଲ୍ ଫୁଲ୍‌ସ୍' ( Al Fooles ), 'ମଁସିୟେ ଦା ଅଲିଭ୍' (Monsieur d' Olive) ଓ 'ଦି ଜେଣ୍ଟଲ୍‌ମ୍ୟାନ୍ ଆଶାର୍' (The Gentleman Usher) ପ୍ରଧାନ । ବାକ୍‌ଚାତୁର୍ଯ୍ୟ (wit) ଓ ସାବଲୀଳ ପ୍ରାଣଭଙ୍ଗୀ ଏହାର ବୈଶିଷ୍ଟ୍ୟ । ବେନ୍ ଜନସନ୍‌ଙ୍କ ପୂର୍ବରୁ ସେ ଖଣ୍ଡିଏ ପ୍ରବଣତାମୂଳକ ନାଟକ ଲେଖିଛନ୍ତି ।

ଜନ ମାର୍ସଟନ (ଖ୍ରୀ: ୧୫୭୫-୧୬୩୪) : କ୍ରମେ କ୍ୟାକବାୟ ଓ କ୍ୟାରଲିନ ବିୟୋଗାନ୍ତ ନାଟକର ଯେଉଁ ଅଧଃପତନ ଦେଖାଦେଲା ମାର୍ସଟନଙ୍କ ନାଟକ ତାର ପ୍ରକୃଷ୍ଟ ଉଦାହରଣ । ଜଘନ୍ୟ ଅପରାଧ, ପ୍ରତିହିଂସା, ହତ୍ୟାର ବିଭୀଷିକା, ଅତିପ୍ରାକୃତ ଚରିତ୍ରର ଅବତାରଣା ଓ ଅମାର୍ଜିତ ଅତିଭାଷଣ ଦୃଷ୍ଟିରୁ ସେଗୁଡ଼ିକ ଅତିନାଟକ ଶ୍ରେଣୀର । କିଡ଼୍‌ଙ୍କ ସ୍ପେନିସ୍ ଟ୍ରାଜେଡ଼ିର ପ୍ରଭାବ ଏହା ଉପରେ ସ୍ପଷ୍ଟ । ମାର୍ସଟନ୍‌ଙ୍କ ବିୟୋଗାନ୍ତ ନାଟକ ମଧ୍ୟରେ 'ଆଣ୍ଟୋନିଓ ଆଣ୍ଡ ମେଲିଡ଼ା' (Antonio and Mellida), 'ଆଣ୍ଟୋନିୟୋକ୍ ରିଭେଞ୍ଜ' (Antoneo's Revenge) ଏହି ଶ୍ରେଣୀର । 'ଦି ମାଲ୍ କଣ୍ଟେଣ୍ଟ୍' (The Mal Content) ଓ 'ଦି ଡାଚ କୋର୍ଟେଜାନ' (The Dutch Courtesan) ତାଙ୍କର ଦୁଇଟି ମିଳନାନ୍ତକ ନାଟକ । ଦୁଇଟିଯାକରେ ସାଫଲ୍ୟର ସଙ୍କେତ କ୍ଷୀଣ । 'ଦି ମାଲ୍ କଣ୍ଟେଣ୍ଟ'ରେ ଲେଖକଙ୍କ ସଂଶୟବାଦ ମନୋବୃତ୍ତି (Cynicism) ଓ ନୈରାଶ୍ୟବାଦ ପ୍ରକାଶ ପାଇଛି । ବେନ୍ ଜନସନ୍ ଓ ଚ୍ୟାପ୍‌ମ୍ୟାନଙ୍କ ସହଯୋଗିତାରେ 'ଇଷ୍ଟୱାର୍ଡ଼ ହୋ' ତାଙ୍କର ଅନ୍ୟତମ ନାଟକ ।

ଡେକାର (Thomas Dekker : ଖ୍ରୀ: ୧୫୭୦-୧୬୩୨) ଙ୍କ ଅଧିକାଂଶ ନାଟକ ଅନ୍ୟାନ୍ୟ ନାଟ୍ୟକାରଙ୍କ ସହଯୋଗିତାରେ ଲିଖିତ । ମନେହୁଏ ଅର୍ଥ ଲାଭ ଆଶାରେ ନାଟକଗୁଡ଼ିକ ସ୍ୱଳ୍ପ ସମୟ ମଧ୍ୟରେ ଲେଖାହୋଇଥିବାରୁ ଯଥେଷ୍ଟ ଯତ୍ନ ନିଆଯାଇପାରିନାହିଁ; ଏପରିକି ବିଷୟ ଐକ୍ୟ ମଧ୍ୟ ସୁରକ୍ଷିତ ନୁହେଁ । କେତେକ ନାଟକରେ ବିଷୟ-ଐକ୍ୟ ରହିଥିଲେ ମଧ୍ୟ ତାହା ଉପନ୍ୟାସର ବିଷୟ-ଐକ୍ୟ ପରି ଅପେକ୍ଷାକୃତ ଶିଥିଳ । 'ଦି ଶୁ ମେକାର୍ସ ହଲିଡ଼େ (The Shoe Maker's Holiday) ତାଙ୍କର ଶ୍ରେଷ୍ଠ ରଚନା । ଲଣ୍ଡନର ନିମ୍ନ ଶ୍ରେଣୀର ଜୀବନଚିତ୍ର ଏଥିରେ ଅଙ୍କିତ । ରାସ୍ତାଧାରର ଜଣେ ମୋଚି ସାଇମନ ଆୟାର୍ ଏହାର ନାୟକ । ଅନାବିଲ ହାସ୍ୟରସ ନାଟକଟିର ଆକର୍ଷଣ । 'ଓଲ୍ଡ୍ ଫର୍ଚୁନାଟସ୍' ନାଟକଟି ରହସ୍ୟମୟ ଟୋପି ଓ ଅଶେଷ ଧନଲାଭ ଭଳି ଏକ ରୂପକାତ୍ମକ ବିଷୟକୁ ଆଶ୍ରୟ କରି ଲିଖିତ । 'ଦି ଅନେଷ୍ଟ ହୋର୍' (The Honest Whore) ତାଙ୍କର ଅନ୍ୟତମ ସଫଳ ରଚନା । ଗୋଟିଏ ବାରାଙ୍ଗନାର ଗୃହାଭିମୁଖିକ ପରିବର୍ତ୍ତନକୁ ନେଇ ଏହା ଲିଖିତ । ଏହାର କେତେକାଂଶର ଆବେଦନ ଟ୍ରାଜେଡ଼ିପରି । ବିଭିନ୍ନ ନାଟକରେ ଲେଖକ କଳ୍ପନା ଓ ବାସ୍ତବତାର ମଧୁର ସମନ୍ୱୟ ସାଧନ କରିଥିବାର ଦେଖାଯାଏ ।

ଟମାସ୍ ହେଉଡ଼୍ (ଖ୍ରୀ: ୧୫୮୦ ? – ୧୬୫୦ ?) ପ୍ରାୟ ଦୁଇଶହ କୋଡ଼ିଏଟି ନାଟକର ସ୍ରଷ୍ଟା; କିନ୍ତୁ ଡେକାର୍‌ଙ୍କ ଭଳି ଅର୍ଥ ଉପାର୍ଜ୍ଜନ ଉଦ୍ଦେଶ୍ୟ ମୁଖ୍ୟ ଥିବାରୁ ତାଙ୍କର ନାଟକ କଳାଗତ ଉତ୍କର୍ଷରୁ ବଞ୍ଚିତ; ଅଧିକାଂଶ ବିଲୁପ୍ତ; ଚବିଶଟି ମାତ୍ର ବର୍ତ୍ତମାନ ଦେଖିବାକୁ ମିଳେ । ସେଥିମଧ୍ୟରୁ 'ଏ ଓମ୍ୟାନ୍ କିଲ୍ଡ଼୍ ଉଇଥ୍ କାଇଣ୍ଡନେସ୍' (A Woman Killed with Kindness) ଓ 'ଦି ଫେଆର୍ ମେଡ୍ ଅଫ୍ ଦି ଓ୍ୱେଷ୍ଟ' (The Fair Maid of the West) ଉପରେ ତାଙ୍କର ପ୍ରତିଷ୍ଠା ନିର୍ଭରକରେ । ପ୍ରଥମୋକ୍ତ ନାଟକଟି ଗୋଟିଏ ଟ୍ରାଜେଡ଼ି; ପାରିବାରିକ ଘଟଣା-କୈନ୍ଦ୍ରିକ । ଅନ୍ୟଟି ଅତିନାଟକ (Melodrama) ଶ୍ରେଣୀର । ଡେକାରଙ୍କ ଭଳି ନଗର ଜୀବନହିଁ ମୁଖ୍ୟତଃ ତାଙ୍କର ଉପଜୀବ୍ୟ; କିନ୍ତୁ ଡେକାରଙ୍କ ଗୀତିଧର୍ମିତା, କଳ୍ପନା ଓ ରସବୋଧ (Gaiety) ନ ଥିବାରୁ ସେ ଜଣେ ଗଦ୍ୟଧର୍ମୀ ଡେକାର (A Dekker in Prose) ରୂପେ ପ୍ରତିଭାତ ହୁଅନ୍ତି ।

ଟମାସ ମିଡଲଟନ (Thomas Middleton) : ଖ୍ରୀ: ୧୫୭୦-୧୬୨୭ଙ୍କର ଦୁଇଟି ବିଶିଷ୍ଟ କୃତି 'ଦି ଚେଞ୍ଜିଲିଂ' (The Changeling) ଓ 'ଉଇମେନ୍ ବିଓ୍ୱେର ଅଫ୍ ଉଇମେନ୍' (Women Beware of Women) ଦୁଇଟି ଟ୍ରାଜେଡ଼ି । ପ୍ରଥମଟି ରାଓଲି ନାମକ ଜଣେ ଅଭିନେତାଙ୍କ ସହଯୋଗିତାରେ ଲିଖିତ । ଏହା ସମକାଳୀନ ଭୀତି (horror) ସଞ୍ଚାରକାରୀ ନାଟକ ପର୍ଯ୍ୟାୟର । ଦ୍ୱିତୀୟଟି ଜଣେ ଇଟାଲୀୟ ଗଣିକାର ଜୀବନକୁ ଭିତ୍ତିକରି ଲିଖିତ । ଶବ୍ଦଯୋଜନା ଓ କବିତ୍ୱ ଦୃଷ୍ଟିରୁ ଏ ଦୁଇଟି ସେକ୍ସପିଅରଙ୍କ ନାଟକକୁ ସ୍ମରଣ କରାଇଦିଏ । ଏତଦ୍‌ବ୍ୟତୀତ 'ଏ ଟ୍ରିକ୍ ଟୁ କ୍ୟାଚ୍ ଦି ଓଲ୍ଡ଼ ଓ୍ୱାନ୍'

(A Trick to Catch the Old One), 'ଏ ମ୍ୟାଡ୍ ୱାର୍ଲଡ୍ ମାଇଁ ମାଷ୍ଟରସ୍' (A Mad World My Masters) ଓ 'ଏ ଚେଷ୍ଟ ମେଡ୍ ଇନ୍ ଚିପ୍ ସାଇଡ୍' (A Chaste Maid in Cheap Side) ପଭୃତି କେତୋଟି କମେଡ଼ି ଉଲ୍ଲେଖଯୋଗ୍ୟ । ଲଣ୍ଡନ ଜୀବନର ବାସ୍ତବବାଦୀ ଚିତ୍ରଣରେ ସେ ଅଗ୍ରଗଣ୍ୟ । ଏହିଠାରେହିଁ ରେଷ୍ଟୋରେସନ୍ କମେଡ଼ିର ଅସ୍ଫୁଟାରମ୍ଭ ।

ସିରିଲ ଟାର୍ନାର୍ (Cyril Tourneur) ଙ୍କର ଦୁଇଟି ନାଟକ ଦେଖିବାକୁ ମିଳେ—'ଦି ରିଭେଞ୍ଜାରସ୍ ଟ୍ରାଜେଡ଼ି' (୧୬୦୭) ଓ 'ଦି ଏଥେଇଷ୍ଟସ୍ ଟ୍ରାଜେଡ଼ି' (୧୬୧୧) । ଏଗୁଡ଼ିକ ଅତିନାଟକ ପର୍ଯ୍ୟାୟର । ପ୍ରଥମ ନାଟକଟି 'ମରାଲିଟି' ନାଟକ ଭଲି ପୁଣ୍ୟପାପର ସଂଘର୍ଷକୁ କେନ୍ଦ୍ରକରି ଲିଖିତ । ଏହାର ନାୟକ ଭିନ୍ଡିସ୍ (Vindice) ଙ୍କରୁ ସେକ୍ସପିଅରଙ୍କ 'ହ୍ୟାମଲେଟ୍'ର ବହୁ ସାମଞ୍ଜସ୍ୟ ରହିଛି ।

ଜନ ଓ୍ୱେବ୍ଷ୍ଟାର (John Webster)ଙ୍କ ଜୀବନୀ ସମ୍ପର୍କରେ ବିଶେଷ କିଛି ଜଣାଯାଏ ନାହିଁ । ରାଜା ପ୍ରଥମ ଜେମସ୍‌ଙ୍କ ରାଜତ୍ୱକାଳରେ ତାଙ୍କର ଆବିର୍ଭାବ । ସେ ବହୁ ସଂଖ୍ୟକ ନାଟକର ରଚୟିତା; କିନ୍ତୁ ଅଧିକାଂଶ ନିକୃଷ୍ଟ ଧରଣର; କେତୋଟି ଅନ୍ୟ ଲେଖକଙ୍କ ସହଯୋଗିତାରେ ରଚିତ । ଟ୍ରାଜେଡ଼ି ରଚନାକ୍ଷେତ୍ରରେ ସେ ମାର୍ଲୋଙ୍କୁ ଅନୁସରଣ କରିଥିବା ସମ୍ଭବ । ଗର୍ଜନ ତର୍ଜନ ଓ ରକ୍ତପାତ ତାଙ୍କର ମୁଖ୍ୟ ଆକର୍ଷଣ । 'ଦି ହ୍ୱାଇଟ୍ ଡେଭିଲ୍' ବା 'ଭିଟୋରିୟା କରୋମ ବୋନା' ତାଙ୍କର ଶ୍ରେଷ୍ଠ ରଚନା । ଧାର୍ମିକ୍ୟ ଜୀବନର ଏକ ବିଡ଼ମ୍ବନାକୁ ନେଇ ଏହା ପରିକଳ୍ପିତ । ନାୟିକା ରୂପସୀ ଭିଟୋରିଆ ଓ ନାୟକ ଡିଉକ୍ ବ୍ରାସିୟାନୋ ଆପଣାର ଅବୈଧ ଯୌନ ସମ୍ପର୍କକୁ ନିଷ୍କଣ୍ଟକ କରିବାକୁ ଯାଇ ଯଥାକ୍ରମେ ନିଜନିଜର ସ୍ୱାମୀ ଓ ସ୍ତ୍ରୀଙ୍କୁ ହତ୍ୟା କରିଛନ୍ତି ।

ଅନ୍ୟ ଏକ ନାଟକ "ଦି ଡଚେସ୍ ଅଫ୍ ମ୍ୟାଲଫି'ର ମୂଳକଥା ଆଭିଜାତ୍ୟ ଓ ପ୍ରଣୟ ମଧ୍ୟରେ ସଂଘର୍ଷ । ଜନୈକ ସମ୍ଭ୍ରାନ୍ତବଂଶୀୟା ଯୁବତୀ ବିଧବା ନିଜର ଇଚ୍ଛେ ନିମ୍ନ କର୍ମଚାରୀସହ ପାପପ୍ରଣୟେ ଲିପ୍ତ । ବିଧବାର ଦୁଇଭାଇ ଏହାର ପ୍ରତିଶୋଧ କରନ୍ତି । ଏଇଥିରୁହିଁ ଟ୍ରାଜେଡ଼ିର ସୂତ୍ରପାତ ହୁଏ । ଷୋଡ଼ଶ ଶତାବ୍ଦୀର ସଂଘର୍ଷ ଓ ରକ୍ତପାତ-ବହୁଳ ଇଟାଲୀୟ ସମାଜ, ବିଶେଷତଃ ଦରବାରୀ ଜୀବନ, ତାଙ୍କର ପ୍ରେରଣାର ଉତ୍ସ ।

□□□

## ଷଷ୍ଠ ଅଧ୍ୟାୟ

# ମିଲ୍‌ଟନ୍‌ ଯୁଗ

## [ ଖ୍ରୀ: ୧୬୩୦-୧୬୬୦ ]

ଇଂଲଣ୍ଡର ଇତିହାସରେ ସପ୍ତଦଶ ଶତାବ୍ଦୀ ଏକ ସନ୍ଧିକ୍ଷଣ । ଏହି ସମୟରେ ରାଜଶକ୍ତି ଓ ଜନଶକ୍ତି ମଧ୍ୟରେ ସଂଘର୍ଷ ଉତ୍କଟ ଗୃହଯୁଦ୍ଧରେ ପରିଣତ ହୋଇଛି । ଖ୍ରୀ: ୧୬୪୯ରେ ରାଜା ପ୍ରଥମ ଚାର୍ଲସଙ୍କର ମୁଣ୍ଡକାଟ ଓ ହୁଇଗ୍‌ ଦଳର ନେତା କ୍ରମୱେଲଙ୍କ ନେତୃତ୍ୱରେ ପ୍ରଜାତନ୍ତ୍ର (Common Wealth) ପ୍ରତିଷ୍ଠା ଦୁଇ ଯୁଗାନ୍ତକାରୀ ଘଟଣା । କ୍ରମୱେଲ୍‌ଙ୍କ ମୃତ୍ୟୁ ପରେ ପୁଣି ରାଜନୈତିକ ଅସ୍ଥିରତା ଦେଖାଦେଇଛି । ପରିଣତି ସ୍ୱରୂପ ଘଟିଛି ରାଜତନ୍ତ୍ରର ପୁନଃ ପ୍ରବର୍ତ୍ତନ । ଖ୍ରୀ: ୧୬୬୦ରେ ଦ୍ୱିତୀୟ ଚାର୍ଲସ ସିଂହାସନ-ଅଧିଷ୍ଠିତ ହୋଇଛନ୍ତି ।

ରାଜନୀତି ପରି ସାହିତ୍ୟ କ୍ଷେତ୍ରରେ ମଧ୍ୟ ଆଲୋଡ଼ନ ଦେଖାଦେଲା । ସମାଜ ଜୀବନରେ ନୈତିକ ଆନ୍ଦୋଳନ (Puritan movement)ର ତୀବ୍ର ପ୍ରଭାବ ପ୍ରତିଫଳିତ ହୋଇଥିଲା । ବ୍ୟକ୍ତିଗତ ଜୀବନରେ ନିଷ୍ଠା ଓ ରାଜନୈତିକ ତଥା ଧର୍ମୀୟ ଜଗତରେ ମୁକ୍ତି ଏହି ଯୁଗର ପ୍ରଧାନ ସ୍ୱର । ଏଣୁ ଏହା ଦ୍ୱିତୀୟ ଓ ବୃହତ୍ତର ନବଜାଗରଣ ନାମରେ ଅଭିହିତ । ଏପରିକି କ୍ରମୱେଲଙ୍କ ଅଭ୍ୟୁତ୍ଥାନ କାଳରେ ଆଇନ ବଳରେ ଅତି ସାଧାରଣ ଆମୋଦ-ପ୍ରମୋଦ ମଧ୍ୟ ନିଷିଦ୍ଧ ହୋଇଥିଲା । ପରବର୍ତ୍ତୀ କାଳରେ ଏହା ତୀବ୍ର ଉଚ୍ଛୃଙ୍ଖଳତାର କାରଣ ହୋଇଥିଲା ।

ଏଲିଜାବେଥୀୟ ଯୁଗ ଓ ଏହି ଯୁଗ ମଧ୍ୟରେ କେତୋଟି ମୌଳିକ ପାର୍ଥକ୍ୟ ଦେଖାଯାଏ । ଏଲିଜାବେଥୀୟ ସାହିତ୍ୟର ବୈଚିତ୍ର୍ୟ ମଧ୍ୟରେ ଗୋଟିଏ ଐକ୍ୟ ପରିଲକ୍ଷିତ ହୁଏ—ତା ହେଉଛି ସ୍ୱଦେଶପ୍ରେମ । ବ୍ୟକ୍ତିଗତ ଦୋଷ-ଦୁର୍ବଳତା ସତ୍ତ୍ୱେ ରାଣୀ ଏଲିଜାବେଥ୍‌ ସୁଶାସନ ଓ ଦେଶ-ପ୍ରେମର ପ୍ରତୀକ ଥିଲେ । ପରବର୍ତ୍ତୀ କାଳରେ ଶାସନକ୍ଷେତ୍ରରେ ବିଶୃଙ୍ଖଳା ଭିଳି ସାହିତ୍ୟର ଭାଗ୍ୟ ମଧ୍ୟ ଅନିଶ୍ଚିତ ହୋଇପଡ଼ିଲା । ଏଲିଜାବେଥୀୟ ସାହିତ୍ୟରେ ଯୌବନର ଉଦ୍ଦାମତା ଓ ଆଶାବାଦ ପରିସ୍ଫୁଟ ହେଉଥିବାବେଳେ ଏ ଯୁଗର ସାହିତ୍ୟରେ ବିଷାଦ ଓ ନିରାଶାର ଚିହ୍ନ ସ୍ପଷ୍ଟ । ଏଲିଜାବେଥୀୟ ସାହିତ୍ୟର ସ୍ୱର ମୁଖ୍ୟତଃ ରୋମାଣ୍ଟିକ୍‌ ହୋଇଥିବାବେଳେ ଏ ଯୁଗରେ ଗୀତିକବିତା ଓ ପ୍ରେମକବିତାରେ ମଧ୍ୟ ବୌଦ୍ଧିକ ମନନ-ଶୀଳତା ଓ ବାକ୍‌-ବୈଦଗ୍ଧ୍ୟ ସ୍ୱାଭାବିକତାର ଅନ୍ତରାୟ ହୋଇଛି । ଏହି ଶ୍ରେଣୀର କବିତାକୁ ମେଟା-ଫିଜିକାଲ୍‌ ପୋଏଟ୍ରି (Meta-physical poetry) କୁହାଯାଏ । ଏତଦ୍‌-ବ୍ୟତୀତ କେହି କେହି ବେନ୍‌ ଜନସନ୍‌ଙ୍କ ପରି କ୍ଲାସିକ୍‌ ରୀତିର ଅନୁସରଣ କରିଛନ୍ତି ।

ରାଜନୈତିକ ଅସ୍ଥିରତା ମହାକାବ୍ୟ ରଚନାର ଅନୁକୂଳ ବିବେଚିତ ହେଲେ ମଧ୍ୟ ମିଲ୍‌ଟନ୍ ମହାକାବ୍ୟ ରଚନାକରି ଏହି ସତ୍ୟର ବ୍ୟତିକ୍ରମ ଘଟାଇଛନ୍ତି । ପଦ୍ୟ ଓ ଗଦ୍ୟର ପୁଷ୍କଳ ବିକାଶ ଘଟିଥିଲେ ମଧ୍ୟ ରାଜନୈତିକ ଅସ୍ଥିରତା ତଥା ନୈତିକ ଆନ୍ଦୋଳନ ଫଳରେ ନାଟକ ଶ୍ବାସରୁଦ୍ଧ ହୋଇପଡ଼ିଛି ।

## ଆଧିଭୌତିକ କବିଗୋଷ୍ଠୀ (Metaphysical Poets)

ଏଲିଜାବେଥୀୟ କାବ୍ୟର ଅନ୍ତଃସ୍ୱର ମୁଖ୍ୟତଃ ରୋମାଣ୍ଟିକ୍ । ସେକ୍‌ସପିଅରଙ୍କ ଭଳି କାଳଜୟୀ କବିଙ୍କ ଲେଖାରେ ଆବେଗ ଓ ମନନଶୀଳତାର ସାଧ୍ୟ ସମନ୍ୱୟ ଘଟିଥିଲେ ମଧ୍ୟ ଏ କାବ୍ୟରେ କଳ୍ପନା ଓ ଆବେଗର ପ୍ରାଧାନ୍ୟ ଥିଲା । ସପ୍ତଦଶ ଶତାବ୍ଦୀବେଳକୁ ଏହି କାବ୍ୟ-ଧର୍ମ ବିରୋଧରେ ପ୍ରତିକ୍ରିୟା ଦେଖାଦେଲା । ସାମାଜିକ ତଥା ରାଜନୈତିକ ଅସ୍ଥିରତା କଳ୍ପନାବିଳାସର ଉପଯୋଗୀ ନଥିଲା । ଗୋଟିଏ ସ୍ୱର୍ଣ୍ଣଯୁଗର ଅବସାନ ପରେ ପରେ ସାମାଜିକ ବିଭ୍ରାଟ ଲୋକଙ୍କ ମନରେ ଦ୍ୱିଧା ଓ ସନ୍ଦେହର ଉଦ୍ରେକ କଲା । ବିଜ୍ଞାନର କ୍ରମ-ବିକାଶ ସମାଜକୁ ଅଧିକ ମନନଶୀଳ ଓ ଯୁକ୍ତିନିଷ୍ଠ ହେବାରେ ସାହାଯ୍ୟ କଲା । ଏଇ ପରିବେଶରେ ଇଂଲଣ୍ଡର ସାହିତ୍ୟ କ୍ଷେତ୍ରରେ ଏକ ନୂତନ କବିଗୋଷ୍ଠୀ ଦେଖାଦେଲା । ଡକ୍ଟର ଜନ୍‌ସନ୍ ଏହି ଶ୍ରେଣୀର କବିଙ୍କୁ ଆଧିଭୌତିକ କବି (Metaphysical poets) ବୋଲି ଅଭିହିତ କରିଛନ୍ତି । ବୌଦ୍ଧିକତା (wit) ବଳରେ ଏମାନେ ଟାଣିଓଟାରି ଆପାତତଃ ସାମଞ୍ଜସ୍ୟହୀନ ଚିନ୍ତାଧାରା ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରନ୍ତି । (The most heterogeneous ideas are yoked by violence together.) ଏଣୁ ଏମାନେ ପ୍ରୟୋଗ କରୁଥିବା ଉପମାଗୁଡ଼ିକରେ ଉପମେୟ ଓ ଉପମାନ ମଧ୍ୟରେ ସାମଞ୍ଜସ୍ୟ ଉପଲବ୍ଧି କରିବା ସହଜସାଧ୍ୟ ନୁହେଁ । ଏହିପରି କଷ୍ଟକଳ୍ପିତ ଉପମା (Metaphysical conceit)ର ବହୁଳ ପ୍ରୟୋଗ ଏମାନଙ୍କ କବିତାରେ ଦେଖାଯାଏ । ବେଳେବେଳେ ଏହି କଷ୍ଟକଳ୍ପିତ ଉପମା ଉପରେ ଏତେ ଗୁରୁତ୍ୱ ଦିଆଯାଏ ଯେ, କବିଙ୍କ ବକ୍ତବ୍ୟ ଏଥିରେ ଅସ୍ପଷ୍ଟ ହୋଇଉଠେ । ଏମାନେ ସାଧାରଣତଃ ଧର୍ମ ବା ପ୍ରେମ ସମ୍ବନ୍ଧରେ ଲେଖିଛନ୍ତି । କବିତାଗୁଡ଼ିକ କ୍ଷୁଦ୍ର ଓ ଗୀତିଧର୍ମୀ; ଏଥିରେ ଆବେଗ ଓ ବୌଦ୍ଧିକତାର ଅପୂର୍ବ ସମନ୍ୱୟ (unification of sensibility) ସାଧିତ ହୋଇଥାଏ । ଛନ୍ଦବୈଚିତ୍ର୍ୟ, ଶବ୍ଦଯୋଜନା ଓ ଲାଳିତ୍ୟ ହେତୁ ଏଗୁଡ଼ିକ ହୃଦୟସ୍ପର୍ଶୀ । ମଝିରେ ମଝିରେ ଭାଷା ଓ ପ୍ରକାଶ ରୀତିର ପରିବର୍ତ୍ତନ ଘଟେ; ପାଠକ ସେଥିପାଇଁ ପ୍ରସ୍ତୁତ ନ ଥାଏ; ସେ ପଦେ ପଦେ କେବଳ ଆଶ୍ଚର୍ଯ୍ୟାନ୍ୱିତ ହୁଏ । ଏହି କବିଗୋଷ୍ଠୀ ମଧ୍ୟରେ ଜନ୍ ଡାନ୍ (John Donne) ସର୍ବଶ୍ରେଷ୍ଠ । ଅନ୍ୟମାନଙ୍କ ମଧ୍ୟରେ ଜର୍ଜ ହାର୍ବାର୍ଟ (Herbert), ଓ୍ୱାଲର (Waller), ଡେନ୍‌ହାମ (Denham), କାଉଲି (Cowley), ଭନ (Vaughan), ମାର୍ଭେଲ୍ (Marvell) ଓ ରିଚାର୍ଡ କ୍ରଶ୍

(Crashaw)ଙ୍କ ନାମ ଉଲ୍ଲେଖଯୋଗ୍ୟ । ଅନ୍ୟାନ୍ୟ କେତେକ ଗୌଣକବି; ଯଥା—ଟମାସ କେରି (Carew,) ରବର୍ଟ ହେରିକ୍ (Robert Herrick) ସାକଲିଂ ଓ ଲଭ୍‌ଲେସ୍ (Lovelace)ଙ୍କୁ ବ୍ୟାପକ ଦୃଷ୍ଟିରୁ ଆଧିଭୌତିକ କବି ଭାବରେ ଗ୍ରହଣ କରାଗଲେ ମଧ୍ୟ ଏମାନେ ସ୍ୱକୀୟ ବୈଶିଷ୍ଟ୍ୟ ହେତୁ କ୍ୟାଭେଲୀୟ କବି (Cavalier poets) ନାମରେ ସୁପରିଚିତ । ନିମ୍ନରେ ଆଧିଭୌତିକ କବିଙ୍କ ବ୍ୟକ୍ତିଗତ ପ୍ରତିଭାର ପରିଚୟ ପ୍ରଦତ୍ତ ହେଲା ।

## ଜନ୍ ଡନ୍ (John Donne : ୧୫୭୩-୧୬୩୧)

ଜଣେ ବଣିଷ୍ଟ ବ୍ୟବସାୟୀଙ୍କ ପୁତ୍ର; ଲଣ୍ଡନରେ ଜନ୍ମ । ଡନ୍‌ଙ୍କ କବିତାକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଖ୍ରୀ: ୧୫୯୦ରୁ ୧୬୦୧ ମଧ୍ୟରେ ସେ କେତେକ ବ୍ୟଙ୍ଗକବିତା, ପ୍ରେମକବିତା ଓ ଶୋକଗୀତ ରଚନା କରିଛନ୍ତି; କିନ୍ତୁ ଖ୍ରୀ: ୧୬୧୦ ପରେ ମୁଖ୍ୟତଃ ଧର୍ମୀୟ କବିତା ଲେଖିଛନ୍ତି । ତାଙ୍କର ବ୍ୟଙ୍ଗକବିତା ମଧ୍ୟରେ 'ଅଫ୍ ଦି ପ୍ରଗ୍ରେସ୍ ଅଫ୍ ଦି ସୋଲ୍' ସୁପରିଚିତ । ଉକ୍ତ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ପ୍ରେମକବିତାଗୁଡ଼ିକରେ ମଧ୍ୟ ପ୍ରତିଫଳିତ । ପ୍ରେମକବିତାଗୁଡ଼ିକରେ ପ୍ରେମିକାର ବିଭିନ୍ନ ଅନୁଭୂତି ତଥା ମାନସିକ ଅବସ୍ଥାର ସୂକ୍ଷ୍ମ ବିଶ୍ଳେଷଣ କରାଯାଇଛି । ଭାବ ଉତ୍ତେଜନା ଭିତରେ କବି ନିଜର ହୃଦୟାବେଗ ପ୍ରକାଶ କରୁଥିବା ଭଳି ମନେହୁଏ । ଏଗୁଡ଼ିକ ବ୍ୟକ୍ତିଗତ ଜୀବନର ଜଟିଳ ଅନୁଭୂତି-ଆଧାରିତ । ବାକ୍‌ରୀତି, ନାଟକୀୟତା ଓ କଷ୍ଟକଳ୍ପିତ ଉପମାରେ ଏଗୁଡ଼ିକ ସମୃଦ୍ଧ । ତାଙ୍କର କେତୋଟି ପ୍ରେମକବିତା ବହୁ ଆଦୃତ । (Aire and Angels, A Nocturnall upon S. Lucies Day, A Valediction : forbidding mourning, The Extasie ଆଦି ପ୍ରଧାନ) । ଡନ୍‌ଙ୍କ ବହୁ ଉପମାନ ଗଣିତ, ଭୂଗୋଳ, ବିଜ୍ଞାନ ଓ ଦର୍ଶନ ଆଦି ଜ୍ଞାନର ବିଭିନ୍ନ ପରିସରରୁ ଗୃହୀତ । ବିରହୀ ପ୍ରେମିକ-ପ୍ରେମିକାଙ୍କୁ ସେ କମ୍ପାସର ଦୁଇପାଦ ସହ ତୁଳନା କରିଛନ୍ତି—

> If they be two, they are two so
> As siffe twin compasses are two
> Thy soule the firt foot, makes no show
> To move, but doth, if the other doe.

( A Valediction : forbidding mourning )

ଝରକା ଫାଙ୍କ ଦେଇ ସୂର୍ଯ୍ୟ ପ୍ରେମିକ-ପ୍ରେମିକାଙ୍କ କୋଠରିରେ ଅନୁପ୍ରବେଶ କରୁଛି । ତେଣୁ ସେ ଉଚ୍ଛୃଙ୍ଖଳ, ମୂର୍ଖ :

> Busie old foole unruly sunne
> Why dost thou thus

Through windowes, and through curtains
call on us ?
Must to thy motions Lovers seasons run ?
( The Sunne Rising )

ପ୍ରେମିକାର ଅଶ୍ରୁବିନ୍ଦୁ ଗୋଟିଏ ଗ୍ଲୋବ :
So doth each teare
Which thee doth wear,
A globe, yea world by that impression grow.
( A Velediction of Weeping )

ତାଙ୍କ ଆଖିରେ ରୁଗ୍‌ଣ ଶରୀର ଗୋଟିଏ ମାନଚିତ୍ର ଓ ଚିକିତ୍ସକ ଜଣେ ଭୂତତ୍ତ୍ୱବିତ୍ ।

ଡାନ୍‌ଙ୍କ ଧର୍ମୀୟ କବିତା ମଧ୍ୟ ପ୍ରେମକବିତା ପରି ଅତ୍ୟନ୍ତ ବ୍ୟକ୍ତିନିଷ୍ଠ । ଏଥିରୁ ଦ୍ୱିଧା ଆନ୍ଦୋଳିତ ଗୋଟିଏ ମହାନ୍ ହୃଦୟର ପରିଚୟ ମିଳେ । ଡାନ୍ କାଥୋଲିକ୍ ସଂପ୍ରଦାୟରେ ପରିବର୍ଦ୍ଧିତ ହୋଇଥିଲେ ମଧ୍ୟ ପରେ ଏଙ୍ଗ୍ଲିକାନ୍ ଚର୍ଚ୍ଚରେ ବିଶ୍ୱାସ ସ୍ଥାପନ କରିଥିଲେ । ମଧ୍ୟବର୍ତ୍ତୀ ପର୍ଯ୍ୟାୟର ଅନ୍ତର୍ଦ୍ୱନ୍ଦ୍ୱ କବିତାଗୁଡ଼ିକରେ ପ୍ରତିଫଳିତ । ମୃତ୍ୟୁ-ସଚେତନତା (ମୃତ୍ୟୁ ପ୍ରତି ଭୟ ତଥା ଶ୍ରଦ୍ଧା) ଓ ଈଶ୍ୱରଙ୍କ କୃପା ପାଇଁ ବ୍ୟାକୁଳତା କବିଙ୍କ ଗଭୀର ଜ୍ଞାନ ଓ ବୁଦ୍ଧିମତ୍ତା ଭିତରେ ଆତ୍ମପ୍ରକାଶ କରିଛି । ଏହି ସମସ୍ତ ଗୀତିଧର୍ମୀ କବିତା ମଧ୍ୟରୁ ଉଣେଇଶଟି ସନେଟ୍ । ଏଗୁଡ଼ିକୁ 'ହୋଲି ସନେଟ୍‌ସ୍' (Holy Sonnets) କୁହାଯାଏ । ଏଥିରେ ମଧ୍ୟ ଆଧିଭୌତିକ କବିତାର ବୌଦ୍ଧିକତା ଓ କଷ୍ଟକଳ୍ପିତ ଉପମା ପରିଲକ୍ଷିତ ହୁଏ ।

ଡାନ୍‌ଙ୍କ ପରେ ପରେ ଏହି କବିଗୋଷ୍ଠୀ ମଧ୍ୟରେ ଦୁଇଟି ଧାରା ଦେଖାଯାଏ । ଗୋଟିଏ ଦଳ ଆଧ୍ୟାତ୍ମବାଦୀ ଓ ଅନ୍ୟଟି କ୍ୟାଭେଲିୟର (Cavalier) ।

ସମସାମୟିକ ଯୁଗଚେତନା ଆଧ୍ୟାତ୍ମବାଦୀ (Puritan) କବିତାରେ ସବିଶେଷ ପ୍ରକାଶ ପାଇଛି । ଉକ୍ତ କବିଗୋଷ୍ଠୀ ରାଜଶକ୍ତିର ବିରୋଧୀ ଥିଲେ । ରାଜସଭାର ଉଚ୍ଛୃଙ୍ଖଳତା ଓ ବିଳାସ-ବ୍ୟସନର ପ୍ରତିକ୍ରିୟା ସ୍ୱରୂପ ଆଧ୍ୟାତ୍ମିକତା, ଆତ୍ମସଂଯମ ଓ ଶୃଙ୍ଖଳାପ୍ରତି ମଧ୍ୟବିତ୍ତଶ୍ରେଣୀ ମଧ୍ୟରେ ବିଶେଷ ଆଗ୍ରହ ପ୍ରକାଶ ପାଉଥିଲା । ଆଧ୍ୟାତ୍ମବାଦୀମାନେ ଏହି ଚେତନାର ବାର୍ତ୍ତାବହ । ଏମାନଙ୍କ ମଧ୍ୟରେ ହାରବାର୍ଟ ( Herbert ), ଭନ୍ (Vaughan) ଓ କ୍ରଶ (Crashaw) ବିଶେଷ ପ୍ରଭାବଶାଳୀ ।

କ୍ୟାଭେଲିୟର କବିମାନେ ପ୍ରଥମ ଚାର୍ଲସଙ୍କ ସମୟର ରାଜଶକ୍ତି ଓ ପ୍ରଜାତନ୍ତ୍ରବାଦୀଙ୍କ ସଂଘର୍ଷବେଳେ ରାଜପକ୍ଷ ଅବଲମ୍ବନ କରିଥିଲେ । ଏମାନେ ବିଳାସବ୍ୟସନମଣ୍ଡିତ ରାଜଦରବାର ଉପଯୋଗୀ ଲଘୁସାହିତ୍ୟ ସୃଷ୍ଟି କରିଛନ୍ତି । କ୍ଷଣଭଙ୍ଗୁର ଜୀବନରେ ବିଳାସ-ବ୍ୟସନ ହିଁ ଉପଯୁକ୍ତ ମାର୍ଗ ବୋଲି ସେମାନଙ୍କର ବିଶ୍ୱାସ । ସମୟେ ସମୟେ ଏମାନଙ୍କ କବିତା

ରୁଚିଗର୍ହିତ ହୋଇପଡ଼ିଛି । ଏମାନେ ଧାର୍ମିକ ଗୋଷ୍ଠୀ ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ ନୁହନ୍ତି । ମଝିରେ ମଝିରେ ଏମାନଙ୍କ କବିତାରେ ମଧ୍ୟ ନିଷ୍ଠା ଓ ଆଦର୍ଶ ପ୍ରତି ଅନୁରକ୍ତି ପ୍ରକାଶପାଇଛି— ଅବଶ୍ୟ କବିତାର ଗୁଣାତ୍ମକ ବିଚାରରେ ଏମାନେ ସଫଳ କଳାକାର । କେରୁ (Carew), ସାକଲିଂ (Suckling), ଲଭ୍‌ଲେସ୍ (Lovelece) ଆଦି ଏମାନଙ୍କ ମଧ୍ୟରେ ଉଲ୍ଲେଖ-ଯୋଗ୍ୟ ।

ଆଣ୍ଡ୍ରୁ ମାର୍ଭେଲ (Andrew Marvel), ରବାର୍ଟ ହେରିକ୍ (Herrick) ଓ ଆବ୍ରାହାମ୍ କାଉଲିଙ୍କ ରଚନାରେ ଉଭୟ ଗୋଷ୍ଠୀର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ।

## ମିଲ୍‌ଟନ୍ (୧୬୦୮-୭୪)

ଲଣ୍ଡନର ଚିପ୍‌ସାଇଡ୍‌ସ୍ଥିତ ବ୍ରେଡ୍‌ଷ୍ଟ୍ରିଟ୍‌ରେ ମିଲ୍‌ଟନ୍‌ଙ୍କ ଜନ୍ମ । ପିତା ଜନ୍ ମିଲଟନ୍ ବ୍ୟାଙ୍କ ବ୍ୟବସାୟୀ ତଥା ଆଇନଜ୍ଞ ଭାବରେ ଜୀବିକାନିର୍ବାହ କରୁଥିଲେ । ଯୁବାବସ୍ଥାରେ ଅଧ୍ୟାତ୍ମବାଦୀ (Puritan) ଦଳରେ ଯୋଗଦେଇ ନିଜ ପରିବାରରୁ ବହିଷ୍କୃତ ହୋଇଥିଲେ । ସେ ଜଣେ ବିଦ୍ୱାନ, ବ୍ୟବସାୟୀ ଓ ସଙ୍ଗୀତଜ୍ଞ ଭାବରେ ସୁପରିଚିତ ଥିଲେ । ତାଙ୍କ ମାତା ମଧ୍ୟ ସୁରୁଚିସମ୍ପନ୍ନା, ଧର୍ମପରାୟଣା ଓ ପରୋପକାରୀ । ଏହିପରି ଭାବରେ ଉଭୟ ପିତାମାତାଙ୍କ ସହରୁ ମିଲ୍‌ଟନ୍‌ଙ୍କ ଉପରେ ରେନାସାଁ ଓ ଅଧ୍ୟାତ୍ମ ଆନ୍ଦୋଳନର ସମନ୍ୱୟ ଘଟିଥିଲା ।

ମିଲ୍‌ଟନଙ୍କ ପିତା ବେକନ୍‌ଙ୍କ ପରି ପ୍ରଚଳିତ ଶିକ୍ଷାର ପକ୍ଷପାତୀ ନଥିଲେ । ଶିଶୁ ମିଲ୍‌ଟନ୍‌ଙ୍କ ରୁଚି ଅନୁଯାୟୀ ତାଙ୍କୁ କାହାଣୀ, କବିତା ଆଦି ଶିକ୍ଷା ଦେବାର ବ୍ୟବସ୍ଥା ହୋଇଥିଲା । ଅଳ୍ପ ବୟସରୁ ତାଙ୍କର ସଙ୍ଗୀତ, ସାହିତ୍ୟ, ସଂସ୍କୃତି ସର୍ବୋପରି ସୌନ୍ଦର୍ଯ୍ୟ ପ୍ରତି ତୀବ୍ର ଆକର୍ଷଣ ପ୍ରକାଶ ପାଇଥିଲା । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ସେ ଅତ୍ୟନ୍ତ ଅବାଧ୍ୟ ଓ ଅନମନୀୟ ହୋଇଉଠିଥିଲେ । ବେଖାତିରପଣିଆଁ ପାଇଁ ତାଙ୍କୁ ଗୋଟିଏ ବର୍ଷ ଶ୍ରେଣୀରେ ଅଟକେଇବାକୁ ପଡ଼ିଥିଲା । କଲେଜ ଜୀବନରେ ସେ କେତେକ ଲାଟିନ୍ ଓ ଇଂରେଜୀ କବିତା ଲେଖିଥିଲେ । ଖ୍ରୀ: ୧୬୩୨ରେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ଗ୍ରହଣ କରି ପିତାଙ୍କ ସହ ବକିଂହାମ୍ ଶାୟାରରେ ବସବାସ କରିବାକୁ ଲାଗିଲେ । ମିଲଟନ୍ ଇଂଲଣ୍ଡ ଚର୍ଚ୍ଚରେ ଯୋଗଦିଅନ୍ତୁ ବୋଲି ତାଙ୍କ ପିତାମାତାଙ୍କର ଇଚ୍ଛା; କିନ୍ତୁ ସ୍ୱାଧୀନଚେତା ମିଲ୍‌ଟନ୍ ସେଥିରେ ଆବଦ୍ଧ ହେବାକୁ ଚାହିଁନଥିଲେ । ଆଜୀବନ ସେ କୌଣସି ଧର୍ମୀୟ ସଂପ୍ରଦାୟର ଅନୁଶାସନରେ ନିଜକୁ ଶୃଙ୍ଖଳିତ କରିନଥିଲେ । ପରବର୍ତ୍ତୀ କେତେ ବର୍ଷ ସେ ଗ୍ରୀକ୍, ଲାଟିନ୍, ହିବ୍ରୁ, ସ୍ପେନିସ୍, ଫ୍ରେଞ୍ଚ, ଇଟାଲିଆନ୍ ଓ ଇଂରେଜୀ ସାହିତ୍ୟ ବ୍ୟତୀତ ଗଣିତ, ବିଜ୍ଞାନ, ଧର୍ମତତ୍ତ୍ୱ ଓ ସଂଗୀତ ଅଧ୍ୟୟନ କରିଥିବାର ଜଣାଯାଏ । ଇଂଲଣ୍ଡର ଗୃହଯୁଦ୍ଧ ସମୟରେ ସେ ସଂସଦୀୟ ଗଣତନ୍ତ୍ର (Parliamentary cause) ସପକ୍ଷରେ ଲେଖନୀ ଚାଳନା କରିଥିଲେ । ପ୍ରାୟ କୋଡ଼ିଏ ବର୍ଷ ଧରି କବିତ୍ୱ ବିସର୍ଜନ ଦେଇ ସେ ଜାତୀୟ ମୁକ୍ତି କାର୍ଯ୍ୟରେ ଆତ୍ମନିୟୋଗ କରିଥିଲେ । ଏହି ସମୟରେ କବିର ଲେଖନୀରୁ ଝରିପଡ଼ିଛି ଗଦ୍ୟରଚନା, ଯାହାର ଆବେଦନ କବିତା ପରି ତୀବ୍ର । ଏଥିମଧ୍ୟରୁ 'ଟେନ୍ୟୋର୍ ଅଫ୍ କିଂସ୍ ଆଣ୍ଡ

ମାଜିଷ୍ଟ୍ରେଟସ୍’ (Tanure of Kings and Magistrates) ପ୍ରଧାନ । ଏଥିରେ ସେ ରାଜଶକ୍ତି ବିରୁଦ୍ଧରେ ଜନସାଧାରଣଙ୍କ କାର୍ଯ୍ୟାବଳୀକୁ ବଳିଷ୍ଠ ସମର୍ଥନ ଜଣାଇଛନ୍ତି । କ୍ରମ୍‌ୱେଲ୍‌ ଏହି ଆନ୍ଦୋଳନର ଜନନାୟକ ହୋଇଥିବାବେଳେ ମିଲ୍‌ଟନ୍‌ ଥିଲେ ଚିନ୍ତାନାୟକ ।

ଦୁଇଟି ଘଟଣା ମିଲ୍‌ଟନ୍‌ଙ୍କ ଜୀବନରେ ଗଭୀର ପ୍ରଭାବ ବିସ୍ତାର କରିଥିଲା—ଗୋଟିଏ ବିବାହ, ଅନ୍ୟଟି ଦୃଷ୍ଟିହୀନତା । ଖ୍ରୀ: ୧୬୪୩ ରେ ତାଙ୍କର ବିବାହ ହୁଏ ମେରି ପଓ୍ୱେଲ (Mary Powell)ଙ୍କ ସହିତ । ଦୁର୍ଭାଗ୍ୟକୁ କବିପତ୍ନୀ ଜଣେ ରାଜଶକ୍ତି ସମର୍ଥନକାରୀଙ୍କ କନ୍ୟା; ମଉଜ ମଜଲିସ୍‌ରେ ସମୟ କଟାଇବା ତାଙ୍କର ପ୍ରକୃତି ଥିଲା । ଗୋଟିଏ ନୈଷ୍ଠିକ ପରିବାରର ନୀତି ନିୟମରେ ବାନ୍ଧିହେବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ମାସକ ପରେ ସେ ସ୍ୱାମୀଙ୍କୁ ତ୍ୟାଗକଲେ । ନାରୀ ପ୍ରକୃତି ଅବବୋଧରେ ମିଲଟନ୍‌ଙ୍କ ଅସାମର୍ଥ୍ୟ ମଧ୍ୟ ଏହାର କାରଣ ହୋଇପାରେ । ଏହି ଘଟଣାରେ ନିଜ ସପକ୍ଷରେ ମିଲ୍‌ଟନ୍‌ ‘ଡକଟ୍ରିନ୍‌ ଆଣ୍ଡ ଡିସିପ୍ଲିନ୍‌ ଅଫ୍‌ ଡିଭର୍ସ’ (Doctrine and Discipline of Divorce) ନାମକ ଗ୍ରନ୍ଥ ରଚନା କରିଛନ୍ତି । ପଓ୍ୱେଲ ଅନୁତାପ କରିବାରୁ କବି ପୁଣି ତାଙ୍କୁ ଗ୍ରହଣ କରିଥିଲେ । ତଥାପି ତାଙ୍କର ଦାମ୍ପତ୍ୟ ଜୀବନ ସୁଖକର ନଥିଲା । ଖ୍ରୀ: ୧୬୫୬ରେ ପାଓ୍ୱେଲଙ୍କ ମୃତ୍ୟୁ ହୁଏ । ମିଲ୍‌ଟନ୍‌ କେତେ ବର୍ଷ ପରେ ଦ୍ୱିତୀୟ ବିବାହ କରନ୍ତି । ଦୁର୍ଯୋଗକୁ ପନ୍ଦର ମାସ ପରେ ପୁଣି ପତ୍ନୀବିୟୋଗ ଦୁଃଖ ଭୋଗିବାକୁ ପଡ଼ିଲା । ଖ୍ରୀ: ୧୬୬୩ରେ ସେ ତୃତୀୟଥର ପାଇଁ ବିବାହ କରିଥିଲେ । ଏହି ପତ୍ନୀ ଅନ୍ଧ, ବୃଦ୍ଧ, ଦୁସ୍ଥ ମିଲଟନଙ୍କ ମୁଖ୍ୟ ସହାୟ ଥିଲେ ।

ପିଲାଦିନରୁ ଆଖି ଉପରେ ଅଧିକ ଚାପ ପଡ଼ିବା ହେତୁ ଦୃଷ୍ଟି ଶକ୍ତି ତାଙ୍କର କ୍ରମଶଃ ହ୍ରାସପାଉଥିଲା । ରାଜନୈତିକ ସଂଘର୍ଷରେ ଜଡ଼ିତ ହୋଇ ପ୍ରଜାତନ୍ତ୍ର ସପକ୍ଷରେ ଏକାଧିକ ଗ୍ରନ୍ଥ ପ୍ରଣୟନ ଫଳରେ ସେ ଅଧିକ ଦୃଷ୍ଟିଶକ୍ତି ହରାଇଲେ । କିନ୍ତୁ ପ୍ରଜାତନ୍ତ୍ର ପାଇଁ କବିତାକୁ ଉତ୍ସର୍ଗ କଲାପରି ସେ ଚକ୍ଷୁକୁ ମଧ୍ୟ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଥିଲେ । ପ୍ରକୃତରେ ତାହାହିଁ ଘଟିଲା । ପ୍ରଜାତନ୍ତ୍ର ସପକ୍ଷରେ ‘ଡିଫେନସିଓ’ (Defensio) ଗ୍ରନ୍ଥଟି ଶେଷ ହେବା ପୂର୍ବରୁ ସେ ଦୃଷ୍ଟିଶକ୍ତି ସଂପୂର୍ଣ୍ଣ ହରାଇଲେ ।

ରାଜତନ୍ତ୍ରର ପୁନଃ ପ୍ରତିଷ୍ଠା ଫଳରେ ମିଲଟନ୍‌ଙ୍କ ସମସ୍ତ ସାଧନା ଯେପରି ବ୍ୟର୍ଥ ହେଲା ! ରାଜଦଣ୍ଡ ଭୟରେ ତାଙ୍କୁ ଆତ୍ମଗୋପନ କରିବାକୁ ପଡ଼ିଲା । ତାଙ୍କର ଗ୍ରନ୍ଥ ସବୁ ପୋଡ଼ାହେଲା । କନ୍ୟାଗଣ ତାଙ୍କ ଲେଖାପଢ଼ାରେ ସାହାଯ୍ୟ କରିବା ପରିବର୍ତ୍ତେ ବିରକ୍ତି ପ୍ରକାଶ କଲେ । କବିଙ୍କ ‘ସାମସନ୍‌ ଏଗୋନିଷ୍ଟସ’ (Samson Agonistes) ନାଟକରେ ଏହି ବ୍ୟଥାର ସ୍ୱର ଝଂକୃତ । ଏ ପରିସ୍ଥିତିରେ ମଧ୍ୟ କବି ଆଦ୍ୟ ଜୀବନର ସ୍ୱପ୍ନକୁ ଭୁଲି ପାରିନାହାନ୍ତି । ଅନ୍ଧ କବି ଦୀର୍ଘ ସାତବର୍ଷକାଳ ଅନ୍ଧକାରରେ ପରିଶ୍ରମ କରି ଖ୍ରୀ: ୧୬୬୫ରେ ଇଂରେଜୀ ସାହିତ୍ୟର ଅଦ୍ୱିତୀୟ ମହାକାବ୍ୟ ‘ପାରାଡ଼ାଇଜ୍‌ ଲଷ୍ଟ’ ସଂପୂର୍ଣ୍ଣ କଲେ । ଏହାର

ପ୍ରକାଶ ପରେ ତାଙ୍କ ଅବସ୍ଥାର କିଛି ପରିବର୍ତ୍ତନ ଘଟିଥିଲା; ପୃଥିବୀର ଜଣେ ଶ୍ରେଷ୍ଠ କବି ଭାବରେ ସେ ସମ୍ମାନିତ ହେଲେ । ତା ପରବର୍ଷ 'ପାରାଡ଼ାଇଜ୍ ରିଗେନ୍‌ଡ୍' ସଂପୂର୍ଣ୍ଣ କଲେ । ଖ୍ରୀ: ୧୬୭୧ରେ ତାଙ୍କର ଶେଷ ଶକ୍ତିଶାଳୀ ଲେଖା 'ସାମସନ ଏଗୋନିଷ୍ଟସ୍' ପ୍ରକାଶ ପାଇଥିଲା । ଖ୍ରୀ: ୧୬୭୪ରେ କବିଙ୍କର ଅନ୍ତିମ ଯାତ୍ରା ।

## ମିଲ୍‌ଟନ୍‌ଙ୍କ କାବ୍ୟସମ୍ଭାର :

ମିଲ୍‌ଟନ୍‌ଙ୍କ ଆଦ୍ୟଜୀବନର କବିତା ଖ୍ରୀ: ୧୬୨୯ରୁ ୧୬୪୦ ମଧ୍ୟରେ ଲିଖିତ । ସେଗୁଡ଼ିକ କଲେଜ ଜୀବନ ଓ ହର୍ଟନ୍‌ରେ ରହଣି ବେଳର ଲେଖା । ତାପରେ ଦୀର୍ଘ କୋଡ଼ିଏ ବର୍ଷ ରାଜନୈତିକ ହଟ୍ଟଗୋଳରେ ଯୋଗଦେଇ କେତୋଟି ସନେଟ୍ ବ୍ୟତୀତ ଅନ୍ୟ କିଛି ଲେଖିନାହାନ୍ତି । କବିତ୍ୱର ଦ୍ୱିତୀୟ ସ୍ଫୁରଣ ଘଟେ ଶେଷ ବୟସରେ, ଖ୍ରୀ: ୧୬୬୦ରୁ ୧୬୭୪ ଭିତରେ ।

ଆଦ୍ୟ ଜୀବନର ଲେଖାରେ ରେନାସାଁର ସମସ୍ତ ବୈଶିଷ୍ଟ୍ୟ ଦେଖାଯାଏ । 'ଅନ୍ ଦି ମର୍ଣ୍ଣିଂ ଅଫ୍ କ୍ରିଷ୍ଟସ୍ ନ୍ୟାଟିଭିଟି' ନାମକ ସମ୍ବୋଧଗୀତିଟି ତାଙ୍କର ପ୍ରଥମ ଲେଖା ହେଲେ ମଧ୍ୟ ଏକ ଅନବଦ୍ୟ ଗୀତିକବିତା ଭାବରେ ଗୃହୀତ ।

'ଲ'ଲେଗ୍ରୋ' (L'Allegro) ଓ 'ଇଲପେନ୍‌ସେରୋସୋ' (Ilpenseroso) ଦୁଇଟି ଦୀର୍ଘ କବିତା; ବୋଧହୁଏ ଖ୍ରୀ: ୧୬୩୨ର ରଚନା । ପ୍ରଥମଟିରେ ଜଣେ ଆମୋଦପ୍ରିୟ ଓ ଦ୍ୱିତୀୟଟିରେ ଜଣେ ଚିନ୍ତାଶୀଳ ବ୍ୟକ୍ତିର ଅଭିଜ୍ଞତା ବର୍ଣ୍ଣିତ । ପ୍ରଥମଟିରେ ସକାଳ ଓ ଅନ୍ୟଟିରେ ସନ୍ଧ୍ୟାକାଳୀନ ପରିବେଶକୁ ପୃଷ୍ଠଭୂମି ଭାବରେ ଗ୍ରହଣକରି କବି ଦୁଇଟି ବିପରୀତମୁଖୀ ବ୍ୟକ୍ତିତ୍ୱକୁ ସ୍ପଷ୍ଟ କରିପାରିଛନ୍ତି ।

'କୋମାସ' (Comus : ୧୬୩୧) ଏକ ଗୀତିନାଟ୍ୟ ବା 'ମାସ୍କ୍' (Masque) । ମାସ୍କ୍‌ରେ ନଟନଟୀ ମୁଖା ପିନ୍ଧି ଅଭିନୟ କରନ୍ତି । ମଞ୍ଚକଳା ଦୃଷ୍ଟିରୁ କୋମାସ୍‌ର ସାଫଲ୍ୟ କ୍ୱଚିତ୍ । ନୀତିଶିକ୍ଷା ଦେବାର ମନୋବୃତ୍ତି ହେତୁ ନାଟକୀୟ ଉତ୍କଣ୍ଠା ବ୍ୟାହତ । ତଥାପି ଏହା ସୁଖପାଠ୍ୟ । ଅମିତାକ୍ଷର ଛନ୍ଦ ଓ ଗୀତିଧର୍ମିତା ପାଇଁ ଏହା ଅତ୍ୟନ୍ତ ଆକର୍ଷଣୀୟ । ଏହାର ନାୟିକା ଜଙ୍ଗଲ ମଧ୍ୟରେ କୋମାସ୍ ନାମକ ମଦ୍ୟ ଓ ନାରୀ ଆସକ୍ତ ଗୋଟିଏ ଦେବତାର କବଳରୁ ଆତ୍ମରକ୍ଷା କରିଛି । ଏଥିରେ ସତୀତ୍ୱର ମହିମା କୀର୍ତ୍ତିତ ।

'ଲିସିଡ଼ାସ' (Lycidas : ୧୬୩୭) ଶୋକକବିତାଟି ନିଜ ବନ୍ଧୁ ଏଡ୍‌ୱାର୍ଡ୍ କିଙ୍ଗ୍‌ଙ୍କ ଅକାଳମୃତ୍ୟୁରେ ଲିଖିତ । ଜୀବନର ଅନିଶ୍ଚିତତା ତଥା ନିଜର ମହାନ୍ କବିଗୌରବ ଅଭିଳାଷ ମୃତ୍ୟୁରେ ବିଲୀନ ହେବା ଆଶଙ୍କା ଏହାର ମୁଖ୍ୟ ସ୍ୱର । ସନ୍ଦେହ, ଭୟ, କ୍ରୋଧ ମଧ୍ୟ ଦେଇ କବି ମାନସିକ ଭାରସାମ୍ୟ ପର୍ଯ୍ୟାୟରେ ପହଞ୍ଚିଛନ୍ତି । ପ୍ରକୃତ ଯଶ ଈଶ୍ୱରଙ୍କଠାରେ ଓ ସ୍ୱର୍ଗରେ ସୁଲଭ ବୋଲି ତାଙ୍କର ହୃଦ୍‌ବୋଧ ହୋଇଛି । ଏହା ପାଷ୍ଟୋରାଲ ଏଲିଜି ଜାତୀୟ । ଏଥିରେ ଉଭୟ କବି ଓ ତାଙ୍କ ବନ୍ଧୁ ମେଷପାଳକ ଭାବରେ କଳ୍ପିତ ।

ତତ୍ ବ୍ୟତୀତ ଏ ସମୟରେ ଲିଖିତ କେତୋଟି ସନେଟ୍ ତାଙ୍କର ମହାନ୍ କବିପ୍ରତିଭାର ପରିଚୟ ଦିଏ । ଏ କ୍ଷେତ୍ରରେ ସେ ମୁଖ୍ୟତଃ ଇଟାଲୀୟ ଆଙ୍ଗିକ ଗ୍ରହଣ କରିଛନ୍ତି । ତାଙ୍କର ଅନ୍ତ୍ୟମେଳ ସୂତ୍ର କଖଖକ କଖଖକ ଗଘଙ ଗଘଙ, କେତେକ କ୍ଷେତ୍ରରେ ସନେଟ୍‌ର ଦ୍ୱିତୀୟ ଭାଗ ଅର୍ଥାତ୍ ଷଟ୍‌କ (Sestet)ର ମିଳନକ୍ରମ ଗଘ ଗଘ ଗଘ ହୋଇଛି । ପୂର୍ବରୁ ସାଧାରଣତଃ ପ୍ରେମକୁ ଭିତ୍ତିକରି ସନେଟ୍ ଲେଖାହେଉଥିଲା; କିନ୍ତୁ ମିଲ୍‌ଟନ୍‌ଙ୍କ ଲେଖନୀରେ ଏହା ନୂତନ ଦିଗ୍‌ଦର୍ଶନ ଲାଭକଲା । ବ୍ୟକ୍ତିଗତ ଜୀବନର ଘଟଣା ବ୍ୟତୀତ ସ୍ୱଦେଶପ୍ରେମ, କର୍ତ୍ତବ୍ୟବୋଧ ଓ ରାଜନୈତିକ ବିଷୟକୁ ନେଇ ତାଙ୍କ ସନେଟ୍ ରଚିତ । ସେଥିମଧ୍ୟରୁ 'ଅନ୍ ହିଜ୍ ବ୍ଲାଇଣ୍ଡ୍‌ନେସ୍', 'ଅନ୍ ରିଚିଂ ଦି ଏଜ୍ ଅଫ୍ ଟ୍ୱେଣ୍ଟିଥ୍ରି', 'ଅନ୍ ହିଜ୍ ଡିସିକ୍‌ଡ ଓ୍ୱାଇଫ୍', 'ଟୁ ଦି ନାଇଟିଂଗେଲ୍', 'ଦି ମାସାକାର୍ ଇନ୍ ପିଡ୍‌ମଣ୍ଟ' ପରି ସନେଟ୍ ବହୁ ଆଦୃତ ।

## ମିଲ୍‌ଟନ୍‌ଙ୍କ ଗଦ୍ୟରଚନା :

ମିଲ୍‌ଟନ୍‌ଙ୍କ ଗଦ୍ୟରଚନା ସମ୍ବନ୍ଧରେ ପରସ୍ପରବିରୋଧୀ ମତବାଦ ଦେଖିବାକୁ ମିଳେ । ସମ୍ଭବତଃ ଏହି ରଚନା ମୂଳରେ ସୃଜନଶୀଳ ସାହିତ୍ୟସୃଷ୍ଟିର ଅଭିପ୍ରାୟ ନଥିଲା । ଜୀବନର ମଧ୍ୟଭାଗରେ ଖ୍ରୀ: ୧୬୪୦ରୁ ୧୬୬୦ ମଧ୍ୟରେ ଏଗୁଡ଼ିକ ରଚିତ । ବ୍ୟକ୍ତିଗତ ଜୀବନର ଘଟଣା ବା ସାମାଜିକ ସମସ୍ୟା ଉପରେ ଏଗୁଡ଼ିକ ଆଧାରିତ । ପଚିଶଟି ଗଦ୍ୟ ପୁସ୍ତିକା (ପାମ୍ପଲେଟ୍) ମଧ୍ୟରୁ ଏକୋଇଶଟି ଇଂରାଜୀରେ ଓ ଚାରୋଟି ଲାଟିନ୍‌ରେ ଲିଖିତ । କବିଙ୍କ ଜୀବନୀ ପ୍ରସଙ୍ଗରେ କେତୋଟି ଗଦ୍ୟରଚନାର ସୂଚନା ଦିଆଯାଇଛି । କବି ଅତ୍ୟନ୍ତ ବଳିଷ୍ଠ ଯୁକ୍ତି ସାହାଯ୍ୟରେ ନିଜର ମତବାଦ ପ୍ରତିଷ୍ଠା କରିଥାନ୍ତି; ବହୁ ତଥ୍ୟ ଉପସ୍ଥାପନପୂର୍ବକ ବିରୋଧୀ ପକ୍ଷକୁ ବିପର୍ଯ୍ୟସ୍ତ କରିପକାନ୍ତି ।

ମିଲ୍‌ଟନ୍‌ଙ୍କ ଏକମାତ୍ର ଉଲ୍ଲେଖଯୋଗ୍ୟ ଗଦ୍ୟଗ୍ରନ୍ଥ 'ଆରିଓପ୍ୟାଜିଟିକା' (Areopagitica : ୧୬୪୪) । ଏହା ସୁଖପାଠ୍ୟ । ବିଷୟବସ୍ତୁ ଦୃଷ୍ଟିରୁ ମଧ୍ୟ ଏହାର ସ୍ଥାୟୀମୂଲ୍ୟ ସ୍ୱୀକାର୍ଯ୍ୟ । ପୁସ୍ତକଟି ସ୍ୱାଧୀନ ଚିନ୍ତା ଓ ସ୍ୱାଧୀନ ମତପ୍ରକାଶ ସମ୍ବନ୍ଧୀୟ । ସମକାଳୀନ ଇଂଲଣ୍ଡରେ ପୁସ୍ତକ ପ୍ରକାଶ ପାଇଁ ରାଜକୀୟ ଅନୁମୋଦନ ଆବଶ୍ୟକ ହେଉଥିଲା । ଶାସକ ଓ ବିଶପଙ୍କ ଅପ୍ରୀତିକର କୌଣସି ଗ୍ରନ୍ଥ ପ୍ରକାଶର ଅନୁମତି ପାଉନଥିଲା । ମିଲ୍‌ଟନ୍ ଏହାର ତୀବ୍ର ପ୍ରତିବାଦ କରିଥିଲେ । ତାଙ୍କ ଭାଷାରେ "...Who kills a man kills a reasonable creature, God's image; but he who destroys a good book, kills reason itself, kills the image of God as it were in the eye."— Areopagitica.

## ଦ୍ୱିତୀୟ ପର୍ଯ୍ୟାୟର କବିତା :

ଇଂରେଜୀ ସାହିତ୍ୟର ଶ୍ରେଷ୍ଠ ମହାକାବ୍ୟ 'ପାରାଡ଼ାଇଜ୍‌ ଲଷ୍ଟ' ଏହି ପର୍ଯ୍ୟାୟର ରଚନା । ଏହା ଖ୍ରୀ: ୧୬୫୮ରୁ ୧୬୬୫ ମଧ୍ୟରେ ରଚିତ ଓ ଖ୍ରୀ: ୧୬୬୭ରେ ପ୍ରକାଶିତ ହୋଇଥିଲା । କବି ସେତେବେଳକୁ ସମ୍ପୂର୍ଣ୍ଣ ଦୃଷ୍ଟିହୀନ; ସମଗ୍ର ମହାକାବ୍ୟଟି ଅନ୍ୟମାନଙ୍କ-ଦ୍ୱାରା ଲେଖାଇନେଇଥିଲେ ।

ସମଗ୍ର ମହାକାବ୍ୟଟି ବାର ଖଣ୍ଡରେ ବିଭକ୍ତ । ବାଇବେଲରେ ବର୍ଣ୍ଣିତ ମନୁଷ୍ୟର ସ୍ୱର୍ଗଚ୍ୟୁତି ପ୍ରସଙ୍ଗ ଏହାର ବିଷୟବସ୍ତୁ । ଏହା ପାରମ୍ପରିକ ମହାକାବ୍ୟ ରୀତିରେ ଲିଖିତ ହେଲେ ମଧ୍ୟ କବିଙ୍କ ସ୍ୱକୀୟତାରେ ଭାସ୍ୱର । କାବ୍ୟ ଆରମ୍ଭରେ ରହିଛି ବସ୍ତୁ-ନିର୍ଦ୍ଦେଶ ଓ ନମସ୍କ୍ରିୟା—

Of Man's First Disobedience, and the Fruit
Of that Forbidden Tree, whose mortal taste
Brought Death into the world, and all our woe,
With loss of Eden, till one greater man
Restore us, and regain the blissful seat,
Sing Heavenly Muse, that on the secret top
Of Orab, or of Sinai, dist inspire
That Shepherd, who first taught the chosen seed,
In the beginning how the Heav'ns and Earth
Rose out of chaos.

ତା'ପରେ ରହିଛି ସାଟାନ୍ ଓ ତା'ର ଅନୁଗାମୀ ଉପଦେବତା (Angels)ଙ୍କ ବିଦ୍ରୋହର କାହାଣୀ । ସେମାନେ ଈଶ୍ୱରଙ୍କ ବିରୋଧରେ ବିଦ୍ରୋହ କରି ନର୍କରେ ପଡ଼ିଛନ୍ତି; ଏଣୁ ପ୍ରତିଶୋଧର ଉପାୟ ଚିନ୍ତାକରୁଛନ୍ତି । ବିଭିନ୍ନ ସର୍ଗରେ ଏହି ପ୍ରତିଶୋଧପରାୟଣ ଉପଦେବତାଙ୍କ ମନ୍ତ୍ରଣା, ଈଶ୍ୱରଙ୍କ ଅତିପ୍ରିୟ ସୃଷ୍ଟି ଇଡ଼େନ୍‌ଗାର୍ଡ଼େନର ଆଦାମ୍‌ ଓ ଇଭ୍‌ଙ୍କୁ ପ୍ରଲୁବ୍ଧ କରିବା ପାଇଁ ସାଟାନ୍‌ର ଦାୟିତ୍ୱ ଗ୍ରହଣ, ରାଫାଏଲ୍‌ ନାମକ ଜଣେ ଦେବଦୂତଙ୍କ ମାଧ୍ୟମରେ ଆଦାମ୍‌ ଓ ଇଭ୍‌ଙ୍କୁ ଈଶ୍ୱରଙ୍କ ଚେତାବନି, ରାଫାଏଲକଥିତ ପୃଥିବୀର ସୃଷ୍ଟି କାହାଣୀ ବର୍ଣ୍ଣନା ଓ ଅବଶେଷରେ ସାଟାନ୍‌ର ପ୍ରରୋଚନାରେ ଇଭ୍ ଓ ଆଦାମ୍‌ଙ୍କ ଜ୍ଞାନଫଳ ଭକ୍ଷଣ ତଥା ପତନ ଓ ତାଙ୍କ ପ୍ରତି ଈଶ୍ୱରଙ୍କ ଦଣ୍ଡାଦେଶ ବର୍ଣ୍ଣିତ । ଆଦାମ୍‌ ଓ ଇଭଙ୍କ ଅନୁତାପ ହେତୁ ଈଶ୍ୱର ଦୟାପରବଶ ହୋଇ ଭବିଷ୍ୟତରେ ସେ ଦୁହିଁଙ୍କ ବଂଶଧରମାନେ ମୁକ୍ତିପାଇବାର ପ୍ରତିଶ୍ରୁତି ଦେଇଛନ୍ତି । ତଥାପି ଈଶ୍ୱରଙ୍କ ଦଣ୍ଡାଦେଶ ଅପରିବର୍ତ୍ତନୀୟ । କାବ୍ୟର ଶେଷଭାଗରେ ସ୍ୱର୍ଗରାଜ୍ୟରୁ ଆଦାମ୍‌ ଓ ଇଭ୍‌ ବିଦାୟ ନେଇଛନ୍ତି ଓ ତାଙ୍କ ପଛେ ପଛେ ସ୍ୱର୍ଗର ଦ୍ୱାର ବନ୍ଦହୋଇଯାଇଛି ।

ସ୍ୱର୍ଗ, ନର୍କ, ପୃଥିବୀ, ମହାଶୂନ୍ୟ ଓ ଆଦମମାନବର ଲୀଳାକ୍ଷେତ୍ର ଇଡ଼େନ୍‌ଗାର୍ଡ଼େନ ଭଳି ବିଶାଳ ପୃଷ୍ଠଭୂମି ଉପରେ ଏହାର ବିଷୟବସ୍ତୁ ପରିକଳ୍ପିତ । ସ୍ୱର୍ଗର ଉପବନ, ଇଡେନ୍‌ଗାର୍ଡେନ୍‌ର ଶାନ୍ତସ୍ନିଗ୍ଧ ପରିବେଶ, ଅତଳ ଅନ୍ଧକାର ଓ ସ୍ୱର୍ଗୀୟ ଆଲୋକ ମଧ୍ୟରେ ଦୋଳାୟମାନ ସୂର୍ଯ୍ୟ ତଥା ଅନ୍ୟାନ୍ୟ ନକ୍ଷତ୍ରର ଚିତ୍ରଧର୍ମୀ ବର୍ଣ୍ଣନା କବିଙ୍କର ଅସାଧାରଣ କଳ୍ପନାଶକ୍ତି ଓ ଶିଳ୍ପନୈପୁଣ୍ୟର ପରିଚୟ ଦିଏ । ବିଷୟ କଳ୍ପନାର ବିପୁଳତା ମହାକାବ୍ୟଟିର ଅନ୍ୟତମ ବୈଶିଷ୍ଟ୍ୟ ।

ଆଦାମ୍ ଓ ଇଭ୍‌ଙ୍କ ପତନକୁ କେନ୍ଦ୍ର କରି ମହାକାବ୍ୟଟି ରଚିତ ହେଲେ ମଧ୍ୟ ଏ ଦୁହେଁ ମହାକାବ୍ୟର ନାୟକ ନାୟିକା ନୁହନ୍ତି ବୋଲି କେତେକ ସମାଲୋଚକଙ୍କ ମତ । ଦୁହେଁ କେବଳ ଈଶ୍ୱର ଓ ସାଟାନ୍‌ଙ୍କ ସଂଘର୍ଷର ଶିକାର ହୋଇଛନ୍ତି । ଅନ୍ୟପକ୍ଷରେ ସାଟାନ୍ ତା'ର ଅନୁଗାମୀ ବିଦ୍ରୋହୀ ଉପଦେବତା ଓ ଈଶ୍ୱରଙ୍କ ମଧ୍ୟରେ ତୁମୁଳ ସଂଘର୍ଷ ନବମ ସର୍ଗ ପର୍ଯ୍ୟନ୍ତ ବିସ୍ତୃତ ହୋଇ ସାଟାନ୍‌ର ଗୁରୁତ୍ୱ ବଢ଼ାଇଦେଇଛି । ସାଟାନ୍ ଜଣେ କୂଟ କୌଶଳୀ ତଥା ପରାକ୍ରମୀ ଦକ୍ଷ ସେନାପତି ଭାବରେ ଚିତ୍ରିତ ହୋଇଛି—ପତିତ ଓ ହତୋତ୍ସାହ ଉପଦେବତାଙ୍କୁ ସେ ଯେଉଁଭଳି ଉତ୍ସାହବାଣୀ ଶୁଣାଇ ଉଦ୍ଦୀପ୍ତ କରିଛି ତାହା ପ୍ରକୃତରେ ଅତ୍ୟନ୍ତ ହୃଦ୍ୟ—

What though the field be lost ?
All is not lost the unconquerable will,
And study of revenge, immortal hate,
And Courage never to submit or yield !

ସାଟାନ୍ ପ୍ରତି ଏତାଦୃଶ ମମତାଧିକ୍ୟ ଯୋଗୁଁ କବି ବ୍ଲେକ୍ କହନ୍ତି ଯେ ମିଲ୍‌ଟନ୍ ଅଲକ୍ଷ୍ୟରେ ସାଟାନ୍‌ର ଦଳରେ ହିଁ ଯୋଗ ଦେଇଛନ୍ତି । ସାଟାନ୍ ହିଁ ଏହି ମହାକାବ୍ୟର ନାୟକ ଭାବରେ ପ୍ରତିଭାତ ହୁଏ ।

ଭାବଗମ୍ଭୀର ଓଜଃସ୍ୱିନୀ ଭାଷାରେ ଲିଖିତ 'ପାରାଡ଼ାଇଜ୍ ଲଷ୍ଟ୍'ର ରଚନାରୀତିକୁ ଆର୍ନଲ୍‌ଡ୍ ଗ୍ରାଣ୍ଡ୍ ଷ୍ଟାଇଲ୍ (grand style) ବୋଲି କହିଛନ୍ତି । ଏକ ମହାନ୍ ବିଷୟ-ବସ୍ତୁର ପରିକଳ୍ପନା କରିବା ସଙ୍ଗେ ସଙ୍ଗେ କବି ଅନୁରୂପ ଶୈଳୀ ମଧ୍ୟ ଗ୍ରହଣ କରିଛନ୍ତି । ମହାକାବ୍ୟଟି ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ଶବ୍ଦ ଯୋଜନା, ଛନ୍ଦ, ଧ୍ୱନି, ଗାମ୍ଭୀର୍ଯ୍ୟ ଓ ସାଂଗୀତିକତାରେ ଏହି ରଚନାରୀତି ଅନନ୍ୟ ।

ହୋମାର୍‌ଙ୍କ ରୀତିରେ କବି ମହାକାବ୍ୟିକ ଉପମା ବ୍ୟବହାର କରିଛନ୍ତି । ସ୍ଥାନ ଓ ବ୍ୟକ୍ତିବିଶେଷଙ୍କ ନାମ ଚୟନରେ ସ୍ୱାତନ୍ତ୍ର୍ୟ କାବ୍ୟିକ ଗାମ୍ଭୀର୍ଯ୍ୟର ଉପଯୋଗୀ ହୋଇଛି ।

ମହାକାବ୍ୟର ଛନ୍ଦେ ଛନ୍ଦେ କବିଙ୍କ ବ୍ୟକ୍ତିଗତ ଜୀବନର ଛାପ ଲକ୍ଷ୍ୟ କରାଯାଏ । ସେ ଅତ୍ୟନ୍ତ ନୀତିବାଦୀ (Puritan) । ଏହି ନୀତିବାଦିତା ତଥା ଆଧ୍ୟାତ୍ମିକତା ତାଙ୍କ

କାବ୍ୟର ମୁଖ୍ୟସ୍ୱର । 'ପାରାଡାଇଜ୍ ଲଷ୍ଟ'ରେ ଧର୍ମ ଓ ନୀତିବାଦିତାର ଜୟଗାନ କରାଯାଇଛି । କବି ସ୍ୱଭାବତଃ ନାରୀ-ବିଦ୍ୱେଷୀ । ନାରୀର ମାଧ୍ୟମ ବିନା ମାନବସୃଷ୍ଟିର ଅନ୍ୟ କୌଣସି ଉପାୟ ଈଶ୍ୱରୁ ନିର୍ଦ୍ଦେଶ ନକଲେ କାହିଁକି ବୋଲି ସେ ଆଦାମ୍ ମୁଖରେ ପ୍ରଶ୍ନ ତୋଳିଛନ୍ତି । ନାରୀ ହିଁ ସମସ୍ତ ଦୁର୍ଗତିର କାରଣ । ତାଙ୍କ ଭାଷାରେ—

> This mischief had not then befallen,
> And more that shall befall; innumerable
> Disturbances on Earth through female snares
> And strait conjunction with this sex.

ଆଦାମ୍, ସାଟାନ୍, ରାଫାଏଲ୍, ଇଭ୍ ପ୍ରତ୍ୟେକଙ୍କ ଭିତରେ ମିଲ୍‌ଟନ ଆତ୍ମପ୍ରକାଶ କରିଛନ୍ତି । କଲରିଜ୍‌ଙ୍କ ମତରେ "...John Milton himself is in every line of Paradise Lost."

କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ସଂରକ୍ଷିତ ମିଲ୍‌ଟନ୍‌ଙ୍କ ଏକ ଟିପାଖାତାରେ ପ୍ରାୟ ଏକ ଶହ କଥାବସ୍ତୁର ବିବରଣୀ ମିଳେ—ଷାଠିଏଟି ବାଇବେଲ୍‌ରୁ, ତେତିଶଟି ଇଂରେଜୀ ଓ ପାଞ୍ଚଟି ସ୍କଟିସ୍ ଇତିହାସରୁ ଗୃହୀତ । ମହାକାବ୍ୟଟିରେ ଏହି ସବୁ ବିଷୟ ଗ୍ରଥିତ ।

ସମାଲୋଚକମାନେ ଏହି ମହାକାବ୍ୟର କେତେକ ତ୍ରୁଟି ଦର୍ଶାଇଥାନ୍ତି । କେତେକଙ୍କ ମତରେ ଏହା ଧାର୍ମିକ ମହାକାବ୍ୟ ହୋଇଥିବାରୁ ଏତେ ଆଦୃତ ହୋଇପାରିଛି — ସାହିତ୍ୟିକ କୃତି ହିସାବରେ ନୁହେଁ; ସାଟାନ୍ ବ୍ୟତୀତ ଅନ୍ୟ ଚରିତ୍ର ସବୁ ଯଥାଯଥ ଭାବରେ ଚିତ୍ରିତ ହୋଇପାରିନାହିଁ । ହାସ୍ୟରସର ଅଭାବ ରହିଛି । ଅଯଥା ପାଣ୍ଡିତ୍ୟ ପ୍ରଦର୍ଶନ, ବାଗାଡ଼ମ୍ବର ଓ ପ୍ରଗଳ୍‌ଭତା ମଧ୍ୟ ଏହାର ତ୍ରୁଟି । କିନ୍ତୁ ମହାକାବ୍ୟର ଅନ୍ୟାନ୍ୟ ମହତ୍ତ୍ୱ ନିକଟରେ ଏ ସମସ୍ତ ତଥାକଥିତ ତ୍ରୁଟି ନଗଣ୍ୟ ।

କବିଙ୍କର ଅନ୍ୟ ଦୁଇ ବିଶିଷ୍ଟ କୃତି "ପାରାଡ଼ାଇଜ୍ ରିଗେନ୍‌ଡ୍" (Paradise Regained) ଓ 'ସାମସନ ଆଗୋନିଷ୍ଟସ' (Samson Agonistes) ଏକତ୍ର ଖ୍ରୀ: ୧୬୭୧ରେ ପ୍ରକାଶିତ ହୋଇଥିଲା ।

ଜଣେ ବନ୍ଧୁଙ୍କ ଅନୁରୋଧରେ ମିଲ୍‌ଟନ୍ 'ପାରାଡ଼ାଇଜ ରିଗେନ୍‌ଡ୍' ଲେଖିଥିଲେ । ଏହା 'ପାରାଡ଼ାଇଜ ଲଷ୍ଟ'ର ପରିପୂରକ । ପାରାଡ଼ାଇଜ୍ ଲଷ୍ଟରେ ଆଦମ୍ ଓ ଇଭ୍ ମାଧ୍ୟମରେ ମାନବସମାଜର ସ୍ୱର୍ଗଚ୍ୟୁତି ବର୍ଣ୍ଣିତ ହୋଇଥିବାବେଳେ ଦ୍ୱିତୀୟ କାବ୍ୟଟିରେ ଯୀଶୁ ଖ୍ରୀଷ୍ଟଙ୍କ ମାଧ୍ୟମରେ ମାନବ-ସମାଜ ପୁଣି ଈଶ୍ୱରଙ୍କ କରୁଣା ଫେରିପାଇବା ପ୍ରସଙ୍ଗ ବର୍ଣ୍ଣିତ । ସାଟାନ୍ ନାନା ଭାବରେ ଖ୍ରୀଷ୍ଟଙ୍କୁ ପ୍ରଲୋଭିତ କରିବାକୁ ଚେଷ୍ଟାକରିଛି; ଅବଶେଷରେ ଯୀଶୁଙ୍କର ବିଜୟ ଘଟିଛି । ଏହି ପ୍ରଲୋଭନ ଓ ବିଜୟ ଚାରୋଟି ସର୍ଗରେ ବର୍ଣ୍ଣିତ । 'ପାରାଡ଼ାଇଜ୍ ଲଷ୍ଟ'ଠାରୁ ଏହା ଉତ୍କୃଷ୍ଟତର ହେବ ବୋଲି ମିଲ୍‌ଟନ୍‌ଙ୍କର ବିଶ୍ୱାସ ଥିଲା ।

ଅବଶ୍ୟ ଏହାର ଅଳ୍ପ କେତୋଟି ଅଂଶ 'ପାରାଡ଼ାଇଜ୍ ଲଷ୍ଟ'ର ଶିଳ୍ପନୈପୁଣ୍ୟ ସ୍ମରଣ କରାଇଦିଏ; କିନ୍ତୁ ସାମଗ୍ରିକଭାବରେ ଏହା ଉକ୍ତ ମହାକାବ୍ୟଠାରୁ ନିଃସନ୍ଦେହରେ ନ୍ୟୂନ ।

ଯୀଶୁ ଖ୍ରୀଷ୍ଟ ଏଠାରେ ଅତିମାନବ ଭାବରେ ଚର୍ଚ୍ଚିତ । ଅନ୍ୟ ପକ୍ଷରେ ସାଇତାନ 'ପାରାଡ଼ାଇଜ୍ ଲଷ୍ଟ'ର ସାଇତାନ ନୁହେଁ; ପୂର୍ବର ଶୌର୍ଯ୍ୟ, ବୀର୍ଯ୍ୟ ଓ ଉଦ୍ଦାମତା ତାର ନାହିଁ । ଶକ୍ତି ତାର ଖର୍ବ । ଏଣୁ ପରିଣତି ସମ୍ବନ୍ଧରେ ଉତ୍କଣ୍ଠା ରହୁନାହିଁ । ଘଟଣାର ତୀବ୍ର ସଂଘାତ ମଧ୍ୟ ଦେଖାଯାଏ ନାହିଁ । ଯୀଶୁ ଖ୍ରୀଷ୍ଟ କେବଳ ପ୍ରଲୋଭନର ନିଷ୍କ୍ରିୟ ପ୍ରତିରୋଧ କରିଛନ୍ତି । ଖ୍ରୀଷ୍ଟଙ୍କ ମୁଖରେ ଧର୍ମୀୟ ନୀତି ବର୍ଣ୍ଣନା କରିବା ସତେ ଯେପରି କାବ୍ୟଟିର ଉଦ୍ଦେଶ୍ୟ । ଏହାର ପ୍ରକାଶଭଙ୍ଗୀ ସରଳ ଓ ଲାଟିନ୍ ପ୍ରଭାବରୁ ଅନେକ ମାତ୍ରାରେ ମୁକ୍ତ । ମିଲ୍‌ଟନ୍‌ଙ୍କ ମାନସିକ ବିବର୍ତ୍ତନ ଲକ୍ଷ୍ୟ କରିବାରେ ଏହା ଅତ୍ୟନ୍ତ ସହାୟକ । ଖ୍ରୀଷ୍ଟଙ୍କ ମୁଖରେ ସ୍ଥାନେ ସ୍ଥାନେ ତାଙ୍କ ନିଜ ମନୋବୃତ୍ତିର ପରିପ୍ରକାଶ ଘଟିଛି । କ୍ଲାସିକେଲ୍ କବିତା ପ୍ରତି ମୋହ ତୁଟିଯାଇଛି । କବି ବର୍ତ୍ତମାନ ବାର୍ଦ୍ଧକ୍ୟରେ ଧର୍ମ ସାହିତ୍ୟ ପ୍ରତି ଆକୃଷ୍ଟ ।

'ସାମ୍‌ସନ୍ ଏଗୋନିଷ୍ଟ୍‌ସ୍' (Samson Agonistes) ଗ୍ରୀକ୍ ଆଦର୍ଶରେ ଏକ ସାର୍ଥକ ନାଟ୍ୟ ପ୍ରୟାସ । ବାଇବେଲ୍ ଅନ୍ତର୍ଗତ 'ଦି ବୁକ୍ ଅଫ୍ ଜଜେସ୍' (The Book of Judges) ରୁ ଏହାର କଥାବସ୍ତୁ ଗୃହୀତ ।

ସାମସନ୍ ପ୍ରବଳ ପରାକ୍ରମୀ ହିବ୍ରୁ ବୀର । ନିଜ ଶକ୍ତିର ରହସ୍ୟ ସ୍ତ୍ରୀକୁ ଜଣାଇ ଅବଶେଷରେ ପ୍ରତାରିତ ହୋଇଛି । ସେ ରହସ୍ୟ ଶତ୍ରୁଙ୍କ ହସ୍ତଗତ ହୋଇଛି । ସାମ୍‌ସନ ଶତ୍ରୁଙ୍କଦ୍ୱାରା ପରାଜିତ ଓ ବନ୍ଦୀ ହୋଇଛି । ଏହି ବନ୍ଦୀ ଅବସ୍ଥାରେ ତାକୁ ଅଶେଷ ନିର୍ଯ୍ୟାତନା ସହ୍ୟ କରିବାକୁ ହୋଇଛି—ଅବଶେଷରେ ଏକ କୌଶଳ ପ୍ରୟୋଗକରି ଶତ୍ରୁଙ୍କୁ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଧ୍ୱସ୍ତ ହୋଇଛି ।

ସାମ୍‌ସନ୍‌ର ବନ୍ଦୀକାଳୀନ ଦୟନୀୟ ଅବସ୍ଥା ସହ ଅନ୍ଧ ମିଲ୍‌ଟନ୍‌ଙ୍କ ଜୀବନର ବହୁ ସାମ୍ୟ ପରିଲକ୍ଷିତ ।

ନାଟ୍ୟ ରଚନାରେ କବି ଗ୍ରୀକ୍ ଟ୍ରାଜେଡ଼ିର ଆଦର୍ଶକୁ ଅତ୍ୟନ୍ତ ନିଷ୍ଠାର ସହ ଅନୁସରଣ କରିଛନ୍ତି; ଅନ୍ୟ ପକ୍ଷରେ ଏହାର ଅନ୍ତଃସ୍ୱର ହିବ୍ରୁ ଧର୍ମଭାବାପନ୍ନ । ସାମ୍‌ସନ୍ ମୂର୍ତ୍ତିପୂଜାର ବିରୋଧୀ । ନୀଚ ଓ ଘୃଣ୍ୟ ଅବସ୍ଥାକୁ ସେ ଗ୍ରହଣକରିବାକୁ ପ୍ରସ୍ତୁତ ନୁହେଁ; ଈଶ୍ୱରଙ୍କ ଅପାର କରୁଣାରେ ସେ ବିଶ୍ୱାସୀ ।

## ନାଟକ :

ଫିଲିପ୍ ମ୍ୟାସେଞ୍ଜାର୍ (Philip Massinger : ୧୫୮୩-୧୬୪୦) ଜୀବନର ପ୍ରଥମଭାଗରେ ସମସାମୟିକ ବିଶିଷ୍ଟ ନାଟ୍ୟକାରଙ୍କ ସହଯୋଗୀ ଭାବରେ ନାଟ୍ୟରଚନା କରିଛନ୍ତି । ଏମାନଙ୍କ ମଧ୍ୟରୁ ଫ୍ଲେଚର (Flecher)ଙ୍କ ପ୍ରଭାବ ତାଙ୍କ ରଚନାରେ ସ୍ପଷ୍ଟ । ସେ ଉଭୟ ଟ୍ରାଜେଡ଼ି ଓ କମେଡ଼ି ଲେଖିଥିଲେ ମଧ୍ୟ କମେଡ଼ି ରଚନା

କ୍ଷେତ୍ରରେହିଁ ତାଙ୍କର ପାରଦର୍ଶିତା ପ୍ରକାଶପାଇଛି । ଉକ୍ତ କମେଡ଼ି ମଧ୍ୟରେ 'ଏ ନିଉ ୱେ ଟୁ ପେ ଓଲଡ୍ ଡେଟସ୍' (A New Way to Pay old Debts : ୧୬୩୩) ପ୍ରଧାନ । ଏତଦ୍‌ବ୍ୟତୀତ 'ଦ ସିଟି ମାଡ଼ାମ୍' (The City Madam : ୧୬୩୨) ଅନ୍ୟ ଏକ ଉଲ୍ଲେଖଯୋଗ୍ୟ କମେଡ଼ି । କଥାବସ୍ତୁ ବିନ୍ୟାସରେ ସାଦୃଶତା ତଥା ସ୍ୱଚ୍ଛତା ତାଙ୍କର ବୈଶିଷ୍ଟ୍ୟ । ତାଙ୍କ ଲେଖାରେ ଅମିତ୍ରାକ୍ଷର ଛନ୍ଦ ସାବଲୀଳ ତଥା ପ୍ରାଣପ୍ରାଚୁର୍ଯ୍ୟପୂର୍ଣ୍ଣ ହୋଇଉଠିଛି । ନାଟକର ଅଧିକାଂଶ ଚରିତ୍ର ବ୍ୟକ୍ତିବିଶେଷ ହେବା ପରିବର୍ତ୍ତେ ପ୍ରତିନିଧିମୂଳକ (types) ହୋଇପାରିଛି; କିନ୍ତୁ ନାୟିକାଚରିତ୍ରଗୁଡ଼ିକର ଲଜ୍ଜାହୀନତା ସୀମା ଅତିକ୍ରମ କରିଛି । ସମସାମୟିକ ରାଜନୈତିକ ସମସ୍ୟା ତାଙ୍କର ପ୍ରିୟ ବିଷୟବସ୍ତୁ । ପୁନରୁକ୍ତି ଓ ହାସ୍ୟରସ ପରିବେଷଣରେ ଅସଫଳତା ତାଙ୍କର ପ୍ରଧାନ ତ୍ରୁଟି ।

ଜନ ଫୋର୍ଡ (John Ford : ୧୫୮୬-୧୬୩୯) ନାଟକ ରଚନା କ୍ଷେତ୍ରରେ ୱେବ୍‌ଷ୍ଟାର, ରାଓଲି ଓ ଡେକାରଙ୍କ ସହଯୋଗୀ ଥିଲେ । ତାଙ୍କର ନିଜସ୍ୱ ସୃଷ୍ଟି ମୁଷ୍ଟିମେୟ । ନାଟକଗୁଡ଼ିକରେ ବ୍ୟକ୍ତିଗତ ରୁଚିର ରୂପ ସ୍ପଷ୍ଟ, ଉଚ୍ଛୃଙ୍ଖଳ, ରୁଗ୍‌ଣ ତଥା ଗର୍ହିତ ରୁଚିର ଅଭିବ୍ୟକ୍ତି ପାଠକପକ୍ଷରେ ଅସହନୀୟ ହୋଇଉଠେ । 'ଟିଜ୍ ଏ ପିଟି ଶି-ଇଜ୍ ଏ ହୋର୍' ('Tis a pity She's a Whore) ଏହାର ଉଦାହରଣ । ଭାଇ ଭଉଣୀଙ୍କ ପ୍ରେମ ଏହାର ବିଷୟବସ୍ତୁ । ତାଙ୍କ ପୂର୍ବରୁ ବୋମଣ୍ଟ୍ ଓ ଫ୍ଲେଚର୍ (Beaumont & Flecher)ଙ୍କ 'ଏ କିଙ୍ଗ୍ ଆଣ୍ଡ ନୋ କିଙ୍ଗ୍' (A King and No King) ନାଟକରେ ରାଜା ଆର୍‌ବାସ୍ (Arbace)ଙ୍କର ନିଜ ଭଉଣୀ ସହ ପ୍ରେମ ଚର୍ଚ୍ଚିତ ହୋଇଥିଲା; କିନ୍ତୁ ନାଟକର ଶେଷ ଭାଗରେ ରାଜାଙ୍କ ପ୍ରକୃତ ଜନ୍ମରହସ୍ୟ ଜଣାଯିବା ପରେ ଉକ୍ତ ପ୍ରେମ ବୈଧ ପ୍ରେମରେ ପରିଣତ ହୋଇଥିଲା; କିନ୍ତୁ ଫୋର୍ଡ ଏଭଳି ଉପାୟ ଗ୍ରହଣ କରିନାହାନ୍ତି । ସେକ୍‌ସପିଅରଙ୍କ 'ରୁମିଓ ଆଣ୍ଡ୍ ଜୁଲିଏଟର' ରୋମାଞ୍ଚକାରୀ ପ୍ରେମ ଏଠାରେ କିପରି ବୀଭତ୍ସ ରୂପ ଧାରଣ କରିଛି, ତାହା ସହଜରେ ଅନୁମେୟ । 'ପାର୍କିନ୍ ୱାରବେକ୍' ( Perkin Warbeck : ୧୬୩୪) ନାମକ ଐତିହାସିକ ନାଟକ କିଛିଟା ସାଫଲ୍ୟର ସାକ୍ଷର ବହନକରେ ।

ବିଷୟ ନିର୍ବାଚନରେ ଉଚ୍ଛୃଙ୍ଖଳତାକୁ ପ୍ରଶ୍ରୟଦେଲେ ମଧ୍ୟ ପରିବେଷଣ କ୍ଷେତ୍ରରେ ତାଙ୍କର ନିଷ୍ଠା ଓ ଯତ୍ନର ପରିଚୟ ମିଳେ ।

## ଗଦ୍ୟ :

ସାର୍ ଟମାସ୍ ବ୍ରାଉନ୍ (Sir Thomas Browne : ୧୬୦୫-୧୬୮୨) ଏ ଯୁଗର ଗଦ୍ୟ-ଲେଖକଙ୍କ ମଧ୍ୟରେ ପ୍ରତିନିଧିସ୍ଥାନୀୟ । ଲଣ୍ଡନରେ ତାଙ୍କର ଜନ୍ମ । ଡାକ୍ତରୀ ବିଦ୍ୟାରେ ଏମ୍. ଡି. ଡିଗ୍ରୀ ଲାଭ କରିଥିଲେ ଓ ଶେଷଜୀବନ ପର୍ଯ୍ୟନ୍ତ ସଫଳତାର ସହିତ ଏହାକୁ ପେଶା ଭାବରେ ଗ୍ରହଣ କରିଥିଲେ । ଖ୍ରୀ: ୧୬୭୧ରେ ତାଙ୍କୁ ରାଜକୀୟ ନାଇଟ୍ ପଦ ପ୍ରଦାନ କରାଯାଇଥିଲା ।

ସମସାମୟିକ ରାଜନୈତିକ ବାୟୁମଣ୍ଡଳ ଅତ୍ୟନ୍ତ ଅସ୍ଥିର; କିନ୍ତୁ ଗଦ୍ୟକାରଙ୍କ ମଧ୍ୟରେ ବ୍ରାଉନ୍ ହିଁ ଜଣେ ନିର୍ଲିପ୍ତ ମନସ୍ୱୀରୂପେ ପ୍ରତିଭାତ ହୁଅନ୍ତି । ଗୃହଯୁଦ୍ଧର ଘନଘଟା ଭିତରେ ସେ ଧର୍ମ, ଜ୍ୟୋତିଷବିଦ୍ୟା, ମଧ୍ୟ-ଯୁଗୀୟ ରସାୟନ ଶାସ୍ତ୍ର, ଡାଆଣୀ ବିଦ୍ୟା ଓ ଇନ୍ଦ୍ରଜାଲ ନେଇ ବ୍ୟସ୍ତ ଥିଲେ । ଏକଦା ଡାଆଣୀ ବୃତ୍ତିପାଇଁ ଅଭିଯୁକ୍ତ ଦୁଇଟି ବୃଦ୍ଧାଙ୍କ ବିଚାରବେଳେ ତାଙ୍କଠାରୁ ବିଶେଷଜ୍ଞ-ମତ ଗ୍ରହଣ କରାଯାଇଥିଲା । ତାଙ୍କର ପାଞ୍ଚଟି ମାତ୍ର କ୍ଷୁଦ୍ରାକୃତ ଗ୍ରନ୍ଥ ରହିଛି । ଏଗୁଡ଼ିକ ଉତ୍କର୍ଷତା ବିଚାରରେ ସମପର୍ଯ୍ୟାୟର । ତଥାପି 'ରିଲିଜିଓ ମେଡ଼ିସି' (Religio Medici) ତାଙ୍କର ବହୁ ଆଲୋଚିତ ଗ୍ରନ୍ଥ । ଏହାର ଆକ୍ଷରିକ ଅର୍ଥ ଜଣେ ଚିକିତ୍ସକର ଧର୍ମ (The Religion of a Physician : ୧୬୪୨) । ଏଥିରେ ଧର୍ମବିଶ୍ୱାସ ଓ ବୈଜ୍ଞାନିକର ସନ୍ଦେହବାଦ ମଧ୍ୟରେ ଦୋଳାୟମାନ ଲେଖକଙ୍କ ବିଚିତ୍ର ମନୋଭଙ୍ଗୀର ପରିଚୟ ମିଳେ । ସେହିପରି ଅନ୍ୟ ଏକ ଗ୍ରନ୍ଥ 'ଭଲ୍‌ଗାର ଏରର୍‌ସ' (Pseudo-doxia Epidemica or Vulgar Errors : ୧୬୪୬) ରେ ଅତି ସାଧାରଣ ଅଶିକ୍ଷିତ ଲୋକଙ୍କ ମଧ୍ୟରେ ପ୍ରଚଳିତ ଅନ୍ଧବିଶ୍ୱାସ ନିରାକରଣର ଉଦ୍ୟମ କରିଥିଲେହେଁ ନିଜେ ସେଥିରୁ ମୁକ୍ତ ହୋଇପାରି ନାହାନ୍ତି । ହାଇଡ୍ରୋଟାଫିଆ (Hydriotaphia : Urne Buriall)ରେ ମରଣଶୀଳତା (mortality) ସମ୍ବନ୍ଧୀୟ ଏକ ଗଭୀର ମନନଶୀଳ ଆଲେଖ୍ୟ ପ୍ରଦାନ କରିଛନ୍ତି । ଏହାକୁ କେହି କେହି ତାଙ୍କର ଶ୍ରେଷ୍ଠତମ କୃତିର ସମ୍ମାନ ଦେଇଥାନ୍ତି ।

ବ୍ରାଉନଙ୍କ ଲେଖାର ବୈଶିଷ୍ଟ୍ୟ ତାଙ୍କ ଦାର୍ଶନିକତା ନୁହେଁ; ବରଂ ତାଙ୍କ ରଚନା-ଶୈଳୀ । ଏହା ସାଳଂକୃତ ଓ ବାର୍ଟନ୍‌ଙ୍କ ଲେଖାଭଳି ଲଟିନ୍ ପ୍ରଭାବିତ । ସମୟେ ସମୟେ ଏହା ଦୁର୍ବୋଧ ହୋଇଉଠିଛି; କିନ୍ତୁ ଏହାର କାବ୍ୟସୁଲଭ ପ୍ରବହମାନ ଛନ୍ଦ ଓ ଭାଷାର ଆବେଦନଶୀଳତା ସର୍ବତ୍ର ସୁରକ୍ଷିତ । ନିମ୍ନରେ ତାଙ୍କ ଶୈଳୀର ଗୋଟିଏ ଉଦାହରଣ ପ୍ରଦତ୍ତ ହେଲା—

And if any have been so happy as truly to understand Christian annihilation, ecstasies exolution, liquefaction, transformation, the kiss of the spouse, gustation of God, and ingression into the divine shadow, they have already had an hand some anticipation of heaven; the glory of the world is surely over and the earth is ashes unto them—Hydriotaphia.

ଏ ଯୁଗର ଗୌଣ ଗଦ୍ୟଲେଖକଙ୍କ ମଧ୍ୟରେ ଏଡ଼ୱାର୍ଡ ହାଇଡ୍ (ଆର୍ଲ ଅଫ୍ କ୍ଲାରେଣ୍ଡନ୍) ଅନ୍ୟତମ । ସେ ସମସାମୟିକ ଇଂଲଣ୍ଡର ଇତିହାସ (The History of the Rebellion and Civil Wars in England) ରଚନା କରିଛନ୍ତି ।

ହବ୍‌ସ୍ (Thomas Hobbes) ଓ ଲକ୍ (Locke) ସମସାମୟିକ ଇଂଲଣ୍ଡର ଦୁଇଜଣ ବିଶିଷ୍ଟ ଚିନ୍ତାନାୟକ । ହବ୍‌ସ୍‌ଙ୍କ ଶ୍ରେଷ୍ଠ କୃତି 'ଲେଭିୟାଥାନ୍' (Leviathan : ୧୬୫୧) ସମସାମୟିକ ରାଜନୀତି କ୍ଷେତ୍ରରେ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିଲା । ଏହା ରାଜନୀତି ତଥା ଦାର୍ଶନିକ ତତ୍ତ୍ୱସମ୍ବଳିତ ଗ୍ରନ୍ଥ । ତାଙ୍କ ମତରେ ମଣିଷର ସମସ୍ତ କାର୍ଯ୍ୟକଳାପ ସ୍ୱାର୍ଥଦ୍ୱାରା ନିୟନ୍ତ୍ରିତ । ଏପରିକି ସେବା, ତ୍ୟାଗ, ପରଦୁଃଖ-କାତରତା ମଧ୍ୟ ଆତ୍ମକୈନ୍ଦ୍ରିକ ମଣିଷର ଅହମିକା ବା ଭୟର ବହିଃପ୍ରକାଶ ମାତ୍ର । ସ୍ୱାର୍ଥର ସଂଘର୍ଷ ଏଡ଼େଇବାକୁ ହେଲେ ଶାସକର ଆନୁଗତ୍ୟ ସ୍ୱୀକାର କରିବା ଉଚିତ । ଯେ କୌଣସି ସରକାରର ପ୍ରଧାନ ଲକ୍ଷ୍ୟ ସର୍ବସାଧାରଣର କଲ୍ୟାଣ ସାଧନ । ସାଧାରଣ ଜନତା ହିଁ ସକଳ ଶକ୍ତିର ଉତ୍ସ; କିନ୍ତୁ ଶାସକଙ୍କୁ ସମର୍ପିତ ଶକ୍ତି ପ୍ରତ୍ୟାହୃତ ହେବା ଉଚିତ ନୁହେଁ । ଏହିପରି ଭାବରେ ଜନସାଧାରଣଙ୍କୁ ସର୍ବଶକ୍ତିମାନ୍ କହିବା ଭିତରେ ହବ୍‌ସ୍ ଗଣତନ୍ତ୍ରର ପକ୍ଷପାତୀ ମନେହେଲେ ମଧ୍ୟ ଶାସକର ଶକ୍ତି ପ୍ରତ୍ୟାହାର ସୁଯୋଗକୁ ପ୍ରତ୍ୟାଖ୍ୟାନ କରି ଏକଚ୍ଛତ୍ରବାଦ (despotism)କୁ ସ୍ୱୀକୃତି ଦେଇଛନ୍ତି । ତାଙ୍କ ଶୈଳୀରେ ଅଳଙ୍କାରର ଆଡ଼ମ୍ବର ନାହିଁ । ଏହା ଯୁକ୍ତିନିଷ୍ଠ ରଚନା ପାଇଁ ଅତ୍ୟନ୍ତ ଉପଯୋଗୀ ।

ଜନ୍ ଲକ୍ (John Locke : ୧୬୩୨-୧୭୦୪) 'ଏସେଜ୍ କନ୍‌ସାରନିଂ ହ୍ୟୁମାନ୍ ଅଣ୍ଡରଷ୍ଟେଣ୍ଡିଂ' (Essays Concerning Human Understanding : ୧୬୯୦) ପାଇଁ ପ୍ରସିଦ୍ଧ । ମଣିଷ ମନର ସ୍ୱରୂପ ବା ପ୍ରକୃତି ସମ୍ବନ୍ଧରେ ଏହା ଏକ ପ୍ରଗାଢ଼କାରୀ ପ୍ରୟୋଗବାଦୀ (empirical) ତାତ୍ତ୍ୱିକ ଗ୍ରନ୍ଥ । ଆଧୁନିକ ଇଂରେଜୀ ଦର୍ଶନଶାସ୍ତ୍ରର ଅଧ୍ୟୟନ ମୂଳତଃ ଏହାରି ଉପରେ ଆଧାରିତ । ସେ ସ୍ୱଜ୍ଞା (intuition)କୁ ଅଗ୍ରାହ୍ୟ କରିଛନ୍ତି । ତାଙ୍କ ମତରେ ଇନ୍ଦ୍ରିୟାନୁଭୂତି (sensation) ଓ ଅଭିଜ୍ଞତା (experience)ରୁ ବୌଦ୍ଧିକତା (intelligence)ର ସୃଷ୍ଟି । ଧର୍ମ ଏକ ବ୍ୟକ୍ତିଗତ ବିଶ୍ୱାସ । ଶିକ୍ଷାକୁ ସେ ଧର୍ମୀୟ ପ୍ରଭାବରୁ ମୁକ୍ତରଖିବାକୁ ଚାହୁଁଥିଲେ । ତାଙ୍କ ମତରେ ଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ ଚରିତ୍ରଗଠନ ।

ଜେରେମି ଟେଲର୍ (Jeremy Taylor : ୧୬୧୩-୬୭) ଜଣେ ବିଜ୍ଞ, ନିଷ୍ଠାପର ଧର୍ମଯାଜକ ଥିଲେ । ତାଙ୍କର ଧର୍ମ ଉପଦେଶ ଓ ଆଧ୍ୟାତ୍ମିକ ଚିନ୍ତାମୂଳକ ଗ୍ରନ୍ଥ ଅତ୍ୟନ୍ତ ଲୋକପ୍ରିୟ । ଧର୍ମଉପଦେଶଗୁଡ଼ିକର ସଂକଳନ ବ୍ୟତୀତ 'ଦି ଲିବାର୍ଟି ଅଫ୍ ପ୍ରଫେସିଂ' (The Liberty of Prophesying : ୧୬୪୭), 'ହୋଲି ଲିଭିଂ' (Holy Living : ୧୬୫୦) ଓ 'ହୋଲି ଡାଇଙ୍ଗ୍' (Holy Dying : ୧୬୫୧) ତାଙ୍କର ସଫଳ କୃତି । ତାଙ୍କ ରଚନା ଉଦ୍ଧୃତି ଓ ବାହ୍ୟ ପ୍ରସଙ୍ଗ ନିର୍ଦ୍ଦେଶନାରେ ପରିପୂର୍ଣ୍ଣ । ବାକ୍ୟଗୁଡ଼ିକ ଦୀର୍ଘ ଓ ସାଳଂକୃତ ହେଲେ ମଧ୍ୟ ସୁବୋଧ ଓ ପ୍ରୀତିପ୍ରଦ ।

ଟମାସ୍ ଫୁଲର (Thomas Fuller : ୧୬୦୮-୬୧) ଜଣେ ଧର୍ମଯାଜକଙ୍କ ପୁତ୍ର । ବୌଦ୍ଧିକତାପୂର୍ଣ୍ଣ ଧର୍ମୋପଦେଶର ସ୍ରଷ୍ଟାଭାବରେ ସେ ପ୍ରଥମ ଚାର୍ଲସଙ୍କ ଦୃଷ୍ଟି ଆକର୍ଷଣ

କରିଥିଲେ । ତାଙ୍କ ଲେଖାରେ ଆଧିଭୌତିକ (Metaphysical) କବିଙ୍କ ଯୁକ୍ତିନିଷ୍ଠତା ଲକ୍ଷ୍ୟକରାଯାଏ । ଆଶାବାଦ ଓ ଆତ୍ମୀୟତା ତାଙ୍କ ରଚନାକୁ ଆକର୍ଷଣୀୟ କରିଛି । ତାଙ୍କର ମୁଖ୍ୟ ରଚନା ମଧ୍ୟରେ 'ଚର୍ଚ୍ଚ ହିଷ୍ଟୋରି ଅଫ୍ ବ୍ରିଟେନ୍' (Church History of Britain : ୧୬୫୫-୫୬), 'ହୋଲି ଆଣ୍ଡ୍ ପ୍ରଫେନ୍ ଷ୍ଟେଟ' (Holy and Prophane State : ୧୬୪୨) ଓ 'ଦ ହିଷ୍ଟୋରି ଅଫ୍ ଦ ଓ୍ୱାର୍ଦିଜ୍ ଅଫ୍ ଇଂଲଣ୍ଡ' (The History of the Worthis of England : ୧୬୬୨) ପ୍ରଧାନ ।

ଆଇଜାକ୍ ଓ୍ୱାଲ୍‌ଟନ୍ (Izaac Walton : ୧୫୯୩-୧୬୮୩)ଙ୍କ ହୁଇଟି ଗଦ୍ୟରଚନା ମଧ୍ୟରୁ ଲାଇଭସ୍ (Lives) କେତୋଟି ଜୀବନୀ-ସମ୍ବଳିତ ଗ୍ରନ୍ଥ । ଏଥିରେ ଡାନ୍, ହୁକାର, ହାର୍ବାର୍ଟ୍ ଆଦିଙ୍କ ଜୀବନୀ ସ୍ଥାନ ପାଇଛି । ସେ ଠିକନିଖି ବିବରଣୀ ପ୍ରଦାନ କରିଥାନ୍ତି । ତାଙ୍କର ଦୃଷ୍ଟିଭଙ୍ଗୀ ସମ୍ବେଦନଶୀଳ । ଇଂରେଜୀ ଜୀବନୀ ସାହିତ୍ୟର ଇତିହାସରେ ଏହାର ସ୍ଥାନ ପୁରୋଭାଗରେ ।

'ଦ କମ୍ପଲିଟ୍ ଏଙ୍ଗଲର୍' (The Compleat Angler : ୧୬୫୩) ତାଙ୍କର ଶ୍ରେଷ୍ଠ ରଚନା । ମାଛଧରିବାକୁ କେନ୍ଦ୍ରକରି ଏଭଳି ସୁଖପାଠ୍ୟ ରଚନା ଇଂରେଜୀ ସାହିତ୍ୟରେ ଦୁର୍ଲଭ । ମାଛଧରିବାର କୌଶଳ ସହିତ ପ୍ରକୃତିର ବର୍ଣ୍ଣନା ଏପରି ଦକ୍ଷତାର ସହିତ ପ୍ରଦତ୍ତ ଯେ ତାହା ଏକ ଶାନ୍ତ, କମନୀୟ, ପ୍ରୀତିପଦ ବାତାବରଣ ସୃଷ୍ଟି କରିପାରେ । ତା'ର ପରିବେଶ ପାଠକର ସ୍ନାୟୁ ଉପରେ ଏକ ଉଦ୍ଦାଲ ପ୍ରଭାବ ସୃଷ୍ଟି କରେ । ଏଥିରେ ନୀତିଶିକ୍ଷାର ସାମାନ୍ୟଉଦ୍ୟମ କରାଯାଇଛି । ପାଠକର ସଦ୍‌ଗୁଣକୁ ଏହା ଭିତରେ ଯୋଗ ଗିଳା ହେଉଛି ବୋଲି ସେ ବୁଝିପାରେନାହିଁ ।

ମୋଟଉପରେ ଏ ଯୁଗର ଅନ୍ୟ ଗଦ୍ୟଲେଖକ ଅଲଂକୃତ ଗଦ୍ୟର ପୁଷ୍କଳ ବିକାଶ ସାଧନ କରିଥିବାବେଳେ ଆଇଜାକ୍ ଓ୍ୱାଲଟନ୍ ସରଳ ସୁନ୍ଦର ଗଦ୍ୟଶୈଳୀର ପ୍ରୟୋଗ କରିଛନ୍ତି । □□□

## ସପ୍ତମ ଅଧ୍ୟାୟ

# ଡ୍ରାଇଡେନ୍ ଯୁଗ

## [ ଖ୍ରୀ: ୧୬୬୦-୧୭୦୦ ]

## ବା

## ଏଜ୍ ଅଫ୍ ରେଷ୍ଟୋରେସନ୍

ଖ୍ରୀ: ୧୬୬୦ରେ ଦ୍ୱିତୀୟ ଚାର୍ଲସ୍ ସିଂହାସନରେ ଅଧିଷ୍ଠିତ ହେବା ପରେ ସମାଜ ତଥା ସାହିତ୍ୟ କ୍ଷେତ୍ରରେ ଏକ ବିରାଟ ପରିବର୍ତ୍ତନ ଦେଖାଦେଲା । ଏ ରାଜାଙ୍କର ଦେଶାତ୍ମବୋଧ ବା ଦାୟିତ୍ୱବୋଧ ନଥିଲା । ରାଜକୋଷରୁ ଅବୈଧ ଉପାୟରେ ଅର୍ଥ ଆତ୍ମସାତ୍ କରି ସେ ବିଳାସବ୍ୟସନରେ ମାତିରହିଲେ । ଲଣ୍ଡନରେ ଉଚ୍ଛୃଙ୍ଖଳତା ବ୍ୟାପିଗଲା । କ୍ରମ୍‌ୱେଲ୍‌ଙ୍କ ଲୌହଶାସନରେ ଅବଦମିତ ସ୍ୱୈରାଚାର ପୁଣି ମୁଣ୍ଡ ଟେକିଲା । ଜାତିର ଏହି ଅଧଃପତନର ଚିତ୍ର ତତ୍କାଳୀନ ସାହିତ୍ୟ, ବିଶେଷତଃ ନାଟକରେ ରୂପାୟିତ ।

ରାଜାଙ୍କ ଧର୍ମବିଶ୍ୱାସ ଜନସାଧାରଣଙ୍କ ପାଇଁ ଥିଲା ଏକ ପ୍ରହେଳିକା । କ୍ୟାଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟଙ୍କୁ ସେ ପରସ୍ପର ବିରୁଦ୍ଧରେ ଲଗାଉଥିଲେ । ଦେଶରେ ଦୁଇଟି ମୁଖ୍ୟ ରାଜନୈତିକ ଦଳର ଆବିର୍ଭାବ ଘଟିଲା । ହୁଇଗ୍ (Whig)ମାନେ ରାଜାଙ୍କ ଶକ୍ତି ହ୍ରାସକରି ପାର୍ଲିମେଣ୍ଟର ଶକ୍ତି ବଢ଼ାଇବାକୁ ଚାହୁଁଥିବାବେଳେ ଟୋରି (Tory)ମାନେ ଏକଚ୍ଛତ୍ରବାଦର ସମର୍ଥକ ଥିଲେ; କିନ୍ତୁ ଏଇ ଉଭୟ ଦଳ ଏଙ୍ଗ୍‌ଲିକାନ୍ ଚର୍ଚ୍ଚରେ ବିଶ୍ୱାସୀ ଥିଲେ ।

ଖ୍ରୀ: ୧୬୮୫ରେ ଦ୍ୱିତୀୟ ଜେମ୍‌ସ ସିଂହାସନରେ ଅଧିଷ୍ଠିତ ହେଲେ । ସେ ତିନିବର୍ଷ ଧରି କୁଶାସନ ଚଳାଇଥିଲେ । ତାଙ୍କର କ୍ୟାଥୋଲିକ୍ ପ୍ରୀତି ପ୍ରକାଶ ପାଇଲା । ସେ ନ୍ୟାସନ୍ୟାଲ୍ କ୍ୟାଥୋଲିସିଜ୍‌ମ୍ ପ୍ରଚ୍ଚର କରିବାକୁ ଚାହିଁଲେ । ଏଥିରେ ପୋପ୍ ମଧ୍ୟ ବିବ୍ରତ ହେଲେ । ଏଣୁ ଏହି ମହାବିପ୍ଲବରେ ଦଳ ଓ ଧର୍ମମତ ନିର୍ବିଶେଷରେ ହୁଇଗ୍, ଟୋରି, କ୍ୟାଥୋଲିକ୍, ପ୍ରୋଟେଷ୍ଟାଣ୍ଟ୍—ସମସ୍ତେ ଯୋଗଦେଇଥିଲେ । ରାଜା ଜେମ୍‌ସ୍ ବିତାଡ଼ିତ ହେଲେ । ତାଙ୍କ ପରେ ଉଇଲିଅମ ଅଫ୍ ଅରେଞ୍ଜ୍ (ଦ୍ୱିତୀୟ ଚାର୍ଲସଙ୍କ ପ୍ରୋଟେଷ୍ଟାଣ୍ଟ କନ୍ୟା ମେରୀଙ୍କ ସ୍ୱାମୀ) ସିଂହାସନରେ ଅଧିଷ୍ଠିତ ହେଲେ ।

### ସାହିତ୍ୟିକ ବାତାବରଣ :

ଏଲିଜାବେଥୀୟ ରୋମାଣ୍ଟିସିଜିମ୍‌ର କଳ୍ପନା ଓ ଆବେଗ ଏତେବେଳକୁ ନିଃଶେଷ-ପ୍ରାୟ । ଏ ଯୁଗର ଲେଖକମାନେ କ୍ଲାସିକ୍ ରୀତି ପ୍ରତି ଆକୃଷ୍ଟ ହେଲେ—ପ୍ରାଚୀନ ଲାଟିନ ଲେଖକମାନେ ହେଲେ ଏମାନଙ୍କର ଆଦର୍ଶ । ଏତଦ୍‌ବ୍ୟତୀତ ରାଜା ଦ୍ୱିତୀୟ ଚାର୍ଲସ

ବହୁକାଳ ଫ୍ରାନ୍ସରେ ଅତିବାହିତ କରିଥିବାରୁ ଫରାସୀ ସାହିତ୍ୟ ପ୍ରତି ତାଙ୍କର ଅନୁରକ୍ତି ଇଂରେଜୀ ସାହିତ୍ୟରେ ପ୍ରତିଫଳିତ ହେଲା । ଉଭୟ କ୍ଲାସିକ୍ ଓ ରୋମାଣ୍ଟିକ୍ ରୀତିର ସମନ୍ୱୟରେ 'ହିରୋଇକ୍ ପ୍ଲେ' ଲେଖାହେଲା । ଏଲିଜାବେଥୀୟ ଲେଖକ କ୍ଲାସିକ୍ ରୀତିର ଅନୁସରଣ କଲେ ମଧ୍ୟ ନିଜର ରୁଚି ଅନୁଯାୟୀ ସେଥିରେ ପରିବର୍ତ୍ତନ ଆଣୁଥିଲେ; କିନ୍ତୁ ଏ ଯୁଗରେ ପ୍ରାଚୀନ ଲେଖକଙ୍କ ଆଦର୍ଶକୁ କଡ଼ାକଡ଼ି ଭାବରେ ମାନିବାର ପ୍ରୟାସ ହେଲା— ଡ୍ରାଇଡ଼େନ୍‌ଙ୍କ ପରବର୍ତ୍ତୀ ପୋପ୍‌ଯୁଗରେ କ୍ଲାସିକ୍ ଆଦର୍ଶ ଅବଶ୍ୟ ଅଲଙ୍ଘନୀୟ ବୋଲି ଗୃହୀତ ହେଲା ।

ଏଲିଜାବେଥୀୟ କଳ୍ପନା ଓ ଆବେଗ ପରିବର୍ତ୍ତେ ବର୍ତ୍ତମାନ ଦେଖାଦେଲା ବୌଦ୍ଧିକତା ଓ ଯୁକ୍ତିନିଷ୍ଠତା (Intellect and Reasoning) । ପ୍ୟୁରିଟାନିକ୍ ଇଂଲଣ୍ଡର ଅତିରିକ୍ତ ନୀତିପରାୟଣତା ଏ ଯୁଗରେ ବିଦ୍ରୂପର ଶରବ୍ୟ ହେଲା । ଏତଦ୍‌ବ୍ୟତୀତ ରାଜନୈତିକ ତଥା ବ୍ୟକ୍ତିଗତ ସଙ୍ଘର୍ଷ ବ୍ୟଙ୍ଗଧର୍ମୀ କବିତା ରଚନାର ସୂତ୍ରପାତ କଲା । ହୋବ୍‌ସ୍ ଓ ଜୋଭେନାଲ୍‌ଙ୍କ ପ୍ରଭାବ ମଧ୍ୟ ଏହାର ଅନ୍ୟତମ କାରଣ । ଏ ଯୁଗର ଲେଖକ ଥିଲେ ବାସ୍ତବବାଦୀ ।

ସେମାନେ ଜୀବନର ଅବିକଳ ଚିତ୍ର ଆଙ୍କିବାକୁ ଲାଗିଲେ । ଲଣ୍ଡନର ରାଜଦରବାରର ଓ ଅଧଃପତିତ ସମାଜଜୀବନର ବାସ୍ତବଚିତ୍ର ଦେବାକୁ ଯାଇ କୁତ୍ସିତ ଦିଗଟି ଉପରେ ଅଧିକ ଗୁରୁତ୍ୱ ଦେବାରୁ ଉକ୍ତ ସାହିତ୍ୟ ଅତ୍ୟନ୍ତ ନିମ୍ନସ୍ତରର ହୋଇପଡ଼ିଲା । ଲେଖକଗଣ ଫରାସୀ ପ୍ରଭାବରେ ସହଜ ସରଳ ଭାଷାରେ ନିଜକୁ ଅଭିବ୍ୟକ୍ତ କରିବାକୁ ଚେଷ୍ଟିତ ହେଲେ । ସେମାନଙ୍କର ଲକ୍ଷ୍ୟ ହେଲା naked, natural way of speaking.

## କାବ୍ୟ :

ଡ୍ରାଇଡ଼େନ୍ (ଖ୍ରୀ: ୧୬୩୧-୧୭୦୦) ହିଁ ଏ ଯୁଗର ସାହିତ୍ୟକ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଭା । କାବ୍ୟ, ନାଟକ ଓ ଗଦ୍ୟରଚନାରେ ତାଙ୍କ ଲେଖନୀର ପରାକାଷ୍ଠା ପ୍ରକାଶ ପାଇଥିଲେ ମଧ୍ୟ କବିଭାବରେ ହିଁ ସେ ଯଶସ୍ୱୀ ।

ଖ୍ରୀ: ୧୬୩୧ରେ ନର୍‌ଥାମ୍ପଟନ୍‌ସାୟାର୍ ନିକଟସ୍ଥ ଗୋଟିଏ ଗ୍ରାମରେ କବିଙ୍କ ଜନ୍ମ । ପରିବାରର ଅବସ୍ଥା ସ୍ୱଚ୍ଛଳ; ପ୍ୟୁରିଟାନ୍ ମତବାଦରେ ବିଶ୍ୱାସୀ । ଡ୍ରାଇଡ଼େନ୍ କେମ୍ବ୍ରିଜରେ ଶିକ୍ଷାଲାଭ କରିଥିଲେ । ସେ ଯୁଗର ସେ ଜଣେ ଉଚ୍ଚଶିକ୍ଷିତ । ସାହିତ୍ୟାନୁରାଗୀ ହେଲେ ମଧ୍ୟ ତିରିଶବର୍ଷ ପର୍ଯ୍ୟନ୍ତ ତାଙ୍କ ସୃଜନଶୀଳତାର ପରିଚୟ ମିଳିନଥିଲା ।

ଡ୍ରାଇଡ଼େନ୍‌ଙ୍କ ବ୍ୟକ୍ତିଗତ ଜୀବନର ମହତ୍ତ୍ୱ ଏକ ବିବଦମାନ ବିଷୟ । ନିଜ ଲେଖାରୁ ସେ ଅତ୍ୟନ୍ତ ସଚ୍ଚୋଟ ଓ ସ୍ପଷ୍ଟବାଦୀ ମନେହେଲେ ମଧ୍ୟ କାର୍ଯ୍ୟକଳାପରୁ ତାର ବୈପରୀତ୍ୟର ସୂଚନା ମିଳେ । ପ୍ରଥମ ଜୀବନରେ କ୍ରମ୍‌ୱେଲ୍‌ଙ୍କ ଗୁଣଗାନ କରିଥିଲେ ମଧ୍ୟ ଦ୍ୱିତୀୟ ଚାର୍ଲସଙ୍କ ସିଂହାସନ ଲାଭ ପରେ ସେ ତାଙ୍କର ଭକ୍ତ ହୋଇପଡ଼ିଲେ; ଚର୍ଚ୍ଚ ଅଫ୍ ଇଂଲଣ୍ଡ ପ୍ରତି ମଧ୍ୟ

ବିଶ୍ୱାସ ଜ୍ଞାପନକଲେ । ପୁଣି ଦ୍ୱିତୀୟ ଜେମ୍‌ସ ଗାଦିକୁ ଆସିବାମାତ୍ରେ ସେ ରୋମାନ୍ କ୍ୟାଥୋଲିକ୍ ସାଜିଥିଲେ । ଏହା ସୁବିଧାବାଦୀ ମନୋବୃତ୍ତିର ପରିଚାୟକ । ଅବଶ୍ୟ ଦ୍ୱିତୀୟ ଜେମସ୍‌ଙ୍କ ପତନ ପରେ ସେ ରାଜକବି ପଦରୁ ଅନ୍ତର୍ହିତ ହୋଇଥିଲେ ମଧ୍ୟ ଧର୍ମବିଶ୍ୱାସ ଆଉ ତୁଟାଇନଥିଲେ । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଶାଡ଼୍‌ୱେଲ (Shadwell) ରାଜକବି ପଦବୀ ପାଇବା ତାଙ୍କ ପକ୍ଷରେ ଅତ୍ୟନ୍ତ ମର୍ମନ୍ତୁଦ ହୋଇପଡ଼ିଥିଲା ।

ଆଦ୍ୟଜୀବନରେ ସେ ଅଲିଭର କ୍ରମୱେଲ୍‌ଙ୍କ ମୃତ୍ୟୁରେ 'ହିରୋଇକ୍ ଷ୍ଟାଞ୍ଜାଜ୍' ନାମକ ଏକ ଦୀର୍ଘ କବିତା ଲେଖିଥିଲେ । ଏହାର ପ୍ରକାଶଭଙ୍ଗୀରେ ପ୍ରବହମାନତା ନଥିଲେ ମଧ୍ୟ, ଅନୁଭୂତିରେ ଆନ୍ତରିକତା ନଥିଲେ ମଧ୍ୟ ଏହାର ପରିମିତ ଓ ମାର୍ଜିତ ଶୈଳୀ କାବ୍ୟ କ୍ଷେତ୍ରରେ ଏକ ନୂତନ ସ୍ୱାଦ ଆନୟନ କରିଥିଲା ।

ଖ୍ରୀ: ୧୬୬୭ରେ ପ୍ରକାଶିତ ତାଙ୍କର ଅନ୍ୟତମ ଆଖ୍ୟାନଧର୍ମୀ କବିତା 'ଆନୁସ୍-ମିରାବିଲିସ୍' (Annus Mirabilis) ଯୋଗୁଁ ସେ ଅଧିକ ପରିଚିତ ହେବାକୁ ଲାଗିଲେ । ଏଥିରେ ୧୬୬୬ ମସିହାରେ ଲଣ୍ଡନରେ ଘଟିଥିବା ଭୀଷଣ ଅଗ୍ନିକାଣ୍ଡ ଓ ଇଂଲଣ୍ଡ ଡଚ୍ ଯୁଦ୍ଧ ପ୍ରସଙ୍ଗ ବର୍ଣ୍ଣିତ । ପରବର୍ତ୍ତୀ କାଳରେ ଡ୍ରାଇଡେନ୍‌ଙ୍କର ଯେଉଁ ଶକ୍ତିଶାଳୀ ଭାବଭଙ୍ଗୀର ରଚନା ଦେଖାଯାଏ, ତାର ଆଦ୍ୟ ଓଁକାର ଏଇଠାରେହିଁ ଘଟିଥିଲା ।

ଏହାପରେ ଡ୍ରାଇଡ଼େନ୍ ପ୍ରାୟ ପନ୍ଦରବର୍ଷ ଧରି କେବଳ ନାଟ୍ୟରଚନାରେ ମନୋନିବେଶ କରିଛନ୍ତି । କବିତା ରଚନାର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ ଖ୍ରୀ: ୧୬୮୦ ବେଳକୁ । ରାଜନୈତିକ ପରିବେଶ ତଥା ବ୍ୟକ୍ତିଗତ କାରଣରୁ ସେ ବ୍ୟଙ୍ଗ କବିତା ଲେଖନ୍ତି । ଖ୍ରୀ: ୧୬୮୧ରେ ତାଙ୍କର ପ୍ରସିଦ୍ଧ ବ୍ୟଙ୍ଗରଚନା 'ଆବ୍‌ସାଲମ୍ ଆଣ୍ଡ୍ ଆକିଟୋଫେଲ୍' (Absalom and Achitophel) ପ୍ରକାଶ ପାଇଲା । ଏହା ରୂପକଧର୍ମୀ । ବାଇବେଲର ରାଜା ଡେଭିଡ୍ ଓ ଆବ୍‌ସଲମ୍ ସମ୍ପର୍କିତ ଆଖ୍ୟାୟିକାଟି ଏହାର ଅବଲମ୍ବନ । ଆବ୍‌ସାଲମ୍ କୁଚକ୍ରୀ ଆକିଟୋଫେଲ୍‌ର ପ୍ରରୋଚନାରେ ପିତୃଦ୍ରୋହୀ ହୋଇଥିଲେ । ଆଲୋଚ୍ୟ ବ୍ୟଙ୍ଗ କବିତାଟିରେ ରାଜା ଦ୍ୱିତୀୟ ଚାର୍ଲସ୍ ଡେଭିଡ୍ ସିଂହାସନାଭିଳାଷୀ ତାଙ୍କର ଅବୈଧ ପୁତ୍ର 'ଡ୍ୟୁକ ଅଫ୍ ମନ୍‌ମାଉଥ' ଆବ୍‌ସାଲମ୍ ଓ 'ଆର୍ଲ ଅଫ୍ ସେଫ୍‌ଟ୍‌ସବେରୀ' ଆକିଟୋଫେଲ୍ ଭାବରେ ଚିତ୍ରିତ । ସମସାମୟିକ ଆହୁରି ବହୁ ଚରିତ୍ର ବିଭିନ୍ନ ନାମରେ ତାଙ୍କ ବିଦ୍ରୂପର ଶରବ୍ୟ । ଏଥିରେ ସେ ରାଜତନ୍ତ୍ରର ପକ୍ଷ ସମର୍ଥନ କରିବା ସଙ୍ଗେ ସଙ୍ଗେ ବିରୋଧୀ ହ୍ୱିଗ୍ ଦଳର ସମାଲୋଚନା କରିଛନ୍ତି ।

କ୍ରୋଧଜର୍ଜରିତ ହୋଇ ଅମାର୍ଜିତ ଭାଷାରେ ଅଗ୍ନି ଉଦ୍‌ଗାର କଲେ ଉଚ୍ଚକୋଟୀର ବ୍ୟଙ୍ଗକବିତା ସୃଷ୍ଟି କରାଯାଇ ପାରେନା । କୌଣସି ବ୍ୟକ୍ତିକୁ ମୂର୍ଖ, ପାଷଣ୍ଡ, ଅଶ୍ଳୀଳ, ଅଭଦ୍ର ନକହି ଲେଖନୀର ଯାଦୁକାଠିରେ ସେ ଚରିତ୍ରକୁ ସେଇଭାବରେ ଛିଡ଼ା କରିପାରିବାରେ ହିଁ ବ୍ୟଙ୍ଗକାରର କୃତିତ୍ୱ । ଏ ସମ୍ବନ୍ଧରେ ସେଣ୍ଟସବେରୀ କହନ୍ତି "It never does for the political satirist to lose his temper and to rave and rant and denounce with the air of an inspired

prophet." ଡ୍ରାଇଡ଼େନଙ୍କ ବ୍ୟଙ୍ଗରଚନାର ଚରମ ଉଦ୍ଦେଶ୍ୟ ହେଉଛି ସଂଶୋଧନର ଲକ୍ଷ୍ୟ ନେଇ ଅନ୍ୟାୟ ଅନୀତିର ନଗ୍ନୀକରଣ କରିବା, "The true end of satire is amendment of vices by correction." ଚିକିତ୍ସକର ଅସ୍ତ୍ରୋପଚାର ପରି ବ୍ୟଙ୍ଗକବିତା ଯନ୍ତ୍ରଣାଦାୟକ ହେଲେ ମଧ୍ୟ ମଙ୍ଗଳକର; ବ୍ୟଙ୍ଗକାର ତାର ଶରବ୍ୟ ବ୍ୟକ୍ତିର ଶତ୍ରୁ ନୁହେଁ । ଏସବୁ ଦୃଷ୍ଟିରୁ 'ଆବ୍‌ସାଲମ ଆଣ୍ଡ୍ ଆକିଟୋଫେଲ୍' ଇଂରେଜୀ ସାହିତ୍ୟରେ ଅଦ୍ୱିତୀୟ ବ୍ୟଙ୍ଗରଚନା । ଏଥିରେ କବି ବ୍ୟକ୍ତିବିଶେଷଙ୍କୁ ଲକ୍ଷ୍ୟକରି ଶାଣିତ ବ୍ୟଙ୍ଗ ହାଣିଥିଲେ ମଧ୍ୟ ସେମାନେ ଶ୍ରେଣୀବିଶେଷର ପ୍ରତିନିଧିରେ ରୂପାନ୍ତରିତ ହୋଇଯାଇଛନ୍ତି । ଏମାନେ ଏକାଧାରରେ ବ୍ୟକ୍ତିବିଶେଷ ଓ ଶ୍ରେଣୀବିଶେଷର ପ୍ରତିନିଧି ହୋଇପାରନ୍ତି (at once types and individuals) । ଆଲୋଚ୍ୟ ବ୍ୟଙ୍ଗ କବିତାର ଚରିତ୍ର ଆକିଟୋଫେଲ୍ ଓ ଜିମ୍ରି (Zimri) ଏହାର ପ୍ରକୃଷ୍ଟ ଉଦାହରଣ । ଆକିଟୋଫେଲ୍ ବା ସେଫ୍‌ଟସ୍‌ବେରିଙ୍କୁ ଲକ୍ଷ୍ୟ କରି ସେ ଲେଖିଛନ୍ତି :

> Great wits are sure to madness allied
> And thin partitions do their bounds divide;
> Else why should he, with wealth and honour blest
> Refuse his age the needful hours of rest ?
> Punish a body which he could not please;
> Bankrupt of life, yet prodigal of ease ?
> And all to leave what with his toil he won,
> To that unfeathered two-legged thing a son.

ଏଥିରେ ଲକ୍ଷ୍ୟ କରିବାର କଥା ଯେ କବି କେବଳ ଦୋଷତ୍ରୁଟି ପ୍ରତି ଅଙ୍ଗୁଳି-ନିର୍ଦ୍ଦେଶ କରୁନାହାନ୍ତି । ସେଫ୍‌ଟସବେରିଙ୍କ ଭଲଗୁଣ ପ୍ରତି ସେ ଆଖି ବୁଜି ଦେଇନାହାନ୍ତି । ଏଥିରେ ଅବଶ୍ୟ 'Great wit' ଓ 'With wealth and honour blest' ପରି ଶ୍ଳାଘ୍ୟ ଶବ୍ଦ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ବ୍ୟବହାର କରିଛନ୍ତି; କିନ୍ତୁ ଅନ୍ୟତ୍ର ସେଫ୍‌ଟସ୍‌ବେରିଙ୍କୁ ଯେତେବେଳେ କହନ୍ତି 'The Statesman we abhor, but praise the judge' ସେଥିରୁ ଉକ୍ତ ଦୃଷ୍ଟିଭଙ୍ଗୀ ସ୍ପଷ୍ଟହୁଏ ।

ନିଜ ବ୍ୟଙ୍ଗବିଦ୍ରୂପର ସୂତ୍ର ସମ୍ବନ୍ଧରେ ସେ କହନ୍ତି, "I avoided the mention of great crimes, and applied myself to the representing of blind sides and little extravagance." ଏହାର ପରିଣତି ସମ୍ବନ୍ଧରେ ଆଲବର୍ଟ କହନ୍ତି, "hitting is hard but not foul."

କବିତାଟି ଦଶମାତ୍ରିକ ଯୁଗ୍ମକ (Heroic Couplet)ରେ ରଚିତ ହେଲେ ମଧ୍ୟ କବି ଏହି ଛନ୍ଦରେ ବୈଚିତ୍ର୍ୟ ଆଣିବାକୁ ଚେଷ୍ଟା କରିଛନ୍ତି । ଏଥିରେ ସାଧାରଣତଃ ଦୁଇ ପାଦରେ ଗୋଟିଏ ପଦ ହେଲେ ମଧ୍ୟ ମଝିରେ ମଝିରେ ସେ ତିନି ପାଦରେ ପଦ-ଯୋଜନା କରିଛନ୍ତି । ଏ କ୍ଷେତ୍ରରେ ତୃତୀୟ ପାଦଟି ବାରମାତ୍ରାବିଶିଷ୍ଟ (Alexandrine) ହୋଇଥାଏ । ମଝିରେ ମଝିରେ ସେ ଅସଂପୂର୍ଣ୍ଣ ଅର୍ଦ୍ଧପଙ୍କ୍ତିର ବ୍ୟବହାର ମଧ୍ୟ କରିଛନ୍ତି । କବିତାର ଭାବ କିନ୍ତୁ ପଦମଧ୍ୟରେ ସୀମାବଦ୍ଧ ନରହି ସଂପ୍ରସାରିତ ହେଉଥିବାରୁ ଛନ୍ଦ କେତେକ ପରିମାଣରେ ଗତିଶୀଳ ।

ସେଫ୍ଟସବେରିଙ୍କ ପ୍ରତି ଡ୍ରାଇଡ଼େନ୍‌ଙ୍କ ଦ୍ୱିତୀୟ ଉଦ୍‌ଗିରଣ ପ୍ରକାଶ ପାଏ 'ଦି ମେଡ଼ାଲ୍' (The Medal) ବ୍ୟଙ୍ଗ-କବିତାରେ । ସେଫ୍ଟସ୍‌ବେରି ରାଜଦ୍ରୋହରେ ଅଭିଯୁକ୍ତ ହୋଇ ବିଚାରରେ ମୁକ୍ତିଲାଭ କରିବା ପରେ ହୁଇଗ୍ ଦଳର ଲୋକେ ବିଜୟ-ଉତ୍ସବ ପାଳନ କଲେ । ସେମାନେ ଗୁଡ଼ିଏ ପଦକ ଝୁଲାଇ ବୁଲିଲେ, ଏହାର ଗୋଟିଏ ପାଖରେ ସେଫ୍ଟସ୍‌ବେରିଙ୍କ ମସ୍ତକର ପ୍ରତିକୃତି ଓ ଅନ୍ୟ ପାଖରେ ସୂର୍ଯ୍ୟୋଦୟର ଦୃଶ୍ୟ ଅଙ୍କିତ ଥିଲା । ରାଜାଙ୍କ ଇଚ୍ଛାନୁକ୍ରମେ ଏହାକୁ ହିଁ ଲକ୍ଷ୍ୟ କରି ଡ୍ରାଇଡ଼େନ୍ 'ଦି ମେଡ଼ାଲ୍'ର ପରିକଳ୍ପନା କରନ୍ତି । ହୁଇଗ୍ ଦଳ ପକ୍ଷରୁ ଏହାର ପ୍ରତିକ୍ରିୟା ପ୍ରକାଶ ପାଇଲା । ସାଡ୍‌ୱେଲ୍ (Shadwell)ଙ୍କ ଆକ୍ରମଣ ଡ୍ରାଇଡ଼େନ୍‌ଙ୍କ ପକ୍ଷେ ଅସହ୍ୟ ହୋଇପଡ଼ିଥିଲା । ତେଣୁ ସେ ସାଡ୍‌ୱେଲ୍‌ଙ୍କୁ ଲକ୍ଷ୍ୟ କରି ଲେଖିଲେ ଅନ୍ୟ ଏକ ବ୍ୟଙ୍ଗ-କବିତା 'ମ୍ୟାକ୍ ଫ୍ଲେକନୋ' (Mac Flecknoe) । ଏହାର ଆକ୍ଷରିକ ଅର୍ଥ ଫ୍ଲେକ୍‌ନୋଙ୍କ ପୁତ୍ର । ଫ୍ଲେକ୍‌ନୋ ଆୟୁର୍‌ଲଣ୍ଡର ଜଣେ କ୍ୟାଥଲିକ୍ ଧର୍ମଯାଜକ, ନିଜ କବିକୃତି ପାଇଁ ହାସ୍ୟାସ୍ପଦ । ଡ୍ରାଇଡେନ୍ ତାଙ୍କୁ ମୂର୍ଖ-ସମ୍ରାଟ ଓ ସାଡ୍‌ୱେଲ୍‌ଙ୍କୁ ତାଙ୍କର ପୁତ୍ର, ଯୁବରାଜ ଭାବରେ ଚିତ୍ରିତ କରିଛନ୍ତି । ଡ୍ରାଇଡ଼େନ୍‌ଙ୍କ ଲେଖନୀରେ ସାଡ୍‌ୱେଲ୍ ହୋଇଛନ୍ତି ଜଣେ "Who stands confirmed in full stupidity"; ପୁଣି "Shadwell never deviates into sense."

ସାଡ୍‌ୱେଲ୍ ଓ ଡ୍ରାଇଡେନ୍‌ଙ୍କ ମଧ୍ୟରେ ବ୍ୟକ୍ତିଗତ ମନୋମାଳିନ୍ୟ ଥିବାରୁ ବ୍ୟଙ୍ଗ-କବିତାଟି ବ୍ୟକ୍ତିଗତ କୁତ୍ସାରଟନା (personal lampoon) ସ୍ତରକୁ ଓହ୍ଲାଇ ଆସିଛି । 'ଆବସାଲମ୍ ଆଣ୍ଡ୍ ଆକିଟୋଫେଲ୍'ର ଦ୍ୱିତୀୟ ଭାଗ (ଖ୍ରୀ. ୧୬୮୨) ମଧ୍ୟ ଏହି ଶ୍ରେଣୀର ରଚନା । ଏହା ମୁଖ୍ୟତଃ ନ୍ୟାହାମ୍ ଟେଟ୍‌ଙ୍କ (Nahum Tate)ଙ୍କ ଦ୍ୱାରା ରଚିତ । ଏହାର କେତେକ ଅଂଶ ମାତ୍ର ଡ୍ରାଇଡ଼େନ୍‌ଙ୍କର । ଏଥିରେ ମଧ୍ୟ ତାଙ୍କ ଆକ୍ରମଣର ପ୍ରଧାନ ଶରବ୍ୟ ସାଡ୍‌ୱେଲ୍ । ଏଠାରେ ସେ ଅଗ୍ (Og) ଭାବରେ ଚିତ୍ରିତ ।

ସମସାମୟିକ ରାଜନୈତିକ କନ୍ଦଳ ଧର୍ମଜଗତକୁ ମଧ୍ୟ ସଂକ୍ରମିତ କରିଥିଲା । ରୋମାନ୍ କ୍ୟାଥୋଲିକ୍ ଓ ଏଙ୍ଗ୍ଲିକାନ୍ ଚର୍ଚ୍ଚ (ପ୍ରୋଟେଷ୍ଟାଣ୍ଟ)ର ସଙ୍ଘର୍ଷ ଭିତରେ ପ୍ରଥମେ ଡ୍ରାଇଡ଼େନ୍ ଏଂଗ୍ଲିକାନ୍ ଚର୍ଚ୍ଚକୁ ସମର୍ଥନ କରି 'ରିଲିଜିଓ ଲାଇସି' (Religio Laici : ୧୬୮୨)

କବିତାଟି ଲେଖନ୍ତି; କିନ୍ତୁ ଦ୍ୱିତୀୟ ଜେମ୍ସଙ୍କ ସିଂହାସନ ପ୍ରାପ୍ତି ପରେ ରାଜାଙ୍କର ପ୍ରୀତିଭାଜନ ହେବାପାଇଁ ଲେଖନ୍ତି 'ଦି ହାଇଣ୍ଡ୍ ଆଣ୍ଡ୍ ଦି ପାନ୍ଥାର୍' (The Hind and the Panther ; ୧୬୮୭) । ପ୍ରୋଟେଷ୍ଟାଣ୍ଟ ଧର୍ମର ଉତ୍କର୍ଷ ପ୍ରତିପାଦନ ଏହାର ଲକ୍ଷ୍ୟ । କବି କ୍ୟାଥୋଲିକ୍ ଧର୍ମକୁ ଶୁଭ୍ର ହରିଣୀ ଓ ପ୍ରୋଟେଷ୍ଟାଣ୍ଟକୁ ଚିତାବାଘ ରୂପରେ ଚିତ୍ରିତ କରିଛନ୍ତି । ହରିଣୀଟି ଦେହରେ ଟିକିଏ ବୋଲି ଦାଗ ନାହିଁ; କିନ୍ତୁ ଚିତାବାଘର ସାରାଦେହରେ ଦାଗ । ହରିଣୀ ଓ ଚିତାବାଘର ସଂଳାପ ଭିତରେ ହରିଣୀ ନିଜର ନିରୀହତା ତଥା ସ୍ୱବିଶ୍ୱାସର ଅଭ୍ରାନ୍ତତା ପ୍ରତିଷ୍ଠାକରିଛି ।

ଦୁଇଟିଯାକ ଧର୍ମୀୟ କବିତାରେ ହିରୋଇକ୍ କପ୍‌ଲେଟ୍‌ର ସଫଳ ପ୍ରୟୋଗ ଲକ୍ଷ୍ୟ କରିଯାଏ । ଉଭୟ କବିତାରେ ଯୁକ୍ତିତର୍କ ଶାଣିତ ଓ ଚିନ୍ତାଧାରା ସୁବିନ୍ୟସ୍ତ; କିନ୍ତୁ ଦ୍ୱିତୀୟୋକ୍ତ କବିତାଟି ବିଷୟବସ୍ତୁ ତୁଳନାରେ ଅତ୍ୟନ୍ତ ଦୀର୍ଘ; କେତେକ କ୍ଷେତ୍ରରେ କେବଳ ଶାସ୍ତ୍ରୀୟ ନିୟମର ଉଲ୍ଲେଖ ରହିଛି, ସମୟେ ସମୟେ ଯୁକ୍ତିଧାରା ଅତ୍ୟନ୍ତ ବିରକ୍ତିକର ।

ଦ୍ୱିତୀୟ ଜେମ୍ସଙ୍କ ପତନ ପରେ ପରେ ଡ୍ରାଇଡ଼େନ୍‌ଙ୍କର ରାଜକବି ପଦ ମଧ୍ୟ ଯାଇଥିଲା । ଶେଷ ଜୀବନ ସେ ସାହିତ୍ୟ ସେବାରେ ହିଁ କଟାଇଥିଲେ । ଭର୍ଜିଲ୍, ଓଭିଡ୍ ଓ ବୋକାଚିଓଙ୍କ କୃତିର ଅନୁବାଦ ବ୍ୟତୀତ ଚସାରଙ୍କ କବିତାର ସମୟୋପଯୋଗୀ ସମ୍ପାଦନା ସେ କରିଛନ୍ତି । ଏଗୁଡ଼ିକରେ ଡ୍ରାଇଡ଼େନ୍‌ଙ୍କ ବ୍ୟକ୍ତିତ୍ୱର ଛାପ ସ୍ପଷ୍ଟ ।

'ସଙ୍ଗ୍ ଫର୍ ସେଣ୍ଟ୍ ସିଲିଆସ୍ ଡେ' (୧୬୯୭) ଓ 'ଆଲେକ୍‌ଜାଣ୍ଡାରସ୍ ଫିଷ୍ଟ' ନାମକ ଦୁଇଟି ସଂବୋଧଗୀତି ଉକ୍ତ ଉତ୍ସବ ଉପଲକ୍ଷେ ରଚିତ । ଅନ୍ୟ ଏକ ଓଡ୍ 'ଟୁ ଦି ପାୟସ୍ ମେମୋରି ଅଫ୍ ମିସେସ୍ ଆନ୍ କିଲିଗ୍ରୁ' ଖ୍ରୀ: ୧୬୯୬ରେ ରଚିତ ହୋଇଥିଲା । ସଂବୋଧଗୀତିରୁ ଗୀତି-କବିତା ରଚନାରେ ଡ୍ରାଇଡେନ୍‌ଙ୍କ ଅସାମାନ୍ୟ ପ୍ରତିଭାର ପରିଚୟ ମିଳେ ।

**ସାମୁଏଲ୍ ବଟ୍‌ଲର୍** (Samuél Butlér : ୧୬୧୨-୧୬୮୦) ବ୍ୟଙ୍ଗ-କବିତା ରଚନାକ୍ଷେତ୍ରରେ ବିଶିଷ୍ଟସ୍ଥାନ ଅଧିକାର କରନ୍ତି । ପ୍ୟୁରିଟାନ୍‌ଙ୍କ ବିରୋଧରେ ଲିଖିତ ବ୍ୟଙ୍ଗ ମହାକାବ୍ୟ (Mockepic) 'ହୁଡ଼ିବ୍ରାସ୍' (Hudibras) ପାଇଁ ସେ ସ୍ମରଣୀୟ । ଏହା ସୁବିଖ୍ୟାତ ସ୍ପେନୀୟ ଲେଖକ ସାରଭାଁତେଙ୍କ 'ଡନ୍‌କୁଇକ୍‌ସଟ୍'ର ଆଦର୍ଶରେ ପରିକଳ୍ପିତ । ହୁଡ଼ିବ୍ରାସ୍ ଜଣେ ସ୍ଥୂଳକାୟ, କ୍ଷଣକୋପୀ, ଧର୍ମାନ୍ଧ ପ୍ୟୁରିଟାନ ବୀର । ସ୍ୱାଧୀନ ଧର୍ମମତବାଦୀ ର୍‌ୟାଲ୍‌ଫୋ ତାଙ୍କର ଅନୁଚର । ଏ ଦୁହିଁଙ୍କୁ କେନ୍ଦ୍ର କରି ନାନା ହାସ୍ୟକର ଘଟଣା ଓ ପରିବେଶ ସୃଷ୍ଟି କରିଯାଇଛି । ଏହା ମାଧ୍ୟମରେ ପ୍ୟୁରିଟାନ୍, ପ୍ରେସ୍‌ବିଟେରିୟାନ୍ ଓ ଇଣ୍ଡିପେଣ୍ଡେଣ୍ଟ ଧର୍ମଗୋଷ୍ଠୀ ତୀବ୍ରଭାବରେ ସମାଲୋଚିତ । ଉଭୟ ହୁଡ଼ିବ୍ରାସ ଓ ର୍‌ୟାଲ୍‌ଫୋଙ୍କ ମଧ୍ୟରେ ଧର୍ମ ସଂକ୍ରାନ୍ତୀୟ ମତଭେଦ ମଧ୍ୟ ଉପଭୋଗ୍ୟ । ପାଣ୍ଡୁଲିପି ଆକାରରେ ଗୁପ୍ତ ଭାବରେ ଏହା ବହୁଦିନ ପ୍ରସାରିତ ହେବା ପରେ ଖ୍ରୀ: ୧୬୬୩ ରେ

ପ୍ରକାଶିତ ହୋଇଥିଲା । ଏହାର ଦ୍ୱିତୀୟ ଓ ତୃତୀୟ ଖଣ୍ଡ ଯଥାକ୍ରମେ ଖ୍ରୀ: ୧୬୭୪ ଓ ୧୬୭୮ରେ ପ୍ରକାଶିତ ।

ହୁଡ଼ିବ୍ରାସ୍‌ଙ୍କ ଅଭିଯାନର ଘଟଣାବଳୀ ସୁପରିକଳ୍ପିତ । ପ୍ରତ୍ୟେକଟି ବର୍ଣ୍ଣିତ ଘଟଣା ହୁଡ଼ିବ୍ରାସ୍‌କୁ ହାସ୍ୟାସ୍ପଦ କରିବାକୁ ଉଦ୍ଦିଷ୍ଟ । ମୂଳତଃ ପ୍ୟୁରିଟାନଙ୍କ ବିରୋଧରେ ରଚିତ ହୋଇଥିଲେ ମଧ୍ୟ ଏହା ସାଧାରଣ ମଣିଷର ଦୋଷ-ଦୁର୍ବଳତା ପ୍ରତି ଏକ ଶାଣିତ ବିଦ୍ରୂପରେ ପରିଣତ ହୋଇଛି । କବିତାଟି ଅଷ୍ଟମାତ୍ରିକ ଯୁଗ୍ମକ (Octosyllabic Couplet)ରେ ରଚିତ ।

ଜନ୍ ଓଲଡ଼ାମ୍ ( John Oldham ଖ୍ରୀ: ୧୬୫୩-୮୩ ) ଏ ଯୁଗର ଜଣେ ପ୍ରତିଭାବାନ୍ ବ୍ୟଙ୍ଗକାର; ମାତ୍ର ତିରିଶ ବର୍ଷ ବୟସରେ ତାଙ୍କ ସାହିତ୍ୟସାଧନାରେ ପୂର୍ଣ୍ଣଚ୍ଛେଦ ପଡ଼ିଥିଲା । 'ସାଟାୟାରସ୍ ଅନ୍ ଦ ଜେସୁଇଟ୍‌ସ୍' ( Satires on the Jesuits ) ଶୀର୍ଷକ ଗ୍ରନ୍ଥଟି ବ୍ୟଙ୍ଗ-କବିତା ତାଙ୍କର ବଳିଷ୍ଠ ପ୍ରତିଭାର ସ୍ମାରକୀ । ସେ ଜୁଭେନାଲ୍‌ଙ୍କ ଆଦର୍ଶର ଅନୁବର୍ତ୍ତୀ । ବ୍ୟକ୍ତିବିଶେଷଙ୍କୁ ବାଦ୍ ଦେଇ କେବଳ ଦୋଷଦୁର୍ବଳତା ପ୍ରତି କଟାକ୍ଷ କରିବା ତାଙ୍କର ବୈଶିଷ୍ଟ୍ୟ । ଏଗୁଡ଼ିକ ସାଧାରଣ ପାମ୍ଫଲେଟ୍ ବା ଲାମ୍ପୁନ୍‌ଠାରୁ ଉତ୍କୃଷ୍ଟଧରଣର ।

## ନାଟକ :

ଏହି ସମୟକୁ ନାଟକର ପୁନର୍ଜନ୍ମ ଯୁଗ କୁହାଯାଇପାରେ । ଖ୍ରୀ: ୧୬୪୨ରେ ପାର୍ଲିଆମେଣ୍ଟ ଆଇନ ବଳରେ ନାଟକ ପ୍ରଦର୍ଶନ ନିଷିଦ୍ଧ କରିଥିଲେ । ଏପରିକି ଅଭିନେତା-ମାନଙ୍କୁ ବେତ୍ରାଘାତ ଓ ଦର୍ଶକମାନଙ୍କୁ ଅର୍ଥଦଣ୍ଡ ଦିଆଯାଉଥିଲା; କିନ୍ତୁ ଖ୍ରୀ: ୧୬୬୦ରେ ରାଜତନ୍ତ୍ରର ପୁନଃପ୍ରତିଷ୍ଠା ପରେ ନାଟକ ପୁଣି ମୁଣ୍ଡ ଟେକିଲା । ପ୍ୟୁରିଟାନ୍‌ଙ୍କ ପ୍ରଭାବରେ ଧର୍ମଭୀରୁ ତଥା ମଧ୍ୟବିତ୍ତଶ୍ରେଣୀର ଲୋକେ ତଥାପି ନାଟ୍ୟଶାଳାଠାରୁ ଦୂରେଇ ରହୁଥିଲେ । ନାଟ୍ୟଶାଳା ଥିଲା ଅଭିଜାତ ଶ୍ରେଣୀର ମୁଖ୍ୟ ବିନୋଦନ କେନ୍ଦ୍ର । ବିଳାସବ୍ୟସନ ଓ ଭ୍ରଷ୍ଟାଚାରଲିପ୍ତ ରାଜଦରବାର ଥିଲା ଏହାର ପ୍ରେରଣାର ଉତ୍ସ । ତଥାକଥିତ ଅଭିଜାତ ଶ୍ରେଣୀ ଅତିମାତ୍ରାରେ ଉଚ୍ଛୃଙ୍ଖଳ ଥିଲା ।

ପ୍ୟୁରିଟାନ୍‌ଙ୍କ ଆରୋପିତ ତୀବ୍ର ଶୃଙ୍ଖଳାର ବନ୍ଧନରୁ ମୁକ୍ତହୋଇ ସେମାନେ ନିମ୍ନଶ୍ରେଣୀର ଆମୋଦପ୍ରମୋଦରେ ମାତିରହୁଥିଲେ । ତତ୍କାଳୀନ ନାଟକ ଏହି ଦର୍ଶକଙ୍କର ଚିତ୍ତ-ବିନୋଦନ ପାଇଁ ଉଦ୍ଦିଷ୍ଟ । ଚିତ୍ରପଟର ବ୍ୟବହାର ତଥା ସ୍ତ୍ରୀ ଭୂମିକାରେ ଅଭିନେତ୍ରୀଙ୍କ ଅଂଶ ଗ୍ରହଣ ନାଟକର ମଞ୍ଚ ସାଫଲ୍ୟରେ ସହାୟତା କରିଥିଲା ।

ଏ ଯୁଗର ଟ୍ରାଜେଡ଼ି ଓ କମେଡି ଉଭୟ କ୍ଷେତ୍ରରେ ନୂତନତାର ରୂପ ସ୍ପଷ୍ଟ ହେଲେ ମଧ୍ୟ ଯୁଗ ଚେତନାର ସ୍ପଷ୍ଟ ପରିପ୍ରକାଶ କମେଡିରେ ହିଁ ଘଟିଛି ।

## ରେଷ୍ଟୋରେସନ୍ କମେଡ଼ି ବା କମେଡ଼ି ଅଫ୍ ମ୍ୟାନରସ୍ :

ରେଷ୍ଟୋରେସନ୍ କମେଡ଼ି ସମସାମୟିକ ଉଚ୍ଛୃଙ୍ଖଳ ଅଭିଜାତ ଶ୍ରେଣୀର ବାସ୍ତବ ଚିତ୍ର ବହନକରେ । ଅବୈଧ ଅବାରିତ ଯୌନଲୀଳା ଏହାର ପ୍ରାଣକେନ୍ଦ୍ର । ଦ୍ୱିତୀୟ ଚାର୍ଲସ୍‌ଙ୍କର କିଛି କାଳ ଫ୍ରାନ୍ସ ରହଣି ଫଳରେ ଏହି ନାଟକ ଉପରେ ଫରାସୀ ପ୍ରଭାବ ପଡ଼ିଥିଲା । କଥାବସ୍ତୁ ସଂଯୋଜନାରେ ଫରାସୀ ନାଟ୍ୟକାର ମଲିଆର୍ (Moliere)ଙ୍କ ପ୍ରଭାବ ଓ ଛଳ କୁଟ୍ଟ ଯୌନ ସଂପର୍କ (Intrigue) ଚିତ୍ରଣରେ ସ୍ପେନୀୟ ନାଟକର ପ୍ରଭାବ ଅନସ୍ୱୀକାର୍ଯ୍ୟ । ବାସ୍ତବଧର୍ମୀ କମେଡ଼ି-ରଚୟିତା ପୂର୍ବସୂରୀ ବେନ୍ ଜନ୍‌ସନଙ୍କ ପ୍ରଭାବ ମଧ୍ୟ ରେଷ୍ଟୋରେସନ କମେଡ଼ିର ଉନ୍ମେଷରେ ସହାୟତା କରିଛି । ନାଟକର ପୃଷ୍ଠଭୂମି ଲଣ୍ଡନ । ବିଦେଶୀ ପ୍ରଭାବ ସତ୍ତ୍ୱେ ସମକାଳୀନ ସମାଜର ଚିତ୍ର ବହନ କରି ଏହା ସଂପୂର୍ଣ୍ଣ ଦେଶୀୟ ସ୍ୱାତନ୍ତ୍ର୍ୟରେ ପରିଣତ ହୋଇଥିଲା । ଜୀବନର ଗଭୀର ମୂଲ୍ୟବୋଧ ଏହି ନାଟକରୁ ଖୋଜିବା ଏକ ବିଡ଼ମ୍ବନା । ଜୀବନର ବାହ୍ୟରୂପ ମାତ୍ର ଏଥିରେ ପ୍ରତିବିମ୍ବିତ । ସାମାଜିକ ଆଦବକାଇଦା, ଚଳଣି ଓ ପରମ୍ପରା ଏହାର ଧ୍ୟେୟ ହୋଇଥିବାରୁ ଏହି ନାଟକକୁ କମେଡ଼ି ଅଫ୍ ମ୍ୟାନରସ୍ ( Comedy of manners ) କୁହାଯାଏ ।

ପୂର୍ବେ ସାଧାରଣତଃ ସମାଜର ନିମ୍ନଶ୍ରେଣୀର ଚରିତ୍ରକୁ କେନ୍ଦ୍ରକରି କମେଡ଼ି ରଚିତ ହେଉଥିଲା; କିନ୍ତୁ ଏହି କମେଡ଼ିର ମୁଖ୍ୟ ଭୂମିକାରେ ତଥାକଥିତ ଅଭିଜାତ ଶ୍ରେଣୀ ଅବତୀର୍ଣ୍ଣ । ଏମାନେ ବାହାରକୁ ସୁସଭ୍ୟ ମନେହେଉଥିଲେ, ସାମାଜିକ ଆଦବ-କାଇଦା ଉପରେ ଅତିମାତ୍ରାରେ ଗୁରୁତ୍ୱ ଆରୋପ କରୁଥିଲେ; କିନ୍ତୁ ଏଇ ଭଦ୍ରତାର ଛଦ୍ମବେଶତଳେ ଭ୍ରଷ୍ଟାଚାରର ବିପଣୀ ମେଲିଦେଇଥିଲେ । ଧର୍ମ ଓ ନୀତିନିଷ୍ଠ ଜୀବନ ପ୍ରତି ଏକପ୍ରକାର ଅନାସ୍ଥା ଭାବ (Cynicism) ଏଗୁଡ଼ିକରେ ବ୍ୟକ୍ତ ହୋଇଛି । ନାଟ୍ୟକାର କେବଳ ଏହି ଅଧଃପତିତ ସମାଜର ବାସ୍ତବ ଚିତ୍ର ପରିବେଷଣ କଲେ; ତାଙ୍କର ସଂସ୍କାର ପ୍ରୟାସ ଦେଖାଗଲା ନାହିଁ । ଏଣୁ ନାଟକ ଅନେକ ସମୟରେ ଅଶ୍ଳୀଳ ଓ ରୁଚିଗର୍ହିତ । ଏ ସମ୍ବନ୍ଧରେ ଡଃ ଜନ୍‌ସନ୍ କହନ୍ତି—

> Themselves they studied, as they felt they writ
> Intrigue was plot, obscenity was wit
> Vice always found a sympathetic friend
> They pleas'd their age, and did not aim to mend.

ବିଷୟ-ବିନ୍ୟାସ ଦୃଷ୍ଟିରୁ ଏହି ନାଟକ ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ । ଏହା ସୁସମ୍ବଦ୍ଧିତ ନୁହେଁ । କାହାଣୀ ଓ ଉପକାହାଣୀର ସୁଶୃଙ୍ଖଳ ବିନ୍ୟାସର ଅଭାବ ଫଳରେ ଏଗୁଡ଼ିକ ଗୋଟିଏ ଗୋଟିଏ ଗୋଲକଧନ୍ଦାରେ ପରିଣତ ହୋଇଛି ।

ଚରିତ୍ରଗୁଡ଼ିକ ^ ବ୍ୟକ୍ତିସତ୍ତା ଦ୍ୱାରା ଶ୍ରେଣୀବିଶେଷର ପ୍ରତିନିଧିରେ ପରିଣତ ହୋଇଥାନ୍ତି । ନାମକରଣରୁ ଏମାନଙ୍କ ପ୍ରକୃତି ସୂଚିତ ହୁଏ, ଯେପରି ସାର୍ ଫପ୍ଲିଂ ଫ୍ଲାଟର୍, କ୍ଲୋନେଲ୍ ବୁଲି, ସାର ଜନ୍ ବ୍ରୁଟ୍, ଲେଡ଼ି ବାଉଣ୍ଟିଫୁଲ୍ ଇତ୍ୟାଦି । ଏମାନେ ବେନ୍ ଜନ୍‌ସନଙ୍କ ଚରିତ୍ର ପରି ଗୋଟିଏ ଗୋଟିଏ ପ୍ରବଣତା (humour)ର ପୋଷକ । ଅବଶ୍ୟ ରେଷ୍ଟୋରେସନ ଯୁଗର ଶେଷଭାଗରେ ଆଦବକାଇଦା (manners) ଉପରେ ଗୁରୁତ୍ୱ ବେଶି ।

ରେଷ୍ଟୋରେସନ୍ କମେଡ଼ିର ଅନ୍ୟତମ ପ୍ରଧାନ ବୈଶିଷ୍ଟ୍ୟ ଏହାର ଶୈଳୀରେ ନିହିତ । ବୈଦଗ୍ଧିକତା ଓ ଚାତୁର୍ଯ୍ୟ (wit) ଏହାର ଛନ୍ଦେ ଛନ୍ଦେ ଭରିରହିଥାଏ; ନାୟକ-ନାୟିକାଙ୍କ ମଧ୍ୟରେ ତୀକ୍ଷ୍ଣ, ଚଟୁଳ ବାକ୍ୟ ବିନିମୟର ତାଳ ପରିତାଳ ଦେଖିଲେ ମନେହେବ ସତେ ଯେପରି ବାକ୍‌ପଟୁତାର ପ୍ରତିଯୋଗିତା ଚାଲିଛି । ଗ୍ରାମ୍ୟ ସରଳତା ଏମାନଙ୍କ ନିକଟରେ ହାସ୍ୟାସ୍ପଦ ବିଷୟ । କେତେଜଣ ବିଶିଷ୍ଟ ନାଟ୍ୟକାରଙ୍କ ରଚନା ଉପରେ ସମ୍ୟକ୍ ପକ୍ଷପାତ କଲେ ଏହି ନାଟକ ସମ୍ବନ୍ଧରେ ସ୍ପଷ୍ଟ ଧାରଣା କରିହେବ ।

ଉଇଲିଅମ୍ କଂଗ୍ରିଭ୍ (William Congreve : ଖ୍ରୀ: ୧୬୭୦-୧୭୨୯) ତେଇଶିବର୍ଷ ବୟସରେ କନ୍‌ଗ୍ରିଭ୍ ନାଟକ ଲେଖା ଆରମ୍ଭ କରନ୍ତି; ତିରିଶ ବର୍ଷ ବୟସରେ ନାଟ୍ୟଜଗତରୁ ବିଦାୟ ନିଅନ୍ତି । ଏଇ ସ୍ୱଳ୍ପକାଳର ସାଧନା ତାଙ୍କୁ କମେଡ଼ି ଅଫ୍ ମ୍ୟାନରସ୍ ନାଟକର ଶ୍ରେଷ୍ଠ ଶିଳ୍ପୀର ଗୌରବ ଆଣିଦେଇଛି ।

କଂଗ୍ରିଭ୍‌ଙ୍କ ପ୍ରଥମ ନାଟକ 'ଓଲ୍ଡ୍ ବ୍ୟାଚେଲର୍' (Old Bachelor : ୧୬୯୩) ପ୍ଲଟ ଓ ଇଣ୍ଟ୍ରିଗ୍ ପରିକଳ୍ପନା ଦୃଷ୍ଟିରୁ ସେତେବେଳେ ଏକ ଅସାମାନ୍ୟ କୃତି ଭାବରେ ପରିଗଣିତ ହୋଇଥିଲା । ଲେଖକଙ୍କ ଦ୍ୱିତୀୟ ନାଟକ 'ଦି ଡ଼ବଲ୍ ଡ଼ିଲର୍' (The Double Dealer) ରେ କରୁଣ ରସର ସ୍ପର୍ଶ ଥିବାରୁ ତାହା ସେତେ ଲୋକପ୍ରିୟ ହୋଇପାରିନଥିଲା । କରୁଣରସରୁ ସମ୍ପୂର୍ଣ୍ଣଭାବରେ ମୁକ୍ତ ପରବର୍ତ୍ତୀ ନାଟକ 'ଲଭ୍ ଫର ଲଭ୍' (Love for Love) ରେ ଏହି ତ୍ରୁଟି ସଂଶୋଧିତ । ଏଥିରେ ନିଷ୍ଠାପର ପ୍ରେମର ମହତ୍ତ୍ୱ ପ୍ରକାଶିତ ।

'ଦି ଓ୍ୱେ ଅଫ୍ ଦି ଓ୍ୱାର୍ଲ୍ଡ୍' (The way of the world) ଲେଖକଙ୍କ ଶ୍ରେଷ୍ଠ କାଳଜୟୀ ସୃଷ୍ଟି । ଚରିତ୍ରଚିତ୍ରଣ ତଥା ସଂଳାପ-ସଂଯୋଜନାରେ ଲେଖକଙ୍କ କଳାନୈପୁଣ୍ୟର ପରିଚୟ ମିଳେ; ଆଦବକାଇଦାଭିତ୍ତିକ ନାଟକର ହାସ୍ୟରସ, ବୈଦଗ୍ଧିକତା, ଚାତୁର୍ଯ୍ୟପୂର୍ଣ୍ଣ ଉକ୍ତି-ପ୍ରତ୍ୟୁକ୍ତି ତଥା ପରୋକ୍ଷୋକ୍ତି (irony) ଏଠାରେ ଚରମ ଉତ୍କର୍ଷ ଲାଭ କରିଛି । ଅବଶ୍ୟ ସମଗୋତ୍ରୀ ଅନ୍ୟାନ୍ୟ ନାଟକ ପରି ଏହାର ବିଷୟବସ୍ତୁ ବିଶୃଙ୍ଖଳ ଓ ଅବିଶ୍ୱାସ୍ୟ ଘଟଣାର ସମାବେଶ ମାତ୍ର ।

ଉଇଲିୟମ୍ ଉଇଚର୍ଲି (William Wycherly ; ୧୬୪୦-୧୭୧୫) ପାଞ୍ଚବର୍ଷର ସାହିତ୍ୟିକ ଜୀବନକାଳ ମଧ୍ୟରେ ଚାରୋଟି ନାଟକ ଲେଖିଛନ୍ତି, ଯଥା:—

'ଲଭ ଇନ୍ ଏ ଉଡ଼୍', 'ଦ ଜେଣ୍ଟଲ୍‌ମ୍ୟାନ୍ ଡ଼ାନସିଂ ମାଷ୍ଟର୍'; 'ଦ କଣ୍ଟ୍ରି ଓ୍ୱାଇଫ୍' ଓ 'ଦ ପ୍ଲେନ୍ ଡିଲର' । ଯୁଗ ପ୍ରଭାବରୁ ମୁକ୍ତ ନହେଲେ ମଧ୍ୟ ଏଇ ଲେଖକଙ୍କ ସ୍ୱରରେ କିଛି ସ୍ୱକୀୟତା ଦେଖାଯାଏ; ଏଇ ସ୍ୱର ନୀତିବୋଧର ଅସ୍ପଷ୍ଟ ସ୍ୱର । 'ଦ ପ୍ଲେନ୍ ଡିଲର' ନାଟକରେ ସମସାମୟିକ ସମାଜର ତ୍ରୁଟିବିଚ୍ୟୁତି ପ୍ରତି ବ୍ୟଙ୍ଗବିଦ୍ରୂପ କରିଛନ୍ତି । ତାଙ୍କ କମେଡ଼ି-ମାନଙ୍କରେ ନିର୍ବୋଧ, ଉଚ୍ଛୃଙ୍ଖଳ ଓ ପାଷଣ୍ଡମାନଙ୍କର ଭିଡ଼ । ନାୟକ ଛଳନାମୟୀ ବ୍ୟକ୍ତିତ୍ୱର ସାର୍ଥକ ରୂପାୟନ ତାଙ୍କର ଏକ ବୈଶିଷ୍ଟ୍ୟ । ଏସବୁ ସତ୍ତ୍ୱେ ସେ କଂଗ୍ରିଭ୍‌ଙ୍କ ସ୍ତରକୁ ଉନ୍ନୀତ ହୋଇପାରିନାହାନ୍ତି ।

ଜର୍ଜ ଇଥାରେଜ୍ (George Etheredge : ୧୬୩୫-୧୬୯୧) କଂଗ୍ରିଭ୍‌ଙ୍କ କୀର୍ତ୍ତିର ପୂର୍ବବର୍ତ୍ତୀ । ସେ 'କମିସିଆଲ୍ ରିଭେଞ୍ଜ୍ ଅର୍ ଲଭ୍ ଇନ୍ ଏ ଟବ୍' (୧୬୬୪), 'ସି ଉଡ୍ ଇଫ ସି କୁଡ୍' (୧୬୬୮) ଓ 'ଦ ମ୍ୟାନ୍ ଅଫ୍ ମୋଡ୍ ଅର୍ ସାର୍ ଫପ୍‌ଲିଂ ଫ୍ଲାଟାର୍' (୧୬୭୬) ନାମକ ତିନୋଟି ନାଟକ ଲେଖିଛନ୍ତି । ଏଗୁଡ଼ିକ କମେଡ଼ି ଅଫ୍ ମ୍ୟାନର୍‌ସ୍ ଶ୍ରେଣୀର । ଏହି ଶ୍ରେଣୀର ଅନ୍ୟାନ୍ୟ ନାଟକ ପରି ଏଥିରେ ଅଭିଜାତ ଶ୍ରେଣୀର ଭଦ୍ର ଆବରଣ ତଳେ ଥିବା ବ୍ୟଭିଚାରର ବାସ୍ତବଚିତ୍ର ଅଙ୍କିତ । ଉତ୍କୃଷ୍ଟ ସଂଳାପ ସଂଯୋଜନା ହେତୁ କଥାବସ୍ତୁ ବିନ୍ୟାସର ତ୍ରୁଟି ସହଜରେ ଧରାପଡ଼େନାହିଁ । ତାଙ୍କର ରଚନା କଂଗ୍ରିଭ୍‌ଙ୍କ କମେଡ଼ି ଅଫ୍ ମ୍ୟାନର୍ସ ଶ୍ରେଣୀର ନାଟ୍ୟ ରଚନା ପାଇଁ ବାଟ ପରିଷ୍କାର କରିଦେଇଥିଲା ।

ଏମାନଙ୍କ ବ୍ୟତୀତ ସାର୍ ଜନ୍ ଭାନ୍‌ବ୍ରୁ (Sir John Vanbrugh : ୧୬୬୪-୧୭୨୬), ଜର୍ଜ ଫାର୍କୁହାର (George Farquhar : ୧୬୭୮-୧୭୦୭) ଓ ଟମାସ୍ ଶ୍ୟାଡ୍‌ୱେଲ (Thomas Shadwell : ୧୬୪୨-୧୬୯୨)ଙ୍କ ନାମ ମଧ୍ୟ କମେଡ଼ି ରଚନା କ୍ଷେତ୍ରରେ ସ୍ମରଣୀୟ । ଏମାନଙ୍କ ମଧ୍ୟରୁ ଫାର୍କୁହାର ସମାଜର କେବଳ ଉଚ୍ଚଶ୍ରେଣୀର ନାୟକ-ନାୟିକା ଗ୍ରହଣ କରିନାହାନ୍ତି —ତାଙ୍କର ଅଧିକାଂଶ ଚରିତ୍ର ସାଧାରଣ ନରନାରୀ । ଅନ୍ୟ ପକ୍ଷରେ ଶ୍ୟାଡ୍‌ୱେଲ୍ ସମସାମୟିକ କମେଡ଼ି ଅଫ୍ ମ୍ୟାନର୍ସର ନାଟ୍ୟାଦର୍ଶ ଗ୍ରହଣ ନକରି ଜନ୍‌ସନ୍‌ଙ୍କର କମେଡ଼ି ଅଫ୍ ହ୍ୟୁମରର ଅନୁବର୍ତ୍ତୀ ହୋଇଛନ୍ତି ।

## ଗଦ୍ୟ :

ଜନ୍ ବାନୟାନ୍ (John Bunyan; ୧୬୨୮-୮୮) ଏ ଯୁଗର ଶ୍ରେଷ୍ଠ ଗଦ୍ୟ ଲେଖକ । 'ଦ ପିଲ୍‌ଗ୍ରିମ୍‌ସ୍ ପ୍ରୋଗ୍ରେସ୍', 'ଦ ଲାଇଫ୍ ଆଣ୍ଡ ଡେଥ୍ ଅଫ୍ ମିଷ୍ଟର ବ୍ୟାଡ୍‌ମ୍ୟାନ' ଓ 'ଦ ହୋଲି ଓ୍ୱାର' ତାଙ୍କର ବିଶିଷ୍ଟ ରଚନା ।

'ପିଲଗ୍ରିମସ ପ୍ରୋଗ୍ରେସ' (Pilgrim's Progress) ଲେଖକଙ୍କର ବିଶ୍ୱବିଶ୍ରୁତ ଗ୍ରନ୍ଥ । ଏହା ବିଭିନ୍ନ ଦେଶର ଶତାଧିକ ଭାଷାକୁ ଅନୂଦିତ ହୋଇଛି । ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣନା

ଛଳରେ ଲେଖକ ଏକ ଗଦ୍ୟ ରୂପକ ପ୍ରଣୟନ କରିଛନ୍ତି । ନାୟକ 'ଖ୍ରୀଷ୍ଟିଆନ୍' ଶାସ୍ତ୍ରାଧ୍ୟୟନରୁ ଜାଣିପାରିଛି ଯେ ସେ ଯେଉଁ ସହରରେ ରହୁଛି, ତାହା ଅଗ୍ନି-ଦଗ୍ଧ ହେବ । ଏଭାନ୍‌ଜେଲିଷ୍ଟର ପରାମର୍ଶକ୍ରମେ ସେ ଏହି ଧ୍ୱଂସୋନ୍ମୁଖୀ ସହରରୁ ପଳାୟନ କରିଛି; କିନ୍ତୁ ସ୍ତ୍ରୀ ପିଲାଙ୍କୁ ବୁଝାଇ ସଙ୍ଗରେ ନେଇପାରି ନାହିଁ । ମୃତ୍ୟୁ-ଛାୟାର ଉପତ୍ୟକା (Valley of Shadow of Death), ପ୍ରୌଢ଼ ମେଳା (Vanity Fair), ସଂଦେହ ପ୍ରାସାଦ (Doubting Castle), ଆନନ୍ଦମୁଖର ପାହାଡ଼ (Delectable Mountains) ଆଦି ଅତିକ୍ରମ କରି ଅବଶେଷରେ ସେ ସ୍ୱର୍ଗୀୟ ରାଜ୍ୟ (Celestial City)-ରେ ପହଞ୍ଚିଛି ।

ଦ୍ୱିତୀୟ ଖଣ୍ଡରେ 'ଖ୍ରୀଷ୍ଟିଆନ'ର ସ୍ତ୍ରୀ 'ଖ୍ରୀଷ୍ଟିଆନା'ର ତୀର୍ଥଯାତ୍ରା ବର୍ଣ୍ଣିତ । ପିଲାଙ୍କ ସହ ସେ ସେହି ସ୍ୱର୍ଗୀୟ ରାଜ୍ୟ ସଂଧାନରେ ବାହାରିପଡ଼ିଛି । ସାଙ୍ଗରେ ତାର ପଡ଼ୋଶୀ ଦୟା (Mercy), ଗ୍ରେଟ୍ ହାର୍ଟ (Great Heart) ତାଙ୍କର ତତ୍ତ୍ୱାବଧାରକ । ସେ 'ଜଏଣ୍ଟ ସେଡ୍ ପେଆର୍' ଓ ଅନ୍ୟାନ୍ୟ ଦାନବଙ୍କୁ ପରାଭୂତ କରି ସେମାନଙ୍କୁ ଲକ୍ଷ୍ୟସ୍ଥଳରେ ପହଞ୍ଚାଇଦେଇପାରିଛି । ତାଙ୍କର ରଚନାଶୈଳୀ ବାଇବେଲ୍‌ର ଶୈଳୀ ପରି ସରଳ । ବିଭିନ୍ନ ଗୁଣାବଳୀ ଉପରେ ବ୍ୟକ୍ତିତ୍ୱ ଆରୋପ କରିଥିଲେ ମଧ୍ୟ ସେଗୁଡ଼ିକ ଜୀବନ୍ତ ଓ ବାସ୍ତବ ହୋଇପାରିଛି । ହାସ୍ୟରସ ଓ ପ୍ରାକୃତିକ ପରିବେଶ ଏହାକୁ ଆକର୍ଷଣୀୟ କରିଛି । □□□

# ଅଷ୍ଟମ ଅଧ୍ୟାୟ

# ପୋପ୍ ଯୁଗ

[ ଖ୍ରୀ: ୧୭୦୦-୧୭୫୦ ]

## ଐତିହାସିକ ପୃଷ୍ଠଭୂମି

ରାଣୀ ଏନେ (Anne)ଙ୍କ ସମସ୍ତ ସନ୍ତାନ ମୃତ୍ୟୁମୁଖରେ ପଡ଼ିବାରୁ ଉତ୍ତରାଧିକାର ନେଇ ସଙ୍କଟ ଦେଖାଦେଇଥିଲା । ବ୍ୟକ୍ତିସ୍ୱାଧୀନତାବାଦୀ ହୁଇଗ୍‌ଦଳ ହାନୋଭର୍ ବଂଶର ରାଜତ୍ୱ ଚାହୁଁଥିବାବେଳେ ରାଜାଙ୍କ ଈଶ୍ୱରଦତ୍ତ ଅଧିକାରରେ ବିଶ୍ୱାସୀ ଟୋରିଦଳ ଷ୍ଟୁଆର୍ଟ ରାଜବଂଶର ପୁନଃପ୍ରତିଷ୍ଠା ଚାହୁଁଥିଲେ । ରାଣୀ ଏନେ (Anne)ଙ୍କ ମୃତ୍ୟୁ (୧୭୧୪) ପରେ ହାଉସ୍ ଅଫ୍ ହାନୋଭର୍ କ୍ଷମତାକୁ ଆସନ୍ତି । ଫଳରେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଶାସନକ୍ଷେତ୍ରରେ ସ୍ଥିରତା ଆସିବା ସଙ୍ଗେ ସଙ୍ଗେ ସାମାଜିକ ଜୀବନରେ ମଧ୍ୟ ସମୃଦ୍ଧି ଦେଖାଦେଇଥିଲା । ପାର୍ଲାମେଣ୍ଟର ପ୍ରାଧାନ୍ୟ ରହିଲେ ମଧ୍ୟ ରାଜା ଓ ପାର୍ଲାମେଣ୍ଟର ପୂର୍ବ-ସଂଘର୍ଷର ଅବସାନ ଘଟିଲା । ପାରମ୍ପରିକ ବିଦ୍ରୂପ ଧାରଣା ଓ ଭକ୍ତ୍ୟନ୍ଧତାରୁ ମୁକ୍ତ ରହି ଧର୍ମ ମଧ୍ୟ ମଧ୍ୟମ-ମାର୍ଗ ଅନୁସରଣ କଲା । ଓ୍ୱେସ୍‌ଲି ଓ ହ୍ୱାଇଟ୍ ଫିଲ୍‌ଡ୍ 'ଇଭାଞ୍ଜେଲିକାଲ ରିଭାଇଭାଲ୍'ର ସୂତ୍ରପାତ କଲେ । ଏହି ମଧ୍ୟମପନ୍ଥୀ ଧର୍ମବିଶ୍ୱାସର ଆତ୍ମସଂଯମ ଓ ବିଗ୍ରହବିମୁଖତା ସମସାମୟିକ ସାହିତ୍ୟରେ ପ୍ରତିଫଳିତ । ମୋଟଉପରେ ଏ ଯୁଗରେ ଆବେଗ ପରିବର୍ତ୍ତେ ଯୁକ୍ତିନିଷ୍ଠତା ପ୍ରାଧାନ୍ୟ ଲାଭକଲା । ଏଣୁ ଏ ଯୁଗକୁ ଯୁକ୍ତିବାଦର ଯୁଗ (Age of Reason) ବୋଲି ମଧ୍ୟ କୁହାଯାଏ । ତୃତୀୟ ଉଇଲିୟମ୍ ଥିଲେ ଜଣେ ମିତବାଦୀ । ତାଙ୍କ ଉତ୍ତରାଧିକାରିଣୀ ଏନେ (Anne) ମଧ୍ୟ ଏହି ଆଦର୍ଶରେ ବିଶ୍ୱାସ କରୁଥିଲେ । ଏଣୁ ରେଷ୍ଟୋରେସନ୍ ଯୁଗର ଉଚ୍ଛୃଙ୍ଖଳତା ବଦଳରେ ଦେଖାଗଲା ମିତବୋଧ ।

ରେଷ୍ଟୋରେସନ୍ ଯୁଗ ଓ ପୋପ୍ ଯୁଗର ସାହିତ୍ୟିକ ଚେତନା ମଧ୍ୟରେ କେତେକ ପାର୍ଥକ୍ୟ ସ୍ପଷ୍ଟ । ଉଭୟ ସାହିତ୍ୟରେ ବଳିଷ୍ଠ ସମାଜ-ସଚେତନତା, ଯୁକ୍ତିନିଷ୍ଠତା, ବ୍ୟଙ୍ଗ ବିଦ୍ରୂପ ଓ ଦାର୍ଶନିକ ଅନ୍ତ୍ୟମେଳଯୁକ୍ତ ହିରୋଇକ୍ ଯୁଗ୍ମକର ପ୍ରୟୋଗ ଦୃଷ୍ଟିଗୋଚର ହେଲେ ମଧ୍ୟ ଆଲୋଚ୍ୟ ଯୁଗରେ ଅଯଥା ବାକ୍‌ଚାତୁର୍ଯ୍ୟ(wit)କୁ ପ୍ରଶ୍ରୟ ଦିଆଯାଇନାହିଁ । ରେଷ୍ଟୋରେସନ୍ କବି ମେଟାଫିଜିକାଲ୍ ବାକ୍‌ଚାତୁର୍ଯ୍ୟକୁ ଅନୁସରଣ କରୁଥିଲେ; କିନ୍ତୁ ପୋପ୍‌ଯୁଗରେ ଉଇଟ୍‌ର ବ୍ୟବହାର ସୀମିତ । ଏ ଯୁଗର କବି ବିଶ୍ୱାସ କରେ ଯେ କଳ୍ପନା ବା ଚାତୁର୍ଯ୍ୟ ଉପରେ ଅଯଥା ଗୁରୁତ୍ୱ ଦେଲେ ମୂଳ ବକ୍ତବ୍ୟଟି ହଜିଯାଏ ।

ଅଗଷ୍ଟାନ କବି ମୌଳିକ ଚିନ୍ତା ଉପରେ ପ୍ରାଧାନ୍ୟ ଦିଅନ୍ତି ନାହିଁ । ସେମାନଙ୍କ କଥାବସ୍ତୁ ସାର୍ବଜନୀନ ଅନୁଭୂତି—'to which every bosom returns an echo' । ଏଣୁ ବ୍ୟକ୍ତିନିଷ୍ଠତା ବା ଗୀତି-କବିତାର ଉଚ୍ଛ୍ୱାସ ଏ ଯୁଗରେ ଦୁର୍ଲ୍ଲଭ ।

ଆବେଗ ଓ କଳ୍ପନା ବ୍ୟତୀତ ବାହ୍ୟ ପ୍ରକୃତି ମଧ୍ୟ ଏ ସାହିତ୍ୟରେ ଅବହେଳିତ । ଯୌକ୍ତିକତା, ସ୍ୱାଭାବିକତା, ସଂଯମ ବା ଔଚିତ୍ୟ ହିଁ ଏମାନଙ୍କ ମତରେ ପ୍ରକୃତି । ପରିମିତି-ବୋଧ ଓ ମାର୍ଜିତ ରୁଚି ହିଁ ଏହି ସାହିତ୍ୟର ପ୍ରଧାନ ବୈଶିଷ୍ଟ୍ୟ ।

ଆଲୋଚ୍ୟ ଯୁଗ 'ଅଗଷ୍ଟାନ(Augustan)ଯୁଗ' ନାମରେ ମଧ୍ୟ ପରିଚିତ । ରୋମର ରାଜା ଅଗଷ୍ଟାସ୍ ସିଜାରଙ୍କ ଶାସନକାଳ (ଖ୍ରୀ: ପୂ: ୬୭—ଖ୍ରୀ: ୧୪) ଥିଲା ରୋମର ସ୍ୱର୍ଣ୍ଣଯୁଗ । ଭର୍ଜିଲ୍, ଓଭିଡ୍, ହୋରାସ୍‌ଙ୍କ ପରି କବି ଏହି ସମୟରେ ଦେଖାଦେଇଥିଲେ । ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଇଂଲଣ୍ଡରେ ସେହିପରି ବହୁମୁଖୀ ବିକାଶ ସାଧିତ ହୋଇଥିଲା । ଏଣୁ ଏହି ଦୁଇ ଯୁଗର ତୁଳନା କରାଯାଇଥାଏ ।

ଇଂରେଜୀ ସାହିତ୍ୟରେ ଏହା କ୍ଲାସିକାଲ ଯୁଗ । କାଳୋତ୍ତୀର୍ଣ୍ଣ, ସର୍ବରୁଚିସମ୍ମତ ଉଚ୍ଚ-ଆଦର୍ଶ-ପ୍ରଖ୍ୟାପକ, ମହାନ୍ ସାହିତ୍ୟକୃତି ହିଁ କ୍ଲାସିକ୍ । ହୋମାର୍, ଭର୍ଜିଲ୍, ଦାନ୍ତେ, ସେକ୍‌ସପିଅର୍, ମିଲ୍‌ଟନ୍ ଆଦିଙ୍କ କୃତି ଏହି ପର୍ଯ୍ୟାୟର । ପୋପଯୁଗୀୟ ଲେଖକଙ୍କର ଆଦର୍ଶ ଥିଲେ ଅଗଷ୍ଟାନ୍ ଯୁଗର ଲାଟିନ୍ ଲେଖକମାନେ । ଡ୍ରାଇଡେନ୍ ଓ ପୋପ୍ ଇଟାଲୀୟ ଜୁଭେନାଲ୍ ଓ ହୋରାସ୍‌ଙ୍କ ଛାଞ୍ଚରେ ବ୍ୟଙ୍ଗ-ବିଦ୍ରୂପାତ୍ମକ କବିତା ଲେଖିଥିଲେ ।

ଏମାନେ ଯଥାକ୍ରମେ ଭର୍ଜିଲ୍ ଓ ହୋମାର୍‌ଙ୍କ କୃତିର ଅନୁବାଦ ମଧ୍ୟ କରିଥିଲେ । ଅନୁକରଣରେ ଲିଖିତ ସାହିତ୍ୟ କଦାପି ଶ୍ରେଷ୍ଠ କଳାସୃଷ୍ଟିରେ ପରିଣତ ହୋଇପାରେନା । ଉକ୍ତ କବିଙ୍କ ଭାଗ୍ୟରେ ତାହା ହିଁ ଘଟିଛି । ଏମାନେ ଅଗଷ୍ଟାନ୍ ମହାକବିମାନଙ୍କୁ ଯଥାଯଥ ଭାବରେ ଅନୁସରଣ କରିପାରିନାହାନ୍ତି । ପୁନଶ୍ଚ ଏମାନେ ସିଧାସଳଖ ଭାବରେ ଗ୍ରୀକ୍ ବା ଲାଟିନ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇ ନ ଥିଲେ; ବରଂ ଫରାସୀଲେଖକମାନେ ଥିଲେ ସେମାନଙ୍କର ମାଧ୍ୟମ । ଏଣୁ ଏହି କବିଙ୍କ କ୍ଲାସିକ୍ ଚେତନାକୁ ନିଓକ୍ଲାସିସିଜ୍‌ମ୍ ବା ସିଉଡ଼ୋ-କ୍ଲାସିସିଜମ୍ (Pseudo-classicism) କୁହାଯାଏ ।

କ୍ଲାସିକାଲ୍ ଯୁଗ ଓ ବ୍ୟଙ୍ଗ-ସାହିତ୍ୟ ମଧ୍ୟରେ ସଂପର୍କ ନିବିଡ଼ । କ୍ଲାସିକାଲ୍ ଯୁଗରେ ପରିମିତିବୋଧ ଓ ନୈତିକତା ଉପରେ ଗୁରୁତ୍ୱ ଆରୋପ କରାଯାଉଥିବାରୁ ସମାଜଜୀବନରେ ଏହାର ବ୍ୟତିକ୍ରମ ସଚେତନ-କବି ପକ୍ଷରେ ଅସହ୍ୟ ହୋଇଉଠେ । ଏଣୁ ବ୍ୟଙ୍ଗ-କାବ୍ୟ ଲେଖାହୁଏ । ଆଲୋଚ୍ୟ ଯୁଗରେ ତାହା ହିଁ ଘଟିଛି ।

ଗଦ୍ୟର ପୁଷ୍କଳ ବିକାଶ ଅନ୍ୟ ଏକ ଲକ୍ଷଣୀୟ ବିଷୟ । ପୋପ୍‌ଙ୍କ ବ୍ୟତୀତ ଅନ୍ୟ ବିଶିଷ୍ଟ କବି ଏ ଯୁଗରେ ଦେଖାଯାଆନ୍ତି ନାହିଁ । କିନ୍ତୁ ଗଦ୍ୟକ୍ଷେତ୍ରରେ ବହୁ ଲେଖକଙ୍କର ଆବିର୍ଭାବ ଘଟିଛି ।

ଯୁଗ ପରିବେଶ ଗଦ୍ୟର ବିକାଶ ପାଇଁ ଅତ୍ୟନ୍ତ ଅନୁକୂଳ ହୋଇଛି । ହ୍ୱିଗ୍ ଓ ଟୋରିଦଳ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ରାଜନୈତିକ ପ୍ରଚାରପତ୍ର ଲେଖାପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା । ସମସାମୟିକ କୌଣସି ବିଶିଷ୍ଟ ଲେଖକ ଏହି ରାଜନୈତିକ ଜଞ୍ଜାଳରୁ

ମୁକ୍ତନଥିଲେ । କ୍ଳବ୍ ଓ କଫିହାଉସ୍ ଥିଲା ଏମାନଙ୍କ ମିଳନପୀଠ । ସାହିତ୍ୟରେ ଏହି କ୍ଳବ୍ ଓ କଫିହାଉସ୍‌ର ପ୍ରଭାବ ଅନୁଭୂତ ହୁଏ । ରାଜନୈତିକ ତତ୍ପରତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପତ୍ରପତ୍ରିକାମାନ ପ୍ରକାଶ ପାଇଲା । ଗଦ୍ୟ ଲେଖକର ଆବଶ୍ୟକତା ଅପରିହାର୍ଯ୍ୟ ହୋଇଉଠିଲା; ଏହା ସଙ୍ଗେ ସଙ୍ଗେ ବହୁ ପ୍ରକାଶନ ସଂସ୍ଥା ଗଢ଼ିଉଠିଥିଲା । ଏଣୁ ଏ ଯୁଗ ଗଦ୍ୟ-ସାହିତ୍ୟର ଯୁଗ ବୋଲି ବିବେଚିତ ।

## ଆଲେକ୍‌ଜାଣ୍ଡାର ପୋପ୍ (Alexander Pope : ୧୬୮୮-୧୭୪୪) :

ଗୋଟିଏ ବ୍ୟବସାୟୀ ପରିବାରରେ କବିଙ୍କର ଜନ୍ମ । ପିଲାଦିନରୁ ସେ ବିକଳାଙ୍ଗ; ପୁଣି ଦୁର୍ବଳ । ଧର୍ମ ଦିଗରୁ ରୋମାନ୍ କ୍ୟାଥୋଲିକ୍; ଏଣୁ ସମାଜରେ ଅପାଙ୍‌କ୍ତେୟ । ସମ୍ମାନଲାଭର ଏକମାତ୍ର ପନ୍ଥା ଥିଲା କାବ୍ୟସାଧନା । ଘରେଇଭାବରେ ଶିକ୍ଷା ଗ୍ରହଣ କରିଥିବାରୁ ସେଥିରେ ନାନା ଦୋଷତ୍ରୁଟି ରହିଯାଇଥିଲା । ଶାରୀରିକ ବୈକଲ୍ୟ ପରିହାସର ବସ୍ତୁ ଥିଲା । ଏଣୁ ସେ ସ୍ୱଭାବତଃ ଅତିମାତ୍ରାରେ ସ୍ପର୍ଶକାତର ଥିଲେ । ଶତ୍ରୁର ଦୋଷତ୍ରୁଟି ସଠିକଭାବରେ ଲକ୍ଷ୍ୟକରି ପ୍ରଚଣ୍ଡ ଆଘାତ ହାଣିବା ତାଙ୍କର ପ୍ରକୃତିଗତ ହୋଇଉଠିଥିଲା । ବ୍ୟକ୍ତିଗତ ବିଦ୍ୱେଷରୁ ତାଙ୍କର ମହାନ୍ ବ୍ୟଙ୍ଗ-କାବ୍ୟର ସୃଷ୍ଟି । କବିଙ୍କ ଜୀବନୀକାରମାନେ ତାଙ୍କର ପ୍ରକୃତି ସମ୍ବନ୍ଧରେ ପରସ୍ପର-ବିରୋଧୀ ମନ୍ତବ୍ୟ ଦେଇଥାନ୍ତି । କେହି କେହି ତାଙ୍କୁ ଆଦର୍ଶ ଓ ଲୋକପ୍ରିୟ ଭାବରେ ଚିତ୍ରଣ କରିଥିବାବେଳେ ଅନ୍ୟମାନେ ତାଙ୍କର ନୀଚ ମନୋବୃତ୍ତି (spiteful & aggressive) କଥା କହିଥାନ୍ତି । କବି ନିଜ ଜୀବନର ବହୁ ତଥ୍ୟ ଗୋପନ ରଖିବାର ପ୍ରୟାସ କରିଥିବାରୁ ତାଙ୍କ ବ୍ୟକ୍ତିତ୍ୱ ସମ୍ବନ୍ଧରେ ସ୍ପଷ୍ଟ ଧାରଣା କରିବା ସମ୍ଭବ ନୁହେଁ ।

କବିଙ୍କ ପ୍ରଥମ ସାର୍ଥକ କବିତାଗୁଚ୍ଛ 'ପାସ୍‌ଟୋରାଲସ୍' ('Pastorals' : ପଲ୍ଲୀପ୍ରୀତି-ମୂଳକ କବିତା ) ଖ୍ରୀ: ୧୭୦୯ରେ ପ୍ରକାଶ ପାଇଥିଲା । ଭର୍ଜିଲ, ସ୍ପେନସାର୍, ମିଲଟନ୍, ଡ୍ରାଇଡେ଼ନ୍ ଆଦିଙ୍କ ପ୍ରଭାବ ଏଥିରେ ସ୍ପଷ୍ଟ । ବ୍ୟକ୍ତିଗତ ଅନୁଭୂତି ଅପେକ୍ଷା ପୁସ୍ତକଗତ ଜ୍ଞାନ ଉପରେ କବି ନିର୍ଭର କରିଥିବାରୁ ବାସ୍ତବତାର ରୂପ ଅସ୍ପଷ୍ଟ; କିନ୍ତୁ ଏହାର ଆଙ୍ଗିକରେ ଭବିଷ୍ୟତର ଯୁଗସ୍ରଷ୍ଟା କବି ପୋପ୍‌ଙ୍କର ମୂଳଭିତ୍ତି ଲକ୍ଷ୍ୟ କରିହୁଏ । ହିରୋଇକ୍ କପ୍‌ଲେଟ୍‌ର ସାର୍ଥକ ପ୍ରୟୋଗ ଏହିଠାରୁ ହିଁ ଦେଖାଦେଇଛି ।

'ଆନ୍ ଏସେ ଅନ୍ କ୍ରିଟିସିଜମ୍' (An Essay on Criticism : ୧୭୧୧) ସାହିତ୍ୟତତ୍ତ୍ୱର ଏକ କାବ୍ୟିକ ପ୍ରକାଶ । କବିଙ୍କ ଚିନ୍ତାରେ ମୌଳିକତା ନାହିଁ । ଆରିଷ୍ଟଟଲ୍‌ଙ୍କ ଭଳି ବିଭିନ୍ନ ସମାଲୋଚକଙ୍କ ମନ୍ତବ୍ୟମାନ କବିତାକାରରେ ପ୍ରକାଶିତ । ହିରୋଇକ୍ କପ୍‌ଲେଟ୍ ଏହାର ପ୍ରକାଶ ମାଧ୍ୟମ । କବିଙ୍କ ରୁଚିର୍ଯ୍ୟ ଓ ପ୍ରକୃତି ସମ୍ବନ୍ଧୀୟ ଧାରଣା ଏଥିରେ ପ୍ରକାଶ ପାଇଛି, "True wit is nature to advantage dressed." ସର୍ବସାଧାରଣ ଅନୁଭୂତ ଯେ କବିତାର ବିଷୟବସ୍ତୁ ହେବା ଉଚିତ, ଅତୀତର ଶ୍ରେଷ୍ଠ ଲେଖକ ଯେ କବିର ଆଦର୍ଶ ହେବା ଉଚିତ, ଏହି ମତବାଦ ମଧ୍ୟ ଉକ୍ତ କବିତାରେ ପ୍ରକାଶିତ । ପୋପ୍‌ଙ୍କ ଦୃଷ୍ଟିରେ କବିତାର ବକ୍ତବ୍ୟ ହେଉଛି "What oft was thought; but ne'er

so well express'd." ପ୍ରକାଶଭଙ୍ଗୀ ସଂକ୍ଷିପ୍ତ, ପ୍ରାଞ୍ଜଳ ଓ ଆପ୍ତବାକ୍ୟମୂଳକ ଆବେଦନଶୀଳ । 'ଉଇଣ୍ଡସର୍ ଫରେଷ୍ଟ' (Windsor Forest : ୧୭୧୩) ମଧ୍ୟ ଗୋଟିଏ ଗ୍ରାମ୍ୟ ଜୀବନ ସମ୍ପର୍କୀୟ ପାଷ୍ଟୋରାଲ୍ ବା ପଲ୍ଲୀ-କବିତା । ଉଇଣ୍ଡସର୍ ଫରେଷ୍ଟ ସହ ତାଙ୍କର ବାଲ୍ୟସ୍ମୃତି ଜଡ଼ିତ । କିନ୍ତୁ ବାଲ୍ୟସ୍ମୃତି ରୋମନ୍ଥନ ଏହାର ଉଦ୍ଦେଶ୍ୟ ନୁହେଁ । କବି ଉକ୍ତ ସ୍ଥାନ ସହ ଜଡ଼ିତ ବିଶିଷ୍ଟ ସାହିତ୍ୟିକ, ରାଜନୀତିବିଦ୍ ଓ ଐତିହାସିକ ବ୍ୟକ୍ତିଙ୍କୁ ସ୍ମରଣ କରିଛନ୍ତି । ଗତିସ୍ଥାନଯୁଗ୍ମକ (stopped couplet) ପ୍ରୟୋଗରେ ଅଧିକ ସିଦ୍ଧହସ୍ତତା ଲକ୍ଷ୍ୟ କରାଯାଏ । 'ଦି ରେପ୍ ଅଫ୍ ଦି ଲକ୍' (The Rape of the Lock) କବିଙ୍କର ଅନ୍ୟତମ ବିଶିଷ୍ଟ କୃତି । ଦୁଇଟି ସମ୍ଭ୍ରାନ୍ତ ପରିବାର ମଧ୍ୟରେ ସଂଘର୍ଷ ଏହାର ମୂଳକଥା । ଲର୍ଡ଼ ପେଟ୍ରି (Lord Petrie), ମିସ୍ ଆରାବେଲା ଫାର୍ମୋର (Miss Abrabella Fermior)ଙ୍କ ବେଣୀ କାଟିବା ଘଟଣାରୁ ସଂଘର୍ଷର ସୂତ୍ରପାତ । ଏହି ସଂଘର୍ଷରେ ଅତିପ୍ରାକୃତ ଶକ୍ତିମାନେ ମଧ୍ୟ ଅଂଶ ଗ୍ରହଣ କରିଛନ୍ତି । ଏହାକୁ ମହାକାବ୍ୟର ଏକ ବ୍ୟଙ୍ଗାନୁକରଣ କୁହାଯାଇପାରେ । ଏଥିରେ ନାୟିକାଙ୍କର ଈର୍ଷାପରାୟଣତା ଓ ଅହମିକାକୁ କବି ବିଦ୍ରୂପ କରିଛନ୍ତି ।

ହୋମରଙ୍କ ଇଲିଆଡ଼ର ଅନୁବାଦ କବିଙ୍କର ଏକ କାନ୍ତିକାରୀ ପ୍ରଚେଷ୍ଟା । ଏତେବେଳକୁ ସେ ଜଣେ ଲବ୍ଧପ୍ରତିଷ୍ଠ କବି । କିନ୍ତୁ ଗ୍ରୀକ୍ ଭାଷାରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ନଥିଲା । ତାଙ୍କ ପ୍ରତିଭା ମଧ୍ୟ ମହାକାବ୍ୟର ଅନୁକୂଳ ନଥିଲା । ଏଣୁ ଏ ଅନୁବାଦ ତ୍ରୁଟିପୂର୍ଣ୍ଣ; କିନ୍ତୁ ଦ୍ରୁତ ଆଖ୍ୟାନଶୈଳୀ ଓ ଇଂରାଜୀ ଭାଷାର ପ୍ରୟୋଗ ଏହାକୁ ସୁଖପାଠ୍ୟ କରିଛି । ଏହାପରେ କବି ଦୁଇଜଣ ସହଯୋଗୀଙ୍କୁ ନେଇ ଓଡ଼ିସୀ (Odyssey)ର ଅନୁବାଦ କରିଛନ୍ତି । ଏଥିରୁ ସେ ବହୁ ଅର୍ଥ ଲାଭ କରିଛନ୍ତି ସତ, ତା ସହିତ ଈର୍ଷାପରାୟଣ ଶତ୍ରୁଙ୍କ ସମାଲୋଚନାର ଶରବ୍ୟ ମଧ୍ୟ ହୋଇଛନ୍ତି ।

ପୋପ୍‌ଙ୍କ ଶ୍ରେଷ୍ଠ କାବ୍ୟକୃତି 'ଡାନ୍‌ସିଆଡ଼' (Dunciad : ୧୭୨୮) । ଏହି ବ୍ୟଙ୍ଗ କାବ୍ୟଟି ଡ୍ରାଇଡ଼େନ୍‌ଙ୍କ 'ମାକ୍‌ଫ୍ଲେକ୍‌ନୋ'ର ଆଦର୍ଶରେ ଲିଖିତ । ବ୍ୟକ୍ତିଗତ ବିଦ୍ୱେଷରୁ ଏହାର ସୂତ୍ରପାତ । ଏଥିରେ ସେକ୍‌ସପିଅର-ସାହିତ୍ୟବିଶାରଦ ଥିଓବାଲ୍ଡ଼ (Theobald)ଙ୍କୁ ନିର୍ଲୁସମ୍ରାଟ ଭାବରେ ଚିତ୍ରଣ କରାଯାଇଛି । ଥିଓବାଲ୍ଡ଼ ପୋପ୍‌ଙ୍କ ସଙ୍କଳିତ ସେକ୍‌ସପିଅରଙ୍କ ନାଟକର ତୀବ୍ର ସମାଲୋଚନା କରିଥିଲେ—ଏହାହିଁ କବିଙ୍କ ଆକ୍ରୋଶର କାରଣ ।–ଖ୍ରୀ: ୧୭୪୨ରେ ଏହା ପୁଣି ବର୍ଦ୍ଧିତ ଆକାରରେ ପ୍ରକାଶ ପାଇଥିଲା । ଥିଓବାଲ୍ଡ଼ଙ୍କୁ ଗାଦିଚ୍ୟୁତ କରାଯାଇ କଲି ସିବାର୍ (Colley Cibber)ଙ୍କୁ ମୂର୍ଖନାୟକ ଭାବରେ ଅଭିଷିକ୍ତ କରାଯାଇଛି । ସିବାର୍ ପୋପ୍‌ଙ୍କୁ ଅତିକ୍ରମ କରି ରାଜକବି (ପୋଏଟ୍ ଲରିଏଟ୍) ହୋଇଥିଲେ । କାବ୍ୟଟି ଚାରିଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡରେ ମୂଢ଼ତା (Dulness)ର ସାମ୍ରାଜ୍ୟ ବର୍ଣ୍ଣିତ । ବିଏଜ୍ (ସିବାର୍) ଏହି ସାମ୍ରାଜ୍ୟର ସିଂହାସନ ଅଭିଷିକ୍ତ । ଦ୍ୱିତୀୟ ଖଣ୍ଡରେ କବି, ସମାଲୋଚକ, ପୁସ୍ତକ-ବିକ୍ରେତାଙ୍କ ଭିଡ଼ । ଏମାନେ ନୂତନ ରାଜାଙ୍କୁ ପାଇ ଆନନ୍ଦ-ଉତ୍ସବରେ

ମସଗୁଲ୍ । କର୍ଣ୍ଣେକ କବର ଗ୍ରନ୍ଥ୍ୟମୂର୍ତ୍ତି ପଛରେ ପୁସ୍ତକ-ବିକ୍ରେତାଙ୍କ ଅନୁଧାବନ ବଡ଼ ହାସ୍ୟକର । ଦକ୍ଷ ସମାଲୋଚକ ନିର୍ବାଚନ ପାଇଁ ପ୍ରତିଯୋଗିତା ଚାଲିଛି । ଦୁଇ ଲେଖକଙ୍କ ରଚନା ଏକକାଳୀନ ଉଚ୍ଚସ୍ୱରରେ ପାଠକଲେ ନ ଶୋଇ ଯେ ଶୁଣିପାରିବ, ସେହି ବ୍ୟକ୍ତି ହିଁ ସାର୍ଥକ ସମାଲୋଚକ ବୋଲି ବୁଝାଯିବ । ଦର୍ଶକ, ପାଠକ ସମସ୍ତେ କିନ୍ତୁ ଶୋଇପଡ଼ିଛନ୍ତି । ତୃତୀୟ ଖଣ୍ଡରେ ରାଜାଙ୍କ ସ୍ୱପ୍ନବୃତ୍ତାନ୍ତ ପ୍ରସଙ୍ଗରେ ଲେଖକ କଳା ଓ ସାହିତ୍ୟର ଅଧୋଗତି ଦର୍ଶାଇଛନ୍ତି । ରାଜା ଦେବୀଙ୍କ କୋଳରେ ମଥା ରଖି ସ୍ୱପ୍ନ ଦେଖୁଛନ୍ତି ଯେ ସାମ୍ରାଜ୍ୟ ତାଙ୍କର ନାଟକ, କଳା, ବିଜ୍ଞାନ ଓ ରାଜଦରବାରକୁ ମଧ୍ୟ ବିସ୍ତୃତ ହୋଇଛି । ଚତୁର୍ଥ ଖଣ୍ଡଟି (New Dunciad) ମୂଳ ଲେଖା ସହି ପରେ ସଂଯୋଜିତ ହୋଇଥିଲା । ରାଜାଙ୍କ ସ୍ୱପ୍ନ ଚରିତାର୍ଥ ହେବା ପ୍ରସଙ୍ଗ ଏଥିରେ ବର୍ଣ୍ଣିତ । କଳା, ବିଜ୍ଞାନ, ଧର୍ମ, ସର୍ବତ୍ର ଆଳସ୍ୟ ଓ ଦୁର୍ନୀତି ବିରାଜମାନ । ଡାନ୍‌ସିଆଡ଼ର ପ୍ରଥମ ତିନଖଣ୍ଡ ଖ୍ରୀ: ୧୭୨୮ରେ ପ୍ରକାଶିତ ହେବା-ବେଳକୁ ଲେଖକଙ୍କର ଶରବ୍ୟ ଥିଲେ ସମାଲୋଚକ ଟିବାଲଡ଼୍ (Theobald) । କିନ୍ତୁ ଚତୁର୍ଥଖଣ୍ଡ ସହ ପୂର୍ଣ୍ଣାଙ୍ଗ ଭାବରେ ପ୍ରକାଶିତ ହେବାବେଳକୁ ଟିବାଲଡ଼୍ ବିତାଡ଼ିତ । ତାଙ୍କ ସ୍ଥାନ ଅଧିକାର କରିଛନ୍ତି କଲସିବାର୍ । ବ୍ୟକ୍ତିଗତ ବିଦ୍ୱେଷରୁ କବିତାଟିର ଉଦ୍‌ଭବ ହେଲେ ମଧ୍ୟ କେତେକାଂଶରେ ଏହାର ଆବେଦନ ସାର୍ବଜନୀନ । କବି ସାଧାରଣଭାବରେ ମୂର୍ଖତା ବିପକ୍ଷରେ ବିଷୋଦ୍‌ଗାର କରିଛନ୍ତି ।

ଖ୍ରୀ: ୧୭୩୧ରୁ ୧୭୩୫ ମଧ୍ୟରେ କବି କେତେକ ଦାର୍ଶନିକ କବିତା ଲେଖିଛନ୍ତି । ତା' ଭିତରେ 'ଆନ୍ ଏସେ ଅନ୍ ମେନ୍' (An Essay on Man) ପ୍ରଧାନ । କିନ୍ତୁ ଦର୍ଶନ କ୍ଷେତ୍ରରେ ତାଙ୍କର ବିଶେଷ ପ୍ରବେଶ ନଥିବାରୁ କବିତାରେ ପରସ୍ପରବିରୋଧୀ ମନ୍ତବ୍ୟ ଦେଖିବାକୁ ମିଳେ ।

ଅବଶେଷରେ କବିଙ୍କ 'ପ୍ରୋଲଗ୍ ଟୁ ଦ ସାଟାୟାରସ୍' (Prologue to the Satires) ଉଲ୍ଲେଖଯୋଗ୍ୟ । ଏହା 'ଏପିସ୍‌ଟଲ ଟୁ ଡକ୍ଟର ଆର୍ ବାଥନଟ' ନାମରେ ମଧ୍ୟ ପରିଚିତ । ଏଥିରେ କବି ହୋରେସ୍‌ଙ୍କ ରୀତିରେ ସମସାମୟିକ ସମାଜର, ବିଶେଷକରି ଶାସକ ହୁଇଗ୍ ଦଳର ଦୋଷ, ଦୁର୍ନୀତି ପ୍ରତି କଟାକ୍ଷପାତ କରିଛନ୍ତି । ପୋପଙ୍କ ପ୍ରକାଶଭଙ୍ଗୀର ଚରମ ଉତ୍କର୍ଷ ଏଥିରେ ପରିଲକ୍ଷିତ ହୁଏ ।

ପୋପ୍‌ଙ୍କ ବ୍ୟତୀତ ମ୍ୟାଥ୍ୟୁ ପ୍ରାୟର (Matthew Prior : ୧୬୬୪-୧୭୨୧), ଜନ ଗେ (John Gay : ୧୬୮୫-୧୭୩୨), ଏଡ୍‌ୱାର୍ଡ ୟଙ୍ଗ୍ (Edward Young : ୧୬୮୩-୧୭୬୫)ଙ୍କ ପରି ବହୁ ଗୌଣକବିଙ୍କର ଆବିର୍ଭାବ ଘଟିଛି ।

## ଗଦ୍ୟସାହିତ୍ୟ

ସମସାମୟିକ ପରିବେଶ ଗଦ୍ୟସାହିତ୍ୟ ପାଇଁ କିପରି ଅନୁକୂଳ ତାହା ଏ ଯୁଗର ପୃଷ୍ଠଭୂମି ପ୍ରସଙ୍ଗରେ ଆଲୋଚିତ । କେତେଜଣ ବିଶିଷ୍ଟ ଗଦ୍ୟକାର ଓ ତାଙ୍କ ସୃଷ୍ଟି ସମ୍ପର୍କୀୟ

ଅ‌ାଲୋଚନା ଉକ୍ତ ସାହିତ୍ୟର ପରିସର ସୂଚିତ କରିବା ସଙ୍ଗେ ସଙ୍ଗେ ଯୁଗ ଧର୍ମବୈଶିଷ୍ଟ୍ୟକୁ ମଧ୍ୟ ସ୍ପଷ୍ଟତର କରିବ ।

## ଜୋନାଥାନ୍ ସୁଇଫ୍ଟ୍ (Jonathan Swift : ୧୬୬୭-୧୭୪୫)

ଜନ୍ମପୂର୍ବରୁ ସୁଇଫ୍ଟ ପିତାଙ୍କୁ ହରାନ୍ତି । ଅତି ଦୟନୀୟ ଭାବରେ ତାଙ୍କର ସ୍କୁଲ ଓ କଲେଜ ଜୀବନ କଟେ । ସେତେବେଳକୁ ତାଙ୍କ କର୍ଣ୍ଣପୀଡ଼ା ଆରମ୍ଭ ହୁଏ । ପରବର୍ତ୍ତୀ କାଳରେ ଏହା ତାଙ୍କର ମାନସିକ ବିକୃତିର କାରଣ ହୁଏ । କେତେ ବର୍ଷ ସୁଇଫ୍ଟ୍ ଧର୍ମସଂସ୍ଥାରେ କାମ କରନ୍ତି । ଖ୍ରୀ: ୧୭୧୦ରେ ଟୋରିଦଳ ପାଇଁ ଲେଖନୀଚାଳନା କରି ସମ୍ମାନିତ ହୁଅନ୍ତି । ଏହି ଦଳର ପତନ ସଙ୍ଗେ ସଙ୍ଗେ ତାଙ୍କର ମଧ୍ୟ ବିପର୍ଯ୍ୟୟ ଆରମ୍ଭ ହୁଏ । ସେ ଥିଲେ ସ୍ୱଭାବତଃ ମାନବବିଦ୍ୱେଷୀ । ଶେଷ ତିରିଶିବର୍ଷ ସେ ଅତ୍ୟନ୍ତ ବିଷାଦଗ୍ରସ୍ତ ଭାବରେ କାଳକାଟିଥିଲେ; ମାନସିକ ଭାରସାମ୍ୟ ହରାଇଥିଲେ ।

''ଦି ବେଟ୍‌ଲ ଅଫ୍ ଦି ବୁକ୍‌ସ' ସୁଇଫ୍ଟଙ୍କ ପ୍ରଥମ ସାର୍ଥକ ଗଦ୍ୟରଚନା । ପ୍ରାଚୀନ ଓ ଅର୍ବାଚୀନ ଲେଖକଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଏହାର ବିଷୟବସ୍ତୁ । ସୁଇଫ୍ଟ ପ୍ରାଚୀନ ପକ୍ଷ ଅବଲମ୍ବନ କରିଛନ୍ତି । ବିଷୟବସ୍ତୁ ନିର୍ବାଚନରେ ସ୍ୱକୀୟତା ନାହିଁ । ଏହା ସେ ବେଳର ବହୁ ଆଲୋଚିତ ବିଷୟ । ପ୍ରସଙ୍ଗକ୍ରମେ ସେ ପାଠାଗାରର ଗୋଟିଏ ମହୁମାଛି ଓ ବୁଢ଼ିଆଣୀ ମଧ୍ୟରେ ତର୍କ ବିଷୟ ଉତ୍ଥାପନ କରିଛନ୍ତି । କବିଙ୍କ ଦୃଷ୍ଟିରେ ପ୍ରାଚୀନ ଲେଖକମାନେ ପ୍ରକୃତି-ରାଜ୍ୟରୁ ମଧୁ ସଂଗ୍ରହ କରନ୍ତି; କିନ୍ତୁ ଆଧୁନିକ ଲେଖକଗଣ ବୁଢ଼ିଆଣୀପରି ବୌଦ୍ଧିକତାର ଜାଲ ବୁଣୁଥାନ୍ତି । କେତେକାଂଶରେ ଏହା ରୂପକାତ୍ମକ; ବ୍ୟଙ୍ଗବିଦ୍ରୂପର ସ୍ୱର ମଧ୍ୟ ସ୍ପଷ୍ଟ ।

'ଏ ଟେଲ୍ ଅଫ୍ ଏ ଟବ୍' ( A tale of a tub : ଖ୍ରୀ: ୧୭୦୪) ଲେଖକଙ୍କ ଉଜ୍ଜ୍ୱଳ ପ୍ରତିଭାର ସ୍ୱାକ୍ଷର ବହନ କରେ । କେତେକଙ୍କ ମତରେ ଏହା ତାଙ୍କର ଶ୍ରେଷ୍ଠ କୃତି । ଏଥିରେ ଲେଖକ ଧର୍ମତତ୍ତ୍ୱ ତଥା ମାନବ ପ୍ରକୃତିର ଅନ୍ତର୍ନିହିତ ଦୁର୍ବଳତାର କଠୋର ସମାଲୋଚନା କରିଛନ୍ତି । ସେ କଳ୍ପନା କରିଛନ୍ତି ଯେ ରୋମାନ୍ ଚର୍ଚ୍ଚ, ଇଂଲଣ୍ଡୀୟ ପ୍ରୋଟେଷ୍ଟାଣ୍ଟ ଚର୍ଚ୍ଚ ଓ ତାର ବିରୋଧୀ ସମ୍ପ୍ରଦାୟ ଯୀଶୁ ଖ୍ରୀଷ୍ଟଙ୍କ ତିନି ସନ୍ତାନ । ପିଟାର, ମାର୍ଟିନ ଓ ଜ୍ୟାକ୍ ଯଥାକ୍ରମେ ଏହି ତିନି ସଂପ୍ରଦାୟର ପ୍ରତୀକ । ପ୍ରତ୍ୟେକେ ପିତାଙ୍କଠାରୁ ଗୋଟିଏ ଗୋଟିଏ କୋଟ୍ ପାଇଛନ୍ତି; କିନ୍ତୁ ପୁଅମାନେ ସମୟକ୍ରମେ ନାନା ଭାବରେ ସଜାଇ କୋଟ୍‌ର ରୂପ ବଦଳାଇଦେଇଛନ୍ତି । କୋଟ୍‌ଗୁଡ଼ିକ ପରସ୍ପରଠାରୁ ପୃଥକ୍ ମନେହେଉଛି । କବିଙ୍କ ବକ୍ତବ୍ୟ ହେଉଛି, ଧର୍ମର ସାରତତ୍ତ୍ୱ ଭୁଲି ଏହି ସଂପ୍ରଦାୟ ସବୁ ବାହ୍ୟ ଉପଚାରର ଉପରେ ଗୁରୁତ୍ୱ ଦେଇ ଅଯଥା କଳହରେ ଲିପ୍ତ ରହିଛନ୍ତି । ରୋମାନ୍ କ୍ୟାଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟ-ବିରୋଧୀ ଗୋଷ୍ଠୀର ସମାଲୋଚନା ଗ୍ରନ୍ଥଟିର ଉଦ୍ଦେଶ୍ୟ ହେଲେ ମଧ୍ୟ ଲେଖକ ସ୍ୱୀୟ ଧର୍ମମତର ପ୍ରତୀକ ମାର୍ଟିନ୍‌ର ସମାଲୋଚନା କରିବାକୁ ଭୁଲିନାହାନ୍ତି ।

ଏପରିକି ସେ ଧର୍ମତତ୍ତ୍ୱର ମୂଳଭିତ୍ତି ଉପରେ କୁଠାରାଘାତ କରିଛନ୍ତି । ଏହା ଲେଖକଙ୍କ ଧର୍ମବିଶ୍ୱାସ ସମ୍ବନ୍ଧରେ ସଂଶୟ ସୃଷ୍ଟି କରିଛି । ବ୍ୟଙ୍ଗ ରଚନାରେ ପାରଦର୍ଶିତା ଏଥିରେ ଲକ୍ଷଣୀୟ ।

ଲେଖକଙ୍କ ଶ୍ରେଷ୍ଠ କୃତି 'ଗଲିଭର୍ସ ଟ୍ରାଭେଲର୍ସ' (Gulliver's Travels : ଖ୍ରୀ: ୧୭୨୬) ଅନୁବାଦ ମାଧ୍ୟମରେ ଗ୍ରନ୍ଥଟି ସାରାବିଶ୍ୱରେ ପ୍ରଚାରିତ । ଏଥିରେ ରୂପକ, ରୂପକଥା ଓ ଭ୍ରମଣ କାହାଣୀର ଅପୂର୍ବ ସମନ୍ୱୟ ଘଟିଛି । ତା ସହିତ ମଣିଷର ସମାଜ ଓ ସଂସ୍କୃତି ପ୍ରତି ପ୍ରଚ୍ଛନ୍ନ ବ୍ୟଙ୍ଗ ଏହାକୁ ଏକ ଅତୁଳନୀୟ କୃତିରେ ପରିଣତ କରିଛି । କିଶୋର ଓ ବୟସ୍କ ଉଭୟ ଶ୍ରେଣୀର ପାଠକଙ୍କ ପାଇଁ ଏହା ଆକର୍ଷଣୀୟ ।

ଗଲିଭର୍‌ର ଭ୍ରମଣକାହାଣୀ ଚାରିଭାଗରେ ବିଭକ୍ତ । ଏଥିରେ ଯଥାକ୍ରମେ ଲିଲିପୁଟ, ବ୍ରବ୍‌ଡିଂନାଗ୍, ଲ୍ୟାପୁଟା ଓ ହୁଇନମ୍ ଦେଶର କାଳ୍ପନିକ ଭ୍ରମଣ-ଅନୁଭୂତି ପ୍ରଦତ୍ତ ।

ପ୍ରଥମ ଦେଶଟି ବାମନମାନଙ୍କର ଦେଶ । ଏ ଦେଶର ଅଧିବାସୀଙ୍କ ଉଚ୍ଚତା ଛଅଇଞ୍ଚରୁ ଅଧିକ ନୁହେଁ । ଦ୍ୱିତୀୟଟିରେ ଅତିକାୟ ମାନବ ବାସକରନ୍ତି । ନିଜେ ଗଲିଭର ଏମାନଙ୍କ ଆଗରେ କ୍ଷୁଦ୍ରକାୟ ବାମନପରି । ପ୍ରଥମୋକ୍ତ ଦେଶରେ ଲିଲିପୁଟଙ୍କ ଗର୍ବିତମିଥ୍ୟା ହାସ୍ୟକର । ଦ୍ୱିତୀୟ ଦେଶରେ ଅତିକାୟ ମାନବଙ୍କ ଭିତରେ ଗଲିଭର୍‌ର ଅବସ୍ଥା ବିଦ୍ରୂପ । ଉଭୟ ପରିବେଶ ଭିତରେ ଲେଖକ ଗର୍ବିତ ଇଂରେଜ ଜାତିର ନ୍ୟୂନତା ପ୍ରତିପାଦନ କରିଛନ୍ତି ।

ଲ୍ୟାପୁଟା ଦ୍ୱୀପଟି ଦାର୍ଶନିକ, ମହାପଣ୍ଡିତଙ୍କ ଦେଶ । ଏମାନେ ଚିନ୍ତା-ଜଗତରେ ଏତେ ମଗ୍ନ ରହିଛନ୍ତି ଯେ କର୍ଣ୍ଣମୂଳରେ ଆଘାତ ନକଲେ ପ୍ରକୃତିସ୍ଥ ହୁଅନ୍ତି ନାହିଁ । ଏଥିରେ ଲେଖକ ଅତି ଜ୍ଞାନାନ୍ୱେଷଣ ପ୍ରବୃତ୍ତିକୁ ବିଦ୍ରୂପ କରିଛନ୍ତି । ଶେଷୋକ୍ତ ଦେଶଟି ଅଶ୍ୱଙ୍କ ସାମ୍ରାଜ୍ୟ । ଏଥିରେ ଲେଖକ ମଣିଷକୁ ପଶୁଠାରୁ ହୀନ ପ୍ରତିପାଦନ କରିଛନ୍ତି । ଏହି ସମସ୍ତ ପରିକଳ୍ପନା ଭିତରେ ଲେଖକଙ୍କର ତୀବ୍ର ମାନବବିଦ୍ୱେଷ ପ୍ରକାଶ ପାଇଛି । ଏ ପ୍ରସଙ୍ଗରେ ପୋପ୍‌ଙ୍କ ପ୍ରତି ସ୍ୱିଫ୍‌ଟ୍‌ଙ୍କ ଉକ୍ତି "I heartily hate and detest that animal called man" ସ୍ମରଣୀୟ । ସ୍ୱିଫ୍‌ଟ ଇଂରେଜୀ ସାହିତ୍ୟର ଶ୍ରେଷ୍ଠ ବ୍ୟଙ୍ଗଶିଳ୍ପୀ । ତାଙ୍କ ବ୍ୟଙ୍ଗ ବ୍ୟକ୍ତିଗତ ବିଦ୍ୱେଷପ୍ରଣୋଦିତ ନୁହେଁ ।

## ଏଡ଼ିସନ୍ ଓ ଷ୍ଟିଲ୍ :

ଇଂରେଜୀ ସାହିତ୍ୟର ଇତିହାସରେ ଏଡ଼ିସନ୍ ଓ ଷ୍ଟିଲ୍‌ଙ୍କ ନାମ ପ୍ରାୟ ଏକତ୍ର ଉଚ୍ଚାରିତ ହୋଇଥାଏ । ସ୍କୁଲ ଓ କଲେଜ ଜୀବନର ବନ୍ଧୁତ୍ୱ, ପୁଣି ସାହିତ୍ୟକ୍ଷେତ୍ରରେ ସହଯୋଗିତା ଏ ଦୁହିଁଙ୍କୁ ଐକ୍ୟସୂତ୍ରରେ ଆବଦ୍ଧ କରିଛି ।

ଏଡ଼ିସନ୍ (Joseph Addison : ୧୬୭୨-୧୭୧୯) କବିତା ଓ ନାଟକ ଲେଖି ଯଶସ୍ୱୀ ହୋଇଥିଲେ । ଷ୍ଟିଲ୍ ମଧ୍ୟ ନାଟକ କ୍ଷେତ୍ରରେ ଲେଖନୀ ଚାଳନା କରିଥିଲେ; କିନ୍ତୁ ସମକାଳୀନ ପତ୍ରପତ୍ରିକା ସଂପାଦନ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅବଦାନ ପାଇଁ ଉଭୟେ ଯଶସ୍ୱୀ ହୋଇଛନ୍ତି ।

ଷ୍ଟିଲ୍ (Sir Richard Steel : ୧୬୭୨-୧୭୨୯)ଙ୍କ ଉଦ୍ୟମରେ 'ଦ ଟାଟ୍‌ଲର୍' (The Tatler) ନାମକ ପତ୍ରିକା ଖ୍ରୀ: ୧୭୦୯ ଏପ୍ରିଲ ମାସରେ ଆତ୍ମପ୍ରକାଶ କରେ । ପତ୍ରିକାଟି ସପ୍ତାହରେ ତିନଥର ପ୍ରକାଶ ପାଉଥିଲା । ଏହା ଜାନୁଆରୀ ୧୭୧୧ ମସିହାରେ ବନ୍ଦହୋଇଗଲା । ଉଭୟ ଷ୍ଟିଲ ଓ ଏଡ଼ିସନ ଏଥିରେ ନିୟମିତ ପ୍ରବନ୍ଧ ଲେଖୁଥିଲେ । ସେହି ବର୍ଷ (୧୭୧୧) ମାର୍ଚ୍ଚରେ ଷ୍ଟିଲ୍ ପୁଣି ପ୍ରକାଶ କଲେ ଏକ ଦୈନିକ ପତ୍ରିକା 'ଦ ସ୍ପେକ୍‌ଟେଟର୍' (The Spectator) । ଏହା ଡିସେମ୍ବର ୧୭୧୨ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ପତ୍ରିକାଟି ଅଳ୍ପାୟୁ ହେଲେ ମଧ୍ୟ ଏଥିରେ ପ୍ରକାଶିତ ଦୁଇବନ୍ଧୁଙ୍କ ପ୍ରବନ୍ଧ ତତ୍କାଳୀନ ସମାଜ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରିଥିଲା । ଷ୍ଟିଲ୍‌ଙ୍କ ଉଦ୍ୟମରେ 'ଦ ଗାର୍ଡ଼ିଆନ୍', 'ଦ ଇଂଲଣ୍ଡମ୍ୟାନ,' 'ଦ ରିଡ଼ାର୍', 'ଦ ପ୍ଲେବିୟାନ୍' ନାମକ କେତୋଟି ପତ୍ରିକା ମଧ୍ୟ କିଛୁକାଳ ପାଇଁ ପ୍ରକାଶ ପାଇଥିଲା । ବନ୍ଧୁଦ୍ୱୟଙ୍କ ମଧ୍ୟରେ ଏଡ଼ିସନ୍‌ହିଁ ଶ୍ରେଷ୍ଠତର ପ୍ରତିଭା । ସେ ନିଜ ପ୍ରବନ୍ଧ ମାଧ୍ୟମରେ ସାମାଜିକ ଜୀବନରେ ନୈତିକବୋଧ, ମାର୍ଜିତ ରୁଚି ଓ ସଦାଚାରର ପ୍ରତିଷ୍ଠା ପାଇଁ ଉଦ୍ୟମ କରିଛନ୍ତି; କିନ୍ତୁ ଶିକ୍ଷାଗୁରୁର ସିଧାସଳଖ ଉପଦେଶ-ବାଣୀ ଏଥିରେ ନାହିଁ । ତାଙ୍କର ସମାଲୋଚନା ମୃଦୁ, ସମବେଦନଶୀଳ ଓ ଆମୋଦପ୍ରଦ; ଏଣୁ ତାହାଙ୍କର ଲକ୍ଷ୍ୟ ହାସଲରେ ଅମିତ ସାଫଲ୍ୟ । ପୋଷାକ-ପରିଚ୍ଛଦ, ଅଟ୍ଟହାସ୍ୟ, ଆଦର୍ଶ ପାରିବାରିକ ଜୀବନ, ସୌଜନ୍ୟପୂର୍ଣ୍ଣ ବାକ୍ୟାଳାପ ପରି ଜୀବନର ଛୋଟ ଛୋଟ ସମସ୍ୟା ତଥା ତ୍ରୁଟିବିଚ୍ୟୁତି ତାଙ୍କ ପ୍ରବନ୍ଧର ଆଲୋଚ୍ୟ ବସ୍ତୁ । ଏସବୁ ବିଷୟ ଆଇନ ବା ଧର୍ମୀୟ ଅନୁଶାସନର ଆୟତ୍ତାଧୀନ ନହୋଇପାରେ; କିନ୍ତୁ ସୁସ୍ଥ ସାମାଜିକ ଜୀବନପାଇଁ ଗୁରୁତ୍ୱପୂର୍ଣ୍ଣ ।

ଲକ୍ଷ୍ୟ ଓ ପନ୍ଥାରେ ବହୁ ସାମ୍ୟ ଥିଲେ ମଧ୍ୟ ଏଡ଼ିସନ୍ ଓ ଷ୍ଟିଲଙ୍କ ଦୃଷ୍ଟିଭଙ୍ଗୀର କିଛି ପାର୍ଥକ୍ୟ ଥିଲା । ଷ୍ଟିଲ୍ ନିଜର ଶୈଳୀ ସମ୍ପର୍କରେ ବିଶେଷ ସଚେତନ ନଥିଲେ । ତାଙ୍କଠାରେ ସିଧାସଳଖ ଉପଦେଶ ଦେବାର ପ୍ରବଣତା ଦେଖାଯାଏ । ଏଡ଼ିସନ୍‌ଙ୍କ ମୃଦୁ, ପ୍ରୀତିପ୍ରଦ ବ୍ୟଙ୍ଗ ଏହାଙ୍କଠାରେ ନାହିଁ । ପରିମିତବୋଧ ଦୃଷ୍ଟିରୁ ସେ ଏଡ଼ିସନଙ୍କ ସମକକ୍ଷ ହୋଇପାରିନାହାନ୍ତି । 'କଭରଲି ପେପାର୍ସ' (Coverley Papers) ଏଡ଼ିସନଙ୍କ ଅନ୍ୟତମ ବିଶିଷ୍ଟ କୃତି । ଏହା ପଇଁତିରିଶଟି ଲଘୁ ରଚନାର ସମନ୍ୱୟ; ସ୍ପେକ୍‌ଟେଟର୍ ପତ୍ରିକାରେ ପ୍ରକାଶିତ ହୋଇଥିଲା । 'ସାର୍ ରୋଜାର୍ ଡିକଭରଲି' ପରି କେତୋଟି କାଳ୍ପନିକ ଚରିତ୍ର ଏଥିରେ ଗ୍ରହଣ କରାଯାଇଛି । ଡିକଭରଲି ଜଣେ ବୃଦ୍ଧ ଗ୍ରାମ୍ୟ ଜମିଦାର । ସେ ମଝିରେ ମଝିରେ ଲଣ୍ଡନର ସ୍ପେକ୍‌ଟେଟର୍ କ୍ଲବ ପରିଦର୍ଶନ କରନ୍ତି ବୋଲି କୁହାଯାଇଛି । ଲେଖକଙ୍କର ଉଦ୍ଦେଶ୍ୟ ଗ୍ରାମ୍ୟ-ଜୀବନର ମହତ୍ତ୍ୱ ପ୍ରତିପାଦନ କରିବା । ଚରିତ୍ରଚିତ୍ରଣରେ କୃତିତ୍ୱ ଦୃଷ୍ଟିରୁ ଏଡ଼ିସନଙ୍କ 'କଭରଲି ପେପର୍ସ'ରେ ହିଁ ଇଂରେଜୀ ଉପନ୍ୟାସର ଆଦ୍ୟ ଓଁକାର ଶୁଣାଯାଇଥିଲା ବୋଲି କୁହାଯାଏ ।

ଡ଼ିଫୋ ( Daniel Defoe : ୧୬୫୯—୧୭୩୧ )

ଜୀବନର ପ୍ରଥମ ପାଦରେ ହ୍ୱିଗ୍ ଓ ଟୋରି ଦଳ ସହ ସମ୍ପୃକ୍ତରହି ବହୁ ରାଜନୈତିକ ଲେଖା ପ୍ରକାଶ କରିଥିଲେ । ଏଥିରୁ ଅଧିକାଂଶ ନିଜ ପତ୍ରିକା 'ଦ ରିଭ୍ୟୁ'ରେ ପ୍ରକାଶ ପାଇଥିଲା । ଉକ୍ତ ପତ୍ରିକାଟି ଷ୍ଟିଲ୍‌ଙ୍କ 'ଟାଟ୍‌ଲର' ଓ 'ସ୍ପେକ୍‌ଟେଟର' ପତ୍ରିକାର ପଥପ୍ରଦର୍ଶକ ହୋଇଥିଲା ।

ଖ୍ରୀ: ୧୭୧୯ ରୁ ୧୭୨୫ ମଧ୍ୟରେ ତାଙ୍କର ପ୍ରାୟ ନଅଟି ଗଦ୍ୟ ରଚନା (Fiction) ପ୍ରକାଶ ପାଇଛି; କିନ୍ତୁ ସୀମିତ ସମୟ ମଧ୍ୟରେ ଦ୍ରୁତଗତିରେ ଲେଖା ହୋଇଥିବାରୁ ଏଗୁଡ଼ିକ ତ୍ରୁଟିବହୁଳ । ତନ୍ମଧ୍ୟରୁ 'ରବିନ୍‌ସନ୍ କ୍ରୁଶୋ' (Robinson Crusoe) ଲେଖକଙ୍କୁ ବିଶ୍ୱସାହିତ୍ୟକାରର ପରିଣତ କରିଛି । ଗୋଟିଏ ବାସ୍ତବ ଘଟଣାକୁ ନେଇ ଏହି ଗ୍ରନ୍ଥଟିର ପରିକଳ୍ପନା । ଜାହାଜର କ୍ୟାପ୍‌ଟେନ୍‌ଙ୍କ ସହ ମତାନ୍ତର ହେତୁ ଖ୍ରୀ: ୧୭୦୪ ରେ ଆଲେକ୍‌ଜାଣ୍ଡର ସେଲକାର୍କ ନାମକ ଜଣେ ଇଂରେଜ ନାବିକଙ୍କୁ ଜୁଆନ ଫର୍ନାଣ୍ଡେଜ୍ ଦ୍ୱୀପରେ ଅଟକିଯିବାକୁ ହୋଇଥିଲା । ଖ୍ରୀ: ୧୭୦୯ରେ ଅନ୍ୟ ଏକ ଜାହାଜ ଦୈବାତ୍ ସେହି ବାଟ ଦେଇ ଯିବାରୁ ସେ ସେହି ଜନଶୂନ ଦ୍ୱୀପରୁ ଉଦ୍ଧାର ପାଇଥିଲେ । ଉକ୍ତ ରୋମାଞ୍ଚକର କାହାଣୀ ଗ୍ରନ୍ଥଟିର ଲୋକପ୍ରିୟତାର ଅନ୍ୟତମ କାରଣ । ଅନ୍ୟ ଉପନ୍ୟାସ ପରି ଏହାର କଥାବିନ୍ୟାସରେ ଶିଥିଳତା ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ ଉକ୍ତ ଦ୍ୱୀପର ବର୍ଣ୍ଣନା କରିବା ଭିତରେ ଲେଖକ ଅନ୍ୟାନ୍ୟ ଦ୍ୱୀପର ବିରକ୍ତିକର ବର୍ଣ୍ଣନା ସନ୍ନିବିଷ୍ଟ କରିଛନ୍ତି । ଏତଦ୍‌ବ୍ୟତୀତ ଚରିତ୍ରଚିତ୍ରଣ ତଥା ଚରିତ୍ରଗତ-ସଂଘାତର ଅଭାବ ହେତୁ ଏହାକୁ ପ୍ରକୃତ ଉପନ୍ୟାସ ଭାବରେ ଗ୍ରହଣ କରାଯାଇନଥାଏ ।

## ନାଟକ :

ନାଟକର ଅଗ୍ରଗତି ଏ ଯୁଗରେ ବ୍ୟାହତ । ରେଷ୍ଟୋରେସନ କମେଡ଼ିର ଧାରା ଏତେବେଳକୁ ଅବଲୁପ୍ତ ପ୍ରାୟ । କେବଳ ଷ୍ଟିଲ୍‌ଙ୍କ ନାଟକରେ ତାର ପ୍ରଭାବ ଲକ୍ଷ୍ୟ କରାଯାଇପାରେ । ଟ୍ରାଜେଡ଼ି ମଧ୍ୟରେ ଏଡ଼ିସନ୍‌ଙ୍କ 'କ୍ୟାଟୋ' ଉଲ୍ଲେଖଯୋଗ୍ୟ । ଏହା ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ଚରିତ୍ରଗୁଡ଼ିକ କାଠପିତୁଳାପରି । ସଂଳାପ ପ୍ରାଣହୀନ । ସମସାମୟିକ ରାଜନୀତି ପ୍ରତି ଏଥିରେ ଇଙ୍ଗିତ ରହିଛି । କେବଳ ଜନ୍ ଗେ'ଙ୍କର 'ଦ ବେଗାରସ୍ ଅପେରା' (୧୭୨୮) ଟି ନାଟକର ଅଗ୍ରଗତିରେ କିଞ୍ଚିତ୍ ସହାୟତା କରିଛି । ଏହା ଯେପରି ସଂଗୀତମୟ, ସେହିପରି ହାସ୍ୟଉଚ୍ଛଳ । ସମସାମୟିକ ମଞ୍ଚରେ ବହୁବାର ଅଭିନୀତ ହୋଇଛି । କମିକ୍ ଅପେରାର ବିକାଶରେ ଏହା ସହାୟକ ହୋଇଛି ।

□□□

# ନବମ ଅଧ୍ୟାୟ

# ପ୍ରାକ୍-ରୋମାଣ୍ଟିକ ଯୁଗ ବା ଯୁଗସନ୍ଧି

[ ୧୭୪୦-୧୮୦୦ ]

( ଦ ଏଜ୍ ଅଫ୍ ଟ୍ରାନଜିସନ୍ )

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଇଂଲଣ୍ଡର ସାହିତ୍ୟିକ ବାତାବରଣରେ ନୂତନ ସ୍ପନ୍ଦନ ଅନୁଭୂତ ହୋଇଛି । ଯୁଗ-ପ୍ରଭାବ ଏଥିପାଇଁ ବିଶେଷ ଭାବରେ ଦାୟୀ । ହୁଇଗ୍ ଓ ଟୋରିଦଳ ମଧ୍ୟରେ ସଂଘର୍ଷ ହ୍ରାସପାଇଛି । ହୋରାସ୍ ଓ୍ୱାଲପୋଲ୍‌ଙ୍କ ଭଳି ପ୍ରଧାନମନ୍ତ୍ରୀ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟଙ୍ଗରଚନାକୁ ନିରୁତ୍ସାହିତ କରିଛନ୍ତି । ଲେଖକ-ମାନେ ରାଜନୈତିକ ପୃଷ୍ଠପୋଷକତା ହରାଇ ସାଧାରଣ ଜନତାଙ୍କ ଆଡ଼କୁ ଦୃଷ୍ଟି ଫେରାଇଛନ୍ତି । ଅବଶ୍ୟ କେତେକ ବର୍ଷ ପରେ ଦଳୀୟ ସଂଘର୍ଷ ଉତ୍କଟ ହେବା ସଙ୍ଗେ ସଙ୍ଗେ ପୁଣି ରାଜନୈତିକ ଲେଖାର ସୂତ୍ରପାତ ଘଟିଛି । ଭାରତ ଓ ଆମେରିକା ଅଧିକାର ବ୍ରିଟିଶଜାତିକୁ ଦେଇଛି ସମ୍ମାନ ଓ ସମୃଦ୍ଧି । ଜ୍ଞାନର ପରିସର ବୃଦ୍ଧି ପାଇଛି । ଗବେଷଣା, ବିଶେଷକରି ଐତିହାସିକ ଗବେଷଣା ପାଇଁ ଉତ୍ସାହ ବୃଦ୍ଧି ପାଇଛି । ବିଶପ ପର୍ସି ପ୍ରାଚୀନ ଲୋକଗାଥା ସଂଗ୍ରହ କରିଛନ୍ତି; ସେକ୍ସପିଅର ଓ ଚସାର୍‌ଙ୍କ ପରି ପ୍ରାଚୀନ ଲେଖକଙ୍କର ରଚନାବଳୀ ନୂତନଭାବରେ ସମ୍ପାଦିତ ହୋଇଛି । ହ୍ୟୁମ୍‌ଙ୍କ ପରି ଦାର୍ଶନିକ ଆତ୍ମପ୍ରକାଶ କରିଛନ୍ତି; କିନ୍ତୁ ଦାର୍ଶନିକର ଯୁକ୍ତିବାଦ ଓ ଗବେଷକର ସଂଧାନୀଦୃଷ୍ଟି ରୋମାଣ୍ଟିକ କଳ୍ପନାପ୍ରବଣତାର ପ୍ରତିବନ୍ଧକ ହୋଇନାହିଁ; ବରଂ ଏହା ବହୁ ମାନସିକ ଆବର୍ଜନାକୁ ଦୂରୀଭୂତ କରିବାରେ ସାହାଯ୍ୟ କରିଛି । ସମାଜପ୍ରତି ସାହିତ୍ୟିକର ନୂତନ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । ସମାଜର ବିଭିନ୍ନ ଶ୍ରେଣୀର ଲୋକେ ଉପନ୍ୟାସରେ ଚର୍ଚ୍ଚିତ ହୋଇଛନ୍ତି । ପରିବାରର ଚିତ୍ର ମଧ୍ୟ ଅଙ୍କିତ ହୋଇଛି । ଗୋଟିଏ ଦୃଷ୍ଟିରୁ ଏହା ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀର ପରିଚାୟକ । ଔପନ୍ୟାସିକମାନେ ନୂତନତାର ପୂଜାରୀ ଥିଲେ । ଫରାସୀ-ବିପ୍ଳବ ଖ୍ରୀ: ୧୭୮୯ରେ ହୋଇଥିଲେ ମଧ୍ୟ ଏତେବେଳକୁ ତାର ଭିତ୍ତିଭୂମି ସୃଷ୍ଟି ହୋଇ-ସାରିଥିଲା । ଏହି ବୈପ୍ଳବିକ ଚିନ୍ତାଧାରା ଇଂରେଜୀ ସାହିତ୍ୟକୁ ପ୍ରଭାବିତ କରିଛି । ଏହି ଦୃଷ୍ଟିରୁ ଆଲୋଚ୍ୟ ସମୟ ପରିଧି ମଧ୍ୟରେ ଇଂଲଣ୍ଡରେ ଗୋଟିଏ ଶ୍ରେଷ୍ଠ ଧରଣର ରେନାସାଁ ସୃଷ୍ଟି ହୋଇଯାଇଥିଲା ବୋଲି କୁହାଯାଇପାରେ ।

ନୂତନକୁ ସ୍ୱାଗତ କଲାବେଳେ ଅଧିକ କିଛି ଲାଭ କରିବାର ଆଶା ସହିତ କିଛି ହରାଇବାର ଆତଙ୍କ ମଧ୍ୟ ରହିଥାଏ । ଯୁଗସନ୍ଧିରେ ଏହି ମନୋବୃତ୍ତି ସ୍ପଷ୍ଟ ହୋଇଉଠିଛି ।

ଏଣୁ ଏ ଯୁଗରେ ରୋମାଣ୍ଟିକ ଚେତନା ପ୍ରତି ଆଗ୍ରହ ଯେପରି ପ୍ରକାଶପାଇଛି, ଅଗଷ୍ଟାନ୍ କ୍ଲାସିସିଜମ୍ ପ୍ରତି ଆକର୍ଷଣ ସେହିପରି ପ୍ରକାଶ ପାଇଛି । ଡକ୍ଟର ଜନ୍‌ସନ୍ ( ସାମୁଏଲ୍ ଜନ୍‌ସନ୍ )ଙ୍କ ପରି ମହାନ୍ ପ୍ରତିଭା କ୍ଲାସିସିଜମ୍‌ର ପକ୍ଷ ଅବଲମ୍ବନ କରିଥିବାବେଳେ ଟମ୍‌ସନ୍‌ଙ୍କ 'ସିଜନ୍‌ସ୍' (Seasons) କବିତାର ଆତ୍ମପ୍ରକାଶ ରୋମାଣ୍ଟିକ୍ କବିତାର ଶୁଭାରମ୍ଭ ସୂଚିତ କରିଛି । ପ୍ରକୃତିପ୍ରେମ, ନିମ୍ନ ଅବହେଳିତ ମଣିଷ ପ୍ରତି ସମବେଦନାବୋଧ, ଅଗଷ୍ଟାନ୍ ସାହିତ୍ୟର ହିରୋଇକ୍ କପ୍‌ଲେଟ ବିରୋଧରେ ପ୍ରତିକ୍ରିୟା, ସହଜ ସରଳ ଶକ୍ତିଶାଳୀ ଓ ଆନ୍ତରିକତାପୂର୍ଣ୍ଣ ପ୍ରକାଶଭଙ୍ଗୀପରି ରୋମାଣ୍ଟିକ୍ ଲକ୍ଷଣ ଏ ଯୁଗର ଶେଷଭାଗରେ ପ୍ରକାଶ ପାଇଛି; ପରବର୍ତ୍ତୀ ଯୁଗରେ ସେ ସବୁ ପରିପୂର୍ଣ୍ଣ ରୂପ ଲାଭକରିଛି ।

## କାବ୍ୟ :

(୧) କ୍ଲାସିସିଜମ୍, (୨) କ୍ଲାସିସିଜମ ଓ ରୋମାଣ୍ଟିସିଜମ୍‌ର ସମନ୍ୱୟ; ପୁଣି (୩) ସ୍ପଷ୍ଟ ରୋମାଣ୍ଟିକପ୍ରବଣତା—ଯୁଗଚେତନାର ଏହି ତ୍ରିବିଧରୂପ ସମସାମୟିକ କାବ୍ୟରେ ଲକ୍ଷ୍ୟ କରିବାର କଥା ।

କ୍ଲାସିସିଜମ୍ ଅନୁବର୍ତ୍ତୀ କବିଙ୍କ ମଧ୍ୟରେ ଡଃ ଜନ୍‌ସନ୍ (ସାମୁଏଲ ଜନ୍‌ସନ୍)ଙ୍କ ନାମ ଉଲ୍ଲେଖଯୋଗ୍ୟ । ତାଙ୍କ କବିତ୍ୱ ଅପେକ୍ଷା ବ୍ୟକ୍ତିତ୍ୱ ଏ ଯୁଗକୁ ଅଧିକ ପ୍ରଭାବିତ କରିଥିଲା । ତାଙ୍କର କବିତାସଂଖ୍ୟା ଅତ୍ୟଳ୍ପ । ସେଥିମଧ୍ୟରୁ 'ଲଣ୍ଡନ' ଓ 'ଦି ଭ୍ୟାନିଟି ଅଫ୍ ହ୍ୟୁମେନ୍ ୱିସେସ' କବିତା ଦୁଇଟି ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରଥମୋକ୍ତ କବିତାରେ କବି ଲଣ୍ଡନ ସହରର ନୈତିକ ତଥା ଅର୍ଥନୈତିକ ଅଧୋଗତି ଓ ଫରାସୀ ରୀତିନୀତିର ଅନ୍ଧାନୁକରଣର ବ୍ୟଙ୍ଗାତ୍ମକ ସମାଲୋଚନା କରିଛନ୍ତି । ଦ୍ୱିତୀୟ କବିତାଟି ଦୀର୍ଘତର; ଜୁଭେନାଲ୍‌ଙ୍କ ବ୍ୟଙ୍ଗକବିତା ରୀତିରେ ଲିଖିତ । କ୍ଷମତା, ପାଣ୍ଡିତ୍ୟ, ବୀରତ୍ୱ, ସୌନ୍ଦର୍ଯ୍ୟ ଓ ଜୀବନର ଅସାରତା ପ୍ରତିପାଦନ ଏହାର ଲକ୍ଷ୍ୟ । ଉଭୟ କବିତାରେ କବିଙ୍କ ନୈରାଶ୍ୟବାଦ ସ୍ପଷ୍ଟ । କବି ଅତ୍ୟନ୍ତ ବଳିଷ୍ଠ ରୀତିରେ ନିଜର ଦୃଢ଼ବିଶ୍ୱାସ ତଥା ଜୀବନଦର୍ଶନକୁ ଉପସ୍ଥାପିତ କରିଛନ୍ତି । ଉଭୟ କବିତା ହିରୋଇକ୍ କପ୍‌ଲେଟ୍‌ରେ ଲିଖିତ । କବିତାର ଆତ୍ମିକ ଓ ଆଙ୍ଗିକ ବିଚାରରୁ ସେ ଯେ ଅଗଷ୍ଟାନ ରୀତିର ସମର୍ଥକ, ଏଥିରେ ସନ୍ଦେହ ରହେନାହିଁ ।

## ରୋମାଣ୍ଟିକ୍ ଚେତନାର ଅଗ୍ରଦୂତ :

ଟମ୍‌ସନ୍, ଗୋଲ୍‌ଡସ୍ମିଥ୍, ଗ୍ରେ, କଲିନ୍‌ସ୍, କୁପାର୍, କ୍ରେବ ଆଦି କବିଙ୍କ ରଚନାରେ ରୋମାଣ୍ଟିକ ଚେତନାର ସତ୍ତା ଅନୁଭୂତ ହୁଏ । ରୋବର୍ଟ ବାର୍ଣ୍ଣସ୍ ଓ ବ୍ଲେକ୍ ଆଦିଙ୍କ କବିତାରେ ଏହି ସ୍ୱର ସ୍ପଷ୍ଟତର ହୋଇଛି । ଏହି ସମସ୍ତ କବିଙ୍କୁ ରୋମାଣ୍ଟିକ ଚେତନାର ଅଗ୍ରଦୂତ ( Pre-cursors of Romanticism ) କୁହାଯାଇଥାଏ । କଳ୍ପନା-

ପ୍ରବଣତା, ପ୍ରକୃତିପ୍ରୀତି, ବ୍ୟକ୍ତିନିଷ୍ଠତା ପରି ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ଏମାନଙ୍କ କବିତାରେ ଲକ୍ଷ୍ୟଣୀୟ ।

ଟମ୍‌ସନ୍ ( James Thomson : ଖ୍ରୀ: ୧୭୦୦-୧୭୪୮ ) ଙ୍କ ପ୍ରକୃତି-ପ୍ରୀତିମୂଳକ କବିତା 'ଉଇଣ୍ଟର୍' (Winter) ପ୍ରଥମେ ଖ୍ରୀ: ୧୭୨୬ରେ ପ୍ରକାଶ ପାଇ କବି ଓ ସମାଲୋଚକଙ୍କ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି କରିଥିଲା; ପରେ ଏହା ଅନ୍ୟ ତିନି ଋତୁର ବର୍ଣ୍ଣନା ସହ 'ଦି ସିଜନସ୍' (The Seasons : ୧୧୩୦ ) ନାମକ ସଂକଳନରେ ପ୍ରକାଶ ପାଇଥିଲା । କବିଙ୍କ ପ୍ରକୃତି ସମ୍ବନ୍ଧୀୟ ଜ୍ଞାନ ପୁସ୍ତକପାଠରୁ ଆହୃତ ନ ହୋଇ ପ୍ରକୃତ ଅଭିଜ୍ଞତା ଉପରେ ପର୍ଯ୍ୟବସିତ । କବିଙ୍କ ସୁପରିଚିତ ସ୍କଟଲାଣ୍ଡ ସୀମାନ୍ତର ପ୍ରକୃତି ଉକ୍ତ କବିତାର ଆଧାର । ଏହା ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ପ୍ରଚଳିତ ହିରୋଇକ୍ କପ୍‌ଲେଟ୍ ପ୍ରତି କବିଙ୍କ ପ୍ରତିଦ୍ୱନ୍ଦ୍ୱିତା, ପରମ୍ପରାରୁ ମୁକ୍ତ ହେବାର ରୋମାଣ୍ଟିକ୍ ମନୋଭାବ ଏଥିରେ ପ୍ରତିଫଳିତ । କବିଙ୍କ 'ଲିବର୍ଟି' (Liberty : ୧୭୩୫-୩୬) ନାମକ ଦୀର୍ଘକବିତା ମଧ୍ୟ ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ତାଙ୍କର ଅନ୍ୟତମ ସଫଳ ସୃଷ୍ଟି 'ଦି କ୍ୟାସେଲ ଅଫ୍ ଇଣ୍ଡୋଲେନ୍‌ସ' ( The Castle of Indolence ) । ଏହା ସ୍ପେନସରୀୟ ସ୍ତବକରେ ଲିଖିତ; ସ୍ପେନ୍‌ସରଙ୍କ ରୀତିର ଏହା ଏକ ସାର୍ଥକ ଅନୁକରଣ ।

ଯୁଗସନ୍ଧିର ଏହି ଆନ୍ଦୋଳିତ ମୁହୂର୍ତ୍ତରେ ଗୋଲଡ଼ସ୍ମିଥ୍ (Oliver Goldsmith : ଖ୍ରୀ: ୧୭୨୮-୭୪)ଙ୍କ ଭୂମିକା ସ୍ମରଣୀୟ । ଏ ଯୁଗର କର୍ଣ୍ଣଧାର ଡକ୍ଟର ଜନ୍‌ସନ୍‌ଙ୍କ କ୍ଲବ୍‌ର ସେ ଜଣେ ସଭ୍ୟ ଥିଲେ । କବିତା, ଉପନ୍ୟାସ, ନାଟକ—ଯେଉଁ କ୍ଷେତ୍ରରେ ସେ ଲେଖନୀ ଚାଳନା କରିଛନ୍ତି, ସେ କ୍ଷେତ୍ରରେ ଯଶସ୍ୱୀ ହୋଇଛନ୍ତି । ଦାରିଦ୍ର୍ୟ ଓ କୁତ୍ସିତ ରୂପ ତାଙ୍କ ପ୍ରତିଭାର ପ୍ରତିବନ୍ଧକ ହୋଇନାହିଁ ।

କବିଙ୍କ ପ୍ରଥମ କବିତା 'ଦି ଟ୍ରାଭେଲର୍' (The Traveller : ୧୭୬୪) ହିରୋଇକ୍ କପ୍‌ଲେଟ୍ ରୀତିରେ ଲେଖା ହୋଇଥିଲେ ମଧ୍ୟ ଏହାର ଅନ୍ତଃସ୍ୱର ରୋମାଣ୍ଟିକ୍ । ବିଭିନ୍ନ ଦେଶ ଓ ଜାତି ସମ୍ବନ୍ଧରେ ନିଜର ପ୍ରତ୍ୟକ୍ଷ ଅନୁଭୂତିକୁ ସେ ଏଥିରେ କାବ୍ୟରୂପ ଦେଇଛନ୍ତି । ଭାଷା ରୋମାଣ୍ଟିକ୍ କବିସୁଲଭ ସହଜ, ସରଳ ଓ ସାବଲୀଳ । ଦୁସ୍ଥ ଜନତା-ପ୍ରତି ସମବେଦନା ପ୍ରକାଶ ପାଇଛି; 'Laws grind the poor, and rich men make the laws.'

'ଦି ଡେଜାର୍ଟେଡ୍ ଭିଲେଜ୍' (The Deserted Village : ୧୭୭୦) କବିଙ୍କର ଶ୍ରେଷ୍ଠ କାବ୍ୟକ ପ୍ରୟାସ । ଆୟାର୍ଲାଣ୍ଡ ଅନ୍ତର୍ଗତ କବିଙ୍କ ନିଜ ଗ୍ରାମ ପାଲାସ୍ (Pallas) ଏହାର ପ୍ରେରଣାର ଉତ୍ସ । ଶିଳ୍ପର ପ୍ରସାର ସଙ୍ଗେ ସଙ୍ଗେ ଗ୍ରାମଜୀବନର କାଳ ଅବକ୍ଷୟ ଦେଖାଦେଇଛି ତାହାହିଁ ଏହାର ବର୍ଣ୍ଣିତ ବିଷୟ । ଗ୍ରାମ୍ୟପ୍ରକୃତି, ବାଲ୍ୟସ୍ମୃତି ଓ ଗ୍ରାମ୍ୟଜୀବନର ଅଧୋଗତିରେ କବିଙ୍କ ବିମର୍ଷତା ଭିତରେ ଆମେ ରୋମାଣ୍ଟିକ୍ ଯୁଗର ପଦଧ୍ୱନି ଶୁଣିବାକୁ ପାଉଁ ।

ଗ୍ରେ (Thomas Gray : ୧୭୧୬-୭୧ )ଙ୍କ 'ଶୋକଗୀତ' (Elegy written in a country church yard ) ତାଙ୍କୁ ଅମର କରିଛି । ଏଥିରେ କବିଙ୍କ ମୃତ୍ୟୁଚେତନା ଓ ବିଷଣ୍ଣତା ବ୍ୟକ୍ତିଗତ ଭାବୋଚ୍ଛ୍ବାସ ମଧ୍ୟରେ ପ୍ରକାଶ ପାଇଛି । ଗ୍ରେ ମଧ୍ୟ ସମକାଳୀନ କବିତା ଧାରାରେ ସନ୍ତୁଷ୍ଟ ନହୋଇ ଅତୀତମୁଖୀ ହୋଇଛନ୍ତି । ପିଣ୍ଡାରଙ୍କ ଅନୁସରଣରେ ସେ କେତେକ ଓଡ୍ ରଚନା କରିଛନ୍ତି । ଏଗୁଡ଼ିକ ଦୁର୍ବୋଧ । କବି ଆଳଙ୍କାରିକ ରୀତିର ପକ୍ଷପାତୀ । ତାଙ୍କ ଭାଷା ଗାମ୍ଭୀର୍ଯ୍ୟପୂର୍ଣ୍ଣ । ଡ: ଜନସନ୍ଙ୍କ ଭାଷାରେ, ପ୍ରତିଭା ଅପେକ୍ଷା ପ୍ରୟାସର ସ୍ୱାକ୍ଷର ତାଙ୍କ କବିତାରେ ବେଶି ।

କଲିନ୍ସ (William Collins : ୧୭୨୧-୫୯)ଙ୍କ କବିତା ସ୍ୱଳ୍ପସଂଖ୍ୟକ; ସେଥିରୁ ଅଧିକାଂଶ ମଧ୍ୟମ ଧରଣର । ପୋପ୍‌ଙ୍କ ଶୈଳୀର ଅନୁସରଣରେ ତାଙ୍କର 'ପାର୍ସିଆନ୍ ଏକ୍‌ଲଗ୍' (Persian Eclogues : ୧୭୪୨) ଲିଖିତ । କବି କିନ୍ତୁ ପାରସ୍ୟ ଅଞ୍ଚଳର ପରିବେଶ ତଥା ଦୃଶ୍ୟ ଅଙ୍କନରେ ବ୍ୟର୍ଥ ହୋଇଛନ୍ତି ।

କଲିନ୍ସ କେତୋଟି ସାର୍ଥକ ସମ୍ବୋଧଗୀତି ମଧ୍ୟ ଲେଖିଛନ୍ତି । ସେଥିମଧ୍ୟରୁ 'ଓଡ୍ ଟୁ ଇଭନିଂ' ତାଙ୍କର ଶ୍ରେଷ୍ଠ କୃତି । ରୋମାଣ୍ଟିକ୍ କବିର ବିଷଣ୍ଣତାବୋଧ ଏଥିରେ ଉପଲବ୍ଧ ହୁଏ । ତାଙ୍କର 'ହାଓ ସ୍ଲିପ୍‌ସ୍ ଦ ବ୍ରେଭ୍' ଓ ଟମ୍ସନ୍‌ଙ୍କ ସମ୍ବନ୍ଧୀୟ ଏଲିଜି 'In yonder grave a Druid lies'ରେ ମଧ୍ୟ ରୋମାଣ୍ଟିକ୍ ଲକ୍ଷଣ ପ୍ରକାଶପାଇଛି ।

କୁପାର୍ (William Cowper : ୧୭୩୧-୧୮୦୦) ଏହି ଯୁଗସନ୍ଧିର ଅନ୍ୟତମ ବିଶିଷ୍ଟ କବି । ପାରିବାରିକ ଜୀବନ ଚିତ୍ରଣରେ ତାଙ୍କର ଆନ୍ତରିକତା, ବାହ୍ୟପ୍ରକୃତି ପ୍ରତି ନିବିଡ଼ ଆକର୍ଷଣ, ମାନବବାଦୀ ଦୃଷ୍ଟିଭଙ୍ଗୀ ଓ ଗୀତିମୟତା ପରବର୍ତ୍ତୀ କବି ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କୁ ସ୍ମରଣ କରାଇଦିଏ । ସେ ବହୁ ଉପଦେଶାତ୍ମକ ତଥା ବ୍ୟଙ୍ଗାତ୍ମକ କବିତା ଲେଖିଥିଲେ ମଧ୍ୟ ତାର ଅନ୍ତଃସ୍ୱର ରୋମାଣ୍ଟିକ୍ ।

କୁପାର୍‌ଙ୍କ ପ୍ରଥମ ପ୍ରକାଶିତ ଗ୍ରନ୍ଥ 'ହିମ୍‌ସ୍' (Hymns : ୧୭୭୯) କେତେକ ଧର୍ମୀୟ କବିତାର ସଂକଳନ । ତାଙ୍କର 'ପଏମ୍‌ସ୍' (Poems : ୧୭୮୨) ହିରୋଇକ କପ୍‌ଲେଟ୍‌ରେ ଲିଖିତ କେତେକ ବ୍ୟଙ୍ଗକବିତାର ସଂକଳନ । ଏହାର ପରିଶିଷ୍ଟରେ କେତୋଟି ଭିନ୍ନ ସ୍ୱାଦର କବିତା ସଂଯୋଜିତ । ତନ୍ମଧ୍ୟରୁ 'ଦ ସଲିଟ୍ୟୁଡ୍ ଅଫ୍ ଆଲେକଜାଣ୍ଡାର ସେଲ୍‌କାର୍କ' (The Solitude of Alexandar Selkirk) ଉଲ୍ଲେଖଯୋଗ୍ୟ । 'ଦ ଟାସ୍କ୍' ନାମକ ଦୀର୍ଘକବିତାଟି ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ସାଧାରଣ କ୍ଷୁଦ୍ର କ୍ଷୁଦ୍ର ବିଷୟ ପ୍ରତି ରୋମାଣ୍ଟିକ୍ କବିର ଆଗ୍ରହ ଏଥିରେ ପ୍ରତିଫଳିତ । ପଲ୍ଲୀପ୍ରକୃତିର ଚିତ୍ର ଅଙ୍କନରେ କବିଙ୍କ ପାରଦର୍ଶିତା ଲକ୍ଷ୍ୟ କରାଯାଏ । ଅନୁଭୂତିର ଗଭୀରତା ତଥା ଆନ୍ତରିକତା ନଥିଲେ ମଧ୍ୟ ଦୃଷ୍ଟିଭଙ୍ଗୀ ମାନବବାଦୀ । କବିଙ୍କ ସଫଳ କ୍ଷୁଦ୍ର କବିତା ମଧ୍ୟରେ 'ଦ କାଷ୍ଟଏଓ୍ୱେ' (The Castaway) କବିଙ୍କ ଅନ୍ତିମ ପର୍ଯ୍ୟାୟରେ ଲିଖିତ ।

କ୍ରେବ୍ (George Crabbe : ୧୭୫୪-୧୮୩୨) ପୋପ୍‌ଙ୍କ ରଚନାଶୈଳୀର ଅନୁସରଣ କରିଛନ୍ତି; କିନ୍ତୁ ଅଭିବ୍ୟକ୍ତି ଦୃଷ୍ଟିରୁ ସେ ରୋମାଣ୍ଟିକ୍। ଧର୍ମଯାଜକ ଭାବରେ ସେ ସାଧାରଣ ଲୋକଙ୍କ ସମ୍ପର୍କରେ ଆସିଥିଲେ। ସେଇମାନଙ୍କ ଜୀବନର ସୁଖ-ଦୁଃଖ ତାଙ୍କ କବିତାରେ ରୂପାୟିତ। ଦରିଦ୍ର କୃଷକଙ୍କ କରୁଣ ଜୀବନଚିତ୍ର ସେ ଏଭଳି ଭାବରେ ଅଙ୍କନ କରିଛନ୍ତି ଯେ ସେଥିପାଇଁ ତାହାଙ୍କୁ କେହି କେହି ନୈରାଶ୍ୟବାଦୀ ଆଖ୍ୟା ଦେଇଥାନ୍ତି।

ପୂର୍ବ ଆଲୋଚିତ କବିଙ୍କ ଲେଖାରେ ରୋମାଣ୍ଟିକ ସ୍ୱର ଧ୍ୱନିତ ହୋଇଥିଲେ ମଧ୍ୟ ସେମାନେ କ୍ଲାସିସିଜମ୍‌ରୁ ମୁକ୍ତ ନଥିଲେ; କିନ୍ତୁ ଏ ଯୁଗର ଶେଷଭାଗରେ ଦେଖାଦେଇଥିବା କେତେକ କବି କ୍ଲାସିସିଜମ୍‌ରୁ ମୁକ୍ତ। ସେମାନଙ୍କ କବିତାରେ ରୋମାଣ୍ଟିକ ଚେତନା ସୁସ୍ପଷ୍ଟ। ରୋମାଣ୍ଟିକ୍ ଯୁଗର ସୁଦୃଢ଼ ଭିତ୍ତି ଏହିଠାରୁ ହିଁ ପଡ଼ିଥିଲା। ଏହି କବିଙ୍କ ମଧ୍ୟରେ ବର୍ଣ୍ଣସ୍ ଓ ବ୍ଲେକ୍‌ଙ୍କ ଭୂମିକା ମୁଖ୍ୟ। ଏମାନଙ୍କ ବ୍ୟତୀତ ମାକ୍‌ଫାର୍‌ସନ୍ ଓ ଚେଟାର୍‌ଟନ୍‌ଙ୍କ ଅବଦାନ ମଧ୍ୟ ଉଲ୍ଲେଖଯୋଗ୍ୟ।

ବର୍ଣ୍ଣସ (Robert Burns : ୧୭୫୯-୯୬) ସ୍କଟଲଣ୍ଡ୍‌ର ବିଶିଷ୍ଟ କବି। ତାହାଙ୍କ କବିତାରେ ପାରମ୍ପରିକ ସ୍କଟିସ କବିତାର ପ୍ରାଣପ୍ରାଚୁର୍ଯ୍ୟ ଓ ବାସ୍ତବଧର୍ମିତା ଲକ୍ଷଣୀୟ। ସ୍କଟଲଣ୍ଡର ପ୍ରକୃତି ଓ ସ୍କଟିସ୍ ପରମ୍ପରା ପ୍ରତି ମୋହ କବିଙ୍କୁ ଉକ୍ତ ମନୋଭଙ୍ଗୀ ପ୍ରଦାନ କରିଥିବା ସ୍ୱାଭାବିକ।

ବର୍ଣ୍ଣସ୍‌ଙ୍କ କବିଖ୍ୟାତି ତାଙ୍କର କବିତା ସଂକଳନ 'ପଏମ୍‌ସ୍' (୧୭୮୬) ଉପରେ ଆଧାରିତ। ଏତଦ୍‌ବ୍ୟତୀତ କବିଙ୍କ ମୃତ୍ୟୁ ପରେ ଖ୍ରୀ: ୧୮୦୦ରେ ତାଙ୍କର ବହୁ ସଂଖ୍ୟକ କବିତା ପ୍ରକାଶିତ ହୋଇଥିଲା। କବିତାଗୁଡ଼ିକ ବହୁ ବିକ୍ଷିପ୍ତ ଚିନ୍ତା ଓ ବ୍ୟାପକ ବିଷୟବସ୍ତୁକୁ କେନ୍ଦ୍ରକରି ବିଭିନ୍ନ ସମୟରେ ଲିଖିତ ହୋଇଥିବାରୁ ସମୟକ୍ରମାନୁଯାୟୀ ତାଙ୍କ ଚିନ୍ତାଧାରାର ବିକାଶ ଦର୍ଶାଇବା ସମ୍ଭବ ନୁହେଁ। ବର୍ଣ୍ଣସ ଗୀତଧର୍ମୀ। ସେ ଜଣେ ସଙ୍ଗୀତକାର ମଧ୍ୟ। ଆବେଗ ଓ ଅନୁଭୂତିରେ ତାଙ୍କ କବିତା ରସାଣିତ। ଉକ୍ତ ଅନୁଭୂତି ମୁଖ୍ୟତଃ ସ୍କଟଲଣ୍ଡ୍‌ର କୃଷକ-ଜୀବନର ଅନୁଭୂତି ହେଲେ ମଧ୍ୟ କବିଙ୍କ ଲେଖାରେ ତାହାର ଆବେଦନ ସାର୍ବଜନୀନ ହୋଇଉଠିଛି। ବ୍ୟକ୍ତିଗତ ଜୀବନର ବିଷଣ୍ଣତାରୁ ମୁକ୍ତି ପାଇବା ପାଇଁ ସେ ନିର୍ଜନତା ଅପେକ୍ଷା ସାମାଜିକଙ୍କ ମେଳରେ ସମୟ ଅତିବାହିତ କରିବାର ପକ୍ଷପାତୀ। ଏ ଦୃଷ୍ଟିରୁ ସେ ଗଣତନ୍ତ୍ରର ସମର୍ଥକ। ରୋମାଣ୍ଟିକ୍ କବିଙ୍କ ପରି ସେ ଫରାସୀ-ବିପ୍ଳବକୁ ସମର୍ଥନ କରିଥିଲେ। ତାଙ୍କ କବିତାର ବ୍ୟଙ୍ଗ, ହାସ୍ୟ ଓ ବୌଦ୍ଧିକତା (wit) କବି ବାଇରନ୍‌ଙ୍କୁ ସ୍ମରଣ କରାଇଦିଏ।

ସାମାଜିକ ଜୀବନରି ଅଧଃପତନରେ କବିଙ୍କ ପ୍ରତିକ୍ରିୟା 'ଏ ମ୍ୟାନ୍‌ସ୍ ମ୍ୟାନ୍ ଫର୍ ଅଲ୍ ଦେଟ୍' (A Man's Man for a'that) କବିତାଟିରେ ପ୍ରକାଶ ପାଇଛି। ଧର୍ମକ୍ଷେତ୍ରରେ ଭ୍ରଷ୍ଟାଚାରକୁ ବ୍ୟଙ୍ଗକରି ସେ କେତେକ କବିତା ଲେଖିଛନ୍ତି। ସେଥିମଧ୍ୟରୁ 'ହୋଲି ଓ୍ୱିଲିସ ପ୍ରେୟାର' (Holy willie's Prayer)ରେ କବିଙ୍କ ଶାଣିତ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶପାଇଛି।

ନମୁନାରେ ଏହି ସାର୍ଥକ ଗୀତକବି, ସଂଗୀତକାରଙ୍କ ବଳିଷ୍ଠ ପ୍ରକାଶଭଙ୍ଗୀର ଗୋଟିଏ ଉଦାହରଣ ଦିଆଗଲା :

O, My luve's like a red, réd rose
That's newly sprung in June;
O, my luve's like the melodie
That's sweetly played in tune.

ଗଣତନ୍ତ୍ରରେ ବିଶ୍ୱାସ, ସାମ୍ୟ ଓ ମୈତ୍ରୀରେ ବିଶ୍ୱାସ, ନିମ୍ନସ୍ତରର ଲୋକଙ୍କ ପ୍ରତି ସମବେଦନା ଓ ସାଧାରଣ କଥିତଭାଷାର ପ୍ରୟୋଗ ଦୃଷ୍ଟିରୁ ସେ ରୋମାଣ୍ଟିକ ହେଲେ ମଧ୍ୟ ତାଙ୍କ ଦୃଷ୍ଟିଭଙ୍ଗୀ ବାସ୍ତବମୁଖୀ; ସେ ପାର୍ଥିବ ବନ୍ଧନରୁ ମୁକ୍ତ ନୁହନ୍ତି; ରୋମାଣ୍ଟିକ୍ କବିଙ୍କ ଅତୀନ୍ଦ୍ରିୟବାଦ ତାଙ୍କଠାରେ ଦେଖାଯାଏ ନାହିଁ । ପୁନଶ୍ଚ ପୂର୍ବୋକ୍ତ ରୋମାଣ୍ଟିକ ଗୁଣସବୁ ସେ ସ୍କଟିସ କବିତାର ପରମ୍ପରାରୁ ଗ୍ରହଣ କରିଛନ୍ତି ।

ବ୍ଲେକ୍ (William Blake : ୧୭୫୭-୧୮୨୭) ରୋମାଣ୍ଟିକ ଚେତନାର ଅଗ୍ରଦୂତଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ଆନୁଷ୍ଠାନିକ ସ୍ତରରେ ଶିକ୍ଷା ଲାଭ ତାଙ୍କ କପାଳରେ ଜୁଟିନଥିଲା । ନିଜ ସାଧନାବଳରେ ସେ ଜଣେ ସ୍ୱନାମଧନ୍ୟ କବି ତଥା ଚିତ୍ରକର ହୋଇପାରିଥିଲେ ।

କବିଙ୍କ ପ୍ରଥମ ପ୍ରକାଶିତ କବିତା ସଂକଳନ 'ପଏଟିକେଲ୍ ସ୍କେଚେସ୍' (Poetical Sketches : ୧୭୮୩) ସେକ୍ସପିଅର, ମିଲଟନ ଓ ସ୍ପେନ୍ସାର୍ଙ୍କ ଅନୁକରଣରେ ଲିଖିତ । ଏଥିରୁ କବିଙ୍କର ଗୀତକବିତା ରଚନାରେ ପାରଦର୍ଶିତାର ସୂଚନା ମିଳେ । ତାଙ୍କର ପରବର୍ତ୍ତୀ ଦୁଇଟି ସାର୍ଥକ ରଚନା 'ସଂଗ୍ସ୍ ଅଫ୍ ଇନୋସେନସ' (Songs of Innocence : ୧୭୮୯ ) ଓ 'ସଂଗସ୍ ଅଫ୍ ଏକ୍ସପେରିଏନ୍ସ' ( Songs of Experience) । ଏଇ ଦୁଇଟି ହିଁ ତାଙ୍କର ଶ୍ରେଷ୍ଠ ରଚନାଭାବରେ ଗୃହୀତ । ଉଭୟ ସଂକଳନରେ କବିଙ୍କ ସ୍ୱକୀୟତା ସ୍ପଷ୍ଟ । ରୋମାଣ୍ଟିକ ଅତୀନ୍ଦ୍ରିୟ ଚେତନା ମଧ୍ୟ ପ୍ରକାଶ ପାଇଛି । ସମାଜର ଜଟିଳ ଜୀବନଧାରା ପ୍ରତି କବି ବିମୁଖ । ମାନବସମାଜର ପ୍ରଥମ ସୃଷ୍ଟିବେଳର ସରଳତା ତାଙ୍କର କାମ୍ୟ । ତାଙ୍କ ଦୃଷ୍ଟିରେ ଏହି ସରଳତା ତଥା ପବିତ୍ରତାର ଶ୍ରେଷ୍ଠ ପ୍ରତୀକ ଶିଶୁ । ଏଣୁ ବହୁ କବିତାରେ ସେ ଶିଶୁର ମହିମାନ୍ୱିତ ରୂପ ଅଙ୍କନ କରିଛନ୍ତି । କବି ଏହି ଦେବଶିଶୁକୁ ପଶୁମାନଙ୍କ ଗହଣରେ ଦେଖନ୍ତି; ମେଘଲୋକରେ ତାକୁ ଆବିଷ୍କାର କରନ୍ତି । ଏହି ଅତୀନ୍ଦ୍ରିୟ ଚେତନା ହେତୁ ସେ ରୋମାଣ୍ଟିକ୍ କବିଙ୍କ ଅଧିକ ନିକଟବର୍ତ୍ତୀ । 'ସଂଗ୍ସ ଅଫ୍ ଏକ୍ସ୍‌ପେରିଏନ୍ସ'ରେ କିନ୍ତୁ ପୂର୍ବୋକ୍ତ କବିତାର ସ୍ୱତଃସ୍ଫୂର୍ତ୍ତି ଉଦାର ପ୍ରେମ ଓ ହର୍ଷୋତ୍ଫୁଲ୍ଲତା ପରିଲକ୍ଷିତ ହୁଏନାହିଁ । ଏଥିରେ କବି ପ୍ରକୃତିର ଦୁଇଟି ପରସ୍ପରବିରୋଧୀ ସତ୍ତା-ସ୍ନିଗ୍ଧତା ଓ ନିଷ୍ଠୁରତାର ଅବତାରଣା କରିଛନ୍ତି । କବିଙ୍କର

ସୁପରିଚିତ 'ଦି ଟାଇଗର' (The Tiger) କବିତାଟିରେ ସେ ଏହି ପ୍ରଶ୍ନ ଉଠାଇଛନ୍ତି, "Did he who made the Lamb make thee ?"

. କବିଙ୍କ ଶେଷପର୍ଯ୍ୟାୟର କବିତା ଖ୍ରୀଷ୍ଟୀୟ ଧର୍ମାଦର୍ଶ ପ୍ରଣୋଦିତ । ଆବେଗ ଓ ବୌଦ୍ଧିକତା ସଂକ୍ରାନ୍ତୀୟ କବିଙ୍କ ଅନ୍ତର୍ଦ୍ୱନ୍ଦ୍ୱ ଏଥିରେ ପ୍ରଶମିତ ହୋଇଥିବା ବୁଝାପଡ଼େ । ଅନେକ ସ୍ଥଳରେ କବି ରହସ୍ୟବାଦୀ (mystic) ହୋଇ ପଡ଼ିଛନ୍ତି । ଦୁର୍ବୋଧ ପ୍ରତୀକର ପ୍ରୟୋଗ ମଧ୍ୟ ଦେଖାଦେଇଛି ।

ଜେମ୍ସ୍ ମାକ୍‌ଫାର୍‌ସନ୍ (James Macpherson : ୧୭୩୬-୯୬) କବିତା-ରାଜ୍ୟରେ ଚୌର୍ଯ୍ୟବୃତ୍ତି ପାଇଁ ନିନ୍ଦିତ ହୋଇଛନ୍ତି; କିନ୍ତୁ ତା ଭିତରେ କବି ପ୍ରତିଭାର ସ୍ୱାକ୍ଷର ରହିଥିବାରୁ ପ୍ରାକ୍-ରୋମାଣ୍ଟିକ କବି ମଧ୍ୟରେ ଗଣ୍ୟ ।

କବିଙ୍କର ଯାହାକିଛି ପ୍ରଶଂସା ବା ନିନ୍ଦା ତାଙ୍କର ତିନିଖଣ୍ଡ ପ୍ରକାଶିତ କାବ୍ୟକୁ ନେଇ । ଏଗୁଡ଼ିକୁ ଓସିଆନ୍ (Ossian) କାବ୍ୟ କୁହାଯାଏ । ଏଗୁଡ଼ିକ ପ୍ରାଚୀନ କେଲ୍‌ଟିକ୍ ଜାତିର ଓସିଆନ ନାମକ ଜଣେ କବିଙ୍କର ରଚନା ଓ କବି ତାହାକୁ ଆଧୁନିକ ଭାଷାରେ ରୂପାନ୍ତରିତ କରିଥିବାର ଦାବୀ କରିଥିଲେ । ପ୍ରଥମଖଣ୍ଡ ପ୍ରକାଶିତ ହେବା ପରେ ଏ ସମ୍ବନ୍ଧରେ ଅଧିକ ଅନୁସନ୍ଧାନ ଚଳାଇବା ପାଇଁ ଚାନ୍ଦାସଂଗ୍ରହ କରାଯାଇ କବିଙ୍କୁ ଯୋଗାଇ ଦିଆ-ଯାଇଥିଲା; କିନ୍ତୁ ପରେ ଏଗୁଡ଼ିକ ନିଜସ୍ୱ ସୃଷ୍ଟି ବୋଲି ଜଣାପଡ଼ିଲା । ଅବଶ୍ୟ ପ୍ରାଚୀନ ସ୍କଟିସ୍ ପରମ୍ପରାର କିଛି ବିଚ୍ଛିନ୍ନ, ଅସ୍ପଷ୍ଟ ଉପାଦାନ କବି ପାଇଥିବା ସମ୍ଭାବନାକୁ ଏଡ଼ାଇ ଦିଆଯାଏନା । ଏ କାବ୍ୟରେ ଦୁଃସାହସିକ ଯାତ୍ରା ଓ ବନ୍ୟପ୍ରକୃତି ବର୍ଣ୍ଣନାପରି ରୋମାଣ୍ଟିକ ଲକ୍ଷଣ ଦେଖାଯାଏ । ଏ ଗୁଡ଼ିକ ଛନ୍ଦୋବଦ୍ଧ ଲଳିତ ଗଦ୍ୟରେ ଲିଖିତ ।

ଚାଟର୍‌ଟନ୍ (Thomas Chatterton : ୧୭୫୨-୭୦) ପ୍ରାୟ ଷୋହଳ ବର୍ଷ ବୟସରେ କବି ହେବାପାଇଁ ଏକ ଅଭିନବ କୌଶଳ ଅବଲମ୍ବନ କରନ୍ତି । ଚ୍ୟାଟାର୍-ଟନ୍‌ଙ୍କ ପିତା ବ୍ରିଷ୍ଟଲ୍ ସହରର ଗୋଟିଏ ପ୍ରାଚୀନ ଗିର୍ଜାର କର୍ମଚାରୀ ଥିଲେ । ଉକ୍ତ ଗିର୍ଜାର ଗୋଟିଏ ପୁରୁଣା ସିନ୍ଦୁକରୁ ପଞ୍ଚଦଶ ଶତାବ୍ଦୀର ଜଣେ ଅଜଣାକବି ଟମାସ୍ ରାଉଲିଙ୍କର ଖଣ୍ଡିଏ ଅପ୍ରକାଶିତ ପୋଥି କବି ପାଇଥିବାର ସମ୍ବାଦ ପ୍ରଚାର କଲେ; ଖ୍ରୀ: ୧୭୬୮ରେ ତାହା ପ୍ରକାଶ ମଧ୍ୟ କଲେ । ଏହି ସଂକଳନ "ଦି ରାଉଲି ପଏମ୍‌ସ" ଭାବରେ ନାମିତ; କିନ୍ତୁ ପ୍ରକୃତରେ ଏଗୁଡ଼ିକ ଥିଲି ସ୍ୱୟଂ ଚ୍ୟାଟାରଟନ୍‌ଙ୍କ ରଚନା । କେତେକ ମଧ୍ୟଯୁଗୀୟ ଶବ୍ଦର ପ୍ରୟୋଗ ଓ ବନାନ ରୀତି ଗ୍ରହଣକରି କବି ଏହା ଉପରେ ଗୋଟିଏ ସୂକ୍ଷ୍ମ ଆବରଣ ଟାଣିଦେବାକୁ ଚେଷ୍ଟା କରିଥିଲେ । ମଧ୍ୟଯୁଗୀୟ ଇଂରେଜୀ ସମ୍ବନ୍ଧରେ ସାମାନ୍ୟତମ ଧାରଣା ଏହାର ଛଦ୍ମରୂପ ବଳାଇ ଦିଏ । ପ୍ରାଚୀନ କାବ୍ୟରୀତିର ଆବରଣ ତଳେ କବିଙ୍କ ରୋମାଣ୍ଟିକ ଚେତନା ବ୍ୟାହତ ହୋଇନାହିଁ ।

ଜୀବିକାର୍ଜନରେ ସକ୍ଷମ ନ ହୋଇ ଅଠର ବର୍ଷ ବୟସରେ ଏହି ପ୍ରତିଭାବାନ୍ କବି ଆତ୍ମହତ୍ୟା କରିଥିଲେ ।

ବିଶପ୍ ଟମାସ୍ ପର୍ସି (Bishop Tomas Percy : ୧୭୨୯-୧୮୧୧)ଙ୍କ ରିଲିକ୍ସ ଅଫ୍ ଏନ୍ସିଏଣ୍ଟ ଇଂଲିଶ ପଏଟ୍ରି' (Reliques of Ancient English Poetry : ୧୭୬୫) ଲୋକଗାଥାର ଏକ ସଂକଳନ । ଇଂଲଣ୍ଡ ଓ ସ୍କଟଲଣ୍ଡର ସୀମାନ୍ତ ଅଞ୍ଚଳରେ ଲୋକମୁଖରେ ଯେଉଁ ଗାଥାମାନ ପ୍ରଚଳିତ ଥିଲା, ବିଶପ୍ ପର୍ସି ସେଗୁଡ଼ିକୁ ପ୍ରଥମ ଥର ପାଇଁ ସଂଗ୍ରହ ତଥା ପ୍ରକାଶକରି ଶିକ୍ଷିତ-ସମାଜର ଦୃଷ୍ଟି ସେଥିପ୍ରତି ଆକୃଷ୍ଟ କରିଥିଲେ । ରୋମାଣ୍ଟିକ କବିଙ୍କର ମଧ୍ୟଯୁଗ ପ୍ରତି ଆକର୍ଷଣ ତୀବ୍ର । ପର୍ସିଙ୍କ ସଙ୍କଳନ ଉକ୍ତ କବିଙ୍କ ପାଇଁ ଯଥେଷ୍ଟ କାବ୍ୟିକ ଉପାଦାନ ଯୋଗାଇଥିଲା ।

## ଉପନ୍ୟାସ :

ଇଂରେଜୀ ସାହିତ୍ୟରେ ଉପନ୍ୟାସର ଆବିର୍ଭାବ ଅଷ୍ଟାଦଶ ଶତାବ୍ଦୀରେହିଁ ଘଟିଥିଲା । ବାନୟାନ୍ଙ୍କ 'ପିଲଗ୍ରିମ୍ସ ପ୍ରୋଗ୍ରେସ୍' (୧୬୭୮) ଓ ଡିଫୋଙ୍କ 'ରବିନ୍ସନ୍ କ୍ରୁଶୋ' (୧୭୧୯) ର ଭୂମିକା ଏ କ୍ଷେତ୍ରରେ ସ୍ମରଣୀୟ । ପିଲଗ୍ରିମ୍ସ ପ୍ରୋଗ୍ରେସରେ ଉପନ୍ୟାସର ସମସ୍ତ ଲକ୍ଷଣ ପ୍ରକାଶ ପାଇଥିଲେ ବି ଏହାକୁ ଉପନ୍ୟାସ ନକହି ଏକ 'ଧର୍ମୀୟ ରୂପକ' କହିବା ଯଥାର୍ଥ ହେବ । ସମାଜ ମଧ୍ୟରୁ ବାସ୍ତବ ଚରିତ୍ର ଗ୍ରହଣକରିବା ପରିବର୍ତ୍ତେ ଏଥିରେ ଲେଖକ ଜ୍ଞାନ, ବିଶ୍ୱାସ, ନୈରାଶ୍ୟ, ଦୟା ପରି ଅମୂର୍ତ୍ତ ଗୁଣ ଉପରେ ବ୍ୟକ୍ତିତ୍ୱ ଆରୋପ କରିଛନ୍ତି । ରବିନସନ୍ କ୍ରୁଶୋର ଅବସ୍ଥା ଅନ୍ୟ ପ୍ରକାର । ଚରିତ୍ରଚିତ୍ରଣ ତଥା କଥାବସ୍ତୁର ଦୃଢ଼ ସଂହତି ପ୍ରତି ଦୃଷ୍ଟି ଦିଆ ଯାଇ ନଥିବାରୁ ଏହାକୁ ମଧ୍ୟ ସାର୍ଥକ ଉପନ୍ୟାସ ଭାବରେ ଗ୍ରହଣ କରାଯାଏନାହିଁ । ସାମୁଏଲ୍ ରିଚାର୍ଡସନ୍‌ହିଁ ଏହି ଶତାବ୍ଦୀର ଚତୁର୍ଥ ଦଶକରେ ପ୍ରଥମ ଇଂରେଜୀ ଉପନ୍ୟାସ ସୃଷ୍ଟି କରି ଅମର ହୋଇଛନ୍ତି ।

ସାମୁଏଲ୍ ରିଚାର୍ଡ଼ସନ୍ (Samuel Richardson : ୧୬୮୯—୧୭୬୧) ଥିଲେ ଜଣେ ମୁଦ୍ରଣଶିଳ୍ପୀ । ନିଜ ଦକ୍ଷତା ବଳରେ ସେ ହାଉସ୍ ଅଫ୍ କମନ୍ସ୍‌ର ପତ୍ରିକା ପ୍ରକାଶ କରିବା ସଙ୍ଗେ ସଙ୍ଗେ ରାଜକୀୟ ମୁଦ୍ରାକର ଗୌରବ ଲାଭକରିଥିଲେ । ଲେଖକଙ୍କ ପଚାଶ ବର୍ଷ ବୟସ ବେଳକୁ ତାଙ୍କର ଉପନ୍ୟାସ 'ପାମେଲା' (୧୭୪୦) ପ୍ରକାଶ ପାଇଲା । ଏହାହିଁ ଇଂରେଜୀ ସାହିତ୍ୟର ପ୍ରଥମ ଉପନ୍ୟାସ । ଲେଖକ ନିଜ ଅଜାଣତରେ ତେର ବର୍ଷ ବୟସରୁ ଏହି ଉପନ୍ୟାସ ରଚନା ପାଇଁ ଆବଶ୍ୟକୀୟ ଅଭିଜ୍ଞତା ଓ କଳାନୈପୁଣ୍ୟ ହାସଲ କରିଥିଲେ । ତିନିଜଣ ଅଶିକ୍ଷିତା ପ୍ରେମିକାଙ୍କର ସେ ଥିଲେ ଏକାନ୍ତ ବିଶ୍ୱସ୍ତପାତ୍ର । ସେମାନଙ୍କ ପାଇଁ ପ୍ରେମପତ୍ର ଲେଖି ଲେଖି ସେ ଜଣେ ଉତ୍ତମ ପ୍ରେମପତ୍ର-ଲେଖକ ଭାବରେ ପରିଚିତ ହୋଇଥିଲେ । ନାରୀ ମନସ୍ତତ୍ତ୍ୱ ବୁଝିବାର ସୁଯୋଗ ସେ ଏଇଥିରୁହିଁ ପାଇଥିଲେ । ଏହି ଅଭିଜ୍ଞତା ଲେଖକଙ୍କ ପତ୍ର-ଉପନ୍ୟାସ 'ପାମେଲା' ର ସାର୍ଥକତା ପାଇଁ ଦାୟୀ ।

ନାୟିକା ପାମେଲା ଜଣେ ଗୃହକର୍ମୀ । ନିଜ ପ୍ରଭୁପୁତ୍ରର ପାପପ୍ରସ୍ତାବରେ ସେ ରାଜି ହୋଇନାହିଁ । ଉଭୟଙ୍କ ମଧ୍ୟରେ ଏ ସମ୍ପର୍କରେ ପତ୍ର ଆଦାନପ୍ରଦାନ ଚାଲିଛି; କିନ୍ତୁ ପାମେଲା ନିଜ ସିଦ୍ଧାନ୍ତରେ ଦୃଢ଼ । ଅବଶେଷରେ ପ୍ରଭୁପୁତ୍ରର ବିବାହ ପ୍ରସ୍ତାବକୁ ସେ ଆଦରରେ ଗ୍ରହଣକରିଛି । ନିଷ୍ଠା ଓ ପବିତ୍ରତାର ବିଜୟ ଘଟିଛି । ଏଣୁ ଉପନ୍ୟାସଟିର ଅନ୍ୟ ନାମ 'ଭର୍ଚ୍ୟୁ ରେଓ୍ୱାର୍ଡେଡ୍' (Virtue Rewarded) ।

ଉପନ୍ୟାସଟି ଚାରି ଖଣ୍ଡରେ ବିଭକ୍ତ । ତୃତୀୟ ଓ ଚତୁର୍ଥ ଖଣ୍ଡରେ ପାମେଲା ସ୍ତ୍ରୀ ଓ ମା' ଭାବରେ ଚିତ୍ରିତ । ଏଥିରେ ପ୍ୟୁରିଟାନ୍ ଆଦର୍ଶ ପ୍ରତିଫଳିତ ।

ରିଚାର୍ଡସନଙ୍କ ଦ୍ୱିତୀୟ ଅବଦାନ 'କ୍ଲାରିସା ହାର୍ଲୋ' (Clarrissa Harlowe) ମଧ୍ୟ ଗୋଟିଏ ପତ୍ର-ଉପନ୍ୟାସ; ପ୍ରାୟ ପାଞ୍ଚଶହଟି ପତ୍ରର ସମାହାର । ନାୟିକା କ୍ଲାରିସା ପିତାମାତାଙ୍କର ଅବାଧ୍ୟ ହୋଇ ଲଭଲେସ୍ ନାମକ ଜଣେ ଉଚ୍ଛୃଙ୍ଖଳ ଯୁବକ ସହିତ ପଳାୟନକରିଛି । ପରେ ସେ ବୁଝିପାରିଛି ଯେ ସେ ପ୍ରତାରିତା । ଜଣେ ନର୍କଗାମୀ ନିନ୍ଦନୀୟ ବ୍ୟକ୍ତି ସହ ଜୀବନ ଯାପନ ଅପେକ୍ଷା ମୃତ୍ୟୁକୁ ସେ ଶ୍ରେୟସ୍କର ମନେକରିଛି । କ୍ଲାରିସା ନୀତିବାଦ (Puritanism) ଓ ଲଭ୍‌ଲେସ୍ ରେଷ୍ଟୋରେସନ୍ ଉଚ୍ଛୃଙ୍ଖଳତାର ପ୍ରତୀକ ।

'କ୍ଲାରିସା' ରିଚାର୍ଡସନଙ୍କ ଶ୍ରେଷ୍ଠ ଉପନ୍ୟାସ । ଉଭୟ ମୁଖ୍ୟ ଓ ଗୌଣ ଚରିତ୍ରକୁ ଲେଖକ ବିଳକ୍ଷଣ ଭାବରେ ଉପସ୍ଥାପିତ କରିପାରିଛନ୍ତି । ଉପନ୍ୟାସର କରୁଣ ପରିଣତି ସୃଷ୍ଟି କରିବାରେ ଲେଖକ ଅଦ୍ଭୁତ ସାଫଲ୍ୟ ଅର୍ଜନ କରିଛନ୍ତି । ଏହାର କଥାବସ୍ତୁ ଅତ୍ୟନ୍ତ ହୃଦୟଗ୍ରାହୀ ।

'ସାର୍ ଚାର୍ଲସ୍ ଗ୍ରାଣ୍ଡିସନ' ଲେଖକଙ୍କର ତୃତୀୟ ଉପନ୍ୟାସ । ଲେଖକ ନାୟକଙ୍କୁ ଏକ ଆଦର୍ଶ ଭଦ୍ରବ୍ୟକ୍ତି ଭାବରେ ଚିତ୍ରିତ କରିଛନ୍ତି ; ସାମାଜିକ ପରିବେଶକୁ ଯଥାଯଥ ଭାବରେ ରୂପଦେଇ ପାରିନାହାନ୍ତି । ଉପନ୍ୟାସଟି ଏକ ବିଫଳ ପ୍ରୟାସରେ ପରିଣତ ହୋଇଛି ।

ରିଚାର୍ଡସନ୍‌ଙ୍କ ଉପନ୍ୟାସ ସମାଜର ସାଧାରଣ ନରନାରୀଙ୍କ କାହାଣୀ । ଚରିତ୍ର-ଚିତ୍ରଣ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ କଥାବସ୍ତୁର ଦୃଢ଼ ସଂହତି ଉପନ୍ୟାସର ଉତ୍କର୍ଷ ସାଧନ କରିଥିଲେ ମଧ୍ୟ ନୀତି ପ୍ରଚାର ପ୍ରୟାସ ଏହାର କଳାଗତ ମୂଲ୍ୟକୁ ହ୍ରାସକରିଛି ।

ଫିଲ୍‌ଡିଂ (Henry Fielding : ୧୭୦୭ – ୫୪) ତରୁଣ ବୟସରେ ନାଟକ ଲେଖି ଜୀବିକା ନିର୍ବାହ କରିବାର ଉଦ୍ୟମ କରି ବିଫଳ ହୋଇଥିଲେ । ଆଇନ ଅଧ୍ୟୟନ କରି ବିଚାରକ ହେଲେ । ସ୍ୱଳ୍ପ ବେତନ ଭୋଗୀ ହେଲେ ମଧ୍ୟ ସେ ଏଥିରୁ ବହୁମୂଲ୍ୟ ଅଭିଜ୍ଞତା ଲାଭକରିଥିଲେ । ବିଭିନ୍ନ ଅପରାଧୀଙ୍କ ସମ୍ପର୍କରେ ଆସି ସେମାନଙ୍କ ଚରିତ୍ର ଅନୁଶୀଳନ କରିବାର ସୁଯୋଗ ପାଇଲେ । ଉପନ୍ୟାସ ରଚନା କ୍ଷେତ୍ରରେ ଏହା ସହାୟକ ହୋଇଥିଲା ।

ଫିଲଡ଼ିଂଙ୍କ ପ୍ରଥମ ଉପନ୍ୟାସ 'ଯୋଶେଫ୍ ଆଣ୍ଡ୍ରୁଜ୍' (୧୭୪୨) ରିଚାର୍ଡ଼ସନଙ୍କ 'ପାମେଲା'ର ବ୍ୟଙ୍ଗାନୁକରଣ ରୂପରେ ପରିକଳ୍ପିତ । ଲେଖକ ଏଠାରେ ପାମେଲା ଓ ପ୍ରଭୁପୁତ୍ରର ପ୍ରଣୟ ପରିବର୍ତ୍ତେ ପାମେଲାର ଭାଇ ଯୋଶେଫ୍ ଓ ଗୃହକର୍ତ୍ତ୍ରୀର ପ୍ରଣୟ ପରି ହାସ୍ୟକର କଥାବସ୍ତୁ ସୃଷ୍ଟିକରିଛନ୍ତି । ସ୍ୱୟଂ ଗୃହକର୍ତ୍ତ୍ରୀ ପ୍ରଣୟପ୍ରାର୍ଥିନୀ; ଯୋଶେଫ୍ ନିଜ ସଂଯମ ରକ୍ଷାକରିବାକୁ ଦୃଢ଼ପରିକର । ପ୍ରସଙ୍ଗକ୍ରମେ ବହୁ ହାସ୍ୟରସାତ୍ମକ ପରିବେଶ ସୃଷ୍ଟିହୋଇଛି ।

ବ୍ୟଙ୍ଗାନୁକରଣ କରିବାକୁ ଯାଇ ଫିଲ୍ଡ଼ିଂ ଉପନ୍ୟାସ ଜଗତରେ ସ୍ୱକୀୟ ପ୍ରତିଭାର ପରିଚୟ ଦେଇଛନ୍ତି । ସେ ପଦ୍ୟ-ଉପନ୍ୟାସର ଧାରା ଗ୍ରହଣ କାହାଣୀ କହିବାର ଭଙ୍ଗୀ ଗ୍ରହଣକରିଛନ୍ତି । ହାସ୍ୟ, ବ୍ୟଙ୍ଗ, ଇଙ୍ଗିତ ଓ କଟାକ୍ଷ ତାଙ୍କ ଉପନ୍ୟାସକୁ ରସାଣିତ କରିଛି ।

'ଜୋନାଥନ୍ ୱାଇଲ୍ଡ଼୍ ଦ ଗ୍ରେଟ୍' (Jonathan Wild the Great : ୧୭୪୩) ବିଷୟ ନିର୍ବାଚନ ଦୃଷ୍ଟିରୁ ସ୍ୱତନ୍ତ୍ର । ଗୋଟିଏ କୁଖ୍ୟାତ ଦସ୍ୟୁର ଜୀବନକୁ ଭିତ୍ତିକରି ଏହା ରଚିତ । ପ୍ୟୁରିଟାନ୍ ମତବାଦରେ ଲେଖକଙ୍କର ଆସ୍ଥା ନଥିଲା । ଉପନ୍ୟାସଟିରେ ଲେଖକଙ୍କର ଏହି ମନୋବୃତ୍ତି ପ୍ରକାଶ ପାଇଛି । ନୈତିକତା ସମ୍ବନ୍ଧରେ ସେ ପ୍ରଶ୍ନ ତୋଳିଛନ୍ତି । ଅପରାଧୀର ମନୋବୃତ୍ତି ଚିତ୍ରଣରେ ତାଙ୍କର ଅସାମାନ୍ୟ ପାରଦର୍ଶିତା ପ୍ରକାଶ ପାଇଛି ।

'ଟମ୍ ଜୋନ୍ସ୍' ( Tom Jones : ୧୭୪୯ ) ଲେଖକଙ୍କର ଶ୍ରେଷ୍ଠ କୃତି । ନାୟକ ଟମ୍ ବାଲ୍ୟକାଳରୁ ପିତୃମାତୃ-ପରିତ୍ୟକ୍ତ ଓ ଆଶ୍ରୟହୀନ । ନାନା ଷଡ଼ଯନ୍ତ୍ର ଓ ଘଟଣାର ଘଟାଟୋପ ମଧ୍ୟରେ ସେ ପୁଣି ତାର ସୌଭାଗ୍ୟ ଫେରିପାଇଛି । ବିଷୟ ବିନ୍ୟାସରେ ସମାନୁପାତିକତା ରକ୍ଷାକରାଯାଇଛି । ମାନବଚରିତ୍ର ଅଧ୍ୟୟନରେ ଗଭୀର ବ୍ୟୁତ୍ପତ୍ତି ପ୍ରକାଶପାଇଛି । ପ୍ରାଥମିକ ସ୍ତରରେ ସେ ଯେଉଁ ଶୈଳୀ ବ୍ୟବହାର କରିଥିଲେ, ତାହା ଏଠାରେ ଚରମ ଉତ୍କର୍ଷ ଲାଭକରିଛି । ଶେଷ ଉପନ୍ୟାସ 'ଆମେଲିଆ'ରେ ଲେଖକ ନିଜେ ନାୟକ ଭୂମିକାରେ ଅବତୀର୍ଣ୍ଣ । ନାୟିକା ନିଜର ପ୍ରଥମ ସ୍ତ୍ରୀ । ସ୍ୱତଃସ୍ଫୂର୍ତ୍ତିତା ଅଭାବରେ ଏହା ଅନ୍ୟ ଉପନ୍ୟାସର କୋଟୀ ସ୍ପର୍ଶ କରିପାରିନାହିଁ ।

ରଚନାଶୈଳୀ ଦୃଷ୍ଟିରୁ ଫିଲ୍ଡ଼ିଂ ରିଚାର୍ଡ଼ସନଙ୍କୁ ଅତିକ୍ରମ କରିଯାଇଛନ୍ତି । ମଣିଷର ଦୋଷତ୍ରୁଟି ପ୍ରତି ରିଚାର୍ଡ଼ସନଙ୍କ ଶାଣିତ ବ୍ୟଙ୍ଗ ଫିଲ୍ଡ଼ିଂଙ୍କଠାରେ ଦେଖାଯାଏନାହିଁ । ନୈତିକ ଅଧଃପତନ ସଂନ୍ଦର୍ଶନରେ ଅବଶୋଷ ବା ହିତୋପଦେଶ ଲଦିଦେବାର ପ୍ରୟାସ ନାହିଁ; ବରଂ ମଣିଷର ଦୋଷତ୍ରୁଟି ପ୍ରତି ତାଙ୍କର ଆନ୍ତରିକ ସମବେଦନା ପ୍ରକାଶ ପାଇଛି । ତାଙ୍କର ଆଦର୍ଶ ନାୟକ ସଂପୂର୍ଣ୍ଣରୂପେ ଦୋଷମୁକ୍ତ ନୁହେଁ । ସେହିପରି ଖଳନାୟକ ସଂପୂର୍ଣ୍ଣ ରୂପେ ସଦ୍‌ଗୁଣରୁ ବଞ୍ଚିତ ନୁହେଁ । ଚିକନଖିଆ ବିଶ୍ଳେଷଣ କରିବାର ପ୍ରବୃତ୍ତି ମଧ୍ୟ ତାଙ୍କଠାରେ ଦେଖାଯାଏନାହିଁ । ତେଣୁ ତାଙ୍କ ଚରିତ୍ର ଅଧିକ ବାସ୍ତବ ତଥା ଜୀବନ୍ତ । ଫିଲ୍ଡ଼ିଂଙ୍କ ଶୈଳୀ

ପାଠକ ଓ ଲେଖକ ମଧ୍ୟରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା କରେ; ରିଚାର୍ଡ୍ସନ୍‌ଙ୍କ କୃତ୍ରିମତା ଏଥିରେ ଦେଖିବାକୁ ମିଳେନାହିଁ । ଏଣୁ କୋଲ୍‌ରିଜ୍ ଯଥାର୍ଥରେ କହିଛନ୍ତି—ରିଚାର୍ଡ୍ସନ୍‌ଙ୍କଠାରୁ ବିଦାୟ ନେଇ ଫିଲ୍ଡିଂଙ୍କ ପାଖକୁ ଆସିଲେ ଗୋଟିଏ ରୋଗୀର ପ୍ରକୋଷ୍ଠରୁ ବାହାରି ମୁକ୍ତ ପ୍ରାଙ୍ଗଣରେ ପ୍ରବେଶ କରିବା ଭଳି ଲାଗେ ।

ସ୍ମୋଲେଟ (Tobias Smollett : ୧୭୨୧—୭୧)ଙ୍କ ଜନ୍ମଭୂମି ସ୍କଟ୍‌ଲ୍ୟାଣ୍ଡ୍ । ତାଙ୍କର ପ୍ରଥମ ଉପନ୍ୟାସ 'ରୋଡ୍ରିକ୍ ରାଣ୍ଡମ୍' (୧୭୪୮)ର ଅସାମାନ୍ୟ ସଫଳତା ପରେ ସେ ଲଣ୍ଡନରେହିଁ ବସବାସ କରିବାକୁ ଲାଗିଲେ । ଆଲୋଚ୍ୟ ଉପନ୍ୟାସଟି ଗୋଟିଏ ପର୍ଯ୍ୟଟନ (Picaresque) ଉପନ୍ୟାସ । ନାୟକଜୀବନର ବିଭିନ୍ନ ଅସଂଲଗ୍ନ ଘଟଣା ଏଥିରେ ସଂଯୋଜିତ । ରୋମାଞ୍ଚକର ସମୁଦ୍ରଯାତ୍ରାର ବାସ୍ତବଧର୍ମୀ ଚିତ୍ର ପ୍ରଦାନ ଦୃଷ୍ଟିରୁ ଇଂରେଜୀ ସାହିତ୍ୟରେ ଏହା ପ୍ରଥମ । ତାଙ୍କ ପୂର୍ବରୁ ଡିଫୋଙ୍କ ଉପନ୍ୟାସରେ ନୌଜୀବନ-ଚିତ୍ର ପରିବେଷିତ ହୋଇଥିଲେ ମଧ୍ୟ ତାହା ଥିଲା କପୋଳକଳ୍ପିତ । ସ୍ମୋଲେଟଙ୍କ ବର୍ଣ୍ଣନା ପ୍ରତ୍ୟକ୍ଷ ଅନୁଭୂତିସମ୍ଭୂତ । ଲେଖକଙ୍କ 'ପେରେଗ୍ରିନ୍ ପିକ୍‌ଲ' ନାମକ ଉପନ୍ୟାସଟି ମଧ୍ୟ ଏହି ଶ୍ରେଣୀର । ଏତଦ୍‌ବ୍ୟତୀତ 'ଦି ଆଡ୍‌ଭେନ୍‌ଚର୍ସ ଅଫ୍ ଫାର୍ଡିନାଣ୍ଡ୍ କାଉଣ୍ଟ୍ ଫେଦମ୍', 'ଦି ଆଡ୍‌ଭେନ୍‌ଚର୍ସ ଅଫ୍ ସାର୍ ଲନ୍‌ସେଲଟ୍ ଗ୍ରିଭସ୍' ଓ 'ହାଂଫ୍ରେ କ୍ଲିଙ୍କାର୍' ପରି ତାଙ୍କର ଅନ୍ୟ କେତୋଟି ଉପନ୍ୟାସ ରହିଛି ।

ସ୍ମୋଲେଟ୍‌ଙ୍କ ଉପନ୍ୟାସର ପ୍ରଧାନ କଥାବସ୍ତୁ ଦୁଃସାହସିକ ଅଭିଯାନ । କଳାତ୍ମକ କଥାବସ୍ତୁ ସଂଯୋଜନା ଏଥିରେ ଦେଖାଯାଏ ନାହିଁ । ଚରିତ୍ର ଗୁଡ଼ିକ ସରଳ । Flat ଜୀବନର ରୁକ୍ଷ ଓ ଅମାର୍ଜିତ ରୂପ ଏହି ଚରିତ୍ର ମଧ୍ୟରେ ଉନ୍ମୋଚିତ । ଆଖ୍ୟାନ ଗତି ଦୃଷ୍ଟିରୁ ସେ ରିଚାର୍ଡ୍ସନ୍ ଓ ଫିଲ୍ଡିଂଙ୍କଠାରୁ ମଧ୍ୟ ଉତ୍କୃଷ୍ଟତର ।

ଷ୍ଟାର୍ଣ୍ଣ (Lawrence Sterne : ୧୭୧୩-୬୮)ଙ୍କ ପିତାମହ ଥିଲେ ଧର୍ମଯାଜକ; ପିତା ଥିଲେ ସୈନିକ । ସୈନ୍ୟଛାଉଣିରେହିଁ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଥିଲା । କେମ୍ବ୍ରିଜରୁ ସେ ସ୍ନାତକୋତ୍ତର ଉପାଧି ଲାଭକରିଥିଲେ ।

ଷ୍ଟାର୍ଣ୍ଣଙ୍କ ଶ୍ରେଷ୍ଠ କୃତି 'ଲାଇଫ୍ ଆଣ୍ଡ୍ ଓପିନିୟନ୍‌ସ ଅଫ ଟ୍ରିସ୍ଟ୍ରାମ୍ ଶାଣ୍ଡି, ଜେଣ୍ଟ' (୧୭୫୯—୬୯) । ଏହା ଉପନ୍ୟାସ ପଦବାଚ୍ୟ ନୁହେଁ—ନଅ ଖଣ୍ଡରେ ସମାପ୍ତ ଏକ ପ୍ରଲମ୍ବିତ କାହାଣୀ ମାତ୍ର । ତୃତୀୟ ଖଣ୍ଡର ଶେଷଭାଗକୁ ନାୟକର ଜନ୍ମ । ନାନା ଉପକଥା ଓ ଅବାନ୍ତର ପ୍ରସଙ୍ଗରେ ଏହା ପରିପୂର୍ଣ୍ଣ । ପାଣ୍ଡିତ୍ୟ ପ୍ରଦର୍ଶନର ପ୍ରୟାସ ଅବାରିତ । ଯୌକ୍ତିକତା, ବିଷୟକ୍ରମ ବା ସମୟକ୍ରମ ଖୋଜିବା ବିଡ଼ମ୍ବନା ମାତ୍ର । କେତେବେଳେ ବାକ୍ୟ ଅପୂର୍ଣ୍ଣ, କେତେବେଳେ ଅବା ଶୂନ୍ୟ ପୃଷ୍ଠା ଗ୍ରନ୍ଥଟିକୁ ମଣ୍ଡନ କରିଛି । ସୁଶୃଙ୍ଖଳ, ସୁବିନ୍ୟସ୍ତ ଗଳ୍ପ ଆଖ୍ୟାନ ଗତି ଏଠାରେ ବିପର୍ଯ୍ୟସ୍ତ । ସମ୍ଭବତଃ ଉପନ୍ୟାସକୁ ମଣିଷର ବିଶୃଙ୍ଖଳ ମନ ସହ ସମାନ୍ତରାଳ କରି ଗଢ଼ିବା ଲେଖକଙ୍କର ଉଦ୍ଦେଶ୍ୟ । ଷ୍ଟାର୍ଣ୍ଣଙ୍କ ଅନ୍ୟ ଉପନ୍ୟାସଟି

ହେଉଛି 'ଏ ସେଣ୍ଟିମେଣ୍ଟାଲ ଜର୍ଣ୍ଣି ଥ୍ରୁ ଫ୍ରାନ୍ସ ଆଣ୍ଡ୍ ଇଟାଲି' (୧୭୬୮) । ଏହା ଗ୍ରନ୍ଥଖଣ୍ଡରେ ପୂର୍ଣ୍ଣାଙ୍ଗ ହେବାର ପରିକଳ୍ପନା ଥିଲେ ମଧ୍ୟ ଦୁଇଖଣ୍ଡ ମାତ୍ର ସମାପ୍ତ । ବିଷୟ-ବିନ୍ୟାସ ଅନ୍ୟ ଉପନ୍ୟାସ ପରି ଶିଥିଳ । ଲେଖକ ଜୀବନର ବାସ୍ତବ ଚିତ୍ର ପ୍ରଦାନ କରିବା ପରିବର୍ତ୍ତେ କେବଳ ଆବେଗପୂର୍ଣ୍ଣ ମୁହୂର୍ତ୍ତ ଓ ପରିବେଶର ଅନ୍ୱେଷଣ କରିଛନ୍ତି ।

ଗୋଲଡ୍‌ସ୍ମିଥ୍ (Oliver Goldsmith : ୧୭୨୮—୭୪) ଗୋଟିଏ ମାତ୍ର ଉପନ୍ୟାସ ଲେଖିଛନ୍ତି—'ଦ ଭିକାର୍ ଅଫ୍ ୱେକ୍‌ଫିଲ୍ଡ୍' । ଇଂରେଜୀ ଉପନ୍ୟାସର ବିକାଶରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହାର କଥାବସ୍ତୁ ବାଇବେଲର 'ଦ ବୁକ୍ ଅଫ୍ ଜୋବ୍' ଉପାଖ୍ୟାନଟି ଧ୍ୱନିତ କରାଇଦିଏ । ଉପନ୍ୟାସର ନାୟକ ଡକ୍ଟର ପ୍ରିମ୍‌ରୋଜ୍ ଜଣେ ଆଦର୍ଶ ଧର୍ମଯାଜକ ଆଦର୍ଶ ସ୍ୱାମୀ ଓ ଆଦର୍ଶ ଗୃହସ୍ଥ । ଅନ୍ୟପକ୍ଷରେ ତାଙ୍କର ସ୍ତ୍ରୀ ଓ କନ୍ୟା ଉତ୍ତମ ସ୍ୱଭାବର ହେଲେ ମଧ୍ୟ ଅଭିଜାତ ଚାକଚକ୍ୟ ପ୍ରତି ଆକୃଷ୍ଟ । ଡକ୍ଟର ପ୍ରିମ୍‌ରୋଜ୍ ପୁତ୍ରକନ୍ୟାଙ୍କୁ ଉପଯୁକ୍ତ କରି ଗଢ଼ିବାରେ ସମସ୍ତ ଯତ୍ନ ଢାଳିଦେଇଛନ୍ତି । ଗୋଟିଏ ଆଦର୍ଶ ଓ ସୁଖୀ ପରିବାର ଗଢ଼ିବା ପାଇଁ ସେ ସତତ ଚେଷ୍ଟିତ । ସେ ଈଶ୍ୱରବିଶ୍ୱାସୀ, ସୁଖ ଓ ଦୁଃଖ ଭିତରେ ସର୍ବଦା ଅବିଚଳିତ । ଜୀବନରେ ଦୁର୍ଦ୍ଦିନ ଘୋଟିଆସିଛି—ସମସ୍ତ ସମ୍ପତ୍ତି ସେ ହରାଇ ବସିଛନ୍ତି, ଝିଅ ଅଲଭିଆ ଜଣେ ନଷ୍ଟଚରିତ୍ର ଯୁବକଦ୍ୱାରା ପ୍ରତାରିତା, ଗୃହ ଅଗ୍ନିଦଗ୍ଧ ହୋଇଛି, ତଥାପି ସେ ଈଶ୍ୱରବିଶ୍ୱାସ ହରାଇନାହାନ୍ତି ।

ଉପନ୍ୟାସଟିର କଥାବସ୍ତୁ ପରିବାର-କେନ୍ଦ୍ରିକ । ମଧ୍ୟବିତ୍ତ ଜୀବନର ଚିତ୍ର ଏଥିରୁ ମିଳେ । ଫିଲ୍ଡିଂ ଓ ଅନ୍ୟ କେତେକ ଔପନ୍ୟାସିକ ଲଣ୍ଡନ ଜୀବନର ଚିତ୍ର ପରିବେଷଣ କରୁଥିବାବେଳେ ଗୋଲ୍‌ଡ୍‌ସ୍ମିଥ୍ ଗ୍ରାମ୍ୟ ଜୀବନର ଚିତ୍ର ଆଙ୍କିଛନ୍ତି । ଦାରିଦ୍ର୍ୟ ଓ ଯନ୍ତ୍ରଣା ସଂଦର୍ଶନରେ ତାଙ୍କର ହୃଦୟ ଆଲୋଡ଼ିତ । ସଦ୍‌ଗୁଣ ଓ ନୈତିକତା ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି । ଲେଖକଙ୍କ ଆଶାବାଦ ଉପନ୍ୟାସର ଛନ୍ଦେ ଛନ୍ଦେ ଫୁଟିଉଠିଛି । ମଣିଷର ସାଧାରଣ ଦୋଷ-ଦୁର୍ବଳତା ପ୍ରତି ତାଙ୍କର ହାସ୍ୟ ଓ ବ୍ୟଙ୍ଗ ଅତ୍ୟନ୍ତ ସ୍ୱାଦ୍ୟ । ଜେଲ୍‌ଖାନାର ଅବସ୍ଥା ଉଲ୍ଲେଖକରି ସେ ସଂସ୍କାରର ସୂଚନା ଦେଇଛନ୍ତି । ପ୍ରକାଶଭଙ୍ଗୀ କାବ୍ୟିକ । ନାୟକ ଡକ୍ଟର ପ୍ରିମ୍‌ରୋଜ୍‌ଙ୍କ ମୁଖରେ ଉପନ୍ୟାସର ସମଗ୍ର କଥାବସ୍ତୁ ବିବୃତ ।

## ନାଟକ

ଏ ଯୁଗରେ ନାଟ୍ୟ-ସାହିତ୍ୟର ବିକାଶ ବ୍ୟାହତ । ଶେରିଡ଼ାନ୍ (Richard Brinsley Sheridan : ୧୭୫୧—୧୮୧୬) ଏ ଯୁଗର ଶ୍ରେଷ୍ଠ ନାଟ୍ୟକାର । ଅନ୍ୟ ଗୌଣ ନାଟ୍ୟକାରଙ୍କ ମଧ୍ୟରେ କେବଳ ଗୋଲ୍‌ଡ୍‌ସ୍ମିଥ୍ (Oliver Goldsmith : ୧୭୨୮-୭୦)ଙ୍କ ଅବଦାନ ଉଲ୍ଲେଖଯୋଗ୍ୟ ।

ଶେରିଡ଼ାନଙ୍କ ପିତା ଟମାସ୍ ଶେରିଡ଼ାନ୍ ଗୋଟିଏ ପ୍ରେକ୍ଷାଳୟର ପରିଚାଳକ ଓ ଅଭିନେତା ଥିଲେ । ଲେଖକ ଯୌବନରେ ଜନୈକା ସୁନ୍ଦରୀଙ୍କୁ ନେଇ ପଳାୟନ କରିଥା

ବିବାହ କରିଥିଲେ । ପୁନଶ୍ଚ ସ୍ତ୍ରୀଙ୍କର ଭରଣପୋଷଣ ପାଇଁ ଆର୍ଥିକ ଗୃପରୁ ନାଟକ ଲେଖି ଅର୍ଥ ଉପାର୍ଜନ କରିବାର ପରିକଳ୍ପନା । ବହୁବର୍ଷ ଧରି ସେ ନାଟ୍ୟଶାଳାର ପରିଚାଳନା କରିଥିଲେ ମଧ୍ୟ ତାଙ୍କ ନାଟକଗୁଡ଼ିକ ତେଇଶରୁ ଅଣତିରିଶ ବର୍ଷ ମଧ୍ୟରେ ଲିଖିତ । ତାଙ୍କର ନାଟ୍ୟକାର-ଗୌରବ ତିନୋଟି କମେଡ଼ି ଉପରେ ପ୍ରତିଷ୍ଠ ତ—'ଦି ରାଇଭାଲ୍ସ', 'ଦି ସ୍କୁଲ ଫର୍ ସ୍କାଣ୍ଡାଲ୍' ଓ 'ଦି କ୍ରିଟିକ୍' ।

'ଦି ରାଇଭାଲ୍ସ' (The Rivals : ୧୭୭୪) ତାଙ୍କର ପ୍ରଥମ ନାଟକ । ପ୍ରେମ ଓ ରୋମାଣ୍ଟିକ ମନୋବୃତ୍ତି ଏହାର ଉପଜୀବ୍ୟ । ନାୟିକା ଲିଡ଼ିଆ ଓ ନାୟକ କ୍ୟାପ୍ଟେନ୍ ଏବସୋଲ୍ୟୁଟ୍ ନାନା ପ୍ରତିକୂଳ ପରିସ୍ଥିତି ମଧ୍ୟ ଦେଇ ଅବଶେଷରେ ମିଳିତ ହୋଇଛନ୍ତି । କିନ୍ତୁ ବିବାହ ପୂର୍ବରୁ ଭାବୀ ସ୍ୱାମୀ ସହିତ ଥରେ ଗୋପନରେ ପଳାୟନ କରିପାରିନଥିବାରୁ ଲିଡ଼ିଆର ଅବସୋଷ । ପ୍ରହସନସୁଲଭ ବହୁ ପରିସ୍ଥିତି ସୃଷ୍ଟି ହୋଇଛି । ଏହି ନାଟକର ଗୋଟିଏ ଆକର୍ଷଣୀୟ ଚରିତ୍ର ଲିଡ଼ିଆର ଅଭିଭାବିକା ମିସେସ୍ ମାଲାପ୍ରପ । ଇଂରେଜୀ 'ମାଲାପ୍ରପିଜମ୍' ଶବ୍ଦଟି ଏହି ଚରିତ୍ରର ନାମାନୁସାରେ ପ୍ରଚଳିତ । ଶବ୍ଦର ଅନିଚ୍ଛାକୃତ ଅପପ୍ରୟୋଗରୁ ହାସ୍ୟରସ ସୃଷ୍ଟି ଏଇ ଚରିତ୍ରର ବୈଶିଷ୍ଟ୍ୟ ।

'ଦି ସ୍କୁଲ ଫର୍ ସ୍କାଣ୍ଡାଲ' (The School for Scandal : ୧୭୭୭) ବା କୁତ୍ସାରଟନା କେନ୍ଦ୍ର ନାଟ୍ୟକାରଙ୍କ ଶ୍ରେଷ୍ଠ କୃତି । ଅଷ୍ଟାଦଶ ଶତାବ୍ଦୀର ଫ୍ୟାସନ (fashion) ପ୍ରବଣ ସମାଜ ଏଥିରେ ଚିତ୍ରିତ । ଚତୁର୍ଯ୍ୟପୂର୍ଣ୍ଣ ସଂଳାପର ବହୁଳ ପ୍ରୟୋଗ ହେତୁ ଏହା ରେଷ୍ଟୋରେସନ୍ କମେଡ଼ି ବୋଲି ଭ୍ରମ ହୁଏ; କିନ୍ତୁ ରେଷ୍ଟୋରେସନ୍ କମେଡ଼ି ଓ ଆଲୋଚ୍ୟ ନାଟକର ସମାଜଚିତ୍ର ମଧ୍ୟରେ ପାର୍ଥକ୍ୟ ରହିଛି । ରେଷ୍ଟୋରେସନ୍ ନାଟକ ତତ୍କାଳୀନ ସାମାଜିକ ଭ୍ରଷ୍ଟାଚାରର ଅବିକୃତ ଚିତ୍ର ବହନକରେ; କିନ୍ତୁ ଶେରିଡ଼ାନଙ୍କ ସମୟର ସମାଜ ଦୃଢ଼ ନୈତିକଭିତ୍ତି ଉପରେ ପ୍ରତିଷ୍ଠିତ । ଉକ୍ତ ସମାଜରେ କୁତ୍ସାରଟନାର ପ୍ରାବଲ୍ୟ ତାର ଅନ୍ତର୍ନିହିତ ନୈତିକ ମୂଲ୍ୟବୋଧର ସୂଚନା ଦିଏ । ଲେଖକ ଭାବାବେଗ (sentiment)କୁ ମଧ୍ୟ ସଂପୂର୍ଣ୍ଣ ତ୍ୟାଗ କରିନାହାନ୍ତି । ନାଟକର ଅନ୍ୟତମ ଚରିତ୍ର ଅମିତବ୍ୟୟୀ ଚାର୍ଲସ୍ ଅଭାବରେ ପଡ଼ି ନିଜର ସମସ୍ତ ସମ୍ପତ୍ତି ହସ୍ତାନ୍ତର କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ନିଜ କକା ସାର ଅଲିଭର୍‌ଙ୍କ ତୈଳଚିତ୍ର କୌଣସି ମତେ ତ୍ୟାଗ କରିବାକୁ ପ୍ରସ୍ତୁତ ନୁହେଁ ।

ସାମାଜିକ ଜୀବନର ଦୋଷ-ଦୁର୍ବଳତାକୁ ଅତିରଞ୍ଜିତ ଭାବରେ ଉପସ୍ଥାପିତ କରି ସେ ତାର ମୁଖା ଖୋଲି ଦେଇଛନ୍ତି । ଶେରିଡ଼ାନ୍‌ଙ୍କ ନାଟ୍ୟ-ପ୍ରତିଭା ଅବିସମ୍ବାଦିତ ହେଲେ ମଧ୍ୟ ତାଙ୍କର ସୃଜନଶକ୍ତି ସ୍ୱଳ୍ପ । ସେ ପାରମ୍ପରିକ ଚରିତ୍ର ଓ ପରିବେଶକୁ ହିଁ ଗ୍ରହଣ କରିଛନ୍ତି । ଜୀବନ ବା ଚରିତ୍ରର ଗଭୀର ଅନୁଶୀଳନ ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ସେ କେବଳ ଜୀବନର ବାହ୍ୟ ରୂପଟିହିଁ ଦେଖିଛନ୍ତି । ଚରିତ୍ରଚିତ୍ରଣରେ ଅସ୍ୱାଭାବିକତା ଦେଖାଯାଏ । ବୁଦ୍ଧିମାନ୍ ଓ ନିର୍ବୋଧ—ଉଭୟଙ୍କ ମୁହଁରେ ନାଟ୍ୟକାର ଏକାଭଳି ଚତୁର୍ଯ୍ୟପୂର୍ଣ୍ଣ ସଂଳାପ

ଉଠିଦେଇଛନ୍ତି । ପରୋକ୍ଷୋକ୍ତି (irony) ଓ ବ୍ୟଙ୍ଗ (satire)ର ସାର୍ଥକ ପ୍ରୟୋଗ ନାଟକଟିକୁ ଉପଭୋଗ୍ୟ କରିଛି ।

ଗୋଲ୍ଡ୍ସ୍ମିଥ୍ (୧୭୨୮—୭୪) ଦୁଇଟି ମାତ୍ର ନାଟକ ଲେଖିଛନ୍ତି । କବିତା ଓ ଉପନ୍ୟାସ ପରି ନାଟକ କ୍ଷେତ୍ରରେ ମଧ୍ୟ ସେ ବଳିଷ୍ଠ ପ୍ରତିଭାର ଅଧିକାରୀ । ସମକାଳୀନ ନାଟ୍ୟରଚନା ରୀତି ତାଙ୍କ ପକ୍ଷରେ ଗ୍ରହଣୀୟ ହୋଇନାହିଁ । ଅଷ୍ଟାଦଶ ଶତାବ୍ଦୀର କମେଡ଼ି ତାଙ୍କ ଲେଖନୀରେ ନୂତନ ରୂପ ଲଭିକରିଛି ।

ଗୋଲ୍ଡ୍ସ୍ମିଥ୍ଙ୍କ ବେଳକୁ ଆବେଗଧର୍ମୀ ନାଟକ (sentimental comedy) ର ବହୁଳ ପ୍ରଚଳନ ଥିଲା । କମେଡ଼ି ହେଲେ ମଧ୍ୟ ଏଥିରେ ହାସ୍ୟରସ ପରିବର୍ତ୍ତେ କାରୁଣ୍ୟର ଆଧିକ୍ୟ ଥିଲା । ନୀତିଶିକ୍ଷା ଦାନ ଥିଲା ଏଗୁଡ଼ିକର ଉଦ୍ଦେଶ୍ୟ । କଲିସିବାର୍, ରିଚାର୍ଡ଼ ଷ୍ଟିଲ୍, କେଲି ଓ କମ୍ବାରଲ୍ୟାଣ୍ଡ୍ ଆଦି ଏ ପ୍ରକାର କମେଡ଼ି ଲେଖିଥିଲେ; କିନ୍ତୁ ଗୋଲ୍ଡ୍ସ୍ମିଥ୍ଙ୍କ ମତ ଅନୁଯାୟୀ ଏଗୁଡ଼ିକ କମେଡ଼ି ନୁହେଁ; ବରଂ ଟ୍ରାଜେଡ଼ି । ଶେରିଡ଼ାନଙ୍କପରି ଗୋଲ୍ଡ୍ସ୍ମିଥ୍ ମଧ୍ୟ ଆବେଗ ଓ କାରୁଣ୍ୟକୁ କମେଡ଼ି କ୍ଷେତ୍ରରୁ ବିଦାୟଦେଲେ । ବିଶୁଦ୍ଧ କମେଡ଼ି ରଚିତ ହେଲା । ତାଙ୍କ ଲେଖନୀରେ ଏଲିଜାବେଥାନ୍ 'କମେଡ଼ି ଅଫ୍ ହ୍ୟୁମର୍' ପୁଣି ଆତ୍ମପ୍ରକାଶକଲା ।

'ଦି ଗୁଡ଼୍ ନାଚର୍ଡ ମ୍ୟାନ୍' (The Good Natured Man ; ୧୭୬୮) ଗୋଲ୍ଡ୍ସ୍ମିଥ୍ଙ୍କ ପ୍ରଥମ ନାଟକ । ଏକ ବିଶେଷ ପ୍ରବଣତାକୁ ବ୍ୟଙ୍ଗ ବିଦ୍ରୂପ କରିବା ଏହାର ଉଦ୍ଦେଶ୍ୟ । ଅବିଗ୍ଭରିତ ଭାବରେ ବଦାନ୍ୟତା ପ୍ରକାଶ କରିବା ମିଷ୍ଟର ହନିଉଡ଼୍ଙ୍କ ପ୍ରକୃତି । ସେଥିପାଇଁ ସେ ଋଣଗ୍ରସ୍ତ ମଧ୍ୟ । କକା ଉଇଲିୟମ୍ ହନିଉଡ଼୍ ଉପଯୁକ୍ତ ଶିକ୍ଷା ଦେବା ଉଦ୍ଦେଶ୍ୟରେ ତାଙ୍କର ଗିରଫଦାରୀର ବ୍ୟବସ୍ଥା କରିଛନ୍ତି । ଯୁବକ ହନିଉଡ଼୍ଙ୍କ ପ୍ରେମିକା ମିସ୍ ରିଚ୍ଲ୍ୟାଣ୍ଡ୍ ତାଙ୍କ ମୁକ୍ତିରେ ସହାୟତା କରିଛି । ଅବଶେଷରେ ଉଇଲିୟମ୍ ହନିଉଡ଼୍ଙ୍କ ଉଦ୍ୟମରେ ଉଭୟଙ୍କ ବିବାହ ସମ୍ପନ୍ନ ହୋଇଛି । ଏହାକୁ ଏକ ସଫଳ ନାଟକ କୁହାଯାଇନପାରେ । କଥାବସ୍ତୁର ବିନ୍ୟାସ, ସଂଳାପ, ସଂଯୋଜନା ତଥା ଦୃଶ୍ୟ ପରିକଳ୍ପନା ତ୍ରୁଟିପୂର୍ଣ୍ଣ ।

'ସି ଷ୍ଟୁପ୍ସ୍ ଟୁ କଂକାର୍' (She Stoops to Conquer ; ୧୭୭୩) ନାଟକଟିରେ ପୂର୍ବୋକ୍ତ ନାଟକଟିର ଦୋଷତ୍ରୁଟି ଦେଖାଯାଏନାହିଁ । ଏହା ନୂତନ ଦୃଷ୍ଟି-ଭଙ୍ଗୀସମ୍ବଳିତ ଏକ ସାର୍ଥକ ନାଟକ । ଏହାକୁ ଏକ ବିଶୁଦ୍ଧ ହାସ୍ୟରସାତ୍ମକ ନାଟକ କୁହାଯାଇପାରେ ।

ମିଷ୍ଟର ହାର୍ଡ଼କ୍ୟାସେଲ୍ଙ୍କ କନ୍ୟା ମିସ୍ ହାର୍ଡ଼କ୍ୟାସେଲଙ୍କ ସହ ମାର୍ଲୋଙ୍କ ବିବାହ ପ୍ରସଙ୍ଗ ଉତ୍ଥାପିତ । ମିଷ୍ଟର ମାର୍ଲୋ ଅନ୍ୟ ସାଥୀଙ୍କ ଗହଣରେ କନ୍ୟାଘରକୁ ସାକ୍ଷାତପାଇଁ ଆସନ୍ତି । ରାତିରେ ରାସ୍ତା ବାରିପାରନ୍ତି ନାହିଁ । ମିଷ୍ଟର ହାର୍ଡ଼୍ କ୍ୟାସେଲ୍ଙ୍କ

ପୁଣ ଟୋନି ଲ୍ୟାମ୍ପ୍‌କିନ ଟୋଗାଟିଏ ଚଟିଘର ବୋଲି ନିଜ ଘରଟିକୁ ସେମାନଙ୍କୁ ଦେଖାଇ ଦିଅନ୍ତି । ମାର୍ଲୋ ଓ ହେଷ୍ଟିଙ୍ଗ୍ସ ଚଟିଘରର ମାଲିକ ବୋଲି ଧରିନିଅନ୍ତି । ମିସ୍ ହାର୍ଡ୍‌କ୍ୟାସେଲଙ୍କୁ ପରିଚାରିକା ମନେକରି ତାଙ୍କ ପ୍ରତି ପ୍ରଣୟାସକ୍ତି ପ୍ରକାଶକରନ୍ତି । ମାର୍ଲୋଙ୍କ ପିତା ସାର୍ ଚାର୍ଲସ୍ ମାର୍ଲୋଙ୍କ ଉପସ୍ଥିତିରେ ଏହି କୌତୁକର ପରିସମାପ୍ତି ଘଟେ ।

ଭାବପ୍ରବଣ ନାଟକ (sentimental comedy) ବିରୋଧରେ ଲେଖକଙ୍କର ଏହା ଅସାମାନ୍ୟ ସାଫଲ୍ୟ—ବିଶୁଦ୍ଧ ହାସ୍ୟରସରେ ଉଚ୍ଛଳ । ବିଷୟ ପରିକଳ୍ପନା ଅନେକ କ୍ଷେତ୍ରରେ ଅସଂଗତ ହେଲେ ମଧ୍ୟ ହାସ୍ୟରସ ସୃଷ୍ଟିରେ ବାଧା ଉପୁଜେ ନାହିଁ । ଚରିତ୍ର-ଗୁଡ଼ିକ ଯେପରି ସ୍ୱକୀୟ ଗୁଣସମ୍ପନ୍ନ, ସେହିପରି ଶ୍ରେଣୀବିଶେଷର ପ୍ରତିନିଧି । ତାଙ୍କର ସଂଳାପ ଯେପରି ଚରିତ୍ର ଉପଯୋଗୀ, ସେହିପରି ନାଟକୀୟ ଉଦ୍ଦେଶ୍ୟ ଚରିତାର୍ଥ କରିବାକୁ ସମର୍ଥ । ଏଠାରେ ମିଷ୍ଟର ହାର୍ଡ୍ କ୍ୟାସେଲ୍‌ଙ୍କ ମୁଖରେ ଦିଆହୋଇଥିବା ଗୋଟିଏ ସଂଳାପ ଲକ୍ଷ୍ୟ କରାଯାଉ—

I love everything that is old : old friends, old times, old manners, old books, old wine; and I believe, Dorothy, you'll own I have been pretty fond of an old wife.

କହିବାବାହୁଲ୍ୟ, ନାଟକଟି ବହୁଆଦୃତ ।

**ଗଦ୍ୟ** (ଉପନ୍ୟାସ ବ୍ୟତୀତ) :

ଏ ଯୁଗର ବିଶିଷ୍ଟ ଗଦ୍ୟକାର ଗିବନ (Edward Gibbon : ୧୭୩୭-୯୪) ଜଣେ ଐତିହାସିକ ଭାବରେ ବର୍ଣ୍ଣିବର୍ଣ୍ଣିତ । ତାଙ୍କର ଅନନୁକରଣୀୟ ରଚନାଶୈଳୀ ତାଙ୍କୁ ସାହିତ୍ୟିକର ସମ୍ମାନ ମଧ୍ୟ ଆଣିଦେଇଛି । ଲେଖକଙ୍କର 'ଦି ଡିକ୍‌ଲାଇନ୍ ଆଣ୍ଡ୍ ଫଲ୍ ଅଫ୍ ଦି ରୋମାନ୍ ଏମ୍ପାୟାର୍' (The Decline and Fall of the Roman Empire ୧୭୭୬) ଏକ ଯୁଗାନ୍ତକାରୀ ରଚନା । ଗ୍ରନ୍ଥଟି ଛଅ ଖଣ୍ଡରେ ବିଭକ୍ତ । ଶେଷ ଖଣ୍ଡ ଖ୍ରୀ: ୧୭୮୮ରେ ପ୍ରକାଶିତ । ଦ୍ୱିତୀୟ ଶତାବ୍ଦୀରୁ ଆରମ୍ଭକରି ପଞ୍ଚଦଶ ଶତାବ୍ଦୀରେ କନଷ୍ଟାଣ୍ଟିନୋପଲ୍‌ର ପତନ ପର୍ଯ୍ୟନ୍ତ ପ୍ରାୟ ଦେଢ଼ ହଜାର ବର୍ଷର ଇତିହାସ ଏଥିରେ ବିବୃତ । ସୁବିଶାଳ ରୋମାନ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଛୋଟ ଛୋଟ ରାଜ୍ୟସମୂହର ଉତ୍ଥାନ ପତନ ମଧ୍ୟ ଲେଖକ ଅନୁଧ୍ୟାନ କରିଛନ୍ତି । ଆବଶ୍ୟକ ଅନୁଯାୟୀ ବିଭିନ୍ନ ଅଂଶ ଉପରେ ଗୁରୁତ୍ୱ ଆରୋପକରି ବିଷୟଗତ ଭାରସାମ୍ୟ ରକ୍ଷାକରିଛନ୍ତି । ଗ୍ରନ୍ଥଟିର ପରିକଳ୍ପନାରେ ସୁଦକ୍ଷ ଶିଳ୍ପୀମନର ପରିଚୟ ମିଳେ । ଅବଶ୍ୟ ତାଙ୍କର ଶୈଳୀ ସମ୍ପୂର୍ଣ୍ଣ ତ୍ରୁଟିଶୂନ୍ୟ ନୁହେଁ ।

ଲେଖକ ଯେଉଁ ବିଷୟ ପ୍ରତି ବୀତଶ୍ରଦ୍ଧ, ତାହା ପ୍ରତି ଆକ୍ଷେପୋକ୍ତି ପ୍ରୟୋଗ କରି ଲଘୁମନର ପରିଚୟ ଦେଇଛନ୍ତି ।

ଏ ଯୁଗର ଅନ୍ୟ ଇତିହାସ ଲେଖକଙ୍କ ମଧ୍ୟରେ ଡେଭିଡ୍ ହ୍ୟୁମ୍, ରୋବାର୍ଟସନ୍ ଓ ବସ୍‌ୱେଲ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । ହ୍ୟୁମ୍ (David Hume ୧୭୧୧-୭୬) ପ୍ରଥମେ ଦାର୍ଶନିକ ଭାବରେ ଖ୍ୟାତି ଅର୍ଜନ କରନ୍ତି । ଖ୍ରୀ: ୧୭୫୪ରୁ ୧୭୬୧ ମଧ୍ୟରେ ପ୍ରକାଶିତ 'ଦି ହିଷ୍ଟ୍ରି ଅଫ୍ ଇଂଲଣ୍ଡ' ପାଇଁ ସେ ବିଶିଷ୍ଟ ଐତିହାସିକ ଭାବରେ ପରିଗଣିତ ହୁଅନ୍ତି । ଗ୍ରନ୍ଥଟି ଛଅ ଖଣ୍ଡରେ ବିଭକ୍ତ । ଏଥିରେ ପରିବେଷିତ ବହୁ ତଥ୍ୟ ପ୍ରମାଦପୂର୍ଣ୍ଣ । ଗବେଷଣାଲବ୍ଧ ଜ୍ଞାନ ଉପରେ ତା ପ୍ରତିଷ୍ଠିତ ନୁହେଁ । ଇତିହାସକୁ ସେ ପ୍ରଥମ ଥର ପାଇଁ ଲୋକପ୍ରିୟ ସାହିତ୍ୟିକ ରଚନାର ରୂପ ଦେଇଛନ୍ତି ।

ରୋବାର୍ଟସନ୍ (William Robertson : ୧୭୨୧-୯୩) ଏ କ୍ଷେତ୍ରରେ ଅଧିକ ସାଫଲ୍ୟ ହାସଲ କରିଛନ୍ତି । ସେ ସ୍କଟଲଣ୍ଡ, ଆମେରିକା ଓ ପଞ୍ଚମ ଚାର୍ଲସଙ୍କ ସମୟର ଇତିହାସ ପ୍ରଣୟନ କରିଛନ୍ତି । ବିଭିନ୍ନ କ୍ଷେତ୍ରରେ ନିଜସ୍ୱ ମତ ଦେବା ଅପେକ୍ଷା ସାଧାରଣରେ ଗୃହୀତ ମତକୁ ସେ ସ୍ୱୀକାର କରିଥାନ୍ତି ।

ଜେମସ୍ ବସ୍‌ୱେଲ (James Boswell : ୧୭୪୦-୯୫) ଜୀବନୀ ଲେଖକ ଭାବରେ ସୁବିଦିତ । 'ଜନ୍‌ସନ୍‌ଙ୍କ ଜୀବନୀ' (The Life of Samuel Johnson : ୧୭୯୧) ତାଙ୍କର ଅମରକୃତି । ଏହା ତାଙ୍କର ଅସୀମ ଧୈର୍ଯ୍ୟ, ନିଷ୍ଠା ଓ ଅନୁସନ୍ଧିତ୍ସାର ଫଳ । ପ୍ରଥମରୁ ଜନ୍‌ସନ୍ ବସ୍‌ୱେଲଙ୍କ ପ୍ରତି ବୀତସ୍ପୃହ ଥିଲେ; କିନ୍ତୁ ବସ୍‌ୱେଲ ଦୀର୍ଘ ଏକୋଇଶ ବର୍ଷ ଧରି ମାନ ଅପମାନକୁ ଭ୍ରୂକ୍ଷେପ ନକରି ତାଙ୍କର ସାନ୍ନିଧ୍ୟ ଲୋଡ଼ିଥିଲେ । ଜନ୍‌ସନଙ୍କ ବ୍ୟକ୍ତିତ୍ୱର ଭଲ ଓ ମନ୍ଦ ଉଭୟ ଦିଗ ପ୍ରତି ଲେଖକ ସମାନ ଦୃଷ୍ଟି ଦେଇଛନ୍ତି । ଜନ୍‌ସନ୍‌ଙ୍କ ଜୀବନର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଏଥିରୁ ମିଳେ । ଜନ୍‌ସନ୍‌ଙ୍କ ସ୍ଥୂଳ, ସୌଷ୍ଠବହୀନ ଶରୀର, ସୁସୁରିମାରିବା ଓ କଥା ମଝିରେ ମାଈ କୁକୁଡ଼ାପରି ବଜ୍ ବଜ୍ କରିବାର ଅଭ୍ୟାସ, ତମିଭଳି ନିଃଶ୍ୱାସ ଛାଡ଼ିବା ଭଙ୍ଗୀ ଆଦି ଟିକିନିଖି ବିବରଣୀ ତାଙ୍କ ଦୃଷ୍ଟିକୁ ଏଡ଼ାଇ ପାରିନାହିଁ । ଆଧୁନିକ ସମାଲୋଚକଙ୍କ ମତରେ ଏଥିରେ ବହୁ ଅଦରକାରୀ ବିବରଣୀ ରହିଛି, ସଂଗୃହୀତ ଉପାଦାନର ପୁନର୍ବାଚନ ଓ ନାଟକୀୟ ଉପସ୍ଥାପନା ହୋଇପାରିନାହିଁ ।

ଡକ୍‌ଟର ଜନ୍‌ସନ୍ (Samuel Johnson : ୧୭୦୯-୮୪) ଏ ଯୁଗର ଶ୍ରେଷ୍ଠ ପ୍ରଭାବଶାଳୀ ବ୍ୟକ୍ତିତ୍ୱ । ସମସାମୟିକ ବହୁ ବିଶିଷ୍ଟ ଲେଖକ ତାଙ୍କ କ୍ଲବ୍‌ର ସଭ୍ୟ ଥିଲେ

ଓ ତାଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ । ସାହିତ୍ୟିକ ସାଫଲ୍ୟ ଅପେକ୍ଷା ତାଙ୍କର ଅସାଧାରଣ ବଳିଷ୍ଠ ବ୍ୟକ୍ତିତ୍ୱ ଏଥିପାଇଁ ଦାୟୀ । ତାଙ୍କର ବସ୍ତୁନିଷ୍ଠ ସାଧାରଣଜ୍ଞାନ (common sense), ପ୍ରତ୍ୟୁତ୍ପନ୍ନମତିତା ଓ ତାର୍କିକତା ଯୋଗୁଁ ଜ୍ଞାନୀ ଗୁଣୀ ମହଲରେ ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ । ଜନ୍‌ସନ୍ ସାହିତ୍ୟର ବିଭିନ୍ନ ଦିଗରେ ଲେଖନୀ ଚାଳନା କରିଛନ୍ତି । ଅଭିଧାନ, ଜୀବନୀ, କବିତା ଓ ନାଟକ ଲେଖାର ପ୍ରୟାସ କରିଛନ୍ତି । 'ସାହିତ୍ୟ ପନ୍ଥ' (The Rambler) ପ୍ରକାଶକରି ସେଥିପାଇଁ ବହୁ ପ୍ରବନ୍ଧ ଲେଖିଛନ୍ତି । 'ଦି ଆଇଡ୍‌ଲର୍' (The Idler) ଶିରୋନାମାରେ 'ୟୁନିଭର୍ସେଲ କ୍ରନିକ୍ଲ' ବା 'ଡେଲିକଲ ଗେଜେଟ୍' ପାଇଁ ଧାରାବାହିକ ପ୍ରବନ୍ଧ ଲେଖିଛନ୍ତି; କିନ୍ତୁ ସାହିତ୍ୟିକ ଭାବରେ ତାଙ୍କର ପ୍ରତିଷ୍ଠା ତିନୋଟି ବିଶିଷ୍ଟ ଅବଦାନ ଉପରେ ନିର୍ଭରକରେ; ଯଥା (୧) ଇଂରେଜୀ ଅଭିଧାନ, (୨) ସେକ୍‌ସପିଅର୍‌ଙ୍କ ନାଟକର ସଂପାଦନା ଓ (୩) କବି ଜୀବନୀ ।



'ଇଂରେଜୀ ଅଭିଧାନ' (Dictionary of the English Language ; ୧୭୫୫ ଖ୍ରୀ) ପ୍ରକାଶିତ ହେବା ପରେ ସେ ଜଣେ ବଳିଷ୍ଠ ପ୍ରତିଭା ଭାବରେ ଲୋକଲୋଚନକୁ ଆସିଲେ । ଅଭିଧାନଟି ତ୍ରୁଟିଶୂନ୍ୟ ନ ହେଲେ ମଧ୍ୟ ସେହି ମାନର ଅଭିଧାନ ସେ ପର୍ଯ୍ୟନ୍ତ ସଂକଳିତ ହୋଇନଥିଲା । ଏଥିରେ ସଠିକ୍ ଉଚ୍ଚାରଣ ପାଇଁ ଆବଶ୍ୟକୀୟ ନିର୍ଦ୍ଦେଶ ନାହିଁ । କେତେକ କ୍ଷେତ୍ରରେ ସେ ଦେଇଥିବା ସଂଜ୍ଞା ପ୍ରମାଦପୂର୍ଣ୍ଣ ବା ଉଦ୍ଦେଶ୍ୟ-ପ୍ରଣୋଦିତ । ଶବ୍ଦର ନିର୍ଦ୍ଦିଷ୍ଟ ଅର୍ଥ ନିର୍ଦ୍ଦେଶ କରିବାପାଇଁ ପ୍ରଥମଥର ପାଇଁ ସେ ବିଶିଷ୍ଟ ଲେଖକଙ୍କ ରଚନାରୁ ଉଦ୍ଧୃତି ପ୍ରଦାନକଲେ ।

ଅଷ୍ଟାଦଶ ଶତାବ୍ଦୀ ବେଳକୁ ବହୁ ପ୍ରକ୍ଷିପ୍ତାଂଶ ହେତୁ ସେକ୍‌ସପିଅରଙ୍କ ନାଟକର ପ୍ରକୃତ ସ୍ୱରୂପ ଅସ୍ପଷ୍ଟ ହୋଇଯାଇଥିଲା । ଜନ୍‌ସନ୍ ସେଗୁଡ଼ିକର ଶୁଦ୍ଧ ସଙ୍କଳନ ପ୍ରକାଶକରି ଇଂରେଜୀ ସାହିତ୍ୟକୁ ଏକ ବିଶିଷ୍ଟ ଦାନ ଦେଇଗଲେ । ଉକ୍ତ ସଂକଳନ ଖ୍ରୀ: ୧୭୬୫ରେ ପ୍ରକାଶିତ ହୋଇଥିଲା । ଲେଖକଙ୍କ ଅସାମାନ୍ୟ ମେଧା ଓ ସାଧାରଣଜ୍ଞାନ ଉକ୍ତ ନାଟକର ବିଶୁଦ୍ଧ ରୂପ ଉଦ୍‌ଘାଟନରେ ସହାୟକ ହୋଇଥିଲା । ସେ ଦୁର୍ବୋଧ ଅଂଶର ଯେଉଁ ଟିପ୍ପଣୀ ପ୍ରସ୍ତୁତ କରିଥିଲେ ତାହା ଏବେ ମଧ୍ୟ ସ୍ୱୀକୃତ ।

ସେକ୍ସପିଅରଙ୍କ ଟ୍ରାଜିକ୍ ପରିକଳ୍ପନା, କେତେକ ନାଟକରେ ନୀତିବୋଧର ଅଭାବ ଓ ଶ୍ଳେଷ, ଯମକପୂର୍ଣ୍ଣ ଅଳଂକୃତ-ଭାଷାର ସମାଲୋଚନା କରିଥିଲେ ମଧ୍ୟ, ଜନ୍‌ସନ୍ ତାଙ୍କର ଅନ୍ତର୍ନିହିତ ଉଦାର ମାନବିକତାରେ ମୁଗ୍ଧ ହୋଇଛନ୍ତି । ସେକ୍ସପିଅର କେତେକ ନାଟକରେ ସ୍ଥାନ ଓ କାଳଗତ ଐକ୍ୟ ରକ୍ଷା କରିନଥିବାରୁ ସମାଲୋଚିତ ହେଉଥିଲେ; କିନ୍ତୁ ଜନ୍‌ସନ୍ କେବଳ ଘଟଣାର ଐକ୍ୟ ଯଥେଷ୍ଟ ବୋଲି ଦର୍ଶାଇଛନ୍ତି । ସ୍ଥାନ ଓ କାଳର ପରିବର୍ତ୍ତନ ଦର୍ଶକ କଳ୍ପନାଶକ୍ତି ବଳରେ ସହଜରେ ଗ୍ରହଣ କରିପାରେ ବୋଲି ତାଙ୍କର ମତ । ସେକ୍ସପିଅର୍‌ଙ୍କ କମେଡ଼ି ଓ ଟ୍ରାଜେଡ଼ିର ମିଶ୍ରଣକୁ ମଧ୍ୟ ସ୍ୱାଗତକରି ଜୀବନକ୍ଷେତ୍ରରେ ଏହା ଅତ୍ୟନ୍ତ ସ୍ୱାଭାବିକ ବୋଲି ଯୁକ୍ତି ବାଢ଼ିଛନ୍ତି । ସେକ୍ସପିଅର୍‌ଙ୍କ ପ୍ରତିଭାକୁ ସେ ପୁନଃ ପ୍ରତିଷ୍ଠିତ କରିଛନ୍ତି ।

'ଦି ଲାଇଭ୍ସ ଅଫ୍ ଦି ପୋଏଟ୍ସ୍' (The Lives of the Poets ; ୧୭୭୭-୮୧) ଜନ୍‌ସନଙ୍କର ଶ୍ରେଷ୍ଠ କୃତି । ଏଥିରେ ମିଲ୍‌ଟନ, ପୋପ୍, ଡ୍ରାଇଡ଼େନ ଆଦି ବାଉନ ଜଣ ବିଶିଷ୍ଟ ଇଂରେଜୀ କବିଙ୍କର ଜୀବନୀ ପରିବେଷଣ କରିବା ସଙ୍ଗେସଙ୍ଗେ ଲେଖକ ସେମାନଙ୍କ ରଚନାର ସମୀକ୍ଷା ମଧ୍ୟ କରିଛନ୍ତି । ସପ୍ତଦଶ ବା ଅଷ୍ଟାଦଶ ଶତାବ୍ଦୀରୁହିଁ ଏ ସମସ୍ତ କବି ନିର୍ବାଚିତ । ଏମାନେ ଜନ୍‌ସନ୍‌ଙ୍କର ସମସାମୟିକ ବା ନିକଟ ଅତୀତର ହୋଇଥିବାରୁ ସେମାନଙ୍କ ସମ୍ବନ୍ଧରେ ସଠିକ ତଥ୍ୟ ପରିବେଷଣ କରିବା ସମ୍ଭବହୋଇଛି; କିନ୍ତୁ ସବୁବେଳେ ଜନ୍‌ସନ୍‌ଙ୍କ ସମୀକ୍ଷା ନିରପେକ୍ଷ ନୁହେଁ । ସାଧାରଣତଃ କ୍ଲାସିକାଲ୍ ଦୃଷ୍ଟିଭଙ୍ଗୀରୁହିଁ ସେ କୌଣସି ରଚନାର ବିଗ୍ଭର କରିଥାନ୍ତି । ତାଙ୍କର ରାଜନୈତିକ ମତବାଦ ସାହିତ୍ୟିକ ମୂଲ୍ୟ-ବୋଧକୁ ପ୍ରଭାବିତ କରିଥିବାର ଲକ୍ଷ୍ୟ କରାଯାଏ । କବି ମିଲ୍‌ଟନ୍ ଗଣତନ୍ତ୍ରର ସମର୍ଥକ ଓ ରାଜଶକ୍ତିର ବିରୋଧୀ ଥିବାରୁ ଜନ୍‌ସନ୍ ତାଙ୍କ କବିପ୍ରତିଭାକୁ ଯଥାଯୋଗ୍ୟ ସମ୍ମାନ ଦେଇ-ନାହାନ୍ତି । ସେହିପରି କବି 'ଗ୍ରେ' ଇଂରେଜୀ କବିତାରେ ନୂତନତା ଆନୟନ କରିବାକୁ ଯାଇ ଜନ୍‌ସନ୍‌ଙ୍କ ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ହୋଇଛନ୍ତି; କିନ୍ତୁ ପୋପ୍ ଓ ଡ୍ରାଇଡ଼େନ ଭଳି ନିଜ ପ୍ରିୟ କବିଙ୍କ ସମୀକ୍ଷା ଭିତରେ ସମାଲୋଚକ ଜନ୍‌ସନ୍‌ଙ୍କ ପୂର୍ଣ୍ଣ ପରିଚୟ ମିଳେ ।

ଜନ୍‌ସନ୍‌ଙ୍କ ଆଦ୍ୟ ପର୍ଯ୍ୟାୟର ରଚନାଶୈଳୀ ବହୁସମାଲୋଚିତ । ଏହା ଅଳଙ୍କାର ବହୁଳ, ଶବ୍ଦାଡ଼ମ୍ବରପୂର୍ଣ୍ଣ ଓ ଲାଟିନ ଶବ୍ଦର ବହୁଳ ପ୍ରୟୋଗ ହେତୁ ଅତ୍ୟନ୍ତ କୃତ୍ରିମ ତଥା ବିରକ୍ତିକର ବୋଧହୁଏ । ଏହି ଶୈଳୀକୁ 'ଜନ୍‌ସନିକ୍ (Johnsonese) ଶୈଳୀ' ବୋଲି ଆକ୍ଷେପ କରାଯାଇଥାଏ । କ୍ରମେ ଲେଖକ ଏହି ଶୈଳୀରୁ ମୁକ୍ତହୋଇଛନ୍ତି । ଜନ୍‌ସନ୍‌ଙ୍କ କଥୋପକଥନ ଭଙ୍ଗୀ ଯେପରି ସରଳ, ସରସ, ସେହିପରି ତୀକ୍ଷ୍ଣ ଓ ଶକ୍ତିଶାଳୀ । ଲେଖକଙ୍କ ଶେଷ ପର୍ଯ୍ୟାୟରେ ଲିଖିତ 'ଦି ଲାଇଭ୍ସ୍ ଅଫ୍ ଦି ପୋଏଟ୍ସ' ଏହି ଶୈଳୀରେ ଲିଖିତ ।

ଗୋଲ୍ଡ ସ୍ମିଥ୍ ଉପନ୍ୟାସ ବ୍ୟତୀତ 'ଦ ସିଟିଜେନ୍ ଅଫ୍ ଦ ଓ୍ୱାର୍ଲଡ୍' (The Citizen of the World : ୧୭୫୯)ର ଲେଖକ ଭାବରେ ସୁପରିଚିତ । ଚୀନ୍-ଦେଶୀୟ ଜନୈକ କାଳ୍ପନିକ ବ୍ୟକ୍ତି ଲଣ୍ଡନରୁ ଲେଖିଥିବା ଚିଠିପତ୍ରର ଏକ ସଂକଳନ ହିସାବରେ ଲେଖକ ଏହାର ପରିକଳ୍ପନା କରିଛନ୍ତି । ଏଗୁଡ଼ିକ 'ଦ ପବ୍ଲିକ୍ ଲଡ଼ଗର୍' ନାମକ ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା । ଇଂରେଜ ଜାତିର ସାମାଜିକ ଜୀବନ ଓ ସାହିତ୍ୟ ବିଷୟକ ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରିବା ପାଇଁ ଲେଖକ ଏଥିରେ ସୁଯୋଗ ସୃଷ୍ଟି କରିଛନ୍ତି ।

ଏଡ଼ମଣ୍ଡ ବାର୍କ (Edmund Burke : ୧୭୨୯-୯୭) ଜନ୍‌ସନ୍‌ଙ୍କ କ୍ଳବର ଜନୈକ ସଭ୍ୟ । ଉଭୟ ରାଜନୀତି ଓ ସାହିତ୍ୟରେ ତାଙ୍କର ପ୍ରବେଶ ଥିଲା । ହ୍ୱିଗ୍‌ଦଳସହ ସଂପୃକ୍ତ ରହି ସେ କେତେବର୍ଷ ପାର୍ଲିଆମେଣ୍ଟର ସଭ୍ୟ ଥିଲେ; ଉଚ୍ଚ ରାଜନୈତିକ ନିଯୁକ୍ତି ମଧ୍ୟ ପାଇଥିଲେ । ତାଙ୍କ ପ୍ରଦତ୍ତ ରାଜନୈତିକ ଭାଷଣ ଓ ପ୍ରଚାର ପୁସ୍ତିକା (Pamphlets) ପାଇଁ ମୁଖ୍ୟତଃ ସେ ପରିଚିତ । ତାଙ୍କର କେତୋଟି ଉଲ୍ଲେଖଯୋଗ୍ୟ ଦାର୍ଶନିକ ରଚନା ମଧ୍ୟ ରହିଛି, ଯଥା; 'ଏ ଭିଣ୍ଡିକେସନ୍ ଅଫ୍ ନେଚୁରାଲ ସୋସାଇଟି' (A vindication of natural society : ୧୭୫୬) ଓ 'ଏ ଫିଲୋସୋଫିକାଲ୍ ଇନକ୍ୱାଇରି ଇନ୍‌ଟୁ ଦ ଓରିଜିନ୍ ଅଫ୍ ଆଓ୍ୱାର୍ ଆଇଡ଼ିଆଜ୍ ଅଫ୍ ଦ ସବ୍‌ଲାଇମ୍ ଆଣ୍ଡ୍ ବିଉଟିଫୁଲ୍' (A philosophical inquiry into the origin of our ideas of the sublime and beautiful : ୧୭୫୬) । ଦ୍ୱିତୀୟ ଗ୍ରନ୍ଥଟି ଉତ୍କୃଷ୍ଟତର ବିବେଚିତ ହୁଏ । ଦାର୍ଶନିକ ତତ୍ତ୍ୱ ଦୃଷ୍ଟିରୁ ଏହା ଉଚ୍ଚକୋଟିର ନହେଲେ ମଧ୍ୟ ରଚନାଶୈଳୀ ଦୃଷ୍ଟିରୁ ବହୁଆଦୃତ ।

ଦେଶ-ବିଦେଶର ବିଭିନ୍ନ ସମସ୍ୟା ତାଙ୍କ ଭାଷଣ ତଥା ପ୍ରଚାର ପୁସ୍ତିକାରେ ଆଲୋଚିତ । ଭାଷଣଗୁଡ଼ିକ ମଧ୍ୟରେ 'ଅନ୍ ଆମେରିକାନ୍ ଟ୍ୟାକ୍‌ସେସନ୍ (୧୭୭୪) ଓ 'କନ୍‌ସିଲିଏସନ୍ ଓ୍ୱିଥ୍ ଦ କଲୋନିଜ୍' (୧୭୭୫) ଶ୍ରେଷ୍ଠ ବିବେଚିତ ହୁଏ । ଆମେରିକାର ସ୍ୱାଧୀନତା-ବିପ୍ଳବକୁ ସେ ସମର୍ଥନ କରିଛନ୍ତି । ସେହିପରି ପ୍ରଚାର ପୁସ୍ତିକା ମଧ୍ୟରୁ 'ଥଟ୍‌ସ୍ ଅନ୍ ଦ କଜ୍ ଅଫ୍ ପ୍ରେଜେଣ୍ଟ୍ ଡିସକଣ୍ଟେଣ୍ଟ୍' (୧୭୭୦) ଓ 'ରିଫ୍ଳେକ୍‌ସନସ୍ ଅନ୍ ଦ ରିଭଲ୍ୟୁସନ୍ ଇନ୍ ଫ୍ରାନ୍‌ସ୍' (୧୭୯୦) ଉଲ୍ଲେଖଯୋଗ୍ୟ । ସେ ଉଦାର ଶାସନନୀତିର ସମର୍ଥକ । ବୃହତ୍ ସାମ୍ରାଜ୍ୟ ଓ କ୍ଷୁଦ୍ର ମନୋଭାବ ଏକ ସୂତ୍ରରେ ଗ୍ରଥିତ ହୋଇନପାରେ ବୋଲି ତାଙ୍କର ବିଶ୍ୱାସ । ଫ୍ରାନ୍ସ-ବିପ୍ଳବର ସମୀକ୍ଷା କଲାବେଳେ ଉଭୟ ଶାସକ ଓ ଶାସିତଙ୍କ ଦୋଷ-ତ୍ରୁଟି ବିଚାରକୁ ନଅନ୍ତି; ସ୍ୱାଧୀନତାର ପକ୍ଷ ସମର୍ଥନ କରୁଥିବାବେଳେ ସ୍ୱୈରାଚାରର ବିରୋଧ କରନ୍ତି । ଏଣୁ ଆମେରିକାର ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ କରୁଥିବାବେଳେ ସେ 'ଫରାସୀ-ବିପ୍ଳବ'ର ନିନ୍ଦାବାଦ କରିଛନ୍ତି । ସମସାମୟିକ ସମସ୍ୟାକୁ ନେଇ ଲିଖିତ

ହେଲେ ମଧ୍ୟ ଦାର୍ଶନିକ ଦୃଷ୍ଟିଭଙ୍ଗୀ ତଥା ସାହିତ୍ୟିକ ରୁଚି ହେତୁ ତାଙ୍କ ରଚନାରେ ସର୍ବକାଳୀନ ଆବେଦନ ଭରିରହିଛି । ଲେଖକଙ୍କ ବୁଦ୍ଧିମତ୍ତା ତଥା ଦୂରଦୃଷ୍ଟି ସମସାମୟିକ ଆବିଳ ରାଜନୈତିକପରିସ୍ଥିତି ଭିତରୁ ଭବିଷ୍ୟତର ସଠିକମାର୍ଗ ନିର୍ଦ୍ଦେଶ କରିବାକୁ ସମର୍ଥ ।

ବାର୍କଙ୍କ ରଚନାଶୈଳୀ ଅତ୍ୟନ୍ତ ପ୍ରଭାବଶାଳୀ; ଭାଷା ଓଜସ୍ୱିନୀ । ଏଥିରେ ବକ୍ତୃତା ଦେବାର ଭଙ୍ଗୀ ସ୍ପଷ୍ଟ । ବିଷୟର ସୁବିନ୍ୟାସ ସହିତ ପୁନରୁକ୍ତି, ଉପମା ଓ ରୂପକର ପ୍ରୟୋଗ, ସଂକ୍ଷିପ୍ତ ତଥା ଶକ୍ତିଶାଳୀ ବାକ୍ୟାଘାତ, ବସ୍ତୁସ୍ପ୍ରକାଶ, ଉଦାହରଣ ସାହାଯ୍ୟରେ ବୁଝାଇବାର ପ୍ରଚେଷ୍ଟା ଓ ଦୃଢ଼ ଛନ୍ଦାୟିତ କଥନଭଙ୍ଗୀ ଆଦି ତାଙ୍କ ଶୈଳୀର କେତୋଟି ବୈଶିଷ୍ଟ୍ୟ ।



# ଦଶମ ଅଧ୍ୟାୟ

## ରୋମାଣ୍ଟିକ୍ ଯୁଗ

[ଖ୍ରୀ: ୧୭୯୮-୧୮୩୦]

**କାବ୍ୟ :**

ଖ୍ରୀ: ୧୭୯୮ ଇଂରେଜୀ ସାହିତ୍ୟରେ ଏକ ସ୍ମରଣୀୟ ବର୍ଷ । ଏହି ବର୍ଷ କବି **ଓ୍ୱାର୍ଡସ୍ ଓ୍ୱାର୍ଥ** (୧୭୭୦-୧୮୫୦) ଓ **କୋଲ୍‌ରିଜ୍** (୧୭୭୨-୧୮୩୪)ଙ୍କ ମିଳିତ ଉଦ୍ୟମରେ 'ଲିରିକେଲ ବ୍ୟାଲଡ୍‌ସ୍' (Lyrical Ballads) ନାମକ କବିତା ସଂକଳନର ପ୍ରକାଶ ରୋମାଣ୍ଟିକ୍ ଯୁଗର ସୂତ୍ରପାତ କରିଥିଲା । ଏମାନଙ୍କ ବ୍ୟତୀତ **ବାଇରନ୍** (୧୭୮୮-୧୮୨୪) **ଶେଲି** (୧୭୯୨-୧୮୨୨) ଓ **କିଟସ୍** (୧୭୯୫-୧୮୨୧)ଙ୍କ ଅବଦାନରେ ରୋମାଣ୍ଟିକ୍ କାବ୍ୟ ସମୃଦ୍ଧ । ଏଇ କବିଙ୍କ ମଧ୍ୟରୁ ଅଧିକାଂଶ ଅଳ୍ପାୟୁ । ଖ୍ରୀ: ୧୮୩୦ ପୂର୍ବରୁ ବାଇରନ୍, ଶେଲି ଓ କିଟ୍‌ସ୍‌ଙ୍କ ମୃତ୍ୟୁ ଘଟିଥିଲା । ଏଣୁ ଖ୍ରୀ: ୧୭୯୮ରୁ ୧୮୩୦ ଏଇ ପ୍ରାୟ ବତ୍ରିଶବର୍ଷକୁ ମୁଖ୍ୟତଃ ରୋମାଣ୍ଟିକ୍ ଯୁଗ ଭାବରେ ଚିହ୍ନିତ କରାଯାଉଥିଲେ ହେଁ ଏ ଯୁଗର ପ୍ରଥମ ପଦଧ୍ୱନି ଯେ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ **ବ୍ଲେକ୍** ଓ **ବାର୍ଣ୍ଣସ୍‌**ଙ୍କ କବିତାରେ ଶୁଣାଯାଇଥିଲା, ପୁଣି ଏ ଯୁଗର ପ୍ରଭାବ ଯେ ପରବର୍ତ୍ତୀ ଭିକ୍‌ଟୋରିଆନ୍ ଯୁଗରେ ମଧ୍ୟ ଅନୁଭୂତ ହୋଇଥିଲା ଏ କଥା ସ୍ମରଣ ରଖିବାକୁ ହେବ ।

ଏହି ନୂତନ ଯୁଗର ଅଭ୍ୟୁଦୟ ସମ୍ବନ୍ଧରେ ନାନା କାରଣ ନିର୍ଦ୍ଦେଶ କରାଯାଇଥାଏ । ତନ୍ମଧ୍ୟରୁ ଫରାସୀ-ବିପ୍ଳବର ପ୍ରଭାବ ପ୍ରଧାନ । ଫରାସୀ-ବିପ୍ଳବର ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ବାଣୀ ରୋମାଣ୍ଟିକ୍ କବିଙ୍କୁ ଅନୁପ୍ରାଣିତ କରିଥିଲା; କିନ୍ତୁ ଉକ୍ତ ବିପ୍ଳବ ଅବଶେଷରେ ହତ୍ୟା ଓ ରକ୍ତପାତର ବିଭୀଷିକାରେ ପର୍ଯ୍ୟବସିତ ହେବାରୁ ବିପ୍ଳବ ଉପରୁ ଏ କବିଙ୍କର ଆସ୍ଥା ତୁଟିଯାଇଥିଲା । ରୋମାଣ୍ଟିକ୍ ଯୁଗର ଆଦ୍ୟ ଭାଗରେ ଇଂରେଜୀ କବିକଣ୍ଠରେ ଏହି ବିପ୍ଳବର ଧ୍ୱନି ଶୁଣାଯାଇଛି ।

ଫରାସୀ-ବିପ୍ଳବର ମନୀଷୀ **ରୁଷୋ** (Rousseau ; ୧୭୧୨—୧୭୮୮)ଙ୍କ ଦର୍ଶନଦ୍ୱାରା ରୋମାଣ୍ଟିକ କବିମାନେ ପ୍ରଭାବିତ ହୋଇଥିଲେ । ରୁଷୋ ସୁବିଖ୍ୟାତ 'ସୋସାଲ୍ କନ୍‌ଟ୍ରାକ୍ଟ୍ ଥିଓରି'ର ପ୍ରବର୍ତ୍ତକ । 'ଏମିଲ' ନାମକ ଗ୍ରନ୍ଥରେ ତାଙ୍କର ଶିକ୍ଷା ସମ୍ବନ୍ଧୀୟ ଅନୁଚିନ୍ତା ପ୍ରକାଶ ପାଇଛି । ତାଙ୍କ ମତରେ ସୁସ୍ଥ ମନ ଓ ଦେହର ଗଠନପାଇଁ ମଣିଷକୁ ପ୍ରକୃତି କୋଳକୁ ଫେରିଯିବାକୁ ପଡ଼ିବ । ପ୍ରକୃତି କୋଳରେ ତାର ମୌଳିକ

ପ୍ରବୃତ୍ତିଗୁଡ଼ିକ ସ୍ୱାଭାବିକ ଭାବରେ ବିକଶିତ ହୋଇଥାଏ; ଯାହା ନଗର ଜୀବନରେ ସମ୍ଭବ ନୁହେଁ । ଏହାଦ୍ୱାରା ମଣିଷ ଶ୍ରେଷ୍ଠ ମାନବୀକ ଗୁଣର ଅଧିକାରୀ ହୁଏ । ରୁଷୋଙ୍କ ଏହି ଚିନ୍ତାଧାରା ଓ୍ୱାର୍ଡସ୍ ଓ୍ୱାର୍ଥଙ୍କ କବିତାର ଛନ୍ଦେ ଛନ୍ଦେ ପ୍ରକାଶ ପାଇଛି; ସେ ପ୍ରକୃତି-କବି ଭାବରେ ସୁପରିଚିତ ।

ଫରାସୀ ପ୍ରଭାବ ବ୍ୟତୀତ ତତ୍କାଳୀନ ଇଂଲଣ୍ଡର ସାମାଜିକ ଅବସ୍ଥା ମଧ୍ୟ ରୋମାଣ୍ଟିକ୍ ଚେତନାର ଉନ୍ମେଷ ପାଇଁ ଦାୟୀ । ଏ କ୍ଷେତ୍ରରେ ଖ୍ରୀ : ୧୭୬୦ର ଶିଳ୍ପ-ବିପ୍ଳବ ସର୍ବାଦୌ ସ୍ମରଣୀୟ । ଶିଳ୍ପର ଦ୍ରୁତ ବିସ୍ତାର ସଙ୍ଗେସଙ୍ଗେ ଗ୍ରାମଗୁଡ଼ିକ ପରିତ୍ୟକ୍ତ ହେବାକୁ ଲାଗିଲା; ସହର ଜୀବନରେ ମଧ୍ୟ ଶାନ୍ତି ମିଳିଲାନାହିଁ । କଳର କଳାଧୂଆଁ ବାୟୁମଣ୍ଡଳକୁ ବିଷାକ୍ତ କଲା; ଶ୍ରମିକମାନେ ଅବହେଳିତ ତଥା ନିର୍ଯାତିତ ହୋଇ ରୋଗ ଓ ମୃତ୍ୟୁର ଶିକାର ହେଲେ । ରୋମାଣ୍ଟିକ୍ କବିମାନସ ଏଇ ଉକ୍ତ ପରିବେଶରୁ ବ୍ୟାକୁଳ ଭାବରେ ମୁକ୍ତି ଖୋଜୁଥିଲା । ଏଣୁ ସରଳ ସ୍ନିଗ୍ଧ ଗ୍ରାମ୍ୟଜୀବନ ପ୍ରତି ତାର ଦୃଷ୍ଟି ଫେରିଥିଲା ।

ପୂର୍ବବର୍ତ୍ତୀ ଅଗଷ୍ଟାନ୍ ବା କ୍ଲାସିକେଲ୍ ଯୁଗର ପ୍ରତିକ୍ରିୟାରୁ ମଧ୍ୟ ରୋମାଣ୍ଟିକ ଯୁଗର ଆବିର୍ଭାବ ବୋଲି କୁହାଯାଇପାରେ । ଅଗଷ୍ଟାନ ଯୁଗ ଥିଲା ନୀତି, ଶୃଙ୍ଖଳା, ପରମ୍ପରା ତଥା ଯୁକ୍ତିବାଦର ଯୁଗ; ବୈଜ୍ଞାନିକଙ୍କ ପରି ସାଧାରଣୀକରଣ (generalisation)ରେ ବିଶ୍ୱାସୀ । ଏଣୁ ସେ ଯୁଗର ଲେଖାରେ ବ୍ୟକ୍ତିଗତ ଆବେଗ ଅନୁଭୂତି ପରିବର୍ତ୍ତେ ସାର୍ବଜନୀନ ଚେତନା ପ୍ରକାଶ ପାଉଥିଲା । ନିର୍ଦ୍ଦିଷ୍ଟ ନୀତି ନିୟମକୁ ମାନି କବି କବିତା ଲେଖୁଥିଲେ । ପ୍ରତିକ୍ରିୟା ସ୍ୱରୂପ ଦେଖାଦେଲା ରୋମାଣ୍ଟିକ୍ ମତବାଦ । ରୋମାଣ୍ଟିକ୍ କବି ବୈଜ୍ଞାନିକଙ୍କ ପରି ବସ୍ତୁକୁ ବିଶ୍ଳେଷଣ ନକରି ଉପଲବ୍ଧି ମାଧ୍ୟମରେ ତାର ସୌନ୍ଦର୍ଯ୍ୟ ଆସ୍ୱାଦ କଲା । ସାଧାରଣ ଅନୁଭୂତି ପରିବର୍ତ୍ତେ ଅତ୍ୟନ୍ତ ବ୍ୟକ୍ତିଗତ ଅନୁଭୂତି କବିତାରେ ପ୍ରକାଶ ପାଇଲା । ଏହି ପ୍ରତିକ୍ରିୟା ସମ୍ପର୍କରେ W. J. Long କହନ୍ତି "The Romantic movement was marked and is always marked by a strong reaction and protest against the bondage of rule and custom which in science and theology, as well as in literature, generally tend to fetter the free-human spirit". ପୁନଶ୍ଚ ରୋମାଣ୍ଟିକ୍ କବିତାର ବ୍ୟକ୍ତିନିଷ୍ଠତା ସମ୍ବନ୍ଧରେ ସେ କହନ୍ତି, "The Romantic movement was the expression of individual genius rather than the established rules". ଏଣୁ ଏ ଯୁଗର କବିତାରେ ଉପଲବ୍ଧ ହୁଏ ଗୀତି କବିତାର ଉଚ୍ଛ୍ୱାସ ।

ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଆତ୍ମପ୍ରକାଶ କରିଥିବା ରୋମାଣ୍ଟିକ ଚେତନା ଏଇ ପରିବେଶ ମଧ୍ୟରେ ପୁଷ୍ଟିଲାଭ କରିଥିଲା । ନିମ୍ନଲିଖିତ କେତୋଟି ବୈଶିଷ୍ଟ୍ୟ ଉପରେ ଦୃଷ୍ଟିପାତ କଲେ, ନୂତନ ଚେତନାର ସ୍ୱାତନ୍ତ୍ର୍ୟ ବୁଝାପଡ଼େ :

ବିଷଣ୍ଣତା (melancholy) ରୋମାଣ୍ଟିକ୍ କବିତାର ଏକ ବିଶିଷ୍ଟ ଲକ୍ଷଣ। ପ୍ରଚଳିତ ସମାଜ-ବ୍ୟବସ୍ଥା ମଧ୍ୟରେ ରୋମାଣ୍ଟିକ୍ କବି ନିଜକୁ ଶୃଙ୍ଖଳିତ ମନେକରେ। ଏହି ସମାଜର ଦୋଷ ତ୍ରୁଟି ନିରାକରଣରେ ସେ ଅସମର୍ଥ। ଏଣୁ ପଳାୟନ ହିଁ ତା ପକ୍ଷରେ ଏକମାତ୍ର ପନ୍ଥା। ସୁଦୂର ଅତୀତ, ବିଶେଷତଃ ମଧ୍ୟଯୁଗୀୟ ପରିବେଶ (middle ages) ବା କୌଣସି କଳ୍ପଲୋକରେ ସେ ମୁକ୍ତିର ସନ୍ଧାନ କରେ। ମଧ୍ୟଯୁଗୀୟ ପରିବେଶ ଶୂରବୀରଙ୍କ ଅସାଧାରଣ କାର୍ଯ୍ୟକଳାପ ତଥା ଭୂତ ପ୍ରେତ ଆଦିଙ୍କ ଉପସ୍ଥିତିରେ ଅତ୍ୟନ୍ତ ରୋମାଞ୍ଚକର। ଅନ୍ତତଃ ବାସ୍ତବତାର ରୂଢ଼ତା ତଥା ସ୍ଥୂଳବାଦରୁ ତାହା ମୁକ୍ତ। ଏଣୁ ରୋମାଣ୍ଟିକ କବି-ମାନସର ତାହା କାଂକ୍ଷିତ ଚାରଣଭୂମି। ସୁଦୂରର ମୋହ ଏହି ପଳାୟନ ମନୋଭାବର ନାମାନ୍ତର ମାତ୍ର। ଅତୀତକୁ ବା ଅତୀନ୍ଦ୍ରିୟ ଜଗତକୁ ପଳାୟନ ପାଇଁ କବିର ଲୋଡ଼ାହୁଏ କଳ୍ପନାର ଦ୍ରୁତଗାମୀ ଯାନ। କଳ୍ପନା (imagination) କେବଳ ଯେ କବିକୁ ତାର ଇପ୍‌ସିତ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦିଏ ତା ନୁହେଁ, ଏ ତାହା ରୂପକୁ ଅପରୂପ ବା ଅଲୌକିକରେ ପରିଣତ କରେ। ଏଣୁ ଓ୍ୱାଲ୍‌ଟାର୍-ପେଟାର୍ ଯଥାର୍ଥରେ କହିଛନ୍ତି, ରୋମାଣ୍ଟିସିଜ୍‌ମ୍ ହେଉଛି 'Addition of strangeness to beauty'। ଏଇ ଦୃଷ୍ଟିରୁ ରୋମାଣ୍ଟିକ କବିର ଯାଦୁକରୀ ମୁଖ୍ୟତଃ କଳ୍ପନା ଉପରେହିଁ ନିର୍ଭରଶୀଳ।

କଳ୍ପନାବ୍ୟତୀତ ଆବେଗ (emotion), ଗାଢ଼ ଅନୁରାଗ (passion) ଓ ଇନ୍ଦ୍ରିୟପ୍ରବଣତା (sensuousness) ଉକ୍ତ କବିତାରେ ଦେଖାଯାଏ। ଗୋଟିଏ କଥାରେ କହିବାକୁ ଗଲେ ଏମାନଙ୍କ ପ୍ରାଣ ଅତ୍ୟନ୍ତ ସ୍ପର୍ଶକାତର; କ୍ଷୁଦ୍ର କ୍ଷୁଦ୍ର ଘଟଣା ବା ଅନୁଭୂତି ଏମାନଙ୍କ ମନରେ ଗଭୀର ରେଖାପାତ କରିପାରେ। ଇନ୍ଦ୍ରିୟ ମାଧ୍ୟମରେ ରୂପ, ରସ, ଗନ୍ଧ, ସ୍ପର୍ଶ ଓ ସ୍ୱର ଆସ୍ୱାଦନ କରିବାର ଅସାଧାରଣ ଶକ୍ତି ଏମାନଙ୍କଠାରେ ଦେଖା ଦେଇଥିଲା। କ୍ଲାସିକେଲ ଯୁଗର ବୌଦ୍ଧିକତା (reason) ଅପେକ୍ଷା କଳ୍ପନା ଓ ଆବେଗ ଏମାନଙ୍କ ନିକଟରେ ଅଧିକ ପ୍ରାଧାନ୍ୟ।

ପ୍ରକୃତି ସହିତ ରୋମାଣ୍ଟିକ କବିର ଆତ୍ମୀୟତା ଅତି ନିବିଡ଼। ନଗରର କୋଳାହଳ-ମୟ ଜୀବନ ଛାଡ଼ି ପ୍ରକୃତି କୋଳର ସ୍ୱର୍ଗୀୟ ଶାନ୍ତି ପାଇଁ ସେ ବ୍ୟାକୁଳ। ପ୍ରକୃତି ତା ଆଖିରେ ନିଷ୍ପ୍ରାଣ, ଜଡ଼ ବସ୍ତୁ ନୁହେଁ, ବରଂ ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର। ପ୍ରକୃତିର ପୂଜାରୀ କବି ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ଆଖିରେ ଏ ପ୍ରକୃତିର ଭୂମିକା ଆହୁରି ମହନୀୟ। ପ୍ରକୃତିକୁ ସେ ଶିକ୍ଷକର ଆସନ ଦେଇଛନ୍ତି। ଖାଲି ସେତିକି ନୁହେଁ, ପ୍ରକୃତି ମଧ୍ୟରେ ଈଶ୍ୱରଙ୍କ ସତ୍ତା ମଧ୍ୟ ଅନୁଭବ କରିଛନ୍ତି। ଏହି ଦାର୍ଶନିକ ଦୃଷ୍ଟିଭଙ୍ଗୀ ପାନ୍ଥେଇଜିମ୍ (pantheism) ନାମରେ ପରିଚିତ।

ପ୍ରକୃତି ପରି ଗ୍ରାମ୍ୟଜୀବନ ଓ ସମାଜର ନିମ୍ନତମ ଶ୍ରେଣୀର ମଣିଷ ଏମାନଙ୍କର ଆଦରଣୀୟ। କ୍ଲାସିକେଲ ଯୁଗର ସାହିତ୍ୟରେ ସମାଜର ତଥାକଥିତ ସମ୍ଭ୍ରାନ୍ତ ଶ୍ରେଣୀର

ଚନ୍ଦ ପ୍ରାଧାନ୍ୟ ଲାଭକରିଥିବାବେଳେ ଏଠାରେ ଅବହେଳିତ ମାନବ ପ୍ରତି କବିର ସମବେଦନା ଅତି ଗଭୀର ।

ଶୈଶବ ସ୍ମୃତି ତଥା ଶିଶୁସୁଲଭ ବିସ୍ମୟବୋଧ, ଏହି କବିତାର ଅନ୍ୟତମ ବୈଶିଷ୍ଟ୍ୟ । ସମସାମୟିକ ସମସ୍ୟାକଣ୍ଟକିତ କୁଟିଳ ଜୀବନପ୍ରବାହ ସମ୍ବନ୍ଧରେ ବୀତସ୍ପୃହ କବିର ଆଖିରେ ଶୈଶବର ସରଳତା ଅତ୍ୟନ୍ତ ଲୋଭନୀୟ । ଶିଶୁର ଆଖିରେ ସେ ଦୁନିଆକୁ ଦେଖେ; ତାର ବୈଚିତ୍ର୍ୟରେ ବିମୁଗ୍ଧ ହୁଏ । ଶିଶୁ ତା'ଠାରେ ପବିତ୍ରତାର ପ୍ରତିମୂର୍ତ୍ତି । ବାଇବେଲ ପ୍ରବର୍ତ୍ତିତ ଖ୍ରୀଷ୍ଟୀୟ ଧର୍ମମତାନୁସାରେ ପ୍ରତ୍ୟେକ ମଣିଷ ଜନ୍ମରୁ ପାପୀ । କାରଣ ଆଦାମ୍ ଓ ଇଭ୍ ଈଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ ପାପ-ପ୍ରଣୟରେ ଲିପ୍ତ ହୋଇଥିଲେ । ଏହାକୁ ମୌଳିକ ପାପତତ୍ତ୍ୱ (Doctrine of the original sin) କୁହାଯାଏ; କିନ୍ତୁ ରୁଷୋଙ୍କ ମତାନୁସାରେ ମନୁଷ୍ୟ ସ୍ୱଭାବତଃ ନିଷ୍ପାପ । ସମାଜର କୁପ୍ରଭାବ ହେତୁ ସେ କଳୁଷିତ ହୋଇଥାଏ । ରୋମାଣ୍ଟିକ୍ କବି ଏହି ମତରେ ବିଶ୍ୱାସୀ । ଏଣୁ ସେ ଶିଶୁଠାରେ ଦେବତ୍ୱ ଆରୋପକରେ ।

ଶୈଶବର ମାଧୁରୀରେ ରୋମାଣ୍ଟିକ୍ କବି ଯେପରି ଆତ୍ମହରା ହୋଇଛି, ମୃତ୍ୟୁଚିନ୍ତାରେ ସେହିପରି ବ୍ୟଥିତ ହୋଇଛି । କଳ୍ପନା ଓ ଆବେଗଭରା ସୌନ୍ଦର୍ଯ୍ୟପିପାସୀ ପ୍ରାଣପାଇଁ ମୃତ୍ୟୁର କର୍କଶତା କେବେ ଅଭିନନ୍ଦନୀୟ ହୋଇ ନ ପାରେ । କିଟ୍ସ ନିଜ ଭାଇ ଟମ୍‌ର ମୃତ୍ୟୁଶଯ୍ୟା ନିକଟରେ ଅଶ୍ରୁ ବର୍ଷଣ କରୁଥିବାବେଳେ ଓ୍ୱାର୍ଡସ୍‌ୱାର୍ଥ ଲୁସିର ଅକାଳ ବିୟୋଗରେ ମୁହ୍ୟମାନ । ମୃତ୍ୟୁପରି ପ୍ରାଚୀନ କୀର୍ତ୍ତିର ଧ୍ୱଂସାବଶେଷ, ପ୍ରାଚୀନ କଳା ଓ ଭାସ୍କର୍ଯ୍ୟ ସେମାନଙ୍କ ମନରେ ଭାବାନ୍ତର ସୃଷ୍ଟି କରେ ।

କ୍ଲାସିକେଲ ଯୁଗର କବିତା ଗୋଟିଏ ଧାରାରେ, ନିର୍ଦ୍ଦିଷ୍ଟ ନୀତିନିୟମରେ ଲେଖା-ହୋଇଥିବାରୁ ସେଥିରେ ବୈଚିତ୍ର୍ୟ ଦେଖାଯାଏନାହିଁ; କିନ୍ତୁ ବ୍ୟକ୍ତି-ସ୍ୱାଧୀନତା ପକ୍ଷପାତୀ ରୋମାଣ୍ଟିକ୍ କବିର କାବ୍ୟ ବୈଚିତ୍ର୍ୟ ପରିପୂର୍ଣ୍ଣ । ବିଭିନ୍ନ କବିଙ୍କର ରୁଚି, ମନୋବୃତ୍ତି ଓ ବିଭିନ୍ନ ସମୟର ମାନସିକ ଅବସ୍ଥା କବିତାକୁ ବର୍ଣ୍ଣିଳ କରିଛି । ଏଣୁ ଲଂଗଙ୍କ ଭାଷାରେ : To read them is like passing through a new village meeting a score of different human types, and finding in each one something to love and remember."

ରୋମାଣ୍ଟିକ୍ କବି ତାର କବିତାରେ କେବଳ ନୂତନ ବିଷୟବସ୍ତୁ ସଂଯୋଜନ କରି ସନ୍ତୁଷ୍ଟ ନୁହେଁ, ତାର ବିପ୍ଳବୀ ମନୋବୃତ୍ତି କବିତାର ଛନ୍ଦ-ବୈଚିତ୍ର୍ୟ, ନୂତନ ରୂପକଳ୍ପ-ସୃଷ୍ଟି ଓ ଶବ୍ଦ ଚୟନରେ ମଧ୍ୟ ଆତ୍ମପ୍ରକାଶ କରିଛି । ବାକ୍‌ସ୍ୱାତନ୍ତ୍ର୍ୟକୁ ଏମାନେ ପ୍ରାଧାନ୍ୟ ଦେଇଛନ୍ତି । ଏମାନେ ଆବେଗ ଓ ଅନୁଭୂତି ପ୍ରକାଶ-କ୍ଷମ ସରଳ, ସାବଲୀଳ, ଚିତ୍ତାକର୍ଷକ ଭାଷା ପ୍ରୟୋଗର ପକ୍ଷପାତୀ । 'ଲିରିକେଲ ବ୍ୟାଲେଡ୍‌ସ୍'ର ମୁଖବନ୍ଧରେ ଓ୍ୱାର୍ଡସ୍‌ୱାର୍ଥ

ସାଧାରଣ ମଣିଷର କଥିତ ଭାଷାକୁ ପ୍ରକାଶ ମାଧ୍ୟମଭାବରେ ଗ୍ରହଣ କରିବାର ଅଭିପ୍ରାୟ ପ୍ରକାଶ କରିଛନ୍ତି ।

ଇଂରେଜୀ ସାହିତ୍ୟରେ ରୋମାଣ୍ଟିସିଜିମ୍‌ର ପ୍ରଥମ ବଳିଷ୍ଠ ପ୍ରକାଶ ଷୋଡ଼ଶ ଶତାବ୍ଦୀ (ଏଲିଜାବେଥ୍ ଯୁଗ)ରେ ଘଟିଥିଲା । କଳ୍ପନା ଓ ଆବେଗର ପ୍ରାଧାନ୍ୟ, ସୁଦୂରର ମୋହ, ପ୍ରକୃତି ଓ ସୌନ୍ଦର୍ଯ୍ୟ ପ୍ରୀତି, ବିସ୍ମୟବୋଧ ଓ ସ୍ୱତଃସ୍ଫୂର୍ତ୍ତି ପ୍ରକାଶଭଙ୍ଗୀ ପରି ରୋମାଣ୍ଟିକ୍ ଲକ୍ଷଣ ସେତେବେଳର ସାହିତ୍ୟରେ ମଧ୍ୟ ପ୍ରକାଶ ପାଇଥିଲା । ଉକ୍ତ ରୋମାଣ୍ଟିକ୍ ଚେତନା ପ୍ରାୟ ଦୁଇଶହ ବର୍ଷ ପରେ ଆଲୋଚ୍ୟ ଯୁଗରେ ପୁଣି ଆତ୍ମପ୍ରକାଶ କରିଛି । ଏଣୁ ଏହି ଯୁଗକୁ ରୋମାଣ୍ଟିକ୍ ଯୁଗ ନ କହି ରୋମାଣ୍ଟିକ୍ ଚେତନାର ପୁନରାବିର୍ଭାବ (Revival of romanticism)ର ଯୁଗ ଆଖ୍ୟା ଦିଆଯାଇଥାଏ ।

ଷୋଡ଼ଶ ଶତାବ୍ଦୀର ରୋମାଣ୍ଟିକ୍ ଚେତନା ଓ ଆଲୋଚ୍ୟ ଯୁଗର ରୋମାଣ୍ଟିକ୍ ଚେତନା ମଧ୍ୟରେ କେତେକ ମୌଳିକ ପାର୍ଥକ୍ୟ ରହିଛି । ଷୋଡ଼ଶ ଶତାବ୍ଦୀର ରୋମାଣ୍ଟିକ୍ ଚେତନା ଥିଲା ଅନାୟାସଲଭ୍ୟ, ସ୍ୱଭାବଗତ; କିନ୍ତୁ ଊନବିଂଶ ଶତାବ୍ଦୀରେ ତାହା ଏକ ସଚେତନ ପ୍ରୟାସ । ଅଧିକନ୍ତୁ ଷୋଡ଼ଶ ଶତାବ୍ଦୀରେ ବୈଜ୍ଞାନିକ ଅନୁସନ୍ଧିତ୍ସା ରୋମାଣ୍ଟିକ୍ ମନର ପରିପୂରକ ହୋଇଥିବାବେଳେ, ବିଜ୍ଞାନ-ଦାନବର ଅତ୍ୟାଚାରରେ ଜର୍ଜ୍ଜରିତ ଊନବିଂଶ ଶତାବ୍ଦୀର କବି ବିଜ୍ଞାନ-ବିରୋଧୀ ହୋଇପଡ଼ିଛି ।

ଆଲୋଚ୍ୟ ରୋମାଣ୍ଟିକ୍ ଯୁଗ ମୁଖ୍ୟତଃ କାବ୍ୟର ଯୁଗ; ଗଦ୍ୟର ସ୍ଥାନ ଏ ଯୁଗରେ ଗୌଣ । କାବ୍ୟିକ ବୈଚିତ୍ର୍ୟ ଓ ଉତ୍କର୍ଷ ହେତୁ ଏଲିଜାବେଥ୍ ଯୁଗ ପରେ ଏହି ଯୁଗର ପ୍ରଭାବ ହିଁ ଇଂରେଜୀ ସାହିତ୍ୟରେ ବିଶେଷ ଅନୁଭୂତ ହୁଏ । ଏହି ଯୁଗର କେତେକ ବିଶିଷ୍ଟ କବିଙ୍କ ବ୍ୟକ୍ତିଗତ ଅବଦାନ ଏଠାରେ ଆଲୋଚ୍ୟ ।

## ଉଇଲିଅମ୍ ୱାର୍ଡସ୍‌ୱାର୍ଥ (William Wordsworth : ୧୭୭୦-୧୮୫୦)

ଲେକ୍ ଡିଷ୍ଟ୍ରିକ୍ଟର ଉପାନ୍ତରେ କୋକାର୍ ମାଉଥ୍ ନାମକ ସହର । ପ୍ରାକୃତିକ ଶୋଭା ପରିବେଷ୍ଟିତ ଏଇ ସହରର ଏକ ଆଇନଜୀବୀ ପରିବାରରେ ୧୭୭୦ ମସିହା ଏପ୍ରିଲ ସାତ ତାରିଖରେ କବିଙ୍କର ଜନ୍ମ । ଆଠବର୍ଷ ବୟସରେ ସେ ମାତୃହୀନ ହୁଅନ୍ତି, ତେର ବର୍ଷ ବେଳକୁ ପିତା ମଧ୍ୟ ମୃତ୍ୟୁମୁଖରେ ପଡ଼ନ୍ତି । ପିତାଙ୍କର ସ୍ୱଳ୍ପ ସମ୍ପତ୍ତି ଅନ୍ୟ କେହି ଆତ୍ମସାତ୍ କରେ । ଅଗତ୍ୟା ଆତ୍ମୀୟସ୍ୱଜନଙ୍କ ସହାୟତାରେ ହକ୍‌ସ୍‌ହେଡ୍ ସ୍କୁଲରେ ପଢ଼ିବାର ବ୍ୟବସ୍ଥା ହୁଏ । ସ୍କୁଲଟି ହ୍ରଦକୂଳରେ । ଚତୁଃପାର୍ଶ୍ୱ ପ୍ରାକୃତିକ ଶୋଭା ପରିପୂର୍ଣ୍ଣ । କବିଙ୍କ 'ଦି ପ୍ରିଲ୍ୟୁଡ୍' ନାମକ କାବ୍ୟ ଗ୍ରନ୍ଥରୁ ଏହି ଦିନର ରୋମାଞ୍ଚକର



ଅନୁଭୂତ ଜଣାଯାଏ । ଗ୍ରୀଷ୍ମଦିନର ସନ୍ତରଣ, ସୂର୍ଯ୍ୟକିରଣ ଉପଭୋଗ, ବଣ-ଜଙ୍ଗଲରେ ଭ୍ରମଣ, ନୌକାରେ ଜଳକ୍ରୀଡ଼ା—ଏହିପରି କେତେ ଶୈଶବ ସ୍ମୃତି ତାଙ୍କ ମହାନ୍ କାବ୍ୟଟିରେ ରୂପାୟିତ । ଏକାକୀ ରହିବା ଓ ବୁଲିବାରେ ତାଙ୍କର ଆନନ୍ଦ । ପ୍ରକୃତି କୋଳରେ ସେ କେବେ କିନ୍ତୁ ଏକୁଟିଆ ଅନୁଭବ କରନ୍ତିନାହିଁ ।

ଓ୍ୱାର୍ଡସ୍‌ଓ୍ୱାର୍ଥ ଖ୍ରୀ: ୧୭୮୭ରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ ଆସନ୍ତି । ପାଠରେ ମନ ନଥାଏ; ସାଧାରଣ ଛାତ୍ର । ପରୀକ୍ଷା ପ୍ରସ୍ତୁତ କରିବା ପରିବର୍ତ୍ତେ ଛୁଟିହେଲେ ବଣ ପାହାଡ଼ରେ ବୁଲିବା ଅପେକ୍ଷାରେ ଥାଆନ୍ତି । କେମ୍ବ୍ରିଜରୁ ଗ୍ରାଜୁଏଟ୍ ହୋଇ ବାହାରିବାବେଳକୁ ଜୀବନର ନିର୍ଦ୍ଦିଷ୍ଟ ଲକ୍ଷ୍ୟ କିଛି ନାହିଁ; ହାତରେ ଧନ ବି ନାହିଁ, ଓକିଲାତିର ମିଛ ବେପାର କରିବା ତ ସମ୍ଭବ ନୁହେଁ, ଧର୍ମଯାଜକ ହେବାର ଅଭିଳାଷ ଥିଲେ ବି ନିଜକୁ ପ୍ରଶ୍ନକରନ୍ତି—ସେ କାମ ପାଇଁ ଯୋଗ୍ୟତା ଅଛି ତ ? ସୈନ୍ୟ ହୋଇ ଦେଶସେବା କରିବାକୁ ମନ ବଳେ; କିନ୍ତୁ ବିଦେଶୀ ଭୂଇଁରେ ରୋଗ-ଶୋକରେ ସଢ଼ି ଅକାଳରେ ମରିବ କିଏ ? ମନ ଭିତରେ କେତେ ଦ୍ୱନ୍ଦ୍ୱ !

ଖ୍ରୀ: ୧୭୯୦-୧୭୯୧ରେ ଦୁଇଥର ଫ୍ରାନ୍ସ ଯାଆନ୍ତି । ଫ୍ରାନ୍ସର ବିପ୍ଳବୀ ଗୋଷ୍ଠୀ (Girondists)ଙ୍କ ସହ ଯୋଗଦିଅନ୍ତି । ଫରାସୀ-ବିପ୍ଳବକୁ ଏକଦା ସ୍ୱାଗତ କରିଥିଲେ ମଧ୍ୟ ଏହାର ଲୋମହର୍ଷଣକାରୀ ପରିଣାମ, ଅବିଶ୍ରାନ୍ତ ହତ୍ୟା ଓ ରକ୍ତପାତଯୋଗୁଁ ବିପ୍ଳବ ଉପରୁ ତାଙ୍କର ଆସ୍ଥା ତୁଟିଯାଏ । ଏହା ଫଳରେ ସେ ବିପ୍ଳବବାଦୀ କବି ଶେଲି ଓ ବାଇରନ୍‌ଙ୍କ ଦ୍ୱାରା ସମାଲୋଚିତ ହୁଅନ୍ତି ସତ; କିନ୍ତୁ ମୂଳରୁ ଫରାସୀ-ବିପ୍ଳବର ବିରୋଧୀ କବି ସ୍କଟ୍‌ଙ୍କ ସହିତ ତାଙ୍କର ବନ୍ଧୁତା ନିବିଡ଼ ହୁଏ ।

ଫ୍ରାନ୍ସରୁ ଫେରି ଭଉଣୀ ଡରୋଥୀଙ୍କ ସହ ଡୋର୍‌ସେଟ୍‌ରେ ବସବାସ କରନ୍ତି । କବି କୋଲରିଜ୍‌ଙ୍କ ସହ ଦେଖାହେବା ପରେ ସୋମାରସେଟ୍ ସାୟାରର କ୍ୱାଣ୍ଟକ୍ ହିଲ୍‌କୁ ଯାଆନ୍ତି । ସେଇଠି ସେ କୋଲରିଜ୍‌ଙ୍କ ସଖ୍ୟ ଲାଭକରନ୍ତି । ଉଭୟ କବି ସାଙ୍ଗହୋଇ ବୁଲି-ଯାଆନ୍ତି । ଏଇ ବନ୍ଧୁତ୍ୱରୁ ସୃଷ୍ଟି ହୁଏ 'ଲିରିକେଲ୍ ବ୍ୟାଲଡସ୍' । କେତେକ କ୍ଷେତ୍ରରେ ଆକସ୍ମିକ ଦୁର୍ଘଟଣା ତାଙ୍କ ଜୀବନର ଗତିପଥ ନିୟନ୍ତ୍ରଣ କରିଛି । ଜନୈକ ବନ୍ଧୁ କାଲ୍‌ଭର୍ଟଙ୍କର ଯକ୍ଷ୍ମାରୋଗରେ ମୃତ୍ୟୁ ଘଟେ । କବିଙ୍କ ପାଇଁ ସେ ଛାଡ଼ିଯାଇଥିଲେ ଦୁଇଶହ ପାଉଣ୍ଡ ଓ କବିତା ଲେଖିବାର ଅନୁରୋଧ । ଏହାହିଁ ହୋଇଛି ତାଙ୍କ କବିଜୀବନର ପାଥେୟ । ଅନ୍ୟ ଏକ ଆକସ୍ମିକ ଘଟଣା ହେଉଛି ଟୋରିଦଳରେ ଯୋଗଦେବା । ଏହା ଫଳରେ ସେ ଉଚ୍ଚ ସରକାରୀ ପଦରେ ଅଧିଷ୍ଠିତ ହୋଇଛନ୍ତି ଓ ପରେ ରାଜକବି (Poet Laureate)ଙ୍କ ଗୌରବ ପାଇଛନ୍ତି ।

ଶେଷ ପଚାଶ ବର୍ଷ କବି ନିଜର ପ୍ରିୟ ମାଟି 'ଲେକ୍‌ଡିଷ୍ଟ୍ରିକ୍ଟ'ରେ ହିଁ ବିତାଇଛନ୍ତି; ଅବିଶ୍ରାମ ଗତିରେ ଲେଖିଚାଲିଛନ୍ତି । ଆଦ୍ୟ ଜୀବନରେ ସେ କବିତା ଲେଖି ସମାଲୋଚିତ ହୋଇଥିଲେ; କିନ୍ତୁ କେବେ ଆତ୍ମବିଶ୍ୱାସ ହରାଇନଥିଲେ । ସ୍ତ୍ରୀ ମେରି ଓ ଭଗିନୀଙ୍କ

ସ୍ୱାଧୀନତା ତାଙ୍କୁ ପ୍ରେରଣା ଯୋଗାଇଛି । ଅବଶେଷରେ ସେ ସମସାମୟିକ ଇଂଲଣ୍ଡର ଶ୍ରେଷ୍ଠ କବି ଭାବରେ ସମ୍ମାନିତ ହୋଇଛନ୍ତି ।

ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ କବିତା : ସ୍କୁଲ-ଜୀବନରୁ ହିଁ କବିତା ଲେଖା ଆରମ୍ଭହୁଏ; ଆଦର୍ଶ ଥିଲେ ପୋପ୍ । କେମ୍ବ୍ରିଜରେ ପଢ଼ିବାବେଳେ କଲେଜ ପତ୍ରିକାରେ ଲେଖା ପ୍ରକାଶ ପାଏ । ଏହି ସମୟର କେତେକ ଲେଖା 'ଆନ୍ ଇଭ୍‌ନିଂ ଓ୍ୱାକ୍' (An Evening Walk) ଓ 'ଡେସ୍‌କ୍ରିପ୍‌ଟିଭ୍ ସ୍କେଚେସ୍' (Descriptive Sketches) ନାମରେ ପ୍ରକାଶିତ ହୁଏ । ଏହାର ଶୈଳୀରେ କୌଣସି ବିଶେଷତ୍ୱ ପରିଲକ୍ଷିତ ନହେଲେ ମଧ୍ୟ ଏଥିରେ କବିଙ୍କ ପ୍ରକୃତି-ପ୍ରୀତିର ଆଭାସ ମିଳେ । ଓ୍ୱାର୍ଡସ୍‌ଓ୍ୱାର୍ଥ ଓ କୋଲରିଜ୍ ଉଭୟଙ୍କ ମିଳିତ ଉଦ୍ୟମରେ ଉଭୟଙ୍କ ଲେଖା ବିଦ୍ଧନକରି ପ୍ରକାଶ ପାଏ 'ଲିରିକେଲ୍ ବ୍ୟାଲଡସ୍' (Lyrical Ballads, 1798) । ଏଇଥିରୁ ହିଁ କବିଙ୍କ ବଳିଷ୍ଠ ପ୍ରତିଭାର ପ୍ରଥମ ପରିଚୟ ମିଳେ । ଏଥିରେ ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ଉଣେଇଶଟି ଓ କୋଲରିଜ୍‌ଙ୍କର ଚାରୋଟି କବିତା ସନ୍ନିବିଷ୍ଟ । ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ ଅନ୍ୟ କେତେକ ନୂତନ ଲେଖା ସଂଯୋଗକରି ଖ୍ରୀ: ୧୮୦୦ରେ ଲିରିକେଲ୍ ବ୍ୟାଲଡ୍‌ସ୍‌ର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଥିଲେ । ଏଥିରେ ସଂଯୋଜିତ ଭୂମିକାରୁ ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥଙ୍କ କାବ୍ୟ-ଦର୍ଶନ ଜଣାଯାଏ ।

କବିଙ୍କର ଅନ୍ୟତମ ଶ୍ରେଷ୍ଠ ରଚନା 'ଦି ପ୍ରିଲ୍ୟୁଡ୍' (The Prelude) । ଏହା ଚଉଦ ଖଣ୍ଡରେ ବିଭକ୍ତ; ଆତ୍ମଜୀବନୀସମ୍ବଳିତ, ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ଏଥିରେ ଲେଖକଙ୍କ ବାଲ୍ୟକାଳରୁ ଖ୍ରୀ: ୧୮୦୫ (କବିଙ୍କୁ ୩୫ ବର୍ଷ) ପର୍ଯ୍ୟନ୍ତ ବିଭିନ୍ନ ଅନୁଭୂତି ଓ ମାନସିକ ଅବସ୍ଥାର ପରିଚୟ ମିଳେ । ଗ୍ରନ୍ଥର ବହୁଳାଂଶ ବିରକ୍ତିକର ହେଲେ ମଧ୍ୟ ପ୍ରକୃତି ସମ୍ପର୍କୀୟ ଅନୁଭୂତି ବର୍ଣ୍ଣନାବେଳେ କବିଙ୍କ ଭାବାବେଗ ତଥା ବଳିଷ୍ଠ ପ୍ରକାଶ-ଭଙ୍ଗୀ ପାଠକକୁ ଚମତ୍କୃତ କରେ । ଏହାର ଲେଖା ଖ୍ରୀ: ୧୭୯୯ରେ ଆରମ୍ଭ ହୋଇ ୧୮୦୫ରେ ଶେଷ ହୋଇଥିଲା । କବି 'ଦି ରିକ୍ଲୁଜ୍' (The Recluse) ନାମରେ ଏକ ଅତିକାୟ ଦାର୍ଶନିକ କାବ୍ୟଗ୍ରନ୍ଥର ପରିକଳ୍ପନା କରିଥିଲେ । ପୂର୍ବୋକ୍ତ 'ଦି ପ୍ରିଲ୍ୟୁଡ୍' ଏହାର ଭୂମିକା ଭାବରେ ପରିକଳ୍ପିତ ହୋଇଥିଲା । ରିକ୍ଲୁଜ୍‌ର ଅନ୍ୟ ତିନି ଖଣ୍ଡ ମଧ୍ୟରୁ ପ୍ରଥମ ଖଣ୍ଡ 'ହୋମ ଏଟ୍ ଗ୍ରାସ୍‌ମିୟାର୍' (Home at Grasmere) କବିଙ୍କ ମୃତ୍ୟୁର ବହୁବର୍ଷ ପରେ ଖ୍ରୀ: ୧୮୮୮ରେ ପ୍ରକାଶ ପାଇଥିଲା । ଖ୍ରୀ: ୧୮୧୪ରେ ପ୍ରକାଶିତ 'ଦି ଏକସ୍‌କର୍‌ସନ୍' (The Excursion) 'ରିକ୍ଲୁଜ୍'ର ଦ୍ୱିତୀୟ ଖଣ୍ଡ । 'ଦି ପ୍ରିଲ୍ୟୁଡ୍'ର ସରସତା ଏଥିରେ ନାହିଁ । ଅନୁଭୂତିର ଆନ୍ତରିକତା ଓ ପ୍ରକାଶଭଙ୍ଗୀର ସ୍ୱତଃସ୍ଫୂର୍ତ୍ତିତା ଅଭାବରେ ଏହା ଏକ ଚେଷ୍ଟାକୃତ ଅସଫଳ ପ୍ରୟାସ ବୋଲି ମନେହୁଏ । ତୃତୀୟ ଖଣ୍ଡଟି ପୂର୍ଣ୍ଣାଙ୍ଗ ହୋଇନଥିଲା । ଅବଶ୍ୟ କବି ଏ ଅଂଶରେ ସ୍ୱଲିଖିତ ଅଧିକାଂଶ କ୍ଷୁଦ୍ର କବିତା ସଂଯୋଜିତ କରିବାର ଲକ୍ଷ୍ୟ ରଖିଥିଲେ । ଏହିପରି ଭାବରେ କବି ନିଜର ସମସ୍ତ କାବ୍ୟକୃତିକୁ ଗୋଟିଏ ସୂତ୍ରରେ ବାନ୍ଧି ଏକ ଜୀବନୀମୂଳକ ମହାକାବ୍ୟ ଉପସ୍ଥାପନ କରିବାର ସ୍ୱପ୍ନ ଦେଖିଥିଲେ ।

'ଦି ଏକ୍ସକରସନ୍' ପ୍ରକାଶ ପରେ ପରେ କବିପ୍ରତିଭାର ଅବକ୍ଷୟ ଦେଖାଦେଇଛି । ସୃଷ୍ଟିର ପରିମାଣ ବୃଦ୍ଧି ପାଇଥିଲେ ମଧ୍ୟ ଗୁଣାତ୍ମକ ମାନ ହ୍ରାସପାଇଛି । 'ଦି ହ୍ୱାଇଟ୍ ଡୋ ଅଫ୍ ରିଲ୍‌ଷ୍ଟୋନ୍' (The White Doe of Rylstone, ୧୮୧୫), 'ଦି ୱାଗୋନାର୍' (The Waggoner : ୧୮୧୯), 'ପିଟର ବେଲ୍' (Peter Bell : ୧୮୧୯) ଓ 'ୟାରୋ ରିଭିଜିଟେଡ୍' (Yarrow Revisited : ୧୮୩୫) ଏହାର ଉଦାହରଣ ।

କବିଙ୍କ ବିଭିନ୍ନ ସମୟରେ ଲିଖିତ ଓ ବିଭିନ୍ନ ସଂକଳନରେ ପ୍ରକାଶିତ ସନେଟ୍‌ଗୁଛ୍ଛ 'ଏକ୍ଲେସିଆଷ୍ଟିକ୍ୟାଲ୍ ସନେଟସ୍' ଓ 'ଦି ରିଭର ଡାଡ଼ାନ୍' (The River Duddon : ୧୮୨୦)ରେ ପ୍ରକାଶ ପାଇଛି । ଉକ୍ତ ସଂକଳନ କବିଙ୍କର ଆଦ୍ୟ ଜୀବନର ସାଫଲ୍ୟ ସ୍ମରଣ କରାଇଦିଏ ।

**କବିତାର ବୈଶିଷ୍ଟ୍ୟ** : କବିତାର କଥାବସ୍ତୁ, ଶୈଳୀ ଓ ସୃଷ୍ଟିପ୍ରକ୍ରିୟା ସମ୍ବନ୍ଧରେ କବି ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କମତ ପ୍ରଣିଧାନଯୋଗ୍ୟ । କବିଙ୍କ ନିଜ ରଚନା ତଥା ସାଧାରଣ ଭାବରେ ରୋମାଣ୍ଟିକ୍ କବିତା ଅବବୋଧରେ ଏହା ସାହାଯ୍ୟ କରିଥାଏ । 'ଲିରିକେଲ୍ ବ୍ୟାଲଡ୍‌ସ୍'ର ଦ୍ୱିତୀୟ ସଂସ୍କରଣ (୧୮୦୦)ର ଭୂମିକା ଭାବରେ ଏହି ଆଲୋଚନା ସନ୍ନିବିଷ୍ଟ ।

ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ମତରେ ଜଣେ କବିର ବୋଧଶକ୍ତି ଅତ୍ୟନ୍ତ ତୀବ୍ର (Possessed of more than usual organic sensibility) । ସାଧାରଣ ମଣିଷର ହୃଦୟରେ ଯାହା ପ୍ରତିକ୍ରିୟା ସୃଷ୍ଟି କରିନପାରେ, ଜଣେ କବିର ହୃଦୟର ଉଦ୍‌ବେଳନ ପାଇଁ ତାହା ହୁଏତ ଯଥେଷ୍ଟ । ଜୀବନର ବିଭିନ୍ନ ମୁହୂର୍ତ୍ତରେ, ବିଭିନ୍ନ ପରିବେଶରେ କବି-ହୃଦୟରେ ତୀବ୍ର ଭାବାବେଗ ସୃଷ୍ଟି ହୋଇଥାଏ; କିନ୍ତୁ ଠିକ୍ ସେଇ ସେଇ ମୁହୂର୍ତ୍ତରେ କବିତା ଲେଖିଲେ ତାହା ଉତ୍ତମ କବିତା ହୁଏନାହିଁ । ଏଥିପାଇଁ ସମୟର ବ୍ୟବଧାନ ଦରକାର । ଏହି ବ୍ୟବଧାନ ମଧ୍ୟରେ ଏକ ସ୍ଥିର, ଶାନ୍ତ ମାନସିକ ଅବସ୍ଥାରେ କବି ଏହି ଆବେଗକୁ ସ୍ମୃତି-ପଟକୁ ଆଣେ (emotion recollected in tranquility) ଓ ସେ ସମ୍ବନ୍ଧରେ ଗଭୀର ଭାବରେ ଚିନ୍ତାକରେ (thought long and deeply) । ଏଇ ଅବସରରେ ମାନସିକ ପ୍ରଶାନ୍ତ ସ୍ଥାନରେ ଦେଖାଦିଏ ତୀବ୍ର ମାନସିକ ପ୍ରତିକ୍ରିୟା । ଏହିପରି ଏକ ମାନସିକ ଅବସ୍ଥାରୁ ଉତ୍ଥିତ ହୁଏ ଏକ ବଳିଷ୍ଠ ଆବେଗ, ଯାହାକି ମୂଳ ଆବେଗ (କବି ଯାହାକୁ ସ୍ମରଣ କରିଥିଲେ)ର ସମଧର୍ମୀ । ବର୍ତ୍ତମାନ ଏହି ଆବେଗ କବି ମନକୁ ଆବୃତ କରେ । ଏହାହିଁ କବିତାର ଜନ୍ମ ମୁହୂର୍ତ୍ତ ଓ ଏହିପରି ମାନସିକ ଅବସ୍ଥାରେ ହିଁ କବିକର୍ମ ଆଗେଇ ଚାଲେ । ଏହି ଆବେଗମୟୀ ମୁହୂର୍ତ୍ତରେ କବିକୁ କବିତାର ପ୍ରକାଶ ମାଧ୍ୟମ ସମ୍ବନ୍ଧରେ ଚିନ୍ତା କରିବାକୁ ପଡ଼େନାହିଁ । ଆବେଗ ତାର ଉପଯୁକ୍ତ ଭାଷା ଓ ଛନ୍ଦ ନେଇ ଆତ୍ମପ୍ରକାଶ କରେ—

ସତେ ଅବା କବିର ଏକମାତ୍ର କର୍ତ୍ତବ୍ୟ ହୁଏ ଜଣେ କଷ୍ଟାପର ଲେଖନକାର ଭାବରେ ତାହାକୁ ଧରିରଖିବା । ପୂର୍ବୋକ୍ତ ମାନସିକ ପ୍ରକ୍ରିୟା ମଧ୍ୟରେ ମୂଳ ଆବେଗର ପୁନଃସର୍ଜନ (re-creation) ହୋଇଥିଲେ ମଧ୍ୟ ତାହା ବୌଦ୍ଧିକତାରୁ ମୁକ୍ତ; ଏଣୁ ଏହା ମନର କଥା ନହୋଇ ହୃଦୟର ଉଚ୍ଛ୍ୱାସ ହୋଇ ହିଁ ରହେ; ଆୟାସସାଧ୍ୟ ନହୋଇ ସ୍ୱତଃସ୍ଫୂର୍ତ୍ତି ଭାବରେ ଆତ୍ମପ୍ରକାଶ କରେ । ଏଣୁ କବିତାର ସଂଜ୍ଞା ଦେବାକୁ ଯାଇ ଓ୍ୱାର୍ଡସ୍‌ଓ୍ୱାର୍ଥ କହିଛନ୍ତି, ଏହା ବଳିଷ୍ଠ ଅନୁଭୂତିର ପରିପ୍ରକାଶ, 'Spontaneous overflow of powerful feelings' । ସୁଶାନ୍ତ ମାନସିକ ଅବସ୍ଥାରେ ସ୍ମୃତିପଥାରୂଢ଼ ବିଗତ ମୁହୂର୍ତ୍ତର ଆବେଗ (emotion recollected in tranquility)ହିଁ ତାହାର ମୂଳ ଉତ୍ସ ।

ସାଧାରଣ ଦୈନନ୍ଦିନ ଜୀବନର ଘଟଣା ଓ ପରିବେଶ (incidents and situations from common life)କୁ କବି ବିଷୟବସ୍ତୁ ଭାବରେ ଗ୍ରହଣକରିଛନ୍ତି । ଗ୍ରାମ୍ୟ ଜୀବନ, ବିଶେଷକରି ସମାଜର ନିମ୍ନସ୍ତରରୁ ତାଙ୍କର 'ଚରିତ୍ର' ନିର୍ବାଚିତ । ଲୁସି, ମାଇକେଲ ଓ ସୁସାନ୍ ଏହାର ଉଦାହରଣ; କିନ୍ତୁ କଳ୍ପନାର ପୁଟ ଦେଇ ସାଧାରଣ ବସ୍ତୁକୁ ସେ ଅସାଧାରଣ ବିଗ୍ରହରେ ପରିଣତ କରନ୍ତି ।

ସାଧାରଣ ମଣିଷର କଥିତଭାଷାକୁ ଓ୍ୱାର୍ଡସ୍‌ଓ୍ୱାର୍ଥ ତାଙ୍କର ପ୍ରକାଶର ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି; କିନ୍ତୁ ସେ ରୋମାଣ୍ଟିକ୍ ଅନୁଭୂତି ପ୍ରକାଶକ୍ଷମ ଆବେଗଘନ, ବର୍ଣ୍ଣୋଜ୍ଜ୍ୱଳ ଶବ୍ଦ ନିର୍ବାଚନର ପକ୍ଷପାତୀ । ଲୁସି କବିତା (Strange fits of passion have I known, She dwelt among the untrodden ways, Three years she grew in sun and shower, A slumber did my spirit seal, Among all lovely things my love had been.) ଓ ପ୍ରକୃତି ବିଷୟକ କବିତାରେ ଭାଷା ଏହିଭଳି ସହଜ, ସରଳ ଓ ଗୀତିକବିତାର ଉଚ୍ଛ୍ୱାସ-ଭରା । ତାଙ୍କର କେତେକ ସନେଟ୍ ଓ ଦୀର୍ଘକବିତାର ଭାଷା ଗାମ୍ଭୀର୍ଯ୍ୟପୂର୍ଣ୍ଣ ହେଲେ ମଧ୍ୟ ସାଧାରଣ ମଣିଷର କଥିତଭାଷାଠାରୁ ବିଶେଷ ଭିନ୍ନ ନୁହେଁ ।

ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ପ୍ରକୃତିର କବି । ପ୍ରକୃତିର ଉପାସକ ଭାବରେ ସେ ଇଂରେଜୀ ସାହିତ୍ୟରେ ଅଦ୍ୱିତୀୟ । ସାଧାରଣ ଆଖିରେ ଯାହା ସ୍ଥାଣୁ ବା ନିର୍ଜୀବ, କବିଙ୍କ ଲେଖନୀରେ ତାହା ଜୀବନ୍ତ ତଥା ମହିମାନ୍ୱିତ । ଅନ୍ୟାନ୍ୟ କବି ପ୍ରକୃତିର ବାହ୍ୟ ସୌନ୍ଦର୍ଯ୍ୟରେ ମୁଗ୍ଧ ହେଉଥିବାବେଳେ ଓ୍ୱାର୍ଡସ୍‌ଓ୍ୱାର୍ଥ ତାହାର ଅନ୍ତଃସୌନ୍ଦର୍ଯ୍ୟ ଉଦ୍‌ଘାଟନ କରିଛନ୍ତି । ଗୋଟିଏ ଫୁଲଟିଏ ଭିତରେ ବି ତାଙ୍କ ପାଇଁ ଭାବନାର ଖୋରାକ ଭରିରହିଥାଏ ।

"To me the meanest flower that blows can give
Thoughts that do often lie too deep for tears."

ପ୍ରକୃତି ପ୍ରତି ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ଅନୁରକ୍ତିର ବିଭିନ୍ନ ସ୍ତର ଦେଖାଯାଏ । କୈଶୋରରେ ପ୍ରକୃତି କୋଳରୁ ସେ ପାଉଥିଲେ ମୁକ୍ତିର ଆନନ୍ଦ । ମାଛମାରିବା, ପକ୍ଷୀଧରିବା, ନୌକା ଚଳାଇବା ଭଳି ନାନା କ୍ରୀଡ଼ା-କୌତୁକ ମଧ୍ୟରେ ଚିତ୍ତବିନୋଦନ ପାଇଁ ପ୍ରକୃତି ଥିଲା ପ୍ରକୃଷ୍ଟ କ୍ଷେତ୍ର । ତା'ପରେ ଆସେ ଦ୍ୱିତୀୟ ପର୍ଯ୍ୟାୟ । କବି ଇନ୍ଦ୍ରିୟ ମାଧ୍ୟମରେ ପ୍ରକୃତିର ଆବେଦନ ଗ୍ରହଣକରିବାକୁ ସକ୍ଷମ ହୁଅନ୍ତି । ପ୍ରକୃତି ସହିତ ତାହାଙ୍କ ସମ୍ପର୍କ ନିବିଡ଼ତର ହୁଏ । ପ୍ରକୃତିକୁ ସେ ଭିନ୍ନଭିନ୍ନ ଭାବରେ ପର୍ଯ୍ୟବେକ୍ଷଣ କରନ୍ତି, ଅତି ବିଶ୍ୱସ୍ତ ଭାବରେ ପରିବେଷଣ ମଧ୍ୟ କରନ୍ତି । ଝରଣାର କଳନାଦ, ପକ୍ଷୀର ଗାନ ଓ ବନ-ପର୍ବତର ରୂପଶ୍ରୀ ତାଙ୍କୁ ମୁଗ୍ଧ କରେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ କବିଙ୍କର କଳ୍ପନାଶକ୍ତି ତେଣା ମେଲିଛି । ନଦୀ, ପର୍ବତ, ବୃକ୍ଷ-ଲତା ତାଙ୍କର କଳ୍ପନାର ଚକ୍ଷୁରେ ଆଉ ନିର୍ଜୀବ ନୁହେଁ— ପ୍ରାଣବନ୍ତ, ସୁନ୍ଦର ଓ ପବିତ୍ର । ଫେକୋଟିଏ ମାରିଲେ ପ୍ରକୃତିର ଗ୍ରୀବାରେ ଦରଜ ଲାଗିପାରେ ବୋଲି ସେ ଚମକିପଡ଼ନ୍ତି । ତା'ପରେ ଆସେ ଅନ୍ତିମ ପର୍ଯ୍ୟାୟ । ଏତେବେଳେ ପ୍ରକୃତି କେବଳ ଜୀବନ୍ତ ନୁହେଁ, ପ୍ରକୃତିର ପ୍ରତିଟି ଉପାଦାନ, ଏପରିକି ନିର୍ଜୀବ ବସ୍ତୁ ମଧ୍ୟରେ ସେ ଈଶ୍ୱରଙ୍କ ସତ୍ତା ଅନୁଭବ କରନ୍ତି । ଏହି ବିଶ୍ୱାସକୁ ସର୍ବେଶ୍ୱରବାଦ (Pantheism) କୁହାଯାଏ । ବିଭିନ୍ନ କବିତାରେ ଏହି ବିଶ୍ୱାସର ପ୍ରତିଫଳନ ତାହାଙ୍କୁ ରହସ୍ୟବାଦୀ (mystic) କବି ଭାବରେ ପରିଚିତ କରାଇଛି ।

ଓ୍ୱାର୍ଡ଼ସ୍‌ଓ୍ୱାର୍ଥ୍ ଆଶାବାଦୀ (Optimisric) କବି । ତାଙ୍କ ପ୍ରକୃତି ସମ୍ବନ୍ଧୀୟ କବିତା ପାଠକଲେ ହୃଦୟରେ ଅଫୁରନ୍ତ ଆନନ୍ଦ ତଥା ଆଶାବାଦ ସୃଷ୍ଟି ହୁଏ; ଗୋଟିଏ ସ୍ନିଗ୍ଧ ଆଦର୍ଶବାଦର ବଳୟ ଭିତରେ ପାଠକ ନିଜକୁ ଆବିଷ୍କାର କରେ ।

କବି ଆଖିରେ ପ୍ରକୃତି ଓ ମନୁଷ୍ୟ ଏକସୂତ୍ରରେ ଗ୍ରଥିତ; ଈଶ୍ୱରଙ୍କ ସତ୍ତା ବହନ କରି ଉଭୟେ ପବିତ୍ର । ଏଣୁ ପଲ୍ଲୀକୋଳର ସରଳ ନରନାରୀ ତାଙ୍କର ଅତ୍ୟନ୍ତ ଆଦରଣୀୟ । ଶିଶୁ ତ ସରଳତା ତଥା ପବିତ୍ରତାର ପ୍ରତିମୂର୍ତ୍ତି ସେଇଥିପାଇଁ ଶୈଶବର ଗୌରବ ଗାନ କରିବାବେଳେ କବିଙ୍କ ଲେଖନୀ ସତତ ମୁଖର । କବିଙ୍କ ଭାଷାରେ—

"Heaven lies about us in our infancy."

ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ କବିଗୌରବ ଅବିସମ୍ବାଦିତ ହେଲେ ମଧ୍ୟ ସମାଲୋଚକର ଆଖିରେ ତାଙ୍କର ଦୁର୍ବଳ ଦିଗଟି ଧରାପଡ଼େ । କେତେକଙ୍କ ମତରେ ପାଠକଙ୍କ ବିତୃଷ୍ଣା ଉଦ୍ରେକ କରେ କବିଙ୍କ ଆତ୍ମପ୍ରୌଢ଼ି (egoism) । କବି ନିଜେ ହିଁ ନିଜର ବହୁ କବିତାର କେନ୍ଦ୍ର । ସେକ୍‌ସପିଅର୍ ନିଜକଥା ପଦେହେଲେ ନ କହିବାକୁ ପସନ୍ଦ କରିଥିବା ସ୍ଥଳେ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ନିଜ ପିଲାଦିନ କଥା, ନିଜ ଅଭିଜ୍ଞତା, ନିଜ ବିଶ୍ୱାସ ଓ ଦର୍ଶନ ବଖାଣିବାରେ ମୁଖର । ପ୍ରକୃତିକବି ହେଲେ ମଧ୍ୟ ପ୍ରକୃତିର ସାମଗ୍ରିକ ରୂପ ତାଙ୍କ କବିତାରେ ଧରାପଡ଼େନାହିଁ । ତାଙ୍କ ପ୍ରକୃତି ଶାନ୍ତ କମନୀୟ, କିନ୍ତୁ ପ୍ରକୃତିର ଭୈରବ ରୂପଟି

ହିତ ସେ ଆଖି ବୁଜିଦେଇଛନ୍ତି । ତାଙ୍କ କବିତାରେ ହାସ୍ୟରସର ଏକାନ୍ତ ଅଭାବ ଅନୁଭୂତ ହୁଏ । ଏହି ଅଭାବ ହେତୁ ତାଙ୍କର ଦୀର୍ଘ କବିତାଗୁଡ଼ିକ କେତେକାଂଶରେ ବିରକ୍ତିକର ।

## ସାମୁଏଲ୍ ଟେଲ୍‌ର କୋଲରିଜ୍

(Samuel Taylor Coleridge : ୧୭୭୨—୧୮୩୪)

କବିଙ୍କର ଜନ୍ମ ଡେଭନ୍‌ସାୟାରର ଗୋଟିଏ ଧର୍ମଯାଜକ ପରିବାରରେ । ପିତା-ମାତାଙ୍କର ସେ କନିଷ୍ଠ ପୁତ୍ର, ତ୍ରୟୋଦଶ ସନ୍ତାନ । ପିତା ଜନ୍ କୋଲରିଜ୍ ଗୋଟିଏ ଗ୍ରାମାର୍ ସ୍କୁଲରେ ଶିକ୍ଷକତା ମଧ୍ୟ କରୁଥିଲେ । ପିଲାଦିନରୁ ତାଙ୍କର ପ୍ରକୃତି ଓ ବ୍ୟବହାର ସମସ୍ତଙ୍କୁ ବିସ୍ମିତ କରୁଥିଲା । ଶୈଶବରୁ ସେ ବୟସ୍କଭଳି ବ୍ୟବହାର କରୁଥିଲେ । ତାଙ୍କର ଜ୍ଞାନ-ପିପାସା ତଥା ସ୍ମରଣଶକ୍ତି ଥିଲା ଅତି ତୀବ୍ର । ପାଞ୍ଚବର୍ଷ ବେଳକୁ ସେ ସମଗ୍ର ବାଇବେଲ୍ ଓ ଆରବ୍ୟ କାହାଣୀ ପଢ଼ିସାରିଥିଲେ; ସେଥିରୁ ଅନେକ ବିଷୟ ମନେରଖିଥିଲେ ମଧ୍ୟ । ନଅ ବର୍ଷରେ ସେ ପିତୃହୀନ ହୁଅନ୍ତି । ଜଣେ ଅସହାୟ ପିମ୍ଭ ଭାବରେ ତାଙ୍କର ଶିକ୍ଷା ବ୍ୟବସ୍ଥା ହୁଏ ଏକ ଦାତବ୍ୟ ଅନୁଷ୍ଠାନ କ୍ରିଷ୍ଟ ହସ୍‌ପିଟାଲରେ । ଚାର୍ଲସ ଲ୍ୟାମ୍ବଙ୍କ ସହ ଏଇଠି ତାଙ୍କର



ବନ୍ଧୁତା । କୋଲରିଜ୍ ସାଙ୍ଗସାଥୀଙ୍କ ସହ ଖେଳକୌତୁକରେ ମାତିପାରନ୍ତି ନାହିଁ । ଶୈଶବରେ ଯେଉଁ ପିଲା ପଡ଼ିଆର ଲମ୍ବା ଘାସଗଛ ଉପରେ ଲାଠି ଚାଳନାକରି ନିଜକୁ ଖ୍ରୀଷ୍ଟ ଆନ ଜଗତର ରକ୍ଷାକର୍ତ୍ତା ମନେକରୁଥିଲା, ସ୍କୁଲ ଛାତ ଉପରେ ଏବେ ତାକୁ ଚଲ ବାଦଲର ଗତି ଭିତରେ ନିଜର ରୋମାଣ୍ଟିକ୍ ମନର କଳ୍ପନାକୁ ମୂର୍ତ୍ତିମନ୍ତ କରି ଶୋଇ ରହିବାର ଦେଖାଯାଏ । ଊଣେଇଶ ବର୍ଷ ବୟସରେ ସେହିପରି ଜଣେ ଗରିବ ଛାତ୍ରଭାବରେ ସେ କେମ୍ବ୍ରିଜରେ ଭର୍ତ୍ତି ହୁଅନ୍ତି । ବହୁ ବୃଦ୍ଧ ଅଧ୍ୟାପକଙ୍କଠାରୁ ଏତେବେଳକୁ ସେ ଅଧିକ ବହି ପଢ଼ିସାରିଥାନ୍ତି; କିନ୍ତୁ କେମ୍ବ୍ରିଜରୁ ଡିଗ୍ରୀ ପାଇବା ସମ୍ଭବ ହୁଏନାହିଁ । ଖ୍ରୀ: ୧୭୯୪ରେ ସେ ସେଠାରୁ ବିଦାୟ ନିଅନ୍ତି । ଏହି ସମୟରୁ କବି ସାଦି (Southey) ଙ୍କ ସହ ତାଙ୍କର ବନ୍ଧୁତା । ସାଦିଙ୍କ ଶାଳୀଙ୍କୁ ସେ ବିବାହ କରନ୍ତି । ଏହା ପରେ ପରେ କବିଙ୍କ ଚରିତ୍ରରେ ଏକପ୍ରକାର ଅନବସ୍ଥିତତା ଦେଖାଯାଏ । କୌଣସି ଗୋଟିଏ କାମରେ ନିଷ୍ଠାର ସହ ଲାଗିବା ତାଙ୍କ ପକ୍ଷରେ ସମ୍ଭବ ହୁଏନାହିଁ । ଏ ଭିତରେ ଜର୍ମାନୀ ଓ ରୋମ୍‌ରେ ଅଧ୍ୟୟନ ପାଇଁ କିଛି ସମୟ କଟାନ୍ତି । କିଛିକାଳ 'ଦି ଫ୍ରେଣ୍ଡସ୍' ପତ୍ରିକାର ସମ୍ପାଦନା କରନ୍ତି (୧୮୦୯-୧୮୧୦) ।

ସତ୍ୟ ଓ ସ୍ୱାଧୀନତାର ପ୍ରତିଷ୍ଠା ଏ ପତ୍ରିକାର ଉଦ୍ଦେଶ୍ୟ । ବକ୍ତୃତା ଦେବାପାଇଁ ବହୁ ଆହ୍ୱାନ ମିଳେ; କିନ୍ତୁ କବି ଯଥାସମୟରେ ଉପସ୍ଥିତ ହୋଇ ନ ଥିବାରୁ ଆଗନ୍ତୁ ଶ୍ରୋତା ତାଙ୍କ ଆଡ଼କୁ ମୁହଁ ଲେଉଟାନ୍ତି । ତୀବ୍ର ଆର୍ଥିକ ଅନଟନ ଭିତରେ ସ୍ତ୍ରୀ ଓ ପିଲାଙ୍କୁ ବନ୍ଧୁ ସାଉଦିଙ୍କ ଦାୟିତ୍ୱରେ ଛାଡ଼ିଦେବାକୁ ପଡ଼େ । କ୍ରମେ ଜୀବନରେ ଦୁର୍ଯୋଗ ଘନେଇଆସେ ।

ପିଲାଦିନର ସ୍ନାୟୁରୋଗରୁ ତାଙ୍କର ଅଫିମସେବା । କ୍ରମେ ଏହା ଅଭ୍ୟାସରେ ପରିଣତ ହୋଇଯାଏ । ଏହାହିଁ ଅଧିକ ଦୁର୍ଯୋଗକୁ ଡାକିଆଣେ ।

ସମସ୍ତ ଦୁର୍ଯୋଗ ମଧ୍ୟରେ ଓ୍ୱାର୍ଡସ୍‌ଓ୍ୱାର୍ଥ ଓ ତାଙ୍କ ଭଉଣୀ ଡରୋଥିଙ୍କ ବନ୍ଧୁତା ବ୍ୟତୀତ କବିତା ଲେଖାରୁ ସେ ଅସୀମ ଶାନ୍ତି ପାଇଛନ୍ତି । କ୍ୱାଣ୍ଟକ୍‌ହିଲ୍‌ରେ ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ସହ ବନ୍ଧୁତାରୁ ଲିରିକେଲ୍ ବ୍ୟାଲାଡ଼ସ୍ (୧୭୯୮) ପ୍ରକାଶିତ ହୋଇଥିଲା । କବିତା ଲେଖି ଅର୍ଥ ଉପାର୍ଜନର ସ୍ୱପ୍ନ ସେ କେବେ ଦେଖିନାହାନ୍ତି ।

ଅମାୟିକ ଭଦ୍ର ବ୍ୟବହାର ପାଇଁ କବି ସମସାମୟିକ ବିଶିଷ୍ଟ ଲେଖକଙ୍କର ଶ୍ରଦ୍ଧା ଓ ଭକ୍ତି ଲାଭକରିଛନ୍ତି । ତାଙ୍କର ଅସମ୍ଭବ ବାକ୍‌ପଟୁତା ହେତୁ ବହୁ ବନ୍ଧୁ ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ । ଏ ଦୃଷ୍ଟିରୁ ସେ ଡକ୍‌ଟର ଜନସନ୍‌ଙ୍କ ସହ ତୁଳନୀୟ । ଆଲୋକ ଓ ଅନ୍ଧକାର ସହ ଖେଳ ଖେଳି ଜୀବନ ବିତାଇଥିବା ଏହି ମହାନ୍ ପ୍ରତିଭା ସମ୍ପର୍କରେ ଚାର୍ଲ୍‌ସ୍ ଲ୍ୟାମ୍ବ୍ ଯଥାର୍ଥରେ କହିଛନ୍ତି, "an archangel little damaged !"

## କୋଲରିଜ୍‌ଙ୍କ କାବ୍ୟପ୍ରତିଭା

କବିଙ୍କ ପ୍ରଥମ କବିତା ସଂକଳନ 'ପଏମ୍‌ସ୍ ଅନ୍ ଭେରିଆସ୍ ସବ୍‌ଜେକ୍‌ଟ୍‌ସ' (Poems on Various Subjects)ର ନାମକରଣରୁ କବିତାର ବିଷୟବସ୍ତୁ ସମ୍ବନ୍ଧରେ ସୂଚନା ମିଳେ । ଏଗୁଡ଼ିକ ମଧ୍ୟମ ଧରଣର ସୃଷ୍ଟି । ତାଙ୍କ ଅସାଧାରଣ କବିପ୍ରତିଭାର ପ୍ରଥମ ବଳିଷ୍ଠ ସ୍ୱାକ୍ଷର ଲିରିକେଲ୍ ବ୍ୟାଲାଡ୍‌ସ୍‌ରୁ ହିଁ ମିଳିଥିଲା । ଏଥିରେ ସନ୍ନିବିଷ୍ଟ କୋଲରିଜ୍‌ଙ୍କ ଚାରୋଟି କବିତା ମଧ୍ୟରୁ 'ଦି ରାଇମ୍ ଅଫ୍ ଦି ଏନ୍‌ସେଣ୍ଟ୍ ମେରିନାର୍' (The Rime of the Ancient Mariner) ଅନ୍ୟତମ ।

'ଦି ରାଇମ୍ ଅଫ୍ ଦି ଏନ୍‌ସେଣ୍ଟ୍ ମେରିନାର୍' କବିଙ୍କ ଅନ୍ୟତମ ବିଶିଷ୍ଟ କୃତି । କବିଙ୍କର ଏକ ସ୍ୱପ୍ନବୃତ୍ତାନ୍ତ ଉପରେ ଏହାର କଥାବସ୍ତୁ ଆଧାରିତ । କଳ୍ପନାର ସାହାଯ୍ୟରେ କବି ଯେଉଁ ରହସ୍ୟମୟ ରୋମାଣ୍ଟିକ୍ ପରିବେଶ ସୃଷ୍ଟି କରିଛନ୍ତି, ତା ଭିତରେ ସ୍ୱପ୍ନର ବିଭିନ୍ନ ବିଚ୍ଛିନ୍ନ ଘଟଣା ଐକ୍ୟସୂତ୍ରରେ ଗ୍ରଥିତ । ଗାଥାକବିତା ଭାବରେ ଏହାକୁ ଗ୍ରହଣ କରାଯାଇପାରେ । ଗାଥାର ନାୟକ 'ଏନ୍‌ସେଣ୍ଟ ମେରିନାର୍'ର ମୁଖରେ ହିଁ କଥାବସ୍ତୁ ବିବୃତ । ବିବାହଭୋଜିରେ ଯୋଗଦେବାକୁ ଇଚ୍ଛୁକ ତିନିଜଣ ଅତିଥିଙ୍କ ମଧ୍ୟରୁ ଜଣକୁ ଅଟକାଇ ସେ ନିଜର କାହାଣୀ କହି ଚାଲିଛି—

କେତେକ ସହଯାତ୍ରୀଙ୍କ ସହ ସେ ସମୁଦ୍ରଯାତ୍ରା କରେ । ଜାହାଜ ଦକ୍ଷିଣ ମେରୁର ବରଫଘେରା ଅଞ୍ଚଳରେ ପଡ଼ିରହେ । ଏହି ସମୟରେ ଆଲବାଟ୍ରସ୍ ନାମକ ପକ୍ଷୀଟିଏ ଆଶାର ସଙ୍କେତ ନେଇ ଦେଖାଦିଏ । ପରିସ୍ଥିତିର ଉନ୍ନତି ଘଟେ । ଏନ୍‌ସେଣ୍ଟ୍-ମେରିନାର୍ କିନ୍ତୁ ମନ୍ଦବୃତ୍ତି-ପ୍ରଣୋଦିତ ହୋଇ ପକ୍ଷୀଟିକୁ ସ୍ୱାଗତ କରିବା ପରିବର୍ତ୍ତେ ତାର ପ୍ରାଣନାଶ କରେ । ଏଇ ଅପରାଧ ହୁଏ ତାର କାଳ । ଜାହାଜଟି ଉତ୍ତରଆଡ଼କୁ ମୁହାଇଁ ବିଷୁବ ଅଞ୍ଚଳରେ ସ୍ଥିରହୋଇ ଅଟକିଯାଏ । ଏନ୍‌ସେଣ୍ଟ୍ ମେରିନାରକୁ ଛାଡ଼ି ଅନ୍ୟ ସମସ୍ତେ ମୃତ୍ୟୁ କବଳିତ ହୁଅନ୍ତି । ଅନନ୍ତ ସମୁଦ୍ର ମଧ୍ୟରେ ଏଇ ଏକାକୀ ନାବିକଟିର ଅନୁଭୂତି ବଡ଼ ବିସ୍ମୟକର । ନାନା ଭୌତିକ ଶବ୍ଦ ସେ ଶୁଣେ; ଅତିପ୍ରାକୃତିକ ଦୃଶ୍ୟ ଦେଖିବାକୁ ପାଏ । ଏ ଭିତରେ ବହୁ ଯୁଗ ବିତିଯାଏ । ପୁଣି ଆସେ ଗୋଟାଏ ପରିବର୍ତ୍ତନ । ଜାହାଜ ଚାଲିବାକୁ ଆରମ୍ଭ କରେ । ମୃତବ୍ୟକ୍ତି ଉଠିବସନ୍ତି । ପୁଣି ଦୁର୍ଘଟଣା, ପୁଣି ବିସ୍ମୟ । କୂଳରେ ପହଞ୍ଚି ଜାହାଜଟି ବୁଡ଼ିଯାଏ । ସହଯାତ୍ରୀଦଳ ପୁଣି ଉଭେଇଯାଆନ୍ତି । ସେଇ ଦିନଠୁ ଏନ୍‌ସେଣ୍ଟମେରିନାର ତାର ଏହି ବିସ୍ମୟକର ଅଭିଜ୍ଞତା କହିବାକୁ ଅସ୍ଥିର ପ୍ରାଣରେ ଘୂରିବୁଲେ ।

କବିତାଟିରେ ଅତିଭୌତିକ ଉପାଦାନର ପ୍ରାଧାନ୍ୟ ଥିଲେ ମଧ୍ୟ କବି ତାହାକୁ ବାସ୍ତବ ଓ ବିଶ୍ୱାସ୍ୟ କରି ରୂପ ଦେଇ ପାରିଛନ୍ତି । ଏଥିରେ ବର୍ଣ୍ଣିତ ବିଭିନ୍ନ ଦୃଶ୍ୟ ତାହାଙ୍କ ଅସାଧାରଣ କଳ୍ପନାଶକ୍ତିର ପରିଚାୟକ । ସମୁଦ୍ର ବର୍ଣ୍ଣନାର ପଟାନ୍ତର ନାହିଁ । ଦୀର୍ଘ ବର୍ଣ୍ଣନା ଦେବା ଅପେକ୍ଷା ସୂଚନା ମାଧ୍ୟମରେ କବି ପାଠକର କଳ୍ପନାକୁ ଉଦ୍ଦୀପିତ କରିଥାଆନ୍ତି । ଏହାର ଭାଷା ଓ ଛନ୍ଦ ମଧ୍ୟ ବିଷୟବସ୍ତୁ ସହ ଏଭଳି ଖାପଖାଇଛି ଯେ ତାହାକୁ ସମ୍ପୂର୍ଣ୍ଣ ନିଖୁଣ କୁହାଯାଇପାରେ ।

କବିଙ୍କର ଅନ୍ୟ ଦୁଇଟି ଅମର କୃତି 'କ୍ରିଷ୍ଟାବେଲ' (Christabel) ଓ 'କୁବ୍‌ଲା ଖାଁ' (Kubla Khan) । ପ୍ରଥମଟିର ଲେଖା ଖ୍ରୀ: ୧୭୯୭ରେ ଆରମ୍ଭ ହୋଇଥିଲା; ଅନ୍ୟଟିର ରଚନାକାଳ ଖ୍ରୀ: ୧୭୯୮ । ବସ୍ତୁତଃ କୋଲରିଜ୍‌ଙ୍କ ଶ୍ରେଷ୍ଠ ସୃଷ୍ଟି ଏଇ ଦୁଇବର୍ଷ ମଧ୍ୟରେ ହିଁ ପରିକଳ୍ପିତ ବା ରଚିତ ହୋଇଥିଲା ।

'କ୍ରିଷ୍ଟାବେଲ'ର କଥାବସ୍ତୁ ମଧ୍ୟ 'ଏନ୍‌ସେଣ୍ଟ୍ ମେରିନା'ର ପରି ଅତିପ୍ରାକୃତ ବିଷୟକୁ କେନ୍ଦ୍ରକରି ପରିକଳ୍ପିତ । ଏହା ରହସ୍ୟ ଓ ରୋମାଞ୍ଚରେ ଭରପୂର । କ୍ରିଷ୍ଟାବେଲ କାହାଣୀଟିର ନାୟିକା । ଜେରାଲଡ଼ାଇନ୍ ନାମକ ଜଣେ ଡାକିନୀ (Witch) ସୁନ୍ଦରୀ ନାରୀବେଶରେ ତାକୁ କବଳିତ କରିବାକୁ ଚେଷ୍ଟାକରେ; କିନ୍ତୁ କ୍ରିଷ୍ଟାବେଲ୍‌ର ମାତାଙ୍କ ପ୍ରେତାତ୍ମା ତାକୁ ରକ୍ଷାକରେ । କବିତାଟି ଅସମ୍ପୂର୍ଣ୍ଣ । କଥାବସ୍ତୁ ଆରମ୍ଭ ହେବା ଅବସ୍ଥାରେ ହିଁ ରହିଯାଇଛି । ଏହାର ଦ୍ୱିତୀୟ ଖଣ୍ଡ ଖ୍ରୀ: ୧୮୦୦ରେ ଲେଖାହୋଇଥିଲା । ଖ୍ରୀ: ୧୮୧୬ ପର୍ଯ୍ୟନ୍ତ କବିତାଟି ଅପ୍ରକାଶିତ ଥିଲା । ଅପୂର୍ଣ୍ଣ ହେଲେ ମଧ୍ୟ ଏହାର କାବ୍ୟିକ ଗୌରବ ଊଣା ନୁହେଁ । ଏହା ଅଷ୍ଟମାତ୍ରିକ ଯୁଗ୍ମକ (Octosyllabic Couplet) ରେ ଲିଖିତ । ଏହି ଛନ୍ଦ କ୍ରିଷ୍ଟାବେଲ୍‌ମିଟାର୍ ନାମରେ ସୁପରିଚିତ ।

'କୁବଲା ଖାଁ' କବିତାଟି ରୋମାଣ୍ଟିକ୍ କବିଙ୍କର ଗୋଟିଏ ସ୍ୱପ୍ନଜଗତର ଚିତ୍ର ପ୍ରଦାନ କରେ । ବସ୍ତୁତଃ କବିତାଟି ସ୍ୱପ୍ନରେ ହିଁ ରଚିତ । କବିତାଟି ଯେଉଁ ପରିବେଶରେ ରଚିତ ହୋଇଥିଲା, ତା ମଧ୍ୟ କୌତୂହଳପ୍ରଦ । କୋଲରିଜ୍ ଚୌକିରେ ବସି ପାର୍ଚସ୍ (Purchas)ଙ୍କ 'ପିଲଗ୍ରିମେଜ୍'ରୁ ଜାଣ୍ଡୁ (Xanadu)ରେ କୁବ୍ଲା ଖାଁଙ୍କର ବିଳାସହର୍ମ୍ୟ ନିର୍ମାଣ ବିଷୟ ପଢ଼ୁ ପଢ଼ୁ ଅଫିମ ନିଶାରେ ଶୋଇପଡ଼ନ୍ତି । ସ୍ୱପ୍ନରେ ସେ ସ୍ୱୟଂ ପ୍ରତ୍ୟକ୍ଷ କରନ୍ତି ଜାଣ୍ଡୁର ସେଇ କଳ୍ପଲୋକ—ପାହାଡ଼, ଝରଣା, ଅରଣ୍ୟର ଅପରୂପ ସୌନ୍ଦର୍ଯ୍ୟ ମଧ୍ୟରେ କୁବଲା ଖାଁର ବିଳାସକକ୍ଷ । ସ୍ୱପ୍ନରେ ହିଁ କବିତା ରଚିତ ହୁଏ । ନିଦରୁ ଉଠି କବି କାଳି-କଲମରେ ଲେଖିରଖିବାର ଉଦ୍ୟମ କରନ୍ତି ମାତ୍ର ; କିନ୍ତୁ ଲେଖାଟି ସମ୍ପୂର୍ଣ୍ଣ ହୋଇପାରିଲାନାହିଁ, ବ୍ୟବସାୟ ସଂକ୍ରାନ୍ତରେ କୌଣସି ବ୍ୟକ୍ତି ପହଞ୍ଚି ଏଥିରେ ବ୍ୟାଘାତ ସୃଷ୍ଟି କରିବାରୁ ସବୁଦିନ ପାଇଁ 'କୁବ୍ଲା ଖାଁ' ଅସମ୍ପୂର୍ଣ୍ଣ ରହିଲା ।

ପୂର୍ବୋକ୍ତ କାନ୍ତକାନ୍ତି କବିତା ବ୍ୟତୀତ 'ଫ୍ରଷ୍ଟ ଏଟ୍ ମିଡ୍‌ନାଇଟ୍' (Frost at Midnight), 'ଫ୍ରାନ୍ସ : ଏନ୍ ଓଡ୍' (France : An Ode), 'ଡିଜେକ୍‌ସନ୍' (Dejection) ପରି କେତେକ ସାର୍ଥକ କବିତା ରହିଛି । କୋଲରିଜ୍ ଓ ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ପରି ସେ ଫରାସୀ-ବିପ୍ଲବର ସାମ୍ୟ ଓ ମୈତ୍ରୀ ଧ୍ୱନିରେ ଉତ୍ସାହିତ ହୋଇଥିଲେ ; କିନ୍ତୁ ଅମାନୁଷିକ ହତ୍ୟାକାଣ୍ଡ ତାଙ୍କ ଆଖି ଖୋଲିଦେଇଥିଲା । କେତେକ କବିତାରେ ସେ ତାର ବିରୋଧ କରିବାକୁ ଭୁଲିନାହାନ୍ତି । 'ଫ୍ରାନ୍ସ: ଏନ୍ ଓଡ୍' ଏହାର ଏକ ଉଦାହରଣ ।

କଳ୍ପନା, ସ୍ୱପ୍ନ, ରହସ୍ୟ (mystery), ଅତିପ୍ରାକୃତ ଉପାଦାନ ଓ ମଧ୍ୟଯୁଗୀୟ ପରିବେଶ କୋଲରିଜ୍‌ଙ୍କ କବିତାର ବିଶିଷ୍ଟ ଲକ୍ଷଣ । କଳ୍ପନା ହିଁ ଏହାର କେନ୍ଦ୍ରବିନ୍ଦୁ । ଓ୍ୱାର୍ଡ଼ସ୍‌ଓ୍ୱାର୍ଥ୍‌ଙ୍କ ପରି କୋଲରିଜ୍ ଅତିମାତ୍ରାରେ କଳ୍ପନାପ୍ରବଣ । ଅତିପ୍ରାକୃତ ଓ ମଧ୍ୟଯୁଗୀୟ ଉପାଦାନକୁ କଳ୍ପନାର ତୂଳୀସ୍ପର୍ଶରେ ସେ ବିଶ୍ୱାସ୍ୟ କରି ଗଢ଼ିତୋଳିପାରନ୍ତି । ପାଠକ କବିତା ପାଠକଲାବେଳେ ଏଇ ଅବାସ୍ତବ ଉପାଦାନକୁ ଆଦରରେ, ଆଗ୍ରହରେ ଗ୍ରହଣ କରିନିଏ । କବି ଏହାକୁ ଇଚ୍ଛାକୃତ ଅବିଶ୍ୱାସ ନିବୃତ୍ତି (willing suspension of disbelief) କହନ୍ତି । ପ୍ରକୃତି ଓ ମାନବ ମଧ୍ୟ ଏଇ କଳ୍ପନାର କାଉଁରି ସ୍ପର୍ଶରେ ରହସ୍ୟମୟ ହୋଇଉଠେ ।

ଓ୍ୱାର୍ଡ଼ସ୍‌ଓ୍ୱାର୍ଥ୍‌ଙ୍କ ପରି କୋଲରିଜ୍ ପ୍ରକୃତିପ୍ରେମୀ । ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ପରି ସେ ପ୍ରକୃତି ମଧ୍ୟରେ ଈଶ୍ୱରଙ୍କ ସତ୍ତା ଅନୁଭବ କରିଛନ୍ତି ; କିନ୍ତୁ ପରେ ତାଙ୍କର ଦୃଷ୍ଟିଭଙ୍ଗୀ ବଦଳିଛି । ସେ ମନେକରିଛନ୍ତି, ପ୍ରକୃତିର କିଛି ଚୈତନ୍ୟ ନାହିଁ । ପ୍ରକୃତିର ସମସ୍ତ ସୌନ୍ଦର୍ଯ୍ୟ କବିର ବ୍ୟକ୍ତିନିଷ୍ଠ ଅନୁଭୂତିର ପ୍ରତିଫଳନ ମାତ୍ର :

> O Lady ! We receive but what we give
> And in our life alone does Nature live:
> Ours is her wedding garment, Ours her shroud.

ଆଖ୍ୟାନଧର୍ମୀ ବା ଗାଥାଧର୍ମୀ ରଚନାକ୍ଷେତ୍ରରେ କୋଲରିଜ୍ ଏକ ବରିଷ୍ଠ ପ୍ରତିଭା । ଛନ୍ଦ ଓ ଭାଷାର ପ୍ରୟୋଗରେ ସେ ଏକ ଉଦ୍ଭଟ ଜଗତ ସୃଷ୍ଟି କରିପାରନ୍ତି । ତାଙ୍କ କବିତାର ସାଙ୍ଗୀତିକ ଆବେଦନ ଶ୍ରୋତାକୁ ମନ୍ତ୍ରମୁଗ୍ଧ କରେ; ଚିତ୍ରକଳ୍ପଗୁଡ଼ିକ ସେଇଭଳି ପ୍ରଭାବଶାଳୀ ।

କବିତା ବ୍ୟତୀତ କୋଲରିଜ୍ 'ରିମୋର୍ଷ' (Remorse) ନାମକ ନାଟକଟିଏ ମଧ୍ୟ ଲେଖିଛନ୍ତି । ଏହାର ସାହିତ୍ୟିକ ମୂଲ୍ୟ ବିଶେଷ କିଛି ନାହିଁ । 'ବାୟୋଗ୍ରାଫିଆ ଲିଟାରିଆ' (Biogrphia Literaria) ଲେଖକଙ୍କର ଅନ୍ୟତମ ଯୁଗାନ୍ତକାରୀ ଗଦ୍ୟରଚନା ।

## ରବର୍ଟ ସାଦି

(Robert Southey: ୧୭୭୪-୧୮୪୩)

ୱାର୍ଡସ୍‌ୱାର୍ଥ ଓ କୋଲରିଜ୍‌ଙ୍କ ବନ୍ଧୁଭାବରେ ରବାର୍ଟ ସାଦି ସୁପରିଚିତ । କବିଭାବରେ ସେ ବିସ୍ମୃତପ୍ରାୟ; କିନ୍ତୁ ନିଜ ଜୀବନକାଳ ମଧ୍ୟରେ ସେ ରାଜକବି (Poet Laureate)ର ସମ୍ମାନ ଅର୍ଜନ କରିଥିଲେ । ଛାତ୍ରଜୀବନରୁ ତାଙ୍କର ସ୍ୱାଧୀନ ମନୋଭଙ୍ଗୀର ପରିଚୟ ମିଳିଥିଲା । ଏଥିପାଇଁ ଅକ୍‌ସ୍‌ଫୋର୍ଡର ପରିଚାଳକଙ୍କ ସହିତ ମନୋମାଳିନ୍ୟ ଘଟେ—ତାଙ୍କୁ ବିଶ୍ୱବିଦ୍ୟାଳୟ ଛାଡ଼ିବାକୁ ପଡ଼େ । ବହୁ ଗ୍ରନ୍ଥ ଅଧ୍ୟୟନ ତାଙ୍କର ଅଭ୍ୟାସଗତ । ସେହିପରି ସେ ବହୁ ଗ୍ରନ୍ଥର ରଚୟିତା । ପ୍ରତିଦିନ କିଛି ଲେଖିବାର ସଂକଳ୍ପ ରଖି ସେ ପ୍ରାୟ ଏକଶହ ନଅଖଣ୍ଡ ପୁସ୍ତକ ରଚନା କରିଥିଲେ । ନିଜ ପରିବାରର ଦାୟିତ୍ୱ ସହିତ ବନ୍ଧୁ କୋଲରିଜ୍‌ଙ୍କ ପରିବାରର ଦାୟିତ୍ୱ ତୁଲାଇବା ପାଇଁ ଅଧିକ କିଛି ଲେଖିବାର ଆବଶ୍ୟକତା ଥିଲା; ନୂଆ କିଛି ଭାବଧାରା ମନକୁ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବା ସମ୍ଭବ ନଥିଲା ।

ସାଦିଙ୍କ କବିତାର ଏକ ବୈଶିଷ୍ଟ୍ୟତାର ପୃଷ୍ଠଭୂମି । ସୁଦୂରର ମୋହ ତାଙ୍କଠାରେ ଅତି ତୀବ୍ର । ଅମିତ୍ରାକ୍ଷର ଛନ୍ଦରେ ଲିଖିତ ଦୀର୍ଘ କବିତା 'ଥାଲବା' (Thalaba)ର କଥାବସ୍ତୁ ଏକ ଆରବ୍ୟ କାହାଣୀ ଉପରେ ଆଧାରିତ । 'ଦି କର୍ସ ଅଫ୍ କେହାମା' (The Curse of Kehama)ର ଉତ୍ସ ଭାରତୀୟ ପୁରାଣ । 'ମୋଡକ୍' (Modoc)ର ନାୟକ ୱେଲ୍‌ସ୍‌ର ଜଣେ ଦୁଃସାହସୀ ଯୁବରାଜ । ଅନ୍ୟ ଏକ ଗାଥା-ଧର୍ମୀ ଦୀର୍ଘ କବିତା 'ରୋଡେରିକ୍' (Roderick) ତାଙ୍କର ସଫଳ କୃତି । ଏହା ଗୋଥିକ୍ ଜୀବନ ଉପରେ ଆଧାରିତ ।

ଏହିପରି ଭାବରେ ବିଭିନ୍ନ ଦୂରଦେଶ, ତାର ସଭ୍ୟତା ଓ ପୌରାଣିକ କାହାଣୀ ତାଙ୍କର ପ୍ରିୟବସ୍ତୁ ଥିଲା; କିନ୍ତୁ ସେ ସମ୍ବନ୍ଧୀୟ ଜ୍ଞାନ ଲାଇବ୍ରେରିର ପୁସ୍ତକପାଠରୁ ହିଁ ଗୃହୀତ । ସ୍ପେନୀୟ ଜୀବନ ଉପରେ ପ୍ରତ୍ୟକ୍ଷ ଜ୍ଞାନ ଥିବାରୁ 'ରୋଡେରିକ୍' ଅପେକ୍ଷାକୃତ ସଫଳ କୃତି । ତାଙ୍କର କେତୋଟି କ୍ଷୁଦ୍ର କବିତା ସର୍ବ-ଯୁଗୀୟ ସମ୍ମାନର ଅଧିକାରୀ (The scholar, Auld Cloots, The Well of St. Keyne, The Inchcape Rock ଓ Lodore ପ୍ରଧାନ) । ପଦ୍ୟ ଅପେକ୍ଷା ଗଦ୍ୟ ରଚନାରେ ସେ

ଅଧିକ ସିଦ୍ଧହସ୍ତ । ତାଙ୍କର 'ଲାଇଫ୍ ଅଫ୍ ନେଲ୍ସନ୍' ଏକ କାଳଜୟୀ ସୃଷ୍ଟି । ଓ୍ୱାର୍ଡସ୍ୱାର୍ଥ, କୋଲରିଜ୍ ଓ ସାଦି ଇଂରେଜୀ ସାହିତ୍ୟରେ 'ହ୍ରଦବିହାରୀ କବି' (Lake Poets) ନାମରେ ପରିଚିତ । 'ଲେକ୍ ଡିସ୍ଟ୍ରିକ୍ଟ୍'ରେ ସେମାନଙ୍କ ଜୀବନର କିଛି କାଳ ବିତିଛି । ଓ୍ୱାର୍ଡ଼ସ୍ୱାର୍ଥଙ୍କ ଜନ୍ମ ଉକ୍ତ ଅଞ୍ଚଳରେ । ଫରାସୀ-ବିପ୍ଳବର ସମର୍ଥନ ଓ ପରେ ପ୍ରତ୍ୟାଖ୍ୟାନ, କେତେକ କାବ୍ୟାଦର୍ଶ, ସର୍ବୋପରି ବନ୍ଧୁତାର ବନ୍ଧନରେ ସେମାନେ ଆବଦ୍ଧ ଥିଲେ ।

## ଓ୍ୱାଲଟର ସ୍କଟ୍ (Walter Scott : ୧୭୭୧-୧୮୩୨)

ବିଶିଷ୍ଟ ସ୍କଟିସ୍ ଲେଖକଙ୍କ ମଧ୍ୟରେ ଓ୍ୱାଲ୍‌ଟର ସ୍କଟ୍ ଅନ୍ୟତମ । ଜନ୍ମ ଏଡ଼ିନ୍‌ବରାରେ । ପୂର୍ବପୁରୁଷ କଳା ଓ ସାହିତ୍ୟ ଅପେକ୍ଷା ଯୁଦ୍ଧବିଗ୍ରହରେ ଅଧିକ ଲିପ୍ତଥିଲେ । ସୁଶିକ୍ଷିତା ଜନନୀ କାହାଣୀ ଶୁଣାଇବାରେ ପାରଦର୍ଶିନୀ । ପିଲାଟିଦିନୁ ସ୍କଟ ରୁଗ୍ଣ, ସ୍ୱାସ୍ଥ୍ୟ ଦୁର୍ବଳ । ଆଈମା'ଙ୍କ ଘରକୁ ତାଙ୍କୁ ପଠାଇଦିଆଗଲା । ଯୋଗକୁ ଆଈମା' ଗଳ୍ପ ବୋଲିବାରେ ମା'ଙ୍କଠାରୁ ଅଧିକ ଦକ୍ଷ ଥିଲେ । ଏଇଠାରୁ ହିଁ ସ୍କଟଲାଣ୍ଡର ଇତିହାସ ଓ ଲୋକଗଳ୍ପ ପ୍ରତି ତାଙ୍କର ଅସୀମ ଆଗ୍ରହ ପ୍ରକାଶ ପାଇଥିଲା । ଲେଖକଙ୍କ ସମଗ୍ର ରଚନା ତାର ମୁଦ୍ରାଙ୍କ ବହନକରେ ।

କାହାଣୀଧର୍ମୀ କବିତା ପାଇଁ ଅଶେଷ ଆଗ୍ରହ ହେତୁ ସ୍କଟ୍ ଜର୍ମାନ-କବି ବାର୍‌ଜାର୍‌ଙ୍କ ଗାଥାଟିଏ ଅନୁବାଦ କରିଛନ୍ତି । ଏଇ ତାଙ୍କ ପ୍ରଥମ କାବ୍ୟକ ପ୍ରଚେଷ୍ଟା । କାହାଣୀ-ପାଇଁ କିନ୍ତୁ ତାଙ୍କୁ ଦୂରକୁ ଯିବାକୁ ପଡ଼ିନାହିଁ । ସ୍କଟ୍‌ଲାଣ୍ଡର ଦକ୍ଷିଣାଞ୍ଚଳ ଥିଲା ଗାଥାର ଗନ୍ତାଘର । ଉକ୍ତ ଗାଥାର ଗୋଟିଏ ସଂକଳନ ମଧ୍ୟ ସେ ପ୍ରକାଶ କରିଛନ୍ତି—'ଦି ମିନ୍‌ସଟ୍ରେଲସି ଅଫ୍ ଦି ସ୍କଟିସ୍ ବୋର୍ଡର' (The Minstrelsy of the Scottish Border) । ତାଙ୍କର ମୌଳିକ କାବ୍ୟକୃତି ମଧ୍ୟରେ 'ଦି ଲେ ଅଫ ଲାଷ୍ଟ ମିନସଟ୍ରେଲ' (The Lay of the Last Minstrel : ୧୮୦୫), 'ମାର୍ମିଅନ୍' (Marmion: ୧୮୦୮), 'ଦି ଲେଡ଼ି ଅଫ୍ ଦି ଲେକ୍' (The Lady of the Lake : ୧୮୧୦) ଓ 'ରକ୍‌ବି' (Rokeby : ୧୮୧୩) ଉଲ୍ଲେଖଯୋଗ୍ୟ । ଏଗୁଡ଼ିକୁ ଠିକ୍ ଗାଥା କୁହାଯାଇ ପାରିବ ନାହିଁ । ଏଗୁଡ଼ିକ ମହାକାବ୍ୟଧର୍ମୀ; ଗୀତିମୟତା ଏହାର ଅନ୍ୟତମ ଆକର୍ଷଣ । ଏଥିରେ ଇତିହାସର କଥାବସ୍ତୁ ରୋମାଣ୍ଟିକ୍ ତୁଳୀର ସ୍ପର୍ଶରେ ରସୋଚ୍ଛଳ ହୋଇଛି । ଅତୀତ ତଥା ମଧ୍ୟଯୁଗୀୟ ପ୍ରୀତି ଓ ମଧ୍ୟଯୁଗୀୟ ଦୁଃସାହସିକତା (Chivalry) ତାଙ୍କ କବିତାର ବିଶିଷ୍ଟ ଲକ୍ଷଣ । ପ୍ରକୃତିର ମଞ୍ଜୁଳ ବର୍ଣ୍ଣନା ଅତୀବ ଚିତ୍ତାକର୍ଷକ । ଗୋଟିଏ ବିଶିଷ୍ଟ ଯୋଦ୍ଧା ପରିବାରର ଏଇ ଲେଖକଙ୍କ ଶୌର୍ଯ୍ୟାନୁରାଗ ତାଙ୍କୁ ପୂର୍ବୋକ୍ତ ହ୍ରଦବିହାରୀ କବି (Lake Poet)ଙ୍କ ଠାରୁ ଅଲଗା କରି ଦେଖାଇଦିଏ । ସମସାମୟିକ କବି ବାଇରନ୍‌ଙ୍କ କବିଖ୍ୟାତି ସ୍କଟଙ୍କୁ ଉପନ୍ୟାସ ଲେଖିବାକୁ ପ୍ରବର୍ତ୍ତାଇଥିଲା । ଉକ୍ତ କ୍ଷେତ୍ରରେ ସେ ହୋଇଉଠିଥିଲେ ଅପ୍ରତିଦ୍ୱନ୍ଦ୍ୱୀ ।

# ରୋମାଣ୍ଟିକ୍ ଯୁଗ

## ( ଦ୍ୱିତୀୟ ପର୍ଯ୍ୟାୟ )

ଓ୍ୱାର୍ଡ଼ସ୍‌ଓ୍ୱାର୍ଥ୍, କୋଲରିଜ୍, ସାଦ ଓ ସ୍କଟ୍‌ଙ୍କୁ ପ୍ରଥମ ପର୍ଯ୍ୟାୟର ରୋମାଣ୍ଟିକ୍ କବି କୁହାଯାଉଥିବାବେଳେ—ବାଇରନ, ଶେଲି, କୀଟ୍‌ସ ଓ କେତେକ ଗୌଣ କବିଙ୍କୁ ଦ୍ୱିତୀୟ ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରାଯାଇଥାଏ । ଦ୍ୱିତୀୟ ପର୍ଯ୍ୟାୟଭୁକ୍ତ କବିଙ୍କ ଜୀବନଧାରା ଓ କାବ୍ୟିକ ସାଫଲ୍ୟ ଭିତରେ କେତେକ ସାମଞ୍ଜସ୍ୟ ଦେଖାଯାଏ । ଉପରୋକ୍ତ ତିନି ବିଶିଷ୍ଟ କବି ଥିଲେ ସ୍ୱଳ୍ପାୟୁ । ସେମାନେ ଯଥାକ୍ରମେ ଛତିଶ, ଅଣତିରିଶ ଓ ଛବିଶ ବର୍ଷ ଜୀବନ ଧାରଣ କରିଥିଲେ । ପ୍ରତ୍ୟେକେ କିନ୍ତୁ ଏଇ ସ୍ୱଳ୍ପକାଳର ସାଧନା ମଧ୍ୟରେ ଇଂରେଜୀ ସାହିତ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି ।

ପ୍ରଥମ ପର୍ଯ୍ୟାୟ ଓ ଦ୍ୱିତୀୟ ପର୍ଯ୍ୟାୟର କବିଙ୍କ ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ; ସମୟଗତ ବ୍ୟବଧାନ ଅବଶ୍ୟ ରହିଛି । ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ଓ ବାଇରନଙ୍କ ଆବିର୍ଭାବ ମଧ୍ୟରେ ବ୍ୟବଧାନ ପ୍ରାୟ ଅଠର ବର୍ଷ । ଏଇ ବ୍ୟବଧାନ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହାର ମଧ୍ୟରେ ଇଂରେଜୀ ସାହିତ୍ୟର ଗତି ବଦଳାଇ ଦେଇଥିବା ଫରାସୀ-ବିପ୍ଳବ (୧୭୮୯) ଘଟିଯାଇଛି । ପ୍ରଥମ ପର୍ଯ୍ୟାୟର କବିଙ୍କ ଉପରେ ଏହାର ପ୍ରଭାବ ପ୍ରତ୍ୟକ୍ଷ ଭାବରେ ପଡ଼ିଥିବାବେଳେ ଦ୍ୱିତୀୟ ପର୍ଯ୍ୟାୟର କବିଙ୍କ କ୍ଷେତ୍ରରେ ତାହା ପରୋକ୍ଷ । ପ୍ରଥମ ପର୍ଯ୍ୟାୟର କବିମାନେ ପ୍ରଥମେ ଫରାସୀ-ବିପ୍ଳବର ଜୟଗାନକରି ପରେ ସେ ସମ୍ବନ୍ଧରେ ମୋହମୁକ୍ତ ହୋଇଛନ୍ତି ; କିନ୍ତୁ ଦ୍ୱିତୀୟ ପର୍ଯ୍ୟାୟର କବିମାନେ ସେଭଳି ମାନସିକ ସଙ୍କଟର ସମ୍ମୁଖୀନ ହୋଇନାହାନ୍ତି । ପୁନଶ୍ଚ ପ୍ରଥମ ପର୍ଯ୍ୟାୟର ହ୍ରଦବିହାରୀ କବିଙ୍କର ଆକର୍ଷଣ ଥିଲା, ଇଂଲଣ୍ଡର ଲେକ୍ ଡିଷ୍ଟ୍ରିକ୍ଟ । ସେଇଭଳି ଦ୍ୱିତୀୟ ପର୍ଯ୍ୟାୟର ସ୍ୱପ୍ନଭୂମି ଥିଲି ଭେନିସ୍ ବା ରୋମ ।

### ଲର୍ଡ଼ ବାଇରନ୍ (Lord Byron) ୧୭୮୮-୧୮୨୪

ପିତା ଅସାଧାରଣ ଅମିତବ୍ୟୟୀ ଓ ଲମ୍ପଟ; ମାତା ନିର୍ବୋଧ ପୁଣି ମାନସିକ ଭାରସାମ୍ୟହୀନା । ବାଇରନ୍‌ଙ୍କ ଜନ୍ମ ଲଣ୍ଡନରେ । ମା'ଙ୍କର ସମସ୍ତ ସମ୍ପତ୍ତି ଅପବ୍ୟୟରେ ନିଃଶେଷକରି ବାପା ତାଙ୍କୁ ପରିତ୍ୟାଗ କରନ୍ତି । ଅର୍ଦ୍ଧପାଗଳୀ ମା'ର ଦାୟିତ୍ୱରେ, ଦାରିଦ୍ର ଭିତରେ ବାଲ୍ୟ-ଜୀବନ ଅତିବାହିତ ହୁଏ । ଦେଖିବାକୁ ଅନିନ୍ଦ୍ୟସୁନ୍ଦର ପୁରୁଷ; କିନ୍ତୁ

ଗୋଟିଏ ପାଦର ଗଠନଗତ ଦୋଷ ଯୋଗୁଁ ଜୀବନ ତାଙ୍କ ବିମର୍ଷର କାରଣ ହୋଇଥିଲା । ବାଲ୍ୟଜୀବନର ପରିବେଶ ଓ ଶାରୀରିକ ଗଠନଗତ ଦୋଷ ତାଙ୍କ ପ୍ରକୃତି ଉପରେ ପ୍ରଭାବ ପକାଇଥିଲା । ସେ ଥିଲେ ସର୍ବଦା ଆତ୍ମସଚେତନ; ପ୍ରେମ ଓ ପ୍ରଶଂସା ପାଇଁ ସତତ ଉଦ୍‌ଗ୍ରୀବ ହୋଇ ଉଠୁଥିଲେ । ଦଶବର୍ଷ ବୟସରେ ଉତ୍ତରାଧିକାର ସୂତ୍ରରେ ଲର୍ଡ଼ ଉପାଧି ପାଇଥିଲେ । ସ୍କୁଲ ଓ କଲେଜ ଜୀବନ କଳଙ୍କିତ । କେମ୍ବ୍ରିଜରେ ଅଧ୍ୟୟନ କରୁଥିଲାବେଳେ ପାଠପଢ଼ା ଅପେକ୍ଷା କର୍ତ୍ତୃପକ୍ଷଙ୍କ ସହିତ କଳହରେ ଲିପ୍ତହେବା, ଗଣ୍ଡଗୋଳ ଲଗାଇବା, ସର୍ବୋପରି କୁସଙ୍ଗ ଗହଣରେ ଅଗମ୍ୟ ସ୍ଥାନକୁ ଯାଇ କୁତ୍ସିତ କର୍ମରେ ଲିପ୍ତହେବା, ତାଙ୍କର ମୁଖ୍ୟ କାର୍ଯ୍ୟ ଥିଲା । ସାମାଜିକ ପ୍ରତିପତ୍ତି, ସୌନ୍ଦର୍ଯ୍ୟ, କବିତା-ଲେଖା ଓ ଅମିତବ୍ୟୟିତା ହେତୁ ବହୁ ଉଚ୍ଛୃଙ୍ଖଳ ବନ୍ଧୁ ଓ ବାନ୍ଧବୀ ମିଳିବାରେ ଅସୁବିଧା ହେଉ ନ ଥିଲା । କଲେଜଜୀବନରୁ କବିତା ଗ୍ରନ୍ଥ ପ୍ରକାଶ ପାଏ । ନିଜ କବିପ୍ରତିଭା ସମ୍ପର୍କରେ ଅସୀମ ଅହମିକା, ପୋଷାକପରି, ହାବଭାବ ଓ ବ୍ୟବହାରରେ ସମସ୍ତଙ୍କର ବିସ୍ମିତ ଦୃଷ୍ଟି ଆକର୍ଷଣ କରିବାରେ ତତ୍ପର । ନିଜକୁ ହିରୋ (hero) ଭାବରେ ଦେଖାଇ-ବାରେ ଗୌରବ ଅନୁଭବ କରନ୍ତି । ନିଜ କାର୍ଯ୍ୟକଳାପକୁ ସର୍ବଦା ରହସ୍ୟାଚ୍ଛନ୍ନ ରଖିବାକୁ ଚେଷ୍ଟାକରୁଥାନ୍ତି । ଏହା 'ବାଇରନିକ୍' ବ୍ୟକ୍ତିତ୍ୱଭାବରେ ପରିଚିତ । ପ୍ରଥମ କବିତା-ଗ୍ରନ୍ଥ ପାଇଁ ସେ ବହୁ ସମାଲୋଚିତ ହୋଇଥିଲେ । କିନ୍ତୁ ୧୮୦୯ ଖ୍ରୀଷ୍ଟାବ୍ଦର ବିଦେଶଗସ୍ତ ତାଙ୍କ କବି-ଜୀବନରେ ସାଫଲ୍ୟ ଆଣିଦେଇଥିଲା । ଏହି ଭ୍ରମଣକୁ ଭିତ୍ତିକରି ସେ ଲେଖିଥିଲେ ଅମର-କାବ୍ୟ 'ଚାଇଲଡ୍ ହ୍ୟାରଲ୍‌ଡସ୍ ପିଲ୍‌ଗ୍ରିମେଜ୍' (Childe Harold's Pilgrimage)ର ପ୍ରଥମ ଦୁଇଖଣ୍ଡ । ଅଳ୍ପ କାଳ ମଧ୍ୟରେ ସେ ଦେଶ-ବିଦେଶରେ ଆଦୃତ ହେବାକୁ ଲାଗିଲେ । ଏ ସମ୍ବନ୍ଧରେ କବି ନିଜେ କହନ୍ତି, "I woke one morning to find myself famous" । ଏଇ ସାଫଲ୍ୟ ପରେପରେ ଜୀବନରେ ଦୁର୍ଯୋଗ ନଇଁଆସେ । ଲେଡ଼ି କ୍ୟାରୋଲିନ୍ ଲାମ୍ବ୍‌ଙ୍କ ସହିତ ଅବୈଧ ପ୍ରଣୟ ପାଇଁ ତାଙ୍କ ନାଁରେ ନାଗରୀ ବାଜେ । ଖ୍ରୀ; ୧୮୧୫ରେ ସେ ମିସ୍ ମିଲ୍‌ବ୍ୟାଙ୍କ୍ (Miss Milbanke)ଙ୍କୁ ବିବାହ କରନ୍ତି । ବର୍ଷଟିଏରୁ ଅଧିକ ଦାମ୍ପତ୍ୟ ଜୀବନ କଟାଇବା ସମ୍ଭବ ହୁଏନାହିଁ । କବିପତ୍ନୀ କବିଙ୍କୁ ପରିତ୍ୟାଗ କରନ୍ତି । ନାନା ଗୁଜବ ଶୁଣାଯାଏ, ଏସବୁ ବ୍ୟକ୍ତିଗତ ସ୍ଖଳନକୁ କେନ୍ଦ୍ର କରି । ନିଜ କାର୍ଯ୍ୟକଳାପ ସମ୍ବନ୍ଧରେ ସୃଷ୍ଟି କରୁଥିବା ରୋମାଣ୍ଟିକ୍ ରହସ୍ୟ ମଧ୍ୟ ବେଶି ଦିନ ଦୁର୍ଭେଦ୍ୟ ରହେନାହିଁ । ତାଙ୍କର ପ୍ରକୃତ ସ୍ୱରୂପ ଜଣାପଡ଼େ । ଲୋକେ ଉତ୍‌କ୍ଷିପ୍ତ ହୋଇ ଉଠନ୍ତି; ଅବଶେଷରେ କାମୁଡ଼ା କୁକୁର କବଳରୁ ବିଲୁଆ ପଳାୟନ କରିବା ଭଳି ବାଇରନ ଖ୍ରୀ : ୧୮୧୬ରେ ଲଣ୍ଡନରୁ ପଳାଇ ଆତ୍ମରକ୍ଷା କରନ୍ତି । ଲଣ୍ଡନ ମାଟି ଆଉ ସେ ମାଡ଼ିନାହାନ୍ତି ।

ଅବଶିଷ୍ଟ ଜୀବନର ଅଧିକାଂଶ ଭାଗ ଇଟାଲୀରେହିଁ କଟିଥିଲା । ଇଟାଲୀର ତତ୍କାଳୀନ ବିପ୍ଳବୀଙ୍କ ସହିତ ତାଙ୍କର ସୁସମ୍ପର୍କ ଥିଲା । ସେମାନଙ୍କୁ ସେ ଆର୍ଥିକ ସାହାଯ୍ୟ

ଦେଉଥିଲେ । ଏଠାରେ ଶେଲିଙ୍କ ସହ ତାଙ୍କର ସମ୍ପର୍କ ଗଢ଼ିଉଠିଥିଲା । କବିଗୋଷ୍ଠୀରେ ସେଠାରେ ସେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପାଇଥିଲେ । ବହୁ ରୋମାଣ୍ଟିକର ପ୍ରେମବ୍ୟାପାରରେ ମଧ୍ୟ ଲିପ୍ତ ରହି ନିଜ ବାଇରନିକ୍ ପ୍ରବୃତ୍ତି ଚରିତାର୍ଥ କରିଥିଲେ ।

ଖ୍ରୀ: ୧୮୨୩ରେ ବାଇରନ୍ ଗ୍ରୀସ୍‌କୁ ଯାଆନ୍ତି । ସେଠାରେ ତୁର୍କଙ୍କ ବିରୁଦ୍ଧରେ ଗ୍ରୀକ୍‌ଙ୍କର ସ୍ୱାଧୀନତା ସଂଗ୍ରାମ ଚାଲିଥାଏ । ଏଥିରେ ସେ ବିଶେଷ ଅଂଶ ଗ୍ରହଣ କରିଥିଲେ ।

ଇଟାଲି ଓ ଗ୍ରୀସ୍ ଦେଶର ଗଣ-ଆନ୍ଦୋଳନରେ ପୃଷ୍ଠପୋଷକ ସାଜିଥିଲେ ମଧ୍ୟ, ମଣିଷକୁ ବିଶ୍ୱାସ କରୁଥିଲେ ମଧ୍ୟ, ସମାଜ ଓ ସରକାର ପ୍ରତି ତାଙ୍କର ତୀବ୍ର ବିତୃଷ୍ଣା ରହିଥିଲା; ଏପରିକି ଏହି ମହାନ୍ କବିଙ୍କର ସାହିତ୍ୟ ପ୍ରତି ମଧ୍ୟ ଆସକ୍ତି ନ ଥିଲା । ଆକ୍ଷେପକରି ସେ କହନ୍ତି, କବି ଜଣେ ବାବଦୂକ ମାତ୍ର (mere babbler) । ଏଥିରୁ ତାଙ୍କର ସବୁ ପ୍ରକାର ମୂଲ୍ୟବୋଧ ପ୍ରତି ଅନାସ୍ଥା ଭାବ (cynicism) ଓ ନୈରାଶ୍ୟବାଦୀ ମନୋବୃତ୍ତିର ପରିଚୟ ମିଳେ ।

ଗ୍ରୀସ୍ ଦେଶରେ ହିଁ ଅବସ୍ଥାନ କରୁଥିବା ବେଳେ ଖ୍ରୀ: ୧୮୨୪ରେ ଜ୍ୱର ରୋଗରେ ତାଙ୍କର ମୃତ୍ୟୁ ଘଟେ । ତାଙ୍କର ଶେଷ ସତ୍କାର କିନ୍ତୁ ଲଣ୍ଡନରେ ହୋଇଥିଲା । ଯେଉଁ ଲଣ୍ଡନ ଦିନେ ଘୃଣା ଓ କ୍ରୋଧରେ ତାଙ୍କୁ ବହିଷ୍କାର କରିଥିଲା, ମୃତ୍ୟୁରେ ସେ ପୁଣି ତାଙ୍କୁ ଆଦରରେ ନିଜ କୋଳରେ ସ୍ଥାନଦେଲା ।

ବାଇରନ୍ ଜୀବନକାଳ ମଧ୍ୟରେ ଯେପରି କବିଗୌରବ ପାଇଛନ୍ତି, କ୍ୱଚିତ୍ ଇଂରେଜ କବିଙ୍କ ଭାଗ୍ୟରେ ତା' ଘଟିଛି । ତାଙ୍କର ଜୀବନ ଓ କୃତିତ୍ୱ ସମ୍ବନ୍ଧରେ ଆଲବର୍ଟ କହନ୍ତି, "He is grand and terrible and sinister with the stain of a dark and aweful past."

## ବାଇରନ୍‌ଙ୍କ କାବ୍ୟକୃତି :

ବାଇରନ୍‌ଙ୍କ ପ୍ରଥମ କାବ୍ୟ ସଂକଳନ 'ଆୱାର୍ସ ଅଫ୍ ଆଇଡ଼ଲ୍‌ନେସ୍' । ଏହା ଜଣେ କଲେଜପଢ଼ୁଆ ଯୁବକର ଅପରିପକ୍ୱ ଲେଖନୀର 'ସ୍ୱାକ୍ଷର' ବହନକରେ । ଏଥିରେ କବିତ୍ୱର ପରିଚୟ ମିଳେନା; ବରଂ କେତେକ ମାତ୍ରାରେ କବିଙ୍କ ବ୍ୟକ୍ତିତ୍ୱର ପରିଚୟ ମିଳେ । 'ଏଡ଼ିନ୍‌ବରା ରିଭ୍ୟୁ' ଏହି ସଂକଳନର ତୀବ୍ର ସମାଲୋଚନା କରିଥିଲେ । ଦାମ୍ଭିକ ଯୁବକ ବାଇରନ୍ କିନ୍ତୁ ଏଥିରେ ନତି ସ୍ୱୀକାର କଲେ ନାହିଁ । ସେ ତା'ର ପ୍ରତ୍ୟୁତ୍ତରରେ ପୋପ୍‌ଙ୍କ ରୀତିରେ ଲେଖିଥିଲେ ବ୍ୟଙ୍ଗକବିତା 'ଇଂଲିଶ୍ ବାର୍ଡସ୍ ଆଣ୍ଡ ସ୍କଚିସ୍ ରିଭ୍ୟୁଅର୍ସ' । କବିତ୍ୱ ଏଥିରେ ମଧ୍ୟ କ୍ଷୀଣ; କିନ୍ତୁ ବ୍ୟଙ୍ଗବିଦ୍ରୂପର ସ୍ୱର ତୀବ୍ର । ଏଥିରେ ସେ ଉକ୍ତ ପତ୍ରିକା ବାଣୀରୁ ୱାର୍ଡସ୍‌ୱାର୍ଥ, କୋଲ୍‌ରିଜ୍, ସାଉଦି ଓ ସ୍କଟ୍‌ଙ୍କ ପରି କବିଙ୍କର କଠୋର

ସମାଲୋଚନା କରିଛନ୍ତି । ବାଇରନ୍‌ଙ୍କ ଆଦ୍ୟ ଜୀବନରେ ଡ୍ରାଇଡ଼େନ ଓ ପୋପ୍‌ଙ୍କ ପ୍ରଭାବ ଏଥିରୁ ସ୍ପଷ୍ଟ । 'ଚାଇଲଡ୍ ହେରଲ୍‌ଡ୍‌ସ୍ ପିଲ୍‌ଗ୍ରିମେଜ୍' (Childe Harold's Pilgrimage) ତାଙ୍କର ପ୍ରଥମ ସାର୍ଥକ ରଚନା ।



ଖ୍ରୀ: ୧୮୦୮ର ୟୁରୋପ ଓ ପୂର୍ବଖଣ୍ଡ ଭ୍ରମଣରୁ ସେ ଏହି କାବ୍ୟରଚନାର ପ୍ରେରଣା ପାଇଥିଲେ । ଏହାର ପ୍ରଥମ ଦୁଇଖଣ୍ଡ ଖ୍ରୀ; ୧୮୧୨ରେ ପ୍ରକାଶିତ ହୋଇ କବିଙ୍କ ପାଇଁ ଅଶେଷ ଗୌରବ ଆଣିଦେଇଥିଲା । କବି ପୁଣି ସବୁଦିନ ପାଇଁ ଲଣ୍ଡନରୁ ବିତାଡ଼ିତ ହୋଇ ବିଦେଶରେ ଜୀବନ କଟାଇବାବେଳେ ହିଁ ପରବର୍ତ୍ତୀ ଦୁଇଖଣ୍ଡ ଲିଖିତ ହୋଇଥିଲା । ଏ ଦୁଇଖଣ୍ଡ ଯଥାକ୍ରମେ ଖ୍ରୀ: ୧୮୧୬ ଓ ୧୮୧୮ରେ ପ୍ରଥମେ ପ୍ରକାଶିତ । 'ଚାଇଲ୍‌ଡ୍ ହେରଲ୍‌ଡ୍' ଏହାର ନାୟକ । କବିଙ୍କ ସ୍ୱୀୟ ଭ୍ରମଣ ଅନୁଭୂତି ହିଁ ଏହାର ଉପଜୀବ୍ୟ । ପ୍ରଥମ ଦୁଇଖଣ୍ଡରେ ପର୍ତ୍ତୁଗାଲ, ସ୍ପେନ, ଆୟୋନିଆନ ଦ୍ୱୀପପୁଞ୍ଜ, ଆଲ୍‌ବାନିଆ, ଗ୍ରୀସ୍ ଓ ଶେଷ ଦୁଇଖଣ୍ଡରେ ବେଲଜିଆମ୍, ରାଇନ୍, ଆଲ୍‌ପସ୍ ଓ ଜୁରା ପରିଦର୍ଶନର ବିବରଣୀ ମିଳେ । ବିଭିନ୍ନ ଦେଶର ଜୀବନଧାରା ଓ ବ୍ୟକ୍ତିବିଶେଷଙ୍କ ସମ୍ପର୍କରେ କବିଙ୍କ ଦୃଷ୍ଟିଭଙ୍ଗୀର ପରିଚୟ ଏଥିରୁ ମିଳେ । ବିଭିନ୍ନ ସ୍ଥାନର ପ୍ରାକୃତିକ ବୈଚିତ୍ର୍ୟ, ଇତିବୃତ୍ତ, ଶିଳ୍ପକଳା ଓ ସାହିତ୍ୟର ଉଲ୍ଲେଖ ଏଥିରେ ରହିଛି । ଉଦାହରଣସ୍ୱରୂପ ଦ୍ୱିତୀୟ ଖଣ୍ଡର ଶେଷଭାଗରେ କବି ଗ୍ରୀସ୍‌ର ପରାଧୀନତା କଥା ଉଲ୍ଲେଖ କରିଛନ୍ତି । ଚତୁର୍ଥ ଖଣ୍ଡରେ ଇଟାଲୀର ଜୀବନଚିତ୍ର ଦେବା ସଙ୍ଗେ ସଙ୍ଗେ ଏହାର ପ୍ରାଚୀନ କବି ପେଟ୍ରାର୍କ ଓ ଟାସୋଙ୍କୁ ସ୍ମରଣ କରିଛନ୍ତି ।

'ଚାଇଲ୍‌ଡ଼ ହେରଲ୍‌ଡ୍'ର ପ୍ରଥମ ଦୁଇଖଣ୍ଡ ବିଶେଷ ସମାଦୃତ । ପ୍ରକାଶଭଙ୍ଗୀର ମାଧୁର୍ଯ୍ୟ ଏଥିପାଇଁ ମୁଖ୍ୟତଃ ଦାୟୀ; କିନ୍ତୁ ଶେଷଦୁଇଖଣ୍ଡରେ ହିଁ କବିଙ୍କ ଆନ୍ତରିକତା ସ୍ପଷ୍ଟ । ପ୍ରକୃତି ବର୍ଣ୍ଣନା, ଆଶା, ହତାଶା ଓ ପ୍ରେମର ଭାବାବେଗରେ ଏହା ମଞ୍ଜୁଳ । ମଝିରେ ମଝିରେ କବିଙ୍କ ସ୍ୱତଃସ୍ଫୂର୍ତ୍ତି ବ୍ୟକ୍ତିଗତ ଅନୁଭୂତିର ପ୍ରକାଶ ଗୀତିକବିତାର ଆବେଦନ ସୃଷ୍ଟି କରେ; କିନ୍ତୁ ଏହାର ଅଯଥା ବାଗାଡ଼ମ୍ବର ଓ ଅଳଙ୍କାରର ପ୍ରୟୋଗ ପାଠକର ଧୈର୍ଯ୍ୟଚ୍ୟୁତି ଘଟାଏ । ସମଗ୍ର ରଚନାଟି ସ୍ପେନସାରିଆନ୍ ସ୍ତବକରେ ରଚିତ ।

'ଚାଇଲ୍‌ଡ୍ ହେରଲ୍‌ଡ୍'ର ପ୍ରଥମ ଦୁଇଖଣ୍ଡର ପ୍ରକାଶ ଯେଉଁ ଆକାଶଚୁମ୍ବୀ ଗୌରବ ଆଣିଦେଲା, ସେଥିରେ ଉତ୍ସାହିତ ହୋଇ ବାଇରନ୍ ପରେ ପରେ ଅନେକଗୁଡ଼ିଏ କାହାଣୀ କୈନ୍ଦ୍ରିକ କବିତା ରଚନାକଲେ । ସେଥିମଧ୍ୟରୁ 'ଦି ଗିୟୁର' (The Giaour), 'ଦି ବ୍ରାଇଡ ଅଫ୍ ଆବିଡ଼ସ' (The Bride of Abydos), 'ଦି କର୍‌ସେୟାର' (The Corsair) ଓ 'ଲରା' (Lara) ଆଦି ଉଲ୍ଲେଖଯୋଗ୍ୟ । ଏସବୁ

ପାଠକଲେ ମନେହୁଏ ଯେତେ ଯେପରି 'ଚାଇଲ୍ଡ୍ ହେରଲଡ୍'ର ତୀର୍ଥଯାତ୍ରା ଶେଷ ହୋଇନାହିଁ । ସବୁଥିରେ ନାୟକ ସେଇ ବାଇରନଙ୍କ ହିରୋ—ଅନ୍ୟ କଥାରେ ବାଇରନ୍ ନିଜେ । ଲର୍ଡଙ୍କ ଭାଷାରେ ସେଇ ନାୟକ ଜଣକ, 'Vain, disappointed, cynicalman, who finds no good in life or love or anything' । ଆଦର୍ଶ ନାୟିକାର ଚିତ୍ର ସେ ଦେଇପାରି ନାହାନ୍ତି—କଳୁଷିତ ପ୍ରେମର ପରିଧି ଡେଇଁବା ତାଙ୍କ ପକ୍ଷେ ସମ୍ଭବ ହୋଇନାହିଁ । ଯେତେ ଅବା ପ୍ରକୃତ ହିଁ ତାଙ୍କର ଏକ ମାତ୍ର ନାୟିକା । ଅବଶ୍ୟ ଭୂମଧ୍ୟସାଗରୀୟ ଅଞ୍ଚଳର ମଞ୍ଜୁଳ ପ୍ରାକୃତିକ ଚିତ୍ର ଏଥିରେ ଭରିରହିଛି ।

ବାଇରନ୍ ଅନ୍ୟ କେତେକ ଦୀର୍ଘ କବିତା ଓ ଗୀତିକବିତା ରଚନା କରିଥିଲେ ମଧ୍ୟ ସେଗୁଡ଼ିକର କଳାଗତ ମାନ ଉନ୍ନତ ନୁହେଁ ; କିନ୍ତୁ ସେ ଯେଉଁ କେତୋଟି ବ୍ୟଙ୍ଗ କବିତା ଲେଖିଯାଇଛନ୍ତି, ସେଗୁଡ଼ିକ ଉପେକ୍ଷଣୀୟ ନୁହେଁ । ତନ୍ମଧ୍ୟରେ 'ବେପ୍ପୋ' (Beppo : ୧୮୧୮), 'ଦି ଭିଜନ୍ ଅଫ୍ ଜଜ୍‌ମେଣ୍ଟ' (The Vision of Judgement: ୧୮୨୨) ଓ 'ଡନ୍ ଜୁଆନ' (Don Juan : ୧୮୧୯-୨୪) କବିମାନସର ଅନ୍ୟ ଏକ ଦିଗ ଉନ୍ମୋଚନ କରେ । ବ୍ୟଙ୍ଗ କବିତା ମଧ୍ୟରେ ଡନ୍ ଜୁଆନ୍‌ର ସାଫଲ୍ୟ ଓ ଉତ୍କର୍ଷ ଅବିସମ୍ବାଦିତ ।

'ଡନ୍ ଜୁଆନ' ଷୋହଳ ସର୍ଗବିଶିଷ୍ଟ ଏକ ବ୍ୟଙ୍ଗ ମହାକାବ୍ୟ । ଇଉରୋପର ବିଭିନ୍ନ ଦେଶର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ପ୍ରତି କବି କଟାକ୍ଷପାତ କରିଛନ୍ତି । ମୁଖ୍ୟତଃ ଅଭିଜାତ ଶ୍ରେଣୀ ହିଁ ତାଙ୍କର ଶରବ୍ୟ । ନାୟକ ଡନ୍ ଜୁଆନ ମଧ୍ୟ ଜଣେ ବାଇରନଙ୍କ ହିରୋ । ତାର ରୋମାଞ୍ଚକର ଭ୍ରମଣ କାହାଣୀ ଉକ୍ତ କାବ୍ୟକୃତିର ବିଷୟ-ବସ୍ତୁ । କଥାବସ୍ତୁର ଐକ୍ୟ ପ୍ରଶ୍ନ ଏଥିରେ ଉଠୁ ନ ଥିବାରୁ କାହାଣୀର ଧାରା ଆହୁରି ଲମ୍ବି ଲମ୍ବି ଯିବାରେ ବାଧା ନ ଥିଲା ।

ଯୌବନର ପହିଲି ସ୍ପର୍ଶ ଲାଗିବା କ୍ଷଣି ଡନ୍ ଜୁଆନ ନିଜ ମାଆଙ୍କର ଜଣେ ବାନ୍ଧବୀ ପ୍ରେମରେ ଛନ୍ଦିହୁଏ । ଧରାପଡ଼ି ତଡ଼ିଖାଏ ଦେଶରୁ । ଏଣିକି ବିଦେଶ ପରିକ୍ରମାର ପାଳି । ଜାହାଜଯାତ୍ରା ଆରମ୍ଭ ହୁଏ । ତା'ସାଙ୍ଗରେ ଉଡ଼ି ଉଡ଼ି ଚାଲେ ପ୍ରେମର ଜୟଧ୍ୱଜା । କେତେବେଳେ ଗ୍ରୀକ୍ ଜଳଦସ୍ୟୁର କନ୍ୟା ହାଇଡ଼ିଙ୍କୁ ପ୍ରେମକରି କ୍ରୀତଦାସ ଭାବରେ ନିଲାମରେ ବିକ୍ରି ହୁଏ ତ, କେତେବେଳେ ରୁଷିଆର ରାଣୀଙ୍କୁ ନିଜ ବୀରତ୍ୱରେ ମୋହ-ମୁଗ୍ଧ କରାଏ । ଅବଶେଷରେ ଇଂଲଣ୍ଡକୁ ଆସି ଅବାରିତ ପ୍ରେମଲୀଳାରେ ଲିପ୍ତ ରହେ । କାବ୍ୟଟି କୁତ୍ସିତ ରୁଚିର ପରିଚାୟକ ବୋଲି ସମାଲୋଚନା ହୋଇଥାଏ ; କିନ୍ତୁ ବ୍ୟଙ୍ଗ-ବିଦ୍ରୂପ-ଶାଣିତ ଛୁରିକାର ଆଘାତ ହାଣେ । ଏ ଦୃଷ୍ଟିରୁ ଇଂରେଜୀ ସାହିତ୍ୟରେ ଏହା ଏକ ସଫଳ ସାଟାୟାର୍ ଭାବରେ ଗଣ୍ୟ । ସମଗ୍ର ଲେଖାଟି ଅଷ୍ଟପଦବିଶିଷ୍ଟ ସ୍ତବକ(Ottava rima)ରେ ଲିଖିତ ।

ବାଇରନ୍ ଅମିତ୍ରାକ୍ଷର ଛନ୍ଦରେ କେତେକ ନାଟକ ମଧ୍ୟ ଲେଖିଛନ୍ତି । ସେଥିମଧ୍ୟରୁ 'ମେନ ଫ୍ରେଡ୍', 'ଦ କେନ୍', 'ଦ ଡିଫର୍ମଡ୍ ଟ୍ରାନ୍ସଫର୍ମଡ୍' ଆଦି ଉଲ୍ଲେଖଯୋଗ୍ୟ । ନାଟକ ଭାବରେ ଏଗୁଡ଼ିକ ଅସଫଳ; ବ୍ୟକ୍ତି-ବିଶେଷଙ୍କ ସୃଷ୍ଟି; ସ୍ୱତଃ ସେପରି ତାଙ୍କ ଦୃଷ୍ଟିରେ ନିଜ ବ୍ୟତୀତ ଅନ୍ୟ ଆକର୍ଷଣୀୟ ବସ୍ତୁ ପୃଥିବୀରେ ନାହିଁ ! 'କେନ' ନାଟକରେ ସମାଜରୁ ବହିଷ୍କୃତ ଜଣେ ବ୍ୟକ୍ତି ସମାଜ ବିରୁଦ୍ଧରେ ଅଗ୍ନିବାଣ ବର୍ଷଣ କରୁଛି । 'ଦ ଡିଫର୍ମଡ୍ ଟ୍ରାନ୍ସଫର୍ମଡ୍'ରେ ନିଜ ବିକଳାଙ୍ଗ ବ୍ୟକ୍ତିତ୍ୱର ଅସ୍ପଷ୍ଟ ଚିତ୍ର ସୂଚିତ ହୁଏ ।

ବାଇରନ୍‌ଙ୍କ କାବ୍ୟ-କବିତାରୁ ପ୍ରକୃତି, ସମାଜ ଓ ପ୍ରେମ ସମ୍ବନ୍ଧୀୟ ତାଙ୍କର ଦୃଷ୍ଟିଭଙ୍ଗୀର ପରିଚୟ ମିଳେ ।

କେତେକଙ୍କ ମତରେ ବାଇରନ ଜଣେ ନିଚ୍ଛକ ରୋମାଣ୍ଟିକ୍ କବି; ରୋମାଣ୍ଟିକ୍ ଚେତନାକୁ ସଂପୂର୍ଣ୍ଣ ଭାବରେ ସେ ଆତ୍ମସ୍ଥ କରିଥିଲେ; ତାହା ଦ୍ୱାରା ପରିଚାଳିତ ହୋଇଥିଲେ ମଧ୍ୟ । କିନ୍ତୁ ଅନ୍ୟ ମତ ଅନୁସାରେ ସେ ରୋମାଣ୍ଟିକ୍ କବି ଆଖ୍ୟାର ଯୋଗ୍ୟ ନୁହନ୍ତି; ବରଂ ତାଙ୍କୁ ଅଗଷ୍ଟାନ୍ ଯୁଗଧାରାର ଶେଷ କବି କୁହାଯାଇପାରେ । ବ୍ୟଙ୍ଗ ରଚନା ଓ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ବିଷୟରେ ପୋପଙ୍କ ସହିତ ତାଙ୍କର ଯଥେଷ୍ଟ ସାମ୍ୟ ରହିଛି ।

ରୋମାଣ୍ଟିକ୍ କବିର ଶ୍ରେଷ୍ଠ ଲକ୍ଷଣ ତାର କଳ୍ପନାପ୍ରବଣତା; କିନ୍ତୁ ବାଇରନ୍‌ଙ୍କ କବିତାରେ କଳ୍ପନାର ରଙ୍ଗ ଅପେକ୍ଷା ପ୍ରବୃତ୍ତିର ରୂପ ଅଧିକ ସ୍ପଷ୍ଟ । ସାଧାରଣତଃ ରୋମାଣ୍ଟିକ କବିର ବାସ୍ତବ ଦୁନିଆଁ ଅପେକ୍ଷା କଳ୍ପଲୋକର ଆକର୍ଷଣ ବେଶି । କିନ୍ତୁ ବାଇରନ୍ ବାସ୍ତବ ଦୁନିଆଁର ଅବୈଧ ପ୍ରେମରେ ଘାଣ୍ଟି ହୋଇଛନ୍ତି; ବାସ୍ତବ ଦୁନିଆର ଅସଙ୍ଗତି ପ୍ରତି ବ୍ୟଙ୍ଗ-ବିଦ୍ରୂପ କରିଛନ୍ତି; ଅନ୍ୟ କଥାରେ ବାସ୍ତବତାର ଊର୍ଦ୍ଧ୍ୱକୁ ସେ ଉଠିପାରିନାହାନ୍ତି । ଏଣୁ ସାଟାୟାରିଷ୍ଟ ଭାବରେ ତାଙ୍କର ଅସାମାନ୍ୟ ସାଫଲ୍ୟ ସମ୍ଭବ ହୋଇଛି । ଏ ସବୁ ସତ୍ତ୍ୱେ ରୋମାଣ୍ଟିକ୍ କବିତାର କେତେକ ବିଶିଷ୍ଟ ଲକ୍ଷଣ ଯେ ତାଙ୍କ କବିତାରେ ପ୍ରକାଶ ପାଇଛି ଏହା କହିବା ବାହୁଲ୍ୟ ମାତ୍ର ।

ରୋମାଣ୍ଟିକ୍ କବିମାନେ ପ୍ରକୃତିପ୍ରେମୀ । ଓ୍ୱାର୍ଡସ୍‌ଓ୍ୱାର୍ଥ ଓ ଶେଲି ପ୍ରକୃତିକୁ ନୈସର୍ଗିକ (spiritualise) ବା ବୁଦ୍ଧିଗ୍ରାହ୍ୟ (intellectualise) କରିପକାଇଛନ୍ତି । କିନ୍ତୁ ବାଇରନ୍‌ଙ୍କ ପ୍ରକୃତି ବାସ୍ତବ-ପ୍ରକୃତି । ସମାଜ କବଳରୁ ଆତ୍ମରକ୍ଷା କରିବା ପାଇଁ ସେ ପ୍ରକୃତିର ଆଶ୍ରୟ ନେଉନ୍ତି । ତାଙ୍କ ନିଜ ଅନୁଭୂତି ଓ ମାନସିକ ଅବସ୍ଥାର ପ୍ରତିଫଳନ ସେ ପ୍ରକୃତି ଭିତରେ ଦେଖନ୍ତି । ତା ଭିତରୁ ଆଦର୍ଶ ବା ନୀତିବାଦ ସନ୍ଧାନ ତାଙ୍କର ଉଦ୍ଦେଶ୍ୟ ନୁହେଁ । ପ୍ରକୃତିର ଟିକିନିଖି ସଠିକ ଚିତ୍ର ଆଙ୍କିବାରେ ସେ ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କୁ ମଧ୍ୟ ଅତିକ୍ରମ କରିଯାଇଛନ୍ତି । ନଦନଦୀ, ବିଶେଷତଃ ସମୁଦ୍ର ବର୍ଣ୍ଣନାରେ ତାଙ୍କର ଦକ୍ଷତା ଅନ୍ୟତ୍ର ବିରଳ । ପ୍ରକୃତିର କେବଳ ମନୋରମ ଚିତ୍ରରେ ସେ ବିମୁଗ୍ଧ ହୋଇ ନାହାନ୍ତି, ସ୍ନିଗ୍ଧ ରୂପ ସାଥୀକୁ ତାର ଭୈରବ ରୂପ, ବରଦାୟିନୀ ମୁଦ୍ରା ସହ ସଂହାରିଣୀ ବେଶ ତାଙ୍କ ତୂଳୀରେ ରୂପପାଇଛି ।

ବିପ୍ଳବ ରୋମାଣ୍ଟିକ୍ ଙ୍କର ରକ୍ତଗତ । ଏଥିପାଇଁ ଫରାସୀ-ବିପ୍ଳବ ଦୁର୍ଦ୍ଦାନ୍ତ ପ୍ରେରଣା ଯୋଗାଇଥିଲା । ଆଦ୍ୟ ପର୍ଯ୍ୟାୟର ରୋମାଣ୍ଟିକ୍ କବିମାନେ ପ୍ରଥମେ ଫରାସୀ-ବିପ୍ଳବର ଜୟଧ୍ୱନି ଦେଇଛନ୍ତି; କିନ୍ତୁ ପରେ ପରେ ସେଥିପ୍ରତି ବିମୁଖ ହୋଇଉଠିଛନ୍ତି । ବାଇରନ କିନ୍ତୁ ଉକ୍ତ ବିପ୍ଳବକୁ ସର୍ବାନ୍ତଃକରଣରେ ସମର୍ଥନ କରିଛନ୍ତି । କେବେହେଲେ ତା ପ୍ରତି ନିଜର ସମର୍ଥନ ପ୍ରତ୍ୟାହାର କରିନାହାନ୍ତି; ବରଂ ସ୍ୱାଧୀନତା, ସାମ୍ୟ, ମୈତ୍ରୀର ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଗ୍ରୀକ୍ ଓ ଇଟାଲୀର ମୁକ୍ତି-ସଂଗ୍ରାମରେ ସହାୟତା କରିଛନ୍ତି । କେବଳ ଦେଶ ବା ଜାତିର ନୁହେଁ, ସେ ଥିଲେ ବ୍ୟକ୍ତି-ସ୍ୱାଧୀନତାର ଶ୍ରେଷ୍ଠ ସମର୍ଥକ । ଏଣୁ ସାରା ଜୀବନ ସେ ସମାଜର ଲୌହଶୃଙ୍ଖଳ ବିରୁଦ୍ଧରେ ବିଦ୍ରୋହ କରିଛନ୍ତି ।

ବାଇରନ୍ ଇଂରେଜୀ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କଲେ ମଧ୍ୟ ତାଙ୍କର ସମ୍ଭାବନା ଥିଲା ବିଶାଳତର । ଆଦ୍ୟ-ଜୀବନର ଲେଖା ଅଗଭୀର ଓ ଆନ୍ତରିକତାହୀନ ହେଲେ ମଧ୍ୟ ଇଟାଲୀରେ ଶେଲିଙ୍କ ସହ ସାକ୍ଷାତ ପରେ ତାଙ୍କ ଅଭିମୁଖ୍ୟର ନିଶ୍ଚିତ ପରିବର୍ତ୍ତନ ଘଟିଥିଲା । 'ଚାଇଲ୍ଡ୍ ହେରଲ୍ଡ୍'ର ତୃତୀୟ ଖଣ୍ଡରେ ସେ ସ୍ୱୀକାର କରିଛନ୍ତି :—

In my youth's summer I did sing of one,
The wandering outlaw of his own dark mind ;

ଚତୁର୍ଥ ଖଣ୍ଡରେ ପ୍ରକୃତି-ବର୍ଣ୍ଣନାର ପ୍ରାଧାନ୍ୟ ତାଙ୍କର କାବ୍ୟିକ ବିବର୍ତ୍ତନର ସ୍ପଷ୍ଟ ପ୍ରମାଣ । ଏଣୁ ତାଙ୍କ ବିଷୟରେ କୁହାଯାଏ :

"The real tragedy of Byron's life is that he died,
just as he was beginning to find himself."

**ଶେଲି** (Percy Bysshe Shelley : ୧୭୯୨-୧୮୨୨)

ସାସେକ୍‌ସ୍‌ର ଫିଲଡ୍‌ପ୍ଲେସ୍‌ରେ ଜନ୍ମ ; ଉଚ୍ଚବଂଶଜ । ଉଭୟ ପିତା ଓ ମାତାଙ୍କ ପୂର୍ବପୁରୁଷ ସାହିତ୍ୟ ଓ ରାଜନୀତି କ୍ଷେତ୍ରରେ ଯଶସ୍ୱୀ ହୋଇଥିଲେ । ପିଲାଦିନରୁ ସେ ବଡ଼ ଦୁର୍ବଳ ଓ ଭାବପ୍ରବଣ । କାଳ୍ପନିକ ଅଦ୍ଭୁତ ଜୀବ ଡ୍ରାଗନ ଜଙ୍ଗଲ ଭିତରୁ କେତେବେଳେ ଆସିବ ବୋଲି ଝରକା ଫାଙ୍କରେ ଚାହିଁରହୁଥାନ୍ତି । ସ୍କୁଲଜୀବନରେ ସେ ଯେ କେବଳ ସୁଖୀ ନ ଥିଲେ ତା ନୁହେଁ, ନିଷ୍ଠୁର ଶିକ୍ଷକଙ୍କ ଅତ୍ୟାଚାର ସାଙ୍ଗକୁ ସାଙ୍ଗସାଥୀଙ୍କ ଦୌରାତ୍ମ୍ୟରେ ଅତିଷ୍ଠ ହୋଇପଡ଼ୁଥିଲେ । ଦେହରେ ଦୁର୍ବଳ ହେଲେ ମଧ୍ୟ ମନରେ ଥିଲେ ଅତ୍ୟନ୍ତ ବଳିଷ୍ଠ । ସେତେବେଳେ ଉଚ୍ଚଶ୍ରେଣୀର ଛାତ୍ରମାନେ ନିମ୍ନଶ୍ରେଣୀର ଛାତ୍ରମାନଙ୍କୁ ବ୍ୟକ୍ତିଗତ କାମରେ ଲଗାଉଥିଲେ । ଶେଲି



ଏହାର ପ୍ରତିବାଦ କରି ଗୋଟିଏ ଦଳ ଗଢ଼ିଲେ । ସେଥିପାଇଁ ସମସ୍ତେ ତାଙ୍କୁ ପାଗଳ ବୋଲି କହୁଥିଲେ । ତାଙ୍କର ଏହି ବିପ୍ଳବୀ ମନୋବୃତ୍ତି କଲେଜ ଜୀବନରେ ମଧ୍ୟ ପ୍ରକାଶ ପାଇଥିଲା । ଅକ୍ସଫୋର୍ଡ଼ରେ ଅଧ୍ୟୟନ କରୁଥିବାବେଳେ 'ଦି ନେସେସିଟି ଅଫ୍ ଏଥେଇଜ୍‌ମ' (The Necessity of Atheism) ପୁସ୍ତିକା ପାଇଁ ବିଶ୍ୱବିଦ୍ୟାଳୟରୁ ବିତାଡ଼ିତ ହୋଇଥିଲେ ।

ଶେଲିଙ୍କ ବିପ୍ଳବୀ ମନୋବୃତ୍ତିରେ ଆକୃଷ୍ଟ ହୋଇ ହେରିଏଟ୍ ୱେଷ୍ଟବ୍ରୁକ୍ (Harriet Westbrook) ବିପ୍ଳବିନୀ ସାଜନ୍ତି । ଉଭୟେ ସମାଜର ଲୌହ ଶାସନର ବିରୋଧୀ । ଫଳ ହେଲା ବିବାହ । କିନ୍ତୁ ଏଇ ବିବାହ ପାଇଁ ଶେଲି ଆତ୍ମୀୟ ପରିଜନଙ୍କଠାରୁ ସମ୍ପର୍କ ହରାଇଲେ । କେବଳ ପିତାଙ୍କ କରୁଣାରୁ କିଛି ହାତଖର୍ଚ୍ଚ ମିଳିଲା । ଏ ବିବାହ କିନ୍ତୁ ବେଶି ଦିନ ତିଷ୍ଠି ପାରିଲାନାହିଁ । ଶେଲି ସନ୍ତ୍ରାସବାଦୀ ନେତା ଗଡ଼ୱିନ୍‌ଙ୍କ ଭକ୍ତ ହୋଇ ପଡ଼ିଲେ; କିନ୍ତୁ ଭକ୍ତିର ପରାକାଷ୍ଠା ସ୍ୱରୂପ ତାଙ୍କ କନ୍ୟା ମେରି ଗଡ଼ୱିନ୍‌ଙ୍କୁ ଧରି ପଳାୟନ କଲେ । ପ୍ରଥମ ସ୍ତ୍ରୀ ହେରିଏଟ୍ ଆତ୍ମହତ୍ୟାକଲେ ।

ସ୍ୱାସ୍ଥ୍ୟ କାରଣରୁ, ପୁଣି ସମାଜର ପ୍ରତିରୋଧରୁ ତାଙ୍କୁ ଇଂଲଣ୍ଡ ଛାଡ଼ିବାକୁ ପଡ଼ିଲା । ବାଇରନ୍‌ଙ୍କ ପରି ସେ ଦେଶତ୍ୟାଗୀ ହେଲେ । ଖ୍ରୀ: ୧୮୧୮ରୁ ଶେଷ ପର୍ଯ୍ୟନ୍ତ ସପରିବାର ସେ ଇଟାଲୀରେ ବିତାଇଥିଲେ । ଇଟାଲୀୟ ପ୍ରାକୃତିକ ସୌନ୍ଦର୍ଯ୍ୟ ତାଙ୍କ କବିତାପାଇଁ ପ୍ରେରଣା ଯୋଗାଇଥିଲା । ଖ୍ରୀ: ୧୮୨୨ରେ ସମୁଦ୍ର ଉପକୂଳରେ ଏକ ନୌକା ବୁଡ଼ିରେ ସେ ପ୍ରାଣ ହରାଇଲେ ।

ଶେଲିଙ୍କ ବ୍ୟକ୍ତିତ୍ୱକୁ ଅନୁଧ୍ୟାନକଲେ ଜଣାଯାଏ ଯେ ତାଙ୍କର ମାନସିକ ସ୍ଥିରତି ଅନେକ ଉଚ୍ଚରେ; କିନ୍ତୁ ତାହା ତାଙ୍କର ଚପଳ୍ୟ ଦ୍ୱାରା ଆକ୍ରାନ୍ତ । କବି ଯେପରି ଭଦ୍ର ଓ ସୌଜନ୍ୟପରାୟଣ, ସେହିପରି ପାର୍ଥିବ ଜୀବନ ସମ୍ବନ୍ଧରେ ଉଦାସୀନ । ଏକ ଦିଗରେ ସେ ଯେପରି ବିପ୍ଳବୀ ସାଜି ଗତାନୁଗତ ସମାଜକୁ ଓଲଟପାଲଟ କରିଦେବାକୁ ଚାହାନ୍ତି, ଅନ୍ୟ ଦିଗରେ ସେହିପରି ଅଜବ କଳ୍ପନାରେ ବିଭୋର ରହନ୍ତି । ଆଦ୍ୟ ଜୀବନରେ ଫରାସୀ-ବିପ୍ଳବ, ପ୍ଲାଟୋବାଦ, ନବ ପ୍ଲାଟୋବାଦ ଓ ଗଡ଼ୱିନ୍‌ଙ୍କ ଦର୍ଶନରେ ପ୍ରଭାବିତ ହେଲେ ମଧ୍ୟ ତାକୁ ଆତ୍ମସ୍ଥ କରିପାରିନଥିଲେ । ତାଙ୍କର ଚିନ୍ତା ଓ ମତବାଦ ସ୍ପଷ୍ଟତର ଓ ତୀକ୍ଷ୍ଣତର ହୋଇ ଆସିବାବେଳକୁ ସେ ଅକାଳରେ ପ୍ରାଣ ହରାଇଲେ ।

**ଶେଲିଙ୍କ କାବ୍ୟକୃତି :**

ନାଟ୍ୟ ପ୍ରତିଭା ବିଚାରରେ ସେକ୍‌ସପିଅର ଯେପରି ଅପ୍ରତିଦ୍ୱନ୍ଦ୍ୱୀ, ଗୀତିକବିତା-ରଚୟିତା ଭାବରେ ଶେଲି ସେହିପରି ଅତୁଳନୀୟ । ତାଙ୍କର ଶ୍ରେଷ୍ଠ ଗୀତିକବିତା ମଧ୍ୟରେ 'ଦି କ୍ଲାଉଡ୍', 'ଟୁ ଏ ସ୍କାଇଲାର୍କ', 'ଓଡ୍ ଟୁ ଦ ୱେଷ୍ଟ ୱିଣ୍ଡ୍', 'ଟୁ ନାଇଟ୍' ଆଦି ବହୁପଠିତ । ଦୀର୍ଘ କବିତା ମଧ୍ୟରେ 'କୁଇନ୍ ମେବ୍' (Queen Mab : ୧୮୧୩), 'ଆଲାସ୍ଟର' (Alastor : ୧୮୧୬), 'ଦି ରିଭୋଲ୍ଟ ଅଫ୍ ଇସଲାମ୍' (The Revolt

of Islam : ୧୮୧୮), 'ପ୍ରମେଥିଆସ୍ ଅନ୍‌ବାଉଣ୍ଡ୍' (Prometheous Unbound ୧୮୨୦), 'ଏପି ସାଇକିଡିଅନ' (Epi psychidion : ୧୮୨୧) ଓ 'ଏଡୋନାଇସ୍' (Adonais : ୧୮୨୨) ପ୍ରଧାନ । ଏତଦ୍‌ବ୍ୟତୀତ ତାଙ୍କର 'ସେନ୍‌ସି' (The Cenci) ନାଟକଟି ଗ୍ରୀକ୍ ଟ୍ରାଜେଡ଼ି ଧାରାରେ ଲିଖିତ ଏକ ସାର୍ଥକ ପ୍ରୟାସ ।

ଗୀତି କବିତା ଭିତରେ କବି-ବ୍ୟକ୍ତିତ୍ୱର ଦୁଇଟି ସ୍ୱରୂପ ଦେଖିବାକୁ ମିଳେ । କେତେ-ବେଳେ କବି ଅସ୍ଥିର ପ୍ରାଣରେ ବିମଳ ସୌନ୍ଦର୍ଯ୍ୟ (ideal beauty)ର ଅନୁସନ୍ଧାନ କରୁଛନ୍ତି ତ କେତେବେଳେ ସମାଜ-ସଂସ୍କାର ପାଇଁ ଉନ୍ମାଦ ପ୍ରାୟ; କିନ୍ତୁ ଉଭୟ କ୍ଷେତ୍ରରେ ହତାଶା—ଈପ୍‌ସିତ ସୌନ୍ଦର୍ଯ୍ୟର ସନ୍ଧାନ ମିଳେନା କି ଆଖି ପଲକରେ ସମାଜ ବଦଳି-ଯାଏନା । ଗୀତି କବିତାଗୁଡ଼ିକରେ ଗୁମ୍ଫିତ ନାନା ଚିନ୍ତା ଓ ଦାର୍ଶନିକତା ଭିତରେ ଏକ ବିଦ୍ରୋହୀ ବ୍ୟକ୍ତିତ୍ୱର ପରିଚୟ ମିଳେ ।

'କୁଇନ ମ୍ୟାବ୍' (Queen Mab : ୧୮୧୩) ଲେଖକଙ୍କ ଆଦ୍ୟ ଜୀବନର ଏକ ଅସଫଳ ରଚନା ହେଲେ ମଧ୍ୟ ପ୍ରତିଭାର କିଛି ସ୍ୱାକ୍ଷର ବହନ କରେ । ଦାର୍ଶନିକ ଚିନ୍ତାର ଜଟିଳତା ଭିତରେ କବିଙ୍କ ସ୍ୱମତ ସମ୍ବନ୍ଧରେ ସ୍ପଷ୍ଟ କିଛି ବୁଝାଯାଏ ନାହିଁ; କେବଳ ତାଙ୍କର ନାସ୍ତିକ ମନୋଭାବର ପରିଚୟ ମିଳେ । ସଂସ୍କାରବାଦୀ ବିପ୍ଳବୀର ସ୍ୱର ସ୍ପଷ୍ଟ :

War is a statesman's game, the priest's delight,
The lawyer's jest, the hired assassin's trade.

କବିଙ୍କ ଆଦ୍ୟ ଜୀବନର ସଫଳତମ ରଚନା 'ଆଲାଷ୍ଟର' (Alastor or The Spirit of Solitude : ୧୮୧୬) । ଏହା ଆତ୍ମଜୀବନୀମୂଳକ । କବି ଏଠାରେ ଆଦର୍ଶ ସୌନ୍ଦର୍ଯ୍ୟ (ideal beauty) ଅନୁସନ୍ଧାନରତ । ନିସ୍ତବ୍ଧ ପ୍ରକୃତି କୋଳରେ ଜଣେ ପର୍ଯ୍ୟଟକ (କବି ନିଜେ) ଖୋଜିବୁଲିଛନ୍ତି ତାଙ୍କର ସ୍ୱପ୍ନ-ନାୟିକାକୁ, ଯା ଭିତରେ ସେହି ପରିପୂର୍ଣ୍ଣ ସୌନ୍ଦର୍ଯ୍ୟର ସନ୍ଧାନ ମିଳିବ; ନିର୍ଜନତାର ଆତ୍ମାକୁ ଆହ୍ୱାନକରି ନିବେଦନ କରୁଛନ୍ତି ଜୀବନର ରହସ୍ୟ ଉନ୍ମୋଚନ କରିବାକୁ । ପର୍ଯ୍ୟଟକ ଏଥେନସ୍, ବେବିଲୋନ୍, ଜେରୁଜେଲମ୍ ଦେଇ କାଶ୍ମୀର ଉପତ୍ୟକାରେ ପହଞ୍ଚିଛି । ଏଇଠି ସେ ଦେଖନ୍ତି ଦିବାସ୍ୱପ୍ନ (vision) । ସ୍ୱପ୍ନସଙ୍ଗୀ ସାମ୍ନାରେ ଉଭାହୁଏ, କବିର ପ୍ରାଣ ଉଲ୍ଲସିତ ହୋଇଉଠେ; କିନ୍ତୁ ପରମୁହୂର୍ତ୍ତରେ ସବୁ କିଛି ଦୃଷ୍ଟି ସମ୍ମୁଖରୁ ଅନ୍ତର୍ହିତ ହୁଏ । କବି ପୁଣି ସେଇ ରୂପସୀର ସନ୍ଧାନରେ କେତେ କେତେ ଦୁର୍ଗମ ଗିରି କାନ୍ତାର ମରୁ ଅତିକ୍ରମ କରନ୍ତି । ଆଶାର ସଂକେତ ମିଳେନାହିଁ । କ୍ଳାନ୍ତି ନାହିଁ, ଅବସାଦ ନାହିଁ; ଅବଶେଷରେ ମୃତ୍ୟୁରେ ହିଁ ଏଇ ରୂପସନ୍ଧାନୀର ଅଭିଯାନ ଶେଷ ହୁଏ । ରୂପକଳ୍ପ ଓ ଗୀତି ଉଚ୍ଛ୍ୱାସରେ ଏହା ଅନବଦ୍ୟ । ମନୁଷ୍ୟ-ଜୀବନର ବିଫଳତା, କବିଙ୍କ ବ୍ୟକ୍ତିଗତ ନିଃସଙ୍ଗଜୀବନର କାରୁଣ୍ୟ ଓ ମୃତ୍ୟୁ ଚେତନାର ବଳିଷ୍ଠ ପ୍ରକାଶ ଏଥିରେ ଘଟିଛି । ପ୍ରକୃତିଚିତ୍ର ତଥା ଉଦ୍‌ଭଟ ପରିବେଶ ସୃଷ୍ଟି ମଧ୍ୟରେ ସ୍ୱପ୍ନବାଦୀ ରୋମାଣ୍ଟିକ୍ କବି-ବ୍ୟକ୍ତିତ୍ୱଟି ନିଜର ଆତ୍ମଲିପି ରଖିଯାଇଛି ।

'ଦି ରିଭୋଲ୍‌ଟ ଅଫ୍ ଇସ୍‌ଲାମ' (The Revolt of Islam) ବା Laon and Cythna : ୧୮୧୮) ରେ କବିଙ୍କର ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ବିଶ୍ୱଭାବ ପ୍ରକାଶ ପାଇଛି । ଏହାର ନାୟକ ନାୟିକା ଯଥାକ୍ରମେ ଲାଓନ ଓ ସିଥ୍‌ନା ସ୍ୱୈରାଚାରର ତୀବ୍ର ବିରୋଧ କରି ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ପ୍ରାଣପାତ ଉଦ୍ୟମ କରିଛନ୍ତି । କିନ୍ତୁ ଏହି ସ୍ୱାଧୀନତାକାମୀ ବିପ୍ଳବୀ ତରୁଣ ପ୍ରାଣ ଦୁଇଟିକୁ ଜୀବନ୍ତ ଦଗ୍‌ଧ କରିଦିଆଯାଇଛି । କବିତାଟି ସ୍ପେନ୍‌ସାରିଅ ଷ୍ଟାଞ୍ଜାରେ ଲିଖିତ ।

କବି ଖ୍ରୀ : ୧୮୧୮ ରେ ଇଟାଲିକୁ ତାଙ୍କର ସ୍ଥାୟୀ ବାସଭୂମି ଭାବରେ ଆଦରି ନେବାପରେ ସେଇ ନୈସର୍ଗିକ ପ୍ରକୃତି ରାଜ୍ୟରେ ତାଙ୍କ ଲେଖନୀରୁ ନିଃସୃତ ହେଲା, ବିଶ୍ୱ-ସାହିତ୍ୟର ଅମର-ସୃଷ୍ଟି 'ପ୍ରମେଥିଆସ୍ ଅନ୍‌ବାଉଣ୍ଡ୍' (Prometheous Unbound : ୧୮୨୦) । ଏହା ଶେଲିଙ୍କ ବିପ୍ଳବୀ ମନର ଶ୍ରେଷ୍ଠ ପରିଚୟସୂଚକ, ଏକ ଗୀତିଧର୍ମୀ ନାଟକ । କବି ବିଶ୍ୱାସ କରୁଥିଲେ ଯେ ଶାସକ, ସମାଜ ଓ ପୂଜକ ଗୋଷ୍ଠୀ ହିଁ ମନୁଷ୍ୟର ସମସ୍ତ ଅଶାନ୍ତି ପାଇଁ ଦାୟୀ । ଫରାସୀ-ବିପ୍ଳବର ଆଦର୍ଶ ଏହି ମତବାଦର ଭିତ୍ତି । ସତେଅବା ଏହା ଗ୍ରୀକ୍ ନାଟ୍ୟକାର ଏସ୍‌କାଇଲସ୍‌ଙ୍କ 'ପ୍ରମେଥିଆସ୍ ବାଉଣ୍ଡ'ର ଏକ ପ୍ରତିବାଦ । ଗ୍ରୀକ୍ ନାଟକଟିରେ ସ୍ୱର୍ଗରୁ ମନୁଷ୍ୟସମାଜ ପାଇଁ ଅଗ୍ନି ଚୋରି ଅପରାଧରେ ବୀର ପ୍ରମେଥିଆସ୍ ଗୋଟିଏ ସୁଉଚ୍ଚ ପର୍ବତରେ ପ୍ରତାପୀ ଦେବତା ଜିଅସ୍‌ଙ୍କ ଦ୍ୱାରା ବନ୍ଦୀ । ବିପ୍ଳବୀ, ମାନବବାଦୀ କବିଙ୍କ ପକ୍ଷରେ ଏ ମୀମାଂସା ଗ୍ରହଣୀୟ ହୋଇନାହିଁ । କବିଙ୍କ ଆଖିରେ ପ୍ରମେଥିଆସ୍ ମାନବସମାଜର ପ୍ରତିନିଧି । ଅନ୍ୟ ପକ୍ଷରେ ଜିଅସ୍ ସ୍ୱେଚ୍ଛାଚାରୀ ସାମାଜିକ ପ୍ରତିଷ୍ଠାନର ପ୍ରତୀକ । ଏଣୁ କଥାବସ୍ତୁର ମୋଡ଼ ବଦଳାଇ କବି ଜିଅସ୍‌ର ପତନ ଘଟାଇଛନ୍ତି । ସ୍ୱପୁତ୍ର ଡେମଗାରଗନ୍ ତାର ପତନର କାରଣ ହୋଇଛି । ଆବଶ୍ୟକତାର (necessity) ପ୍ରତୀକ ଡେମଗାର୍‌ଗନ୍ ପ୍ରମେଥିଆସ୍‌କୁ ପାର୍ବତ୍ୟବନ୍ଧନରୁ ମୁକ୍ତ କରିଛି । ଏକନିଷ୍ଠ ମାନବବାଦୀ କବି ଶେଲିଙ୍କ ପକ୍ଷରେ କଥାବସ୍ତୁରେ ଏଭଳି ନୂତନ ସଂଯୋଜନ ଅତ୍ୟନ୍ତ ସ୍ୱାଭାବିକ ।

କବିତାର ଛନ୍ଦେ ଛନ୍ଦେ ନୂତନ ସମାଜ ସୃଷ୍ଟିକାମୀ ଗୋଟିଏ ଯୁବ ହୃଦୟର ଉଦ୍‌ବେଳନ ଅନୁଭବ କରିହୁଏ । ଏଥିରେ ଯେଉଁ ପୃଥିବୀର ସ୍ୱରୂପ ଅଙ୍କନ କରାଯାଇଛି ତା ଆଦିମ ପୃଥିବୀ । ଆକାଶ, ସମୁଦ୍ର, ପର୍ବତ ପରି ସାଧାରଣ ମନୁଷ୍ୟର ଚଳପ୍ରଚଳନ ସୀମା ବାହାରେ କବିତାର ପୃଷ୍ଠଭୂମି ପରିକଳ୍ପିତ । ଅତି ପ୍ରକୃତ ଓ ଅଶରୀରୀ ଚରିତ୍ର ଅବାଧରେ ଏଥିରେ ବିହାର କରିପାରନ୍ତି । ଗୀତି ଉଚ୍ଛ୍ୱାସରେ ଅତୀନ୍ଦ୍ରିୟ ଜଗତର ଆବେଦନ ଭରି ରହିଛି । ଚରିତ୍ରିକ ସଂଯୋଜନାରେ ମଧ୍ୟ ଶେଲିଙ୍କ ସ୍ୱାତନ୍ତ୍ର୍ୟ ଉକ୍ତ କବିତାରେ ସୁସ୍ପଷ୍ଟ । ଅତୀନ୍ଦ୍ରିୟ ବିଷୟକୁ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ସହ ତୁଳନା କରିବାର ପ୍ରବଣତା ତାଙ୍କଠାରେ ତୀବ୍ର । ସେ ଅମୂର୍ତ୍ତିର ପୂଜାରୀ, ଅତୀନ୍ଦ୍ରିୟ ଜଗତ ତାଙ୍କର ବିହାରସ୍ଥଳ । 'ଏପିସାଇକଡ଼ିଅନ୍'ରେ କବି ଏଣ୍ଟିଗନ୍‌ର ସନ୍ଧାନ କରିଛନ୍ତି । ଏଣ୍ଟିଗନ୍ ଗ୍ରୀକ୍ ବୀର ଆଗାମେମ୍‌ନନ୍‌ଙ୍କ କନ୍ୟା ।

କବି ନିଜର ଶେଷ ପ୍ରେମିକା ଏମିଲିଆ ଭିଭିଆନୀଙ୍କୁ ଏଣ୍ଟିଗନ୍ ମନେକରିଛନ୍ତି । ସ୍ୱପ୍ନରେ କବି ଏମିଲିଆଙ୍କ ସହ ଏକ ସୁନ୍ଦର ଦ୍ୱୀପକୁ ପଳାୟନ କରିଛନ୍ତି । ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟରେ କବି ଏମିଲିଆଙ୍କ ମଞ୍ଜୁଳ ଚିତ୍ର ଆଙ୍କିଛନ୍ତି ।

'ଏଡୋନାଇସ' (Adonais : ୧୮୨୧) ଭିନ୍ନ ସ୍ୱାଦର ଅନ୍ୟତମ ବିଶିଷ୍ଟ ରଚନା । ମିଲ୍‌ଟନଙ୍କ 'ଲିସିଡାସ୍', ଟେନିସନ୍‌ଙ୍କ 'ଇନ୍ ମେମୋରିଅମ୍' ପରି ଏହା ଇଂରେଜୀ ସାହିତ୍ୟର ଶ୍ରେଷ୍ଠ ଶୋକଗୀତି । ବନ୍ଧୁ କୀଟ୍‌ସ୍‌ଙ୍କ ମୃତ୍ୟୁରେ କବିପ୍ରାଣର କରୁଣାର୍ଦ୍ର ଉଦ୍‌ବେଳନ ଏଥିରେ ରୂପାୟିତ ।

କୀଟ୍‌ସ୍ ଯକ୍ଷ୍ମା ରୋଗ ଭୋଗୁଥିଲେ । କିନ୍ତୁ ଖ୍ରୀ: ୧୮୧୮ରେ ପ୍ରକାଶିତ ତାଙ୍କର ଦ୍ୱିତୀୟ ଖଣ୍ଡ କବିତାଗୁଚ୍ଛ ସମ୍ବନ୍ଧରେ ସମସାମୟିକ ପତ୍ରିକାର କଟୁ ମନ୍ତବ୍ୟ ତାଙ୍କ ସ୍ୱାସ୍ଥ୍ୟହାନିର ମୁଖ୍ୟ କାରଣ ହୋଇଥିଲା । ସେଇଥିରେ ହିଁ ସେ ମୃତ୍ୟୁବରଣ କଲେ । ପ୍ରେମ ଓ ଭ୍ରାତୃତ୍ୱର ମହାନ୍ କବି ଶେଲିଙ୍କ ହୃଦୟରେ କୀଟ୍‌ସ୍‌ଙ୍କ ଏ ଦୁର୍ଦ୍ଦଶା ଦାରୁଣ ଆଘାତ ଦେଇଥିଲା । କୀଟ୍‌ସ୍‌ଙ୍କ ଘନିଷ୍ଠ ସମ୍ପର୍କରେ ଆସି ନ ଥିଲେ ମଧ୍ୟ ପ୍ଲାଟୋଙ୍କ ଅତୀନ୍ଦ୍ରିୟ ପ୍ରେମ ଦର୍ଶନରେ ପ୍ରଭାବିତ ଶେଲିଙ୍କ ପକ୍ଷରେ ଅତୀନ୍ଦ୍ରିୟ ସ୍ତରରେ କୀଟ୍‌ସ୍‌ଙ୍କ ସାନ୍ନିଧ୍ୟ ପାଇବା ଓ ତାଙ୍କ ମୃତ୍ୟୁର ବିଚ୍ଛେଦକୁ ଗଭୀର ଭାବରେ ଅନୁଭବ କରିବା ଅସମ୍ଭବ ନଥିଲା ।

ଏହି ଦୀର୍ଘ କବିତାଟିର ପ୍ରଥମ କେତୋଟି ଉଚ୍ଛ୍ୱାସରେ କବି ଶୋକ-ଜର୍ଜରିତ କେତେକ ଚରିତ୍ରର ଅବତାରଣା କରିଛନ୍ତି । ଏହି ଚରିତ୍ରଙ୍କ ମଧ୍ୟରୁ ଅଧିକାଂଶ ଅମୂର୍ତ୍ତ, ଯେପରି ବିଷଣ୍ଣ ବସନ୍ତ ଓ ଭୋରୁଦ୍ୟମାନ ସମୟ । ତା'ପରେ କବି କୀଟ୍‌ସ୍‌ଙ୍କ ମୃତ୍ୟୁର କାରଣ ଭାବରେ ଦେଖାଦେଇଥିବା ନିଷ୍ଠୁର ସମାଲୋଚକଗୋଷ୍ଠୀକୁ ରୋଷାଗ୍ନିର ଶର ନିକ୍ଷେପ କରିଛନ୍ତି । ଅବଶେଷରେ ଆଧ୍ୟାତ୍ମିକଭାବରେ ଉଦ୍‌ବୁଦ୍ଧ ହୋଇ ମାନସିକ ଶାନ୍ତି ପାଇବାର ଉଦ୍ୟମ କରିଛନ୍ତି । ନିଜକୁ ସାନ୍ତ୍ୱନା ଦେବାକୁ ଯାଇ କବି କହିଛନ୍ତି : 'ଏ ଜୀବନ ଅସଂଖ୍ୟ ବର୍ଣ୍ଣିଳ କାଚଖଣ୍ଡର ଗମ୍ବୁଜ ପରି । ଶାଶ୍ୱତର ଶୁଭ୍ର ରଶ୍ମି ଏହାକୁ କଳଙ୍କିତ କରିଥାଏ ସିନା, ମୃତ୍ୟୁର ପଦପାତରେ ତାହା ଚୂର୍ଣ୍ଣବିଚୂର୍ଣ୍ଣ ହୋଇପଡ଼େ' :

> Life like a dome of many coloured glass,
> Stains the white radiance of eternity,
> Until Death tramples it to fragments.

ଏଣୁ କୀଟ୍‌ସ୍‌ଙ୍କ ନଶ୍ୱରଦେହକୁ ଶ୍ମଶାନ ଗ୍ରାସ କଲେ ମଧ୍ୟ ସେ ମୃତ୍ୟୁଞ୍ଜୟୀ । ଏ ମୃତ୍ୟୁ ତାଙ୍କର ଚିରନିଦ୍ରା ନୁହେଁ, ଜୀବନର ସ୍ୱପ୍ନଶେଷରେ ବରଂ ଏ ଜାଗରଣ :

> He doth not sleep—
> He hath awakened from the dream of life.

କବିତାଟି ପାଷ୍ଟୋରାଲ ଏଲିଜି ଧାରାରେ ଲିଖିତ । ସ୍ପେନ୍‌ସରୀୟ ଷ୍ଟାଞ୍ଜା ଭାବପ୍ରକାଶର ଉପଯୁକ୍ତ ମାଧ୍ୟମ ହୋଇପାରିଛି । ଶେଲିଙ୍କ ସମସ୍ତ କାବ୍ୟିକ ବୈଶିଷ୍ଟ୍ୟ ଏଥିରେ ପରିଲକ୍ଷିତ । କିନ୍ତୁ କୀଟ୍‌ସଙ୍କ ସହ ତାଙ୍କର ନିବିଡ଼ ସମ୍ପର୍କ ଅଭାବରୁ ଏଭଳି ଅବସ୍ଥାରେ ଆବେଗ ଯେପରି ଏକାନ୍ତ ଓ ହୃଦ୍ୟ ହେବା କଥା ତା ହୋଇପାରିନାହିଁ ।

ଜଣେ ସ୍ୱପ୍ନବାଦୀ (visionary), ସଂସ୍କାରକାମୀ, ଅମୂର୍ତ୍ତି ଓ ଅତୀନ୍ଦ୍ରିୟବାଦୀ ଗୀତିକବି ଭାବରେ ଶେଲି ଶ୍ରେଷ୍ଠ ଇଂରେଜୀ କବିଙ୍କ ମଧ୍ୟରେ ଗଣ୍ୟ । ଅନ୍ୟାନ୍ୟ ରୋମାଣ୍ଟିକ୍ କବିଙ୍କ ପରି ସେ ମଧ୍ୟ ପ୍ରକୃତିପ୍ରେମୀ । କିନ୍ତୁ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ସମଗ୍ର ପ୍ରକୃତି ଭିତରେ ଈଶ୍ୱରଙ୍କ ସତ୍ତା ଅନୁଭବ କରିବେଳେ ଶେଲି ପ୍ରେମର ସତ୍ତା ଅନୁଭବ କରନ୍ତି । ପ୍ରେମକୁ ଯେ ପ୍ରତୀକ ଭାବରେ ମଧ୍ୟ ବ୍ୟବହାର କରନ୍ତି । ଅନ୍ୟ ଦିଗରେ ନାନା ଆଦର୍ଶବାଦ ମଧ୍ୟରେ ବିଭ୍ରାନ୍ତ, ବିଶେଷ ଆବେଗପ୍ରବଣତା ହେତୁ ଚିନ୍ତାଧାରାର ଅସ୍ପଷ୍ଟତା, ତାଙ୍କ ପରିକଳ୍ପିତ ଆଦର୍ଶ ସମାଜର ସମ୍ଭାବ୍ୟହୀନତା, ଏପରିକି ବହୁ ରୂପକଳ୍ପର ଅନ୍ତଃସାର ଶୂନ୍ୟତା ପାଇଁ ସେ ସମାଲୋଚିତ ହୋଇଥାନ୍ତି । ବାଇରନ୍‌ଙ୍କ ଭଳି ଶେଲି ନିଜେ ହିଁ ନିଜର ସମଗ୍ର କବିତା ସୃଷ୍ଟିର କେନ୍ଦ୍ରବିନ୍ଦୁରେ ଅଧିଷ୍ଠିତ । କବିତାରେ ମହାକାବ୍ୟିକ ସ୍ୱର ଅନୁରଣର ଉଦ୍ୟମ, ଆବେଗ ପ୍ରବଣତା ମଧ୍ୟରେ ଯୁକ୍ତିହୀନତା ଓ ହାସ୍ୟରସର ଅଭାବ ମଧ୍ୟ ତାଙ୍କର କେତୋଟି ଦୁର୍ବଳତା । ଶେଲିଙ୍କ ଚିନ୍ତାଧାରାର ଅସାରତା ଅନୁଭବ କରି ମ୍ୟାଥ୍ୟୁ ଆର୍ନଲ୍‌ଡ୍ କହିଛନ୍ତି, "He is a beautiful and ineffectual angel, beating in the void his luminous wings in vain."

## ଜନ୍ କୀଟ୍‌ସ୍ ( John Keats : ୧୭୯୫-୧୮୨୧ )

କୀଟ୍‌ସଙ୍କ ଜନ୍ମ ସ୍ୱଳ୍ପବିତ୍ତ ପରିବାରରେ । ପିତା ପାନ୍ଥଶାଳାର ଘୋଡ଼ାରକ୍ଷୀ ଥିଲେ । ଘୋଡ଼ାଶାଳରେ ହିଁ କବିଙ୍କ ଜନ୍ମ । ପନ୍ଦର ବର୍ଷ ବେଳକୁ ସେ ପିତାମାତା ଦୁହିଁଙ୍କୁ ହରାନ୍ତି । ଅଭିଭାବକମାନେ ପାଠ ପଢ଼ାଇ ଖର୍ଚ୍ଚାନ୍ତ ହୁଅନ୍ତେ ନାହିଁକି; ତାଙ୍କୁ ସ୍କୁଲରୁ ଆଣି ଜଣେ ଡାକ୍ତରଙ୍କ ସହକାରୀ ନିଯୁକ୍ତ କଲେ । କିଛି ଦିନ ସେ ଡାକ୍ତରୀ ଅଧ୍ୟୟନ କଲେ; କିନ୍ତୁ ସ୍ୱପ୍ନବାଦୀ, ଭାବପ୍ରବଣ, ସୌନ୍ଦର୍ଯ୍ୟପିପାସୁ କବିଙ୍କର ସେଥିପ୍ରତି ଆକର୍ଷଣ ନଥିଲା । ଖ୍ରୀ: ୧୮୧୬ରେ କବି ଲି'ହାଣ୍ଟ୍‌ଙ୍କ ସଂପର୍କରେ ଆସନ୍ତି । ତା'ପରେ ପରେ ସେ ଡାକ୍ତରୀ ପଢ଼ା ଛାଡ଼ି କବିତା-ଲେଖାରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କଲେ । ଲି' ହାଣ୍ଟ୍ ଗୋଟିଏ ଉଗ୍ରପନ୍ଥୀ ଦଳର ମୁଖପତ୍ର ପ୍ରକାଶ କରୁଥିଲେ । କୀଟ୍‌ସଙ୍କର ତାହା ପ୍ରତି ସମର୍ଥନ ଥିଲା । ଖ୍ରୀ:୧୮୧୭ରେ ତାଙ୍କର ପ୍ରଥମ ସଂକଳନ 'ପଏମ୍‌ସ୍' ପ୍ରକାଶ ପାଇଲା । ଏତେବେଳକୁ ତାଙ୍କ ପରିବାରର ପୁରୁଷାନୁକ୍ରମିକ ରୋଗ ଯକ୍ଷ୍ମା ଦେଖାଦେଇଲାଣି । ସେଥିପାଇଁ ତାଙ୍କୁ କେତେକ ସ୍ୱାସ୍ଥ୍ୟକର ସ୍ଥାନକୁ ଯିବାକୁ ହେଉଥିଲା । ଖ୍ରୀ: ୧୮୧୮ରେ ତାଙ୍କର ଦ୍ୱିତୀୟ ପୁସ୍ତକ 'ଏଣ୍ଡିମିଅନ୍' (Endymion) ପ୍ରକାଶ ପାଇଲା । 'ଦି କ୍ୱାର୍ଟର୍‌ଲି ରିଭ୍ୟୁ' ଓ 'ବ୍ଲାକ୍ ଉଡ୍‌ସ୍ ମାଗାଜିନ୍'ର

କେତେକ ସମାଲୋଚକ ଏହି ପୁସ୍ତକଟିର କଠୋର ସମାଲୋଚନା କରିଥିଲେ । ଏଥିରେ କୀଟ୍‌ସ ଆଦୌ ବିଚଳିତ ନୁହନ୍ତି ବୋଲି ଯେତେ କହିଲେ ମଧ୍ୟ କ୍ରମାଗତ ଭଗ୍ନସ୍ୱାସ୍ଥ୍ୟରୁ ତାଙ୍କର ଆହତ ମନର ସୂଚନା ମିଳିଥିଲା । ସାନ ଭାଇ ଯକ୍ଷ୍ମାରେ ମଲେ । ଦାରିଦ୍ର୍ୟ ଓ ବ୍ୟାଧି ହେତୁ ପ୍ରାଣର ପ୍ରେୟସୀ ଫେନି ବ୍ରନ୍ (Fannie Brawne) ଙ୍କୁ ବିବାହ କରିବା ସମ୍ଭବ ହେଲନାହିଁ । ଅବଶେଷରେ ଭଗ୍ନସ୍ୱାସ୍ଥ୍ୟ ଓ ଭଗ୍ନ ହୃଦୟ ନେଇ କବି ଜଳବାୟୁ ପରିବର୍ତ୍ତନ ଉଦ୍ଦେଶ୍ୟରେ ଇଟାଲି ଯାତ୍ରା କଲେ । ଖ୍ରୀ: ୧୮୨୧ରେ ରୋମ୍ ନଗରୀରେ ଏଇ ଉଦୀୟମାନ ମହାନ୍ ପ୍ରତିଭାର ବିଲୟ ଘଟିଲା । ବୟସ ସେତେବେଳକୁ ପଚିଶ ବର୍ଷ ମାତ୍ର ।

**କୀଟସ୍‌ଙ୍କ କାବ୍ୟସମ୍ଭାର**

କୀଟ୍‌ସ୍‌ଙ୍କ ପ୍ରଥମ କବିତାଗୁଚ୍ଛ 'ପଏମ୍‌ସ୍' (Poems : ୧୮୧୭) ଏଇ ଉତ୍ତୁଙ୍ଗ କବି-ପ୍ରତିଭାର ସଙ୍କେତ ବହନ କରେନା । ଏଥିରେ ସନ୍ନିବିଷ୍ଟ ଉଲ୍ଲେଖଯୋଗ୍ୟ କବିତା ମଧ୍ୟରେ 'ଅନ୍ ଫାଷ୍ଟ ଲୁକିଂ ଇନ୍ ଟୁ ଚ୍ୟାପ୍‌ମାନ୍‌ସ୍ ହୋମାର୍' ସନେଟ୍‌ରୁ କବିଙ୍କର ଗ୍ରୀକ୍ ସାହିତ୍ୟ ପ୍ରତି ଅନୁରାଗ ଜଣାପଡ଼େ । ଅନ୍ୟ ଦୁଇଟି କବିତା 'ସ୍ଲିପ ଆଣ୍ଡ୍ ପଏଟ୍ରି' ଓ 'ଆଇ ଷ୍ଟୁଡ୍ ଟିପ ଟୋ ଆପନ୍ ଏ ଲିଟ୍‌ଲ୍ ହିଲ୍' କବିତାରେ ରେନାସାର କବି ସ୍ପେନ୍‌ସାର୍ ଓ ବନ୍ଦୁଲ' ହାଣ୍ଟ୍‌ଙ୍କ ପ୍ରଭାବ ସ୍ପଷ୍ଟ ।



ଏହା ପରେ କବି-ପ୍ରତିଭାର ନିଶ୍ଚିତ ଉତ୍ତରଣ ଦେଖାଯାଏ 'ଏଣ୍ଡିମିଅନ୍' ( Endymion : ୧୮୧୮ ) କବିତାଟିରେ ଏହା ପୌରାଣିକ କାହାଣୀଭିତ୍ତିକ ଏକ ଦୀର୍ଘ କବିତା । ପୁରାଣରେ ଦେବୀ ଚନ୍ଦ୍ରମା (ସିନ୍‌ଥିଆ) ଏଣ୍ଡିମିଅନ୍ ପ୍ରତି ଆସକ୍ତ ହୋଇପଡ଼ି 'ଲାଟ୍‌ମସ୍' ପାହାଡ଼ ଶୀର୍ଷରେ ତାହାକୁ ଚୁମ୍ବନ ଦାନ କରିଛନ୍ତି । ଏହି କଥାବସ୍ତୁକୁ କେନ୍ଦ୍ର କରି ନାନା କାଳ୍ପନିକ ପ୍ରସଙ୍ଗ ଯୋଡ଼ି କବି ପ୍ରାୟ ଚାରିହଜାର ପଙ୍‌କ୍ତିରେ କବିତାଟି ଲେଖିଛନ୍ତି । ଏହା ଗୀତଧର୍ମୀ; ପରିବେଶ ରୋମାଣ୍ଟିକ୍ । ସୁଖପାଠ୍ୟ ହେଲେମଧ୍ୟ ଏହାର ବସ୍ତୁ ବିନ୍ୟାସ ଜଟିଳ ତଥା ଦୁର୍ବୋଧ । କୀଟ୍‌ସ୍ ନିଜେ ଏହାକୁ ଏକ ସାର୍ଥକ ରଚନା ବୋଲି ଦାବୀ କରନ୍ତି ନାହିଁ । ଗ୍ରୀକ୍ ପୁରାଣର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବା ତାଙ୍କର ଉଦ୍ଦେଶ୍ୟ ବୋଲି ଗ୍ରନ୍ଥର ଭୂମିକାରେ ପ୍ରକାଶ କରିଛନ୍ତି ।

କବିଙ୍କ ଗ୍ରୀକପ୍ରୀତି (Hellenism) ବ୍ୟତୀତ ଏଥିରେ ସୌନ୍ଦର୍ଯ୍ୟ ପ୍ରତି ତାଙ୍କର ଆକର୍ଷଣ ଓ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । ଏଣ୍ଡିମିଅନ୍‌ର ପ୍ରାରମ୍ଭରେ କବି ଗାଇଛନ୍ତି :

A thing of beauty is a joy for ever;
Its loveliness increases; it will never
Pass into nothingness; but still will keep
A bower quiet for us; and a sleep
Full of sweet dream, and health, and
quiet breathing.

କବିଙ୍କ ତୃତୀୟ ତଥା ଶେଷ କବିତା ସଙ୍କଳନ 'ଲାମିଆ, ଇସାବେଲା, ଦି ଇଭ୍ ଅଫ୍ ସେଣ୍ଟ୍ ଏଗ୍‌ନେସ୍ ଆଣ୍ଡ୍ ଅଦର୍ ପଏମ୍ସ (୧୮୨୦)। ଏଥିରେ ସଂଯୋଜିତ ଅନ୍ୟାନ୍ୟ କବିତା ମଧ୍ୟରେ ଅପୂର୍ଣ୍ଣ 'ହାଇପାରିଅନ୍'ର ପ୍ରଥମ ରୂପ ଓ ଶ୍ରେଷ୍ଠ ସଂବୋଧଗୀତି ଗୁଡ଼ିକ ଅନ୍ତର୍ଭୁକ୍ତ। ଦୀର୍ଘ କବିତା ଗୁଡ଼ିକର ଭିତ୍ତି ଗ୍ରୀକ୍ ପୁରାଣ ଓ ମଧ୍ୟଯୁଗୀୟ ରୋମାନ୍ସ।

'ଇସାବେଲା' (Isabella; or the Pot of Basil : ୧୮୧୮) ବୋକାଚିଓଙ୍କ ଏକ କାହାଣୀ ଉପରେ ଆଧାରିତ। ନାୟିକା ଇସାବେଲାର ଦୁଇ ଭାଇ ତା'ର ପ୍ରେମିକକୁ ହତ୍ୟା କରିବା ପ୍ରସଙ୍ଗ ଏଥିରେ ବର୍ଣ୍ଣିତ। ନିଜ ପ୍ରେମିକର ସ୍ୱପ୍ନମୂର୍ତ୍ତିଠାରୁ ସମସ୍ତ କଥା ଜାଣିପାରିବା ଭଳି ଅତି-ପ୍ରାକୃତ ବିଷୟ ଏଥିରେ ଗ୍ରଥିତ। ଇସାବେଲାର ଶୋକ ଓ ମୃତ୍ୟୁ କରୁଣ ଆବେଦନ ସୃଷ୍ଟି କରେ। ଏହା ଷ୍ଟେନସମ୍ବଳିତ ଛାନ୍ଦରେ ଲିଖିତ; ଚିତ୍ରକଳ୍ପର ବହୁଳ ବ୍ୟବହାର ଲକ୍ଷ୍ୟ କରାଯାଏ। ଏହାର ଗଠନ ପରିପାଟୀ ଓ ଶୈଳୀ ଏଣ୍ଡିମିଅନ୍‌ଠାରୁ ଉତ୍କୃଷ୍ଟତର।

'ହାଇପାରିଅନ୍' (Hyperion) ଗୋଟିଏ 'ଅପୂର୍ଣ୍ଣ ମନ୍ଦିରର ମୁଖଶାଳା ପରି'। ଖ୍ରୀ: ୧୮୧୮ରେ ଏହାର ରଚନା କାର୍ଯ୍ୟ ଆରମ୍ଭ ହୋଇଥିଲା। ଗ୍ରୀକ୍ ପୁରାଣ କଥାର 'ସାଟାର୍ଣ୍ଣ' ଓ 'ହାଇପାରିଅନ' କିଭଳି ନିଜ ତରୁଣ ବଂଶଧର ଆପୋଲୋଙ୍କଦ୍ୱାରା ପରାଭୂତ ହୋଇଥିଲେ ତାହାହିଁ ଉପସ୍ଥାପିତ କରିବା କବିଙ୍କର ଉଦ୍ଦେଶ୍ୟ। ନୂତନ ବଂଶଧରମାନେ ଯେ ନିଜ ପୂର୍ବପୁରୁଷଙ୍କଠାରୁ ଅଧିକ ବୁଦ୍ଧିମାନ୍ ତଥା ଶକ୍ତିଶାଳୀ ହୋଇଥିଲେ, ଏହାହିଁ ଏଥିରୁ ପ୍ରତିପନ୍ନ। ସୌନ୍ଦର୍ଯ୍ୟ ଓ ଶକ୍ତିର ସମ୍ବନ୍ଧକୁ ନେଇ କବି ଯେଉଁ ଦାର୍ଶନିକ ଉପସଂହାର-ରେ ଉପନୀତ ହୋଇଛନ୍ତି ତା ମଧ୍ୟ ଏଥିରେ ବ୍ୟକ୍ତ। କବିଙ୍କର ବିଶ୍ୱାସ. "First in beauty shall be first in might." ଏହାଉପରେ ମିଲ୍‌ଟନଙ୍କ 'ପାରାଡାଇଜ୍ ଲଷ୍ଟ'ର ପ୍ରଭାବ ଅତିମାତ୍ରାରେ ଅନୁଭୂତ ହୁଏ। ମିଲ୍‌ଟନଙ୍କ ଅମିତ୍ରାକ୍ଷର ଛନ୍ଦ ଓ ସ୍ୱର ଗାମ୍ଭୀର୍ଯ୍ୟ ଏଥିରେ ଅନୁସୃତ। ସମ୍ଭବତଃ ମିଲ୍‌ଟନଙ୍କ ଅତ୍ୟଧିକ ପ୍ରଭାବ ବା ନିଜ ଜ୍ଞାନର ଅପରିପକ୍ୱତା ଅନୁଭବ କରି ଲେଖକ ଏହାକୁ ପୂର୍ଣ୍ଣାଙ୍ଗ କରିବାକୁ ଚାହିଁ ନଥିଲେ। ବସ୍ତୁତଃ କୀଟସ୍‌ଙ୍କ ଗୀତଧର୍ମୀ ପ୍ରତିଭା ମହାକାବ୍ୟ ରଚନା ପାଇଁ ଅନୁକୂଳ ନଥିଲା। ତଥାପି କେତେକଙ୍କ ମତରେ ଏହାହିଁ କୀଟସ୍‌ଙ୍କର ଶ୍ରେଷ୍ଠ କୃତି।

ଲମିଆଁ (Lamia : ୧୮୧୯) ର କଥାବସ୍ତୁ ସପ୍ତଦଶ ଶତାବ୍ଦୀର ଲେଖକ ବାର୍ଟନ୍‌ଙ୍କ 'ଏନାଟୋମି ଅଫ୍ ମେଲାଙ୍କୋଲି'ରୁ ଗୃହୀତ । ଏହାର ନାୟିକା ଲମିଆଁ ଜଣେ ନାଗକନ୍ୟା । ସୁନ୍ଦରୀ ଯୁବତୀର ରୂପ ଧରି ଲୁସିଆସ୍ ନାମକ ଏକ ଯୁବକକୁ ସେ ପ୍ରଲୁବ୍ଧ କରେ । ଲୁସିଆସ୍ ତାହାକୁ ନିଜ ଘରକୁ ନେଇ ତାର ଇନ୍ଦ୍ରିୟ ଲାଳସା ପରିତୃପ୍ତ କରେ । ଆନନ୍ଦରେ ବିଭୋର ହୋଇ ସେ ଭୋଜିସଭାର ଆୟୋଜନ କରେ । ଏଇ ଭୋଜିସଭାକୁ ଆସନ୍ତି ଜଣେ ସନ୍ନ୍ୟାସୀ ଏପୋଲୋନିଆସ୍ । ଲମିଆଁ ର ଅସଲ ରୂପଟି ଜାଣିପାରି ସେ ତାର ପ୍ରକୃତ ନାଁରେ ଡାକଦେବା ମାତ୍ରେ ଲମିଆଁ ଗୋଟିଏ ଆର୍ତ୍ତ ଚିତ୍କାର ଛାଡ଼ି ଅଦୃଶ୍ୟ ହୋଇଯାଏ ।

ଏଠାରେ ଲମିଆଁ ଓ ଏପୋଲୋନିଆସ୍ ଯଥାକ୍ରମେ ଆବେଗ ଓ ଯୁକ୍ତିବାଦ ବା ବିଜ୍ଞାନର ପ୍ରତୀକ । ଯୁକ୍ତିବାଦ ସଂସର୍ଗରେ କବିତାର ପ୍ରକୃତ ସୌନ୍ଦର୍ଯ୍ୟ କିପରି ଅନ୍ତର୍ହିତ ହୁଏ ତାହା ଏଠାରେ ଦେଖାଇ ଦିଆଯାଇଛି । ଏହା ହିରୋଇକ୍ କପ୍‌ଲେଟ୍‌ରେ ଲିଖିତ । ଚିତ୍ରଧର୍ମିତାର ବାହୁଲ୍ୟ ଲକ୍ଷ୍ୟ କରାଯାଏ ।

'ଦି ଇଭ୍ ଅଫ୍ ସେଣ୍ଟ୍ ଏଗ୍‌ନେସ୍' (୧୮୧୯) କୀଟସଙ୍କ ଶ୍ରେଷ୍ଠ ଆଖ୍ୟାନଧର୍ମୀ କବିତା । ଏହାର ନାୟକ-ନାୟିକା ପରସ୍ପରକୁ ଭଲ ପାଇ କୌଣସି ଦୂରସ୍ଥାନକୁ ଏକତ୍ର ପଳାୟନ କରିଛନ୍ତି । ଆଖ୍ୟାନ ଖୁବ ଅଳ୍ପ ନୁହେଁ । ପ୍ରେମଚିତ୍ର ଅଙ୍କନରେ ଲେଖକ ଅପେକ୍ଷାକୃତ ଅଧିକ ସଂଯମ ଅବଲମ୍ବନ କରିଛନ୍ତି । କୀଟ୍‌ସ୍‌ଙ୍କ ଇନ୍ଦ୍ରିୟପ୍ରବଣତା (Sensuousness) ର ଉତ୍କୃଷ୍ଟ ପ୍ରମାଣ ଏଠାରେ ଥାଉ । ଏହାର ଶୈଳୀ ଉପରେ ସ୍ପେନ୍‌ସାରଙ୍କ ପ୍ରଭାବ ପଡ଼ିଛି ।

କୀଟ୍‌ସ୍‌ଙ୍କ ସମ୍ବୋଧଗୀତ (Ode) ରଚନା ମଧ୍ୟରେ 'ଓଡ୍ ଟୁ ଏ ନାଇଟିଙ୍ଗେଲ୍', 'ଓଡ୍ ଅନ୍ ଏ ଗ୍ରେସିଆନ ଆର୍‌ନ', 'ଓଡ୍ ଟୁ ଅଟାମ୍', 'ଓଡ୍ ଟୁ ସାଇକ୍,' ଓ 'ଓଡ୍ ଟୁ ମେଲାଙ୍କୋଲି' ଲେଖକଙ୍କର ଅମର ସୃଷ୍ଟି । ଏଥିମଧ୍ୟରୁ ପ୍ରଥମ ତିନୋଟି ଓଡ୍ ବହୁ ଆଦୃତ । ଭାଇ ଟମ୍‌ଙ୍କ ମୃତ୍ୟୁର ଅବ୍ୟବହିତ ପରେ 'ଓଡ୍ ଟୁ ଏ ନାଇଟିଙ୍ଗେଲ୍' ଲିଖିତ । କବି ନାଇଟିଙ୍ଗେଲର ସ୍ୱରରେ ମୁଗ୍ଧ ହେଲେ ମଧ୍ୟ, ଭାବରାଜ୍ୟରେ କେତୋଟି ମୁହୂର୍ତ୍ତ ପାଇଁ ତା ସହିତ ଏକାତ୍ମ ହେଲେ ମଧ୍ୟ, ସଂସାରର ଦୁଃଖ-ଯନ୍ତ୍ରଣାକୁ ଭୁଲିପାରିନାହାନ୍ତି । ତାଙ୍କପାଇଁ ଜୀବନ ସତେକି ଗୋଟିଏ ଯନ୍ତ୍ରଣାର ଆର୍ତ୍ତନାଦ, "Here where men sit and hear each other groan." ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ ମଧ୍ୟରେ ଗୋଟିଏ ଯନ୍ତ୍ରଣାମୁକ୍ତ ଜୀବନ ସତେ ଯେପରି ତାଙ୍କର କାମ୍ୟ ।

'ଓଡ୍ ଅନ୍ ଏ ଗ୍ରେସିଆନ୍ ଆର୍‌ନ୍'ରେ କବିଙ୍କ ସୌନ୍ଦର୍ଯ୍ୟପିପାସା ଅଧିକ ପ୍ରବଳ । ଗ୍ରୀସ୍ ଦେଶର ଗୋଟିଏ ଭସ୍ମପାତ୍ର ଦର୍ଶନରେ କବିଙ୍କର ଅନୁଚିନ୍ତନ ଏଥିରେ ପ୍ରକାଶପାଇଛି । ପାତ୍ର ଦେହରେ ଅଙ୍କିତ ବଂଶୀବାଦକର ସ୍ୱର କବି ଶୁଣିପାରୁନଥିବାରୁ ତାହା ତାଙ୍କପାଇଁ ମଧୁରତର ।

"Heard melodies are sweet, but those unheard
Are sweeter, therefore ye sweet music play on."

ଏ ସମସ୍ତ ଓଡ୍‌କୁ 'ଓଡ୍ ଟୁ ଅଟମ୍' ଚାରିଧର୍ମିତାରେ ବଳିଯାଇଛି । ଏଥିରେ କବିଙ୍କ ଆବେଗ ମଧ୍ୟ ସଂଯତ । ଶରତ୍‌କାଳ ଉପରେ ବ୍ୟକ୍ତିତ୍ୱ ଆରୋପ କରାଯାଇଛି । ପ୍ରକୃତି ବର୍ଣ୍ଣନା ହିଁ ଏହାର ଏକମାତ୍ର ଉଦ୍ଦେଶ୍ୟ । କବିଙ୍କ ବ୍ୟକ୍ତିନିଷ୍ଠତାର ସ୍ପର୍ଶ ନାହିଁ । ଏଣୁ ରୋମାଣ୍ଟିକ୍ ସ୍ୱର ଏଥିରେ ତୀବ୍ର ନୁହେଁ ।

ଓଡ୍ ଗୁଡ଼ିକରେ କୀଟସ୍‌ଙ୍କ ଶିଳ୍ପଚେତନାର ଚରମ ବିକାଶ ଘଟିଛି । ଏହାକୁ ଲକ୍ଷ୍ୟକରି ରୋବାର୍ଟ ବ୍ରିଜେସ୍ କହିଛନ୍ତି, କେବଳ ଓଡ୍ ତକ ହିଁ ଲେଖି ଅନ୍ୟ କବିତା ଲେଖି-ନଥିଲେ ମଧ୍ୟ କୀଟସ୍ ବର୍ତ୍ତମାନର କବିଯଶ ଲାଭ କରିପାରିଥାନ୍ତେ ।

## କେତୋଟି ସାଧାରଣ ବୈଶିଷ୍ଟ୍ୟ

କୀଟସ୍‌ଙ୍କ ସମସ୍ତ ବିଶିଷ୍ଟ କାବ୍ୟକୃତି ମାତ୍ର ତିନିବର୍ଷ (ଖ୍ରୀ: ୧୮୧୭ରୁ ୧୮୨୦) ମଧ୍ୟରେ ଲିଖିତ । ତାଙ୍କର ସମଗ୍ର ସୃଷ୍ଟିକୁ ବିଗ୍ଭରକୁ ନେଲେ କେତୋଟି ସାଧାରଣ ଲକ୍ଷଣ ଆଖିରେ ପଡ଼େ ।

କୀଟସ୍ ଅତିମାତ୍ରାରେ ଗ୍ରୀକ୍‌ପ୍ରେମୀ । ଲଂଗ୍‌ଙ୍କ ଭାଷାରେ "...he set himself to the task of reflecting in modern English the spirit of the old Greeks." ଏଣ୍ଡିମିଅନ, ହାଇପାରିଅନ, ଲମିଆଁ, ଗ୍ରେସିଆନ୍ ଅର୍ନ୍, ସାଇକ୍‌ପରି ତାଙ୍କର ବିଶିଷ୍ଟ ରଚନା ଗ୍ରୀକ୍ ଉପାଦାନ ଉପରେ ଆଧାରିତ । ଏହି ଗ୍ରୀକ୍‌ପ୍ରୀତି (Hellenism) ବା ଗ୍ରୀକ୍ ପୁରାଣ, ଗଳ୍ପ, ସାହିତ୍ୟ ଓ ସଂସ୍କୃତି ପ୍ରତି ଅତିଶୟ ଅନୁରକ୍ତି ହେତୁ ଶେଲି ତାଙ୍କୁ 'ଗ୍ରୀକ୍' ଆଖ୍ୟା ଦେଇଛନ୍ତି ।

ସମସ୍ତ ରୋମାଣ୍ଟିକ୍ କବିଙ୍କ ମଧ୍ୟରେ କୀଟସ୍ ହିଁ ସୌନ୍ଦର୍ଯ୍ୟର ଶ୍ରେଷ୍ଠ ନିଷ୍ଠାପର ଉପାସକ । ଲଂଗ୍ କହନ୍ତି, ଓ୍ୱାର୍ଡସ୍‌ୱାର୍ଥ୍ କବିତାକୁ ନୂତନ ଦର୍ଶନ ଦେଇଛନ୍ତି, ଗୁରୁପରି ନୀତିବାଦର ପ୍ରଚାର କରିଛନ୍ତି । ବାଇରନ୍ ନିଜର ଆତ୍ମପ୍ରୌଢ଼ି ପ୍ରକାଶ କରିଛନ୍ତି, ସମସାମୟିକ ରାଜନୀତି ଓ ସମାଜ ବିରୁଦ୍ଧରେ ବିଦ୍ରୋହ କରିଛନ୍ତି; ଅନ୍ୟ ପକ୍ଷରେ କବିତାକୁ ଘୃଣା କରିଛନ୍ତି । ଶେଲି ଅସମ୍ଭବ ସମାଜସଂସ୍କାରର ପରିକଳ୍ପନା କରିଛନ୍ତି; କିନ୍ତୁ ଏକମାତ୍ର କୀଟସ୍ ହିଁ କବିତାର ଏକ ସ୍ୱତନ୍ତ୍ର ମହିମାନ୍ୱିତ ସ୍ଥିତି କଳ୍ପନା କରିଛନ୍ତି । ଦର୍ଶନ, ରାଜନୀତି ବା ଯେକୌଣସି ଉଦ୍ଦେଶ୍ୟ ପ୍ରଣୋଦିତ ହେଲେ କବିତାର କଳାତ୍ମକ ଗୁଣ ହ୍ରାସ ପାଏ ବୋଲି ତାଙ୍କର ବିଶ୍ୱାସ । ସୌନ୍ଦର୍ଯ୍ୟ ହିଁ ତାଙ୍କର ପ୍ରାଣ; ଯାହା ସୁନ୍ଦର ତାହା ହିଁ ସତ୍ୟ ବୋଲି କବିଙ୍କ ବିଶ୍ୱାସ ।

"Beauty is truth, truth beauty, that is all" ଏଇଥିରେହିଁ ତାଙ୍କର ଚରମତୃପ୍ତି । "A thing of beauty is a joy for ever."

କୀଟସ୍‌ଙ୍କ କବିତାର ଅନ୍ୟତମ ବୈଶିଷ୍ଟ୍ୟ ଇନ୍ଦ୍ରିୟପ୍ରବଣତା (Sensuousness) । ତାଙ୍କ କବିତାରେ ଆଖି, କାନ, ନାକ, ଜିହ୍ୱା ଓ ତ୍ୱକ୍ ପାଇଁ ଆବେଦନ ଭରିରହିଥାଏ ।

ବର୍ଣ୍ଣନେନ୍ଦ୍ରିୟର ପ୍ରଭାବରେ ତାହାଙ୍କ ବର୍ଣ୍ଣନା ଚିତ୍ରଧର୍ମୀ (Pictorial) । ଶରତ୍ ଋତୁର ବର୍ଣ୍ଣନା ଦେବାକୁ ଯାଇ କବି କହିଛନ୍ତି—

"And sometimes like a gleaner thou dost keep
Steady thy laden head across a brook;
Or by a cedar-press, with a patient look,
Thou watches the lasto orings, hours by hours."

ଶେଲି ଅମୂର୍ତ୍ତ ଚିତ୍ର ଦେବାରେ ଆଗ୍ରହୀ ହୋଇଥିବାବେଳେ କୀଟସ୍ ମୂର୍ତ୍ତ ଚିତ୍ର ପରିବେଷଣର ପକ୍ଷପାତୀ । ଅନ୍ୟାନ୍ୟ ରୋମାଣ୍ଟିକ୍ କବିଙ୍କ ପରି କୀଟସ୍ ମଧ୍ୟ ପ୍ରକୃତିପ୍ରେମୀ । ଏହାର ଶବ୍ଦ, ରଙ୍ଗ, ସୁବାସ ଓ ଅମିୟସ୍ପର୍ଶ ତାଙ୍କୁ ବିମୋହିତ କରେ । କବିଙ୍କ ଆଖିରେ ପ୍ରକୃତିର ପ୍ରତ୍ୟେକ ବସ୍ତୁ ସୁନ୍ଦର ।

ଅନ୍ୟାନ୍ୟ ରୋମାଣ୍ଟିକ୍ କବିଙ୍କପରି କୀଟସଙ୍କ ପ୍ରଥମପର୍ଯ୍ୟାୟର କବିତାରେ ପଳାୟନବାଦ ଦେଖାଯାଏ । ଦୁଃଖ, ଦୈନ୍ୟ ଓ ଯନ୍ତ୍ରଣାପୂର୍ଣ୍ଣ ଜୀବନପ୍ରତି ଆସକ୍ତ ହେବା ପରିବର୍ତ୍ତେ ଏଭଳି ଏକ ଜୀବନ ବୃତ୍ତରୁ ପଳାୟନକରି ଯିବାକୁ ପଢ଼ିବାର ସ୍ୱପ୍ନ ସେ ଦେଖିଛନ୍ତି । ଗ୍ରୀକ୍ କଳା ଓ ସାହିତ୍ୟ ପ୍ରୀତି ତଥା ମଧ୍ୟଯୁଗୀୟ ରୋମାନସ୍ ପ୍ରୀତି ମଧ୍ୟରେ ବାସ୍ତବ ଜୀବନରୁ ଏହି ପଳାୟନ ମନୋବୃତ୍ତି ପ୍ରକାଶପାଇଛି ।

କିନ୍ତୁ କବିଙ୍କ ଅଭିଜ୍ଞତା ବଢ଼ିବା ସଙ୍ଗେ ସଙ୍ଗେ ବାସ୍ତବତା ପ୍ରତି କ୍ରମେ ସେ ଆଗ୍ରହୀ ହୋଇଛନ୍ତି । 'ହାଇପାରଅନ୍ ଏ ଭିଜନ୍' କବିତାରେ କବି ସଚେତଯେପରି ଆତ୍ମ-ସମୀକ୍ଷା କରିଛନ୍ତି :

Thou art a dreaming thing
The fever of thyself, think of the earth.

କୀଟସ୍ କବିତାକୁ ଦର୍ଶନ, ରାଜନୀତି ବା ନୀତିପ୍ରଚାରର ମାଧ୍ୟମ କରିବା ପରିବର୍ତ୍ତେ ସୌନ୍ଦର୍ଯ୍ୟ ଓ ଆନନ୍ଦର ଉତ୍ସ ଭାବରେ ଗ୍ରହଣକରି ଶ୍ରେଷ୍ଠ ଶିଳ୍ପୀମନର ପରିଚୟ ଦେଇଛନ୍ତି । ଜୀବନର ମଧ୍ୟାହ୍ନ ପୂର୍ବରୁ ଅକାଳବିୟୋଗ ହେତୁ ଏହି ପ୍ରତିଭାର ପୂର୍ଣ୍ଣପ୍ରକାଶ ସମ୍ଭବ ହେଲନାହିଁ ।

## ଉପନ୍ୟାସ :

ରିଚାର୍ଡସନ୍ ଓ ଫିଲ୍‌ଡିଂଙ୍କ ସାମାଜିକ ସମସ୍ୟା ଆଧାରିତ ବାସ୍ତବଧର୍ମୀ ଉପନ୍ୟାସ ପରେ ପରେ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଏକ ଭିନ୍ନ ସ୍ୱାଦର ଉପନ୍ୟାସ ରଚିତ ହୋଇଥିଲା । ଏଗୁଡ଼ିକ ମୁଖ୍ୟତଃ ଭୟାନକ ରସାଶ୍ରିତ । 'ଟେରର' (terror) ବା 'ଗୋଥିକ' (Gothic) ଉପନ୍ୟାସ ଭାବରେ ଏଗୁଡ଼ିକ ନାମିତ କରାଯାଇଥାଏ । ମଧ୍ୟଯୁଗୀୟ ପରିବେଶ, ଅତିଲୌକିକତା ଓ ଅହେତୁକ ଆବେଗ ଏହାର ମୂଳପିଣ୍ଡ । ରୋମାଣ୍ଟିକ ମନର ଅତୀତ ପ୍ରୀତିରୁ ଏହାର ଉଦ୍ଭବ ହୋଇଥାଇପାରେ ।

ସମ୍ଭବତଃ ହୋରାସ୍ ୱାଲ୍‌ପୋଲ୍ (Horace Walpole ୧୭୧୭-୯୭) ଏଭଳି ଉପନ୍ୟାସର ପ୍ରବର୍ତ୍ତକ । ତାହାଙ୍କ 'ଦ କ୍ୟାସେଲ୍ ଅଫ୍ ଅଟ୍ରାଣ୍ଟୋ (The Castle of Otranto—୧୭୬୫) ଏହାର ପ୍ରକୃଷ୍ଟ ଉଦାହରଣ । ଜୀବନର ଜଟିଳ ସମସ୍ୟାମୁକ୍ତ ପ୍ରାଚୁର୍ଯ୍ୟ ମଧ୍ୟରେ ଲାଳିତ ୱାଲ୍‌ପୋଲ୍ ନିଜେ ଷ୍ଟ୍ରବେରି ପାହାଡ଼ରେ ଗୋଟିଏ ଗଥିକ ସଦନ ନିର୍ମାଣ କରି ତା'ରି ଭିତରେ ମଧ୍ୟଯୁଗୀୟ ରୋମାନ୍ସର ଦିବାସ୍ୱପ୍ନ ଦେଖୁଥିଲେ । 'ଦ କ୍ୟାସେଲ ଅଫ୍ ଅଟ୍ରାଣ୍ଟୋ'ରେ ମଧ୍ୟଯୁଗୀୟ ଇଟାଲିର ଚିତ୍ର ପରିକଳ୍ପିତ । ଅତିଭୌତିକ ଓ ଭୟାନକ ଚିତ୍ରରେ ଏହା ଭରପୂର । ପରବର୍ତ୍ତୀ ଲେଖକଙ୍କ ଉପରେ ଏହାର ପ୍ରବଳ ପ୍ରଭାବ ପଡ଼ିଛି ।

ଉଇଲିୟମ୍ ବେକ୍‌ଫୋର୍ଡ (୧୭୫୯-୧୮୪୪) ଓ ମିସେସ୍ ଏନ୍ ରେଡ୍‌କ୍ଲିଫ୍ (୧୭୬୪-୧୮୨୩) ଆଦି ଏହି ଶ୍ରେଣୀୟ ଲେଖକ । ରେଡ୍‌କ୍ଲିଫ୍‌ଙ୍କ 'ଦ ମିଷ୍ଟ୍ରିଜ୍ ଅଫ୍ ଉଡୋଲ୍‌ଫୋ' (The Mysteries of Udolpho) ଏଠାରେ ଉଲ୍ଲେଖଯୋଗ୍ୟ । ନାୟକ ମନ୍‌ଟୋନି (Montoni) ବର୍ବର ପ୍ରକୃତିର । ସେ ନିର୍ଜନ ଅଞ୍ଚଳରେ ପରିତ୍ୟକ୍ତ ଗୋଟିଏ ରାଜବାଟିର ମାଲିକ । ତା କବଳରେ ଗୋଟିଏ ନିରାହା ଝିଅ । ରାଜବାଟିର ପ୍ରତି ଅଂଶ ରହସ୍ୟ-ପରିପୂର୍ଣ୍ଣ । ଗଳ୍ପର ଶେଷଭାଗରେ ଲେଖିକା ଏହି ଭୟାନକତାକୁ ଯୁକ୍ତିଗ୍ରାହ୍ୟ କରିଦେବାକୁ ଚେଷ୍ଟାକରିଛନ୍ତି । ରୋମାଣ୍ଟିକ କବିଙ୍କ ଉପରେ ଏହି ଭୟାନକ ଉପନ୍ୟାସର ପ୍ରଭାବ ଅବଶ୍ୟ ପଡ଼ିଛି । ବାଇରନ୍ ସତେଅବା ପୂର୍ବୋକ୍ତ ଉପନ୍ୟାସର 'ମନ୍‌ଟୋନି' ଚରିତ୍ର; ଶେଲି ଅତିଭୌତିକତାରେ ଦୃଢ଼ବିଶ୍ୱାସୀ ।

ଉନବିଂଶ ଶତାବ୍ଦୀର ମୁଖ୍ୟ ଔପନ୍ୟାସିକମାନେ ଏହି ଭୟାନକ ରସକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଏହି ଯୁଗର ଶ୍ରେଷ୍ଠ ଔପନ୍ୟାସିକ ଜେନ୍ ଅଷ୍ଟିନ୍ (Jane Austen : ୧୭୭୫-୧୮୧୭) ଓ ସାର୍ ୱାଲଟାର୍ ସ୍କଟ୍ (Sir Walter Scott : ୧୭୭୧-୧୮୩୨) ଇଂରେଜୀ ଉପନ୍ୟାସର ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି ।

## ଜେନ୍ ଅଷ୍ଟିନ୍ :



'ଷ୍ଟେଭେନ୍‌ଟନ୍‌ର' ରେକ୍‌ଟର 'ରେଭରେଣ୍ଡ୍ ଜର୍ଜ ଅଷ୍ଟିନ୍'ଙ୍କ ସପ୍ତମ ସନ୍ତାନ । ଜୀବନ ବୈଚିତ୍ର୍ୟହୀନ । ଗୃହାଙ୍ଗନରେହିଁ ଜୀବନର ଅଧିକାଂଶ ସମୟ ବିତିଛି । ଅତି ଅଳ୍ପ ବୟସରୁ ଲେଖାଲେଖିର ଅଭ୍ୟାସ । ପରିବାରର ଛୋଟ ଟେବୁଲଟି ଉପରେ ଉପନ୍ୟାସ ଲେଖାରେ ନିବିଷ୍ଟମନା ଏଇ ତରୁଣୀଙ୍କର ଆତ୍ମାଭିମାନ ନଥିଲା । ନିଜକୁ ଔପନ୍ୟାସିକାଭାବରେ ପରିଚୟ ଦେବାକୁ କୁଣ୍ଠିତା । କିଏ କାଳେ ତାଙ୍କ ଲେଖା ଦେଖିନେବ ଭାବି ବାହାରଲୋକ ଆସିବାମାତ୍ରେ ଲେଖା କାଗଜକୁ ଲୁଚାଇପକାନ୍ତି । ପ୍ରକାଶକ ସ୍ଥିର-କରି ବହି ଛପାଇବାର ବାଞ୍ଛାଞ୍ଚଳ ମଧ୍ୟ ନଥିଲା ।

ତାଙ୍କର ସବୁଠାରୁ ଅଧିକ ଲୋକପ୍ରିୟ ଉପନ୍ୟାସ 'ପ୍ରାଇଡ୍ ଆଣ୍ଡ ପ୍ରେଜୁଡାଇସ୍' ଲେଖାହେବାର ଷୋହଳ ବର୍ଷ ପରେ ଲୋକଲୋଚନକୁ ଆସିଥିଲା । ଜେନ୍ ଅଷ୍ଟିନ୍ ଛଅଟି ମାତ୍ର ଉପନ୍ୟାସ ଲେଖିଛନ୍ତି । ପ୍ରତ୍ୟେକଟି କାଳୋତ୍ତୀର୍ଣ୍ଣ । ଆଧୁନିକ ଯୁଗରେ ସେଗୁଡ଼ିକ ଅଧିକରୁ ଅଧିକ ଆଦୃତ ହେଉଛି ।

'ପ୍ରାଇଡ୍ ଆଣ୍ଡ୍ ପ୍ରେଜୁଡ଼ାଇସ୍' (Pride and Prejudice) ଲେଖିକାଙ୍କ ସର୍ବଶ୍ରେଷ୍ଠ ତଥା ବହୁଆଦୃତ ରଚନା । ଖ୍ରୀ: ୧୭୯୭ରେ ଲେଖା ଶେଷ ହୋଇଥିଲେ ମଧ୍ୟ ଏହା ଖ୍ରୀ: ୧୮୧୩ରେ ପ୍ରଥମେ ପ୍ରକାଶିତ ହେଲା । ଉପନ୍ୟାସଟିରେ ନାୟିକା ଏଲିଜାବେଥ୍ ବେନେଟ୍ ସୁନ୍ଦରୀ ଲାସ୍ୟମୟୀ ହେଲେ ମଧ୍ୟ କେତେଗୁଡ଼ିଏ ବଦ୍ଧମୂଳ ଧାରଣା (Prejudice)ର ବଶବର୍ତ୍ତୀ । ଅନ୍ୟ ପକ୍ଷରେ ସଂଭ୍ରାନ୍ତବଂଶୀୟ ନାୟକ ଡାର୍ସିର ମନ ଅହମିକା (Pride) ଗ୍ରସ୍ତ ।

ନାୟକ ନାୟିକା ଡାର୍ସି ଓ ଏଲିଜାବେଥ୍ଙ୍କ ପ୍ରଥମ ସାକ୍ଷାତ୍ ହୁଏ ଗୋଟିଏ ଗାଁର ନାଚ ଉତ୍ସବରେ । ଡାର୍ସିର ଅହମିକା କିଛି କମ୍ ନୁହେଁ । ତା' ଢଙ୍ଗଢାଙ୍ଗରୁ ମନେହେଉଥିଲା ସତେ ଯେପରି ଗ୍ରାମ୍ୟ ଝିଅମାନେ ତା' ଆଗରେ ଅତି ତୁଚ୍ଛ । ଏଲିଜାବେଥ୍ ପ୍ରତି ଡାର୍ସିର ଜଣେ ବନ୍ଧୁ ଏହିପରି ଅପମାନଜନକ ମନ୍ତବ୍ୟ ପ୍ରକାଶ କରନ୍ତି । ଏଥିରେ ଏଲିଜାବେଥ୍ ମନରେ ଆଘାତ ଲାଗିଛି—ଡାର୍ସି ଯେ ଜଣେ ଉତ୍ତମ ସ୍ୱଭାବର ଲୋକ ନୁହେଁ, ଏ ବିଷୟରେ ତା ମନରେ ଗୋଟିଏ ଦୃଢ଼ ଧାରଣା ସୃଷ୍ଟି ହୋଇଛି । କ୍ରମେ ଡାର୍ସିର ଅହମିକା ଅଧିକ ସ୍ଫୀତ ହୋଇଛି; ଏଲିଜାବେଥ୍‌ର ପ୍ରଥମ ଧାରଣା ମଧ୍ୟ ବଦ୍ଧମୂଳ ହୋଇଛି । ଅହମିକାସତ୍ତ୍ୱେ ଡାର୍ସି କିନ୍ତୁ ଏଲିଜାବେଥ୍‌କୁ ଭଲପାଇ ବସିଛି । ଏ ଭିତରେ ଆଉ ଥରେ ଉଭୟଙ୍କର ସାକ୍ଷାତ ଘଟିଛି । ଡାର୍ସି ବିବାହ ପ୍ରସ୍ତାବ ଦେଇଛି ସତ, ମାତ୍ର ଏହା ଦାମ୍ଭିକତାପୂର୍ଣ୍ଣ । ଏପରି ଅହମିକାକୁ ଏଲିଜାବେଥ୍ ସହ୍ୟ କରିବା ଅସମ୍ଭବ । ଅବସ୍ଥାଚକ୍ରରେ ଡାର୍ସିର ବାସଭବନରେ ଉଭୟଙ୍କର ସାକ୍ଷାତ ଘଟିଛି । ଉଭୟଙ୍କ ମିଳନରେ ଉପନ୍ୟାସର ପରିସମାପ୍ତି । ସେକ୍ସପିଅରଙ୍କ 'ମଚ୍ ଏଡୋ ଏବାଉଟ୍ ନଥିଂ'ରେ ନାୟକ ନାୟିକା ବେନେଡ଼ିକ୍ ଓ ବିଏଟ୍ରିସ୍ ପ୍ରଥମେ ପରସ୍ପରକୁ ଘୃଣାକରି ଅବଶେଷରେ ପରସ୍ପରକୁ ବିବାହକରିବା ପରି ଏ ଉପନ୍ୟାସଟିରେ ନାୟକ ଓ ନାୟିକା ମିଳିତ ହୋଇଛନ୍ତି । ରେଷ୍ଟୋରେସନ ଯୁଗର ଆଚରଣମୂଳକ ନାଟକ (Comedy of manners) ସହିତ ଏହାର ସାମ୍ୟ ଅଛି । ନାୟକ ନାୟିକା ବ୍ୟତୀତ ମିସେସ୍ ବେନେଟ୍, କଲିନ୍ସ୍ ଓ କ୍ୟାଥରିନ୍ ପରି ଅତିରଞ୍ଜିତ୍ୟପୂର୍ଣ୍ଣ ଚରିତ୍ରର ସଫଳ ରୂପାୟନ ଲକ୍ଷ୍ୟ କରାଯାଏ । ବିବାହ ଯୋଗାଡ଼ କରିବାରେ ମା' ମିସେସ୍ ବେନେଟଙ୍କ ଉତ୍ସାହ, କଲିନ୍ସ୍ ଓ କ୍ୟାଥେରିନ୍‌ଙ୍କ ମୂଢ଼ତା ତଥା ନୀଚତ ହାସ୍ୟଉଦ୍ଦୀପକ । ବହୁ ସଂଳାପ ଯୋଜନା ମଧ୍ୟରେ କଥାବସ୍ତୁର ଅଗ୍ରଗତି ଉପନ୍ୟାସଟିକୁ ନାଟକୀୟତା ପ୍ରଦାନ କରିଛି । କଥାବିନ୍ୟାସର ଶୃଙ୍ଖଳା ଓ ଅଭିବ୍ୟକ୍ତିର ସଂଯମ ଏହାକୁ କ୍ଲାସିକେଲ୍ ଛଟା ପ୍ରଦାନକରିଛି । ହାସ୍ୟରସ ସୃଷ୍ଟିରେ ଲେଖିକାଙ୍କ ସାଫଲ୍ୟ ଉଲ୍ଲେଖଯୋଗ୍ୟ ।

'ସେନ୍‌ସ ଅଣ୍ଡ ସେନ୍‌ସିବିଲିଟି' (Sense and Sensibility) ଖ୍ରୀ: ୧୭୯୭-୯୮ ମଧ୍ୟରେ ରଚିତ ହେଲେ ମଧ୍ୟ ଖ୍ରୀ: ୧୮୧୧ରେ ପ୍ରକାଶିତ ହୋଇଥିଲା । ପ୍ରାଇଡ ଆଣ୍ଡ ପ୍ରିଜୁଡ଼ିସ ପରି ଏହା ମଧ୍ୟ ଦୁଇଟି ବିପରୀତମୁଖୀ ଚରିତ୍ରକୁ କେନ୍ଦ୍ର କରି ପରିକଳ୍ପିତ । ଏଲିନର୍ ଓ ମେରିଆନ ଦୁଇ ଭଉଣୀ ଯଥାକ୍ରମେ ସଦ୍‌ବୁଦ୍ଧି (sense) ଓ ହୃଦୟାବେଗ (sensibility)ର ପ୍ରତିନିଧିତ୍ୱ କରନ୍ତି । ହୃଦୟାବେଗ ଓ ଭାବପ୍ରବଣତା (sentimentality) ବ୍ୟଙ୍ଗ ବିଦ୍ରୂପ କରିବା ଉପନ୍ୟାସଟିର ମୁଖ୍ୟ ଉଦ୍ଦେଶ୍ୟ । କଥାବସ୍ତୁ ପରିକଳ୍ପନାରେ 'ପ୍ରାଇଡ୍ ଆଣ୍ଡ ପ୍ରିଜୁଡ଼ିସ୍'ର ଉତ୍କର୍ଷ ଲକ୍ଷ୍ୟ କରାଯାଏ; କିନ୍ତୁ ସମସାମୟିକ ଉପାଦାନର ପ୍ରାଧାନ୍ୟ ହେତୁ ଏହାର ସର୍ବଯୁଗୀୟ ଆବେଦନ ବ୍ୟାହତ ହୋଇଛି ।

ତୃତୀୟ ଉପନ୍ୟାସ 'ନରଥ୍ୟାଙ୍ଗାର ଆବି' ଖ୍ରୀ: ୧୭୯୮ରେ ଲିଖିତ ହୋଇଥିଲେ ମଧ୍ୟ ଲେଖିକାଙ୍କ ମୃତ୍ୟୁ ପରେ ଖ୍ରୀ: ୧୮୧୮ରେ ପ୍ରକାଶ ପାଇଥିଲା । ଏଥିରେ ସମକାଳୀନ ଭୟାନକ କାହାଣୀ (horror story) ପ୍ରତି ଲେଖିକା କଟାକ୍ଷପାତ କରିଛନ୍ତି । ଉଭୟ 'ସେନ୍‌ସ ଆଣ୍ଡ ସେନ୍‌ସିବିଲିଟି' ଓ 'ନରଥ୍ୟାଙ୍ଗାର ଆବି'ରେ ଲେଖିକା ବିଷୟାତିରିକ୍ତ ପ୍ରସଙ୍ଗ, ନୀତିଶିକ୍ଷା ଦେବାର ପ୍ରବଣତା, ଭାବାବେଗର ଆତିଶଯ୍ୟ ବା ଶସ୍ତା ପ୍ରକୃତିର ରୋମାଞ୍ଚର ପକ୍ଷପାତୀ ନୁହନ୍ତି ।

ଖ୍ରୀ: ୧୭୯୦ରୁ ୧୮୧୧ ମଧ୍ୟରେ ଲେଖନୀ ତାଙ୍କର ସ୍ତିମିତ ହୋଇପଡ଼ିଛି । ଏହାର ଠିକ୍ ପରେ ପରେ ଅନ୍ୟ ତିନୋଟି ଉପନ୍ୟାସର ସୃଷ୍ଟି । 'ମ୍ୟାନ୍‌ସ୍ ଫିଲ୍‌ଡ ପାର୍କ' (୧୮୧୪), 'ଏମା' (୧୮୧୬) ଓ 'ପାର୍ସୁଏସନ୍' (୧୮୧୮)ରେ 'ପ୍ରାଇଡ୍ ଆଣ୍ଡ ପ୍ରିଜୁଡ଼ିସ'ର କଳାତ୍ମକ ସାଫଲ୍ୟ ନଥିଲେ ମଧ୍ୟ ଜଟିଳତର ଚରିତ୍ରଚିତ୍ରଣନୈପୁଣ୍ୟ ପ୍ରକାଶପାଇଛି । ଚରିତ୍ରଗୁଡ଼ିକ ପ୍ରତି ଲେଖିକା ଅଧିକ ସମବେଦନଶୀଳ ହୋଇଛନ୍ତି; ବ୍ୟଙ୍ଗ ଓ ବକ୍ରୋକ୍ତି (irony) ଅଧିକ ସୂକ୍ଷ୍ମ ଓ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇପାରିଛି । 'ମ୍ୟାନ୍‌ସ୍ ଫିଲଡ୍ ପାର୍କରେ' ସମସାମୟିକ ଉପନ୍ୟାସ-ଲେଖିକାଙ୍କ ନୀତିଶିକ୍ଷାଦେବା ପ୍ରୟାସକୁ ବ୍ୟଙ୍ଗ କରିଛନ୍ତି । ନାୟିକା ଫ୍ୟାନି ପ୍ରାଇସ୍ ସତେ ଅବା ସ୍ୱୟଂ ଜେନ୍ ଅଷ୍ଟିନ୍‌ଙ୍କ ମୁଖପାତ୍ର । ସେହିପରି 'ପାର୍ସୁଏସନ୍' ଉପନ୍ୟାସରେ ସମାଲୋଚକମାନେ ଲେଖିକାଙ୍କ ନିଜ ଜୀବନର ପ୍ରତିବିମ୍ବ ଆବିଷ୍କାର କରନ୍ତି । ଏହାର ନାୟିକା ଏନି (Anne) ସାମାଜିକ ପ୍ରତିବନ୍ଧକ ହେତୁ ନିଜ ପ୍ରେମିକକୁ ପାଇପାରିନାହିଁ । କଥାବସ୍ତୁ ଓ ବିଷୟବିନ୍ୟାସ ଦୃଷ୍ଟିରୁ ଲେଖିକାଙ୍କ ସମସ୍ତ ଉପନ୍ୟାସ ଏକପର୍ଯ୍ୟାୟର ହେଲେ ମଧ୍ୟ କଳାର ବିଗ୍ରହରେ ପ୍ରତ୍ୟେକଟିର କିଛି ନା କିଛି ବୈଶିଷ୍ଟ୍ୟ ରହିଛି ।

## ସାଧାରଣ ବୈଶିଷ୍ଟ୍ୟ

ଜେନ୍ ଅଷ୍ଟିନ୍‌ଙ୍କ ସମସ୍ତ ଲେଖା ଭିତରେ କେତୋଟି ସାଧାରଣ ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ । ତାଙ୍କ ଲେଖାର ପ୍ରକୃତି ବିଚାର କରିବାବେଳେ ମନେରଖିବାକୁ ହେବ ଯେ ସେ ଜଣେ ସଚେତନ ଶିଳ୍ପୀ । ବାରମ୍ବାର ପରିବର୍ତ୍ତନ ଓ ସଂଶୋଧନ କରି, ଅଦଳବଦଳ କରି,

ସମସ୍ତ ପ୍ରକାର ଯତ୍ନ ନେଇ ଲେଖାକୁ ପୂର୍ଣ୍ଣାଙ୍ଗ ରୂପ ଦେଇଥାନ୍ତି । ବସ୍ତୁବିନ୍ୟାସ ଓ ଚରିତ୍ର-ଚିତ୍ରଣରେ ତାଙ୍କର ସାଧନା ଓ ସାଫଲ୍ୟ ସେକ୍ସପିଅରଙ୍କ ସୀମା-ସ୍ପର୍ଶ କରିଛି । ପ୍ରତ୍ୟେକ ଶ୍ରେଷ୍ଠ ବଡ଼ ଘଟଣା କଥାବସ୍ତୁକୁ ଆଗେଇନେବାରେ ସାହାଯ୍ୟ କରିଛି । ବସ୍ତୁତଃ ବିଶେଷ ବଡ଼ ବା ଦୁଃସାହସିକ ଘଟଣା ଅଷ୍ଟିନ୍‌ଙ୍କ ଉପନ୍ୟାସରେ ଘଟେନାହିଁ । ପାରିବାରିକ ଜୀବନକୁ କେନ୍ଦ୍ର କରି ଏଗୁଡ଼ିକ ପରିକଳ୍ପିତ । ବ୍ୟକ୍ତି ବ୍ୟକ୍ତିଙ୍କ ଭିତରେ ବିଶେଷକରି ପ୍ରଣୟୀ ଯୁବକ-ଯୁବତୀଙ୍କ ସମ୍ପର୍କ ଉପରେ ଏଗୁଡ଼ିକ ପ୍ରତିଷ୍ଠିତ; କିନ୍ତୁ ମଣିଷର ଈଶ୍ୱରଙ୍କ ସହ ସମ୍ପର୍କ ବା ରାଜନୀତିର ସମ୍ପର୍କକୁ ନେଇ କଥାବସ୍ତୁର ପରିକଳ୍ପନା ତାଙ୍କ ଅଭ୍ୟାସର ବାହାରେ । ଖୁବ୍ ବେଶି ହେଲେ ପ୍ରେମିକ-ପ୍ରେମିକାଙ୍କ ପଳାୟନ ଏହାର ବଡ଼ ଘଟଣା । ଉତ୍କଣ୍ଠା ଓ ଆବେଗଭରା ଟ୍ରାଜେଡ଼ି ତାଙ୍କ ରୁଚିର ଅନୁକୂଳ ନୁହେଁ । ପାରିବାରିକ ଜୀବନର ମିଳନାତ୍ମକ କଥାବସ୍ତୁ ପ୍ରତି ତାଙ୍କର ଆକର୍ଷଣ ଅଧିକ । ଏଗୁଡ଼ିକ ପୁଣି ହାସ୍ୟରସସିକ୍ତ ହୋଇ ଅତୀବ ସ୍ୱାଦ୍ୟ । ହାସ୍ୟ ସହିତ ବ୍ୟଙ୍ଗ ମଧ୍ୟ ତାଙ୍କ ରଚନାକୁ ରସାଣିତ କରିଛି । ଶସ୍ତା ରୋମାନ୍ସ, ଅବାସ୍ତବ ଓ ଭୟାନକ ଗଳ୍ପ, ଆବେଗାତିଶଯ୍ୟ, ଅହମିକା, ସ୍ୱାର୍ଥପରତା ଓ ନିର୍ବୋଧତା ଆଦି ତାଙ୍କ ବ୍ୟଙ୍ଗର ଶରବ୍ୟ । ଅନ୍ୟ କଥାରେ କହିଲେ ସେ ଜଣେ ନୀତିବାଦୀ, ସୁଗୁଣ ଓ ସୁରୁଚିର ପକ୍ଷପାତୀ; କିନ୍ତୁ ଉପଦେଶ ଦେବା ଉଦ୍ଦେଶ୍ୟରେ ହିଁ ସେ ଉପନ୍ୟାସ ଲେଖି ନଥାନ୍ତି । ବାସ୍ତବ-ଜୀବନକୁ ନେଇ ଶିଳ୍ପସୃଷ୍ଟି ତାଙ୍କର ମୂଳ ଲକ୍ଷ୍ୟ । ସେଇଥିରୁ ଆମେ ଜୀବନ ପ୍ରତି ତାଙ୍କ ଦୃଷ୍ଟିଭଙ୍ଗୀର ପରିଚୟ ପାଇଥାଉଁ ।

ଜେନ୍ ଅଷ୍ଟିନ୍‌ଙ୍କ କଥାବସ୍ତୁ, ପରିବେଶ ଓ ଚରିତ୍ର ନିର୍ବାଚନର ପରିସର ଅତି ସୀମିତ ବୋଲି ସମାଲୋଚନା ହୋଇଥାଏ । ଦକ୍ଷିଣ ଇଂଲଣ୍ଡର ପରିବେଶ ଦୃଶ୍ୟ ଓ ସମାଜହିଁ ତାଙ୍କର ଉପାଦାନ । ଏ ଦୃଷ୍ଟିରୁ ଏଗୁଡ଼ିକୁ ଆଞ୍ଚଳିକ ଉପନ୍ୟାସ କୁହାଯାଇପାରେ । ଚରିତ୍ରଚିତ୍ରଣ କ୍ଷେତ୍ରରେ ସେ ମୁଖ୍ୟତଃ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର କଥା ହିଁ କହିଥାନ୍ତି; କାରଣ ଏଇ ସମାଜ ବିଷୟରେ ହିଁ ସେ ଭଲଭାବରେ ଜାଣିଥିଲେ । ନିଜର ସୀମିତ ଅଭିଜ୍ଞତା ଓ ଜୀବନବୋଧର ବାହାରକୁ କେବେହେଲେ ଯିବାକୁ ସେ ଚେଷ୍ଟା କରିନାହାନ୍ତି । ଏଣୁ ସମାଜର ନିମ୍ନ ସ୍ତରର ଜୀବନଚିତ୍ର ତାଙ୍କ ଲେଖାରେ ନାହିଁ । ନିଜ ଅଭିଜ୍ଞତା ଓ ଅନୁଭୂତିକୁ ରୂପ ଦେଉଥିବାରୁ ଠିକ୍‌ଠିକ୍ ବର୍ଣ୍ଣନା ଓ ଚରିତ୍ର ଜୀବନ୍ତ ଚିତ୍ରଣରେ ସେ ସକ୍ଷମ ହୋଇଥାନ୍ତି । ତାଙ୍କ ଚରିତ୍ର-ଗୁଡ଼ିକ ଯେପରି ପ୍ରତିନିଧିଶ୍ରେଣୀସ୍ଥ, ସେହିପରି ବ୍ୟକ୍ତିବିଶେଷ । ନାରୀର ଦୃଷ୍ଟିକୋଣରୁ ହିଁ ସେ ସମାଜ ଓ ଜୀବନକୁ ପ୍ରତ୍ୟକ୍ଷ କରିଛନ୍ତି; ନାରୀର ଉପସ୍ଥିତି ବିନା କୌଣସି ଘଟଣା ବା ଦୃଶ୍ୟର ପରିକଳ୍ପନା କରିପାରିନାହାନ୍ତି । ଚରିତ୍ରକୁ ଆଦର୍ଶ ସ୍ଥାନୀୟ କରିବା ତାଙ୍କର ଉଦ୍ଦେଶ୍ୟ ନୁହେଁ । ଦୋଷଗୁଣ ଉଭୟର ପରିବେଷଣ କରୁଥିବାରୁ ଚରିତ୍ରଗୁଡ଼ିକ ଅତିମାନବୀୟ ଜୀବନ୍ତ ।

ଉପନ୍ୟାସଗୁଡ଼ିକ ଧାରାବାହିକ ସଂଳାପରେ ପରିପୂର୍ଣ୍ଣ । ଏହା ତାଙ୍କ ଉପନ୍ୟାସକୁ ନାଟକୀୟ କରି ଗଢ଼ିତୋଳେ ।

ରୋମାଣ୍ଟିକ୍ ଯୁଗରେ ଜନ୍ମଲାଭ କରିଥିଲେ ମଧ୍ୟ ଜେନ୍ ଅଷ୍ଟିନ୍ ଆଶ୍ଚର୍ଯ୍ୟଜନକ ଭାବରେ ବାସ୍ତବବାଦୀ । ସମସାମୟିକ ରାଜନୈତିକ ତଥା ସାମାଜିକ ଅସ୍ଥିରତାରୁ ନିଜକୁ ମୁକ୍ତ ରଖି ନିଜର ସଂକୀର୍ଣ୍ଣ ଜୀବନ ପରିଧି ତଥା ପରିବେଶ ମଧ୍ୟରେ ସେ ବୁଡ଼ିରହିଥିଲେ । ଏପରିକି ଫରାସୀ-ବିପ୍ଳବର ପ୍ରତିଫଳନ ତାଙ୍କ ଲେଖାରେ ଦେଖାଯାଏନାହିଁ । ଅନ୍ୟପକ୍ଷରେ ସେ ଯେଉଁ ଜୀବନକୁ ବା ସମାଜକୁ ଚିହ୍ନିଛନ୍ତି, ତାର ରୂପାୟନବେଳେ ଅସାଧାରଣ ବାସ୍ତବ ଦୃଷ୍ଟିଭଙ୍ଗୀ ତଥା କଳାକୁଶଳତାର ପରିଚୟ ଦେଇଛନ୍ତି । ଦୈନନ୍ଦିନ ଜୀବନର ସାଧାରଣ ଘଟଣାବଳୀକୁ ରସୋତ୍ତୀର୍ଣ୍ଣ କରି ତୋଳିବା ଅସାମାନ୍ୟ କଳାପ୍ରତିଭାର ପରିଚାୟକ ।

ଜେନ୍ ଅଷ୍ଟିନ୍‌ଙ୍କ ଆଭିମୁଖ୍ୟରେ ରୋମାଣ୍ଟିକ୍ ଚେତନା ଅପେକ୍ଷା କ୍ଲାସିକ୍ ଚେତନା ସହ ସାମ୍ୟ ବେଶି । ଏଥିରେ ରୋମାଣ୍ଟିକ୍ କବିଙ୍କପରି ପ୍ରକୃତିପ୍ରୀତି, ସମାଜର ନିମ୍ନସ୍ତର ପ୍ରତି ସମବେଦନା, କଳ୍ପନା ଓ ଆବେଗର ପ୍ରାଧାନ୍ୟ ନାହିଁ । ଫରାସୀ-ବିପ୍ଳବର ଛାୟା ମଧ୍ୟ ତାଙ୍କ ଲେଖାରେ ପଡ଼ିନାହିଁ । ଅନ୍ୟ ପକ୍ଷରେ କ୍ଲାସିକ କବିଙ୍କପରି ସେ ନୀତିବାଦୀ ଓ ନିୟମ, ଶୃଙ୍ଖଳାରେ ବିଶ୍ୱାସୀ । ଏଣୁ ତାଙ୍କୁ ରୋମାଣ୍ଟିକ୍ ଲେଖିକା ନ କହି ଅଷ୍ଟାଦଶ ଶତାବ୍ଦୀ (କ୍ଲାସିକେଲ ଯୁଗ)ର ଶେଷ ମନୋଜ୍ଞ କଳିକା "Last exquisite blossom of the eighteenth century" ବୋଲି କୁହାଯାଇଥାଏ ।

## ସାର୍ ୱାଲ୍‌ଟାର ସ୍କଟ୍ (Sir Walter Scott : ୧୭୭୧-୧୮୩୨)

ଉଭୟ କବି ଓ ଔପନ୍ୟାସିକ ଭାବରେ ସାର୍ ୱାଲଟାର ସ୍କଟ୍ ଖ୍ୟାତି ଅର୍ଜନ କରି ଅଛନ୍ତି । କବିତାକ୍ଷେତ୍ରରେ ବାଇରନ୍ ଥିଲେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ । ବାଇରନ୍‌ଙ୍କ କାହାଣୀ-ଧର୍ମୀ କବିତା ବହୁ ଆଦୃତ ହେବାରୁ ସ୍କଟ କବିତା ଛାଡ଼ି ଉପନ୍ୟାସ ରଚନାରେ ମନଦେଲେ । ବହୁ କବିତା ଓ ଗଦ୍ୟରଚନା ବ୍ୟତୀତ ସେ ଅନ୍ତତଃ ଛବିଶଟି ଉପନ୍ୟାସ ଲେଖିଛନ୍ତି । ଇଂରେଜୀ ସାହିତ୍ୟରେ ଐତିହାସିକ ଉପନ୍ୟାସକୁ ସ୍କଟ୍‌ଙ୍କ ଦାନ ଅନସ୍ୱୀକାର୍ଯ୍ୟ । ସେ ଯେପରି ବହୁସଂଖ୍ୟକ ଉପନ୍ୟାସର ଲେଖକ, ସେହିପରି ବହୁ ଅର୍ଥ ଓ ପ୍ରତିଷ୍ଠାର ଅଧିକାରୀ ହୋଇ-ଥିଲେ । ତାଙ୍କ ଉପନ୍ୟାସ ମଧ୍ୟରେ 'ୱେଭରଲି' (Waverly), 'ଗାୟ ମେନାରିଂ' (Guy Mannering), 'ଓଲ୍ଡ଼ ମର୍ଟାଲିଟି' (Old Mortality), 'ଦି ବ୍ରାଇଡ଼୍ ଅଫ୍ ଲମାର୍ ମୁର୍' (The Bride of Lammer Moor), 'ଦି କେନିଲ ୱାର୍ଥ' (The Kenil Worth), 'ଆଇଭାନ୍‌ହୋ' (Ivanhoe), 'କୁଏଣ୍ଟିନ ଡାରୱାଡ଼' (Quentin Durward), ଓ 'ଦି ଟେଲିସ୍‌ମ୍ୟାନ୍' (The Talisman) ପ୍ରଧାନ ।

ପ୍ରଥମ ଉପନ୍ୟାସ 'ୱେଭର୍ଲି'କୁ ଉଭୟ ଭୌଗୋଳିକ ଓ ଐତିହାସିକ ଉପନ୍ୟାସ କୁହାଯାଇପାରେ । ସ୍କଟ୍‌ଲଣ୍ଡର ପାର୍ବତ୍ୟ ଅଞ୍ଚଳର ଜୀବନଚିତ୍ର ଏଥିରେ ପ୍ରକାଶପାଇଛି ।

ଏହା ପରେ ପରେ 'ଗାଏ ମେନାରିଂ' ଓ 'ଦି ଏଣ୍ଟିକୁଆରି' ରଚିତ ହୁଏ । ସ୍କଟଲଣ୍ଡର ସମସାମୟିକ ଜୀବନଚିତ୍ର ଏହାର ଉପଜୀବ୍ୟ । 'ଓଲ୍ଡ୍ ମୋର୍ଟାଲିଟି' (Old Mortality : ୧୮୧୬) ଠାରୁ ପ୍ରକୃତ ଐତିହାସିକ ଉପନ୍ୟାସ ରଚନାରେ ସେ ଅଗ୍ରନିବିଷ୍ଟ ହୋଇଛନ୍ତି । କଭନାଣ୍ଟାରସ୍ (Covenanters) ଓ କ୍ୱିଗ୍‌ସ ଗ୍ୱାଲ୍‌ସଙ୍କ ମଧ୍ୟରେ ସଂଘର୍ଷ ଏହାର କଥାବସ୍ତୁ । ପରବର୍ତ୍ତୀ ଉପନ୍ୟାସ 'ରବ୍ ରୟ' (Rob Roy), 'ଦି ହାର୍ଟ ଅଫ୍ ମିଡ୍‌ଲୋଥିଆନ' ଓ 'ଦି ବ୍ରାଇଡ୍ ଅଫ୍ ଲମାର ମୁର' (The Bride of Lammer Moor) ଆଦି ଉପନ୍ୟାସର କଥାବସ୍ତୁ ସ୍କଟିସ୍ ଇତିହାସରୁ ଗୃହୀତ । ସ୍କଟ୍‌ଲଣ୍ଡର ଜୀବନଧାରା ଓ ଇତିହାସ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ହୋଇଥିବାରୁ ସ୍କଟିସ୍ ଇତିହାସଭିତ୍ତିକ ଉପନ୍ୟାସ ତାଙ୍କର ସଫଳତମ କୃତି ।

ଖ୍ରୀ: ୧୮୧୯ରେ ପ୍ରକାଶିତ 'ଆଇଭାନ୍ ହୋ' ଉପନ୍ୟାସଟି ସ୍କଟଙ୍କ ବିଷୟ ନିର୍ବାଚନରେ ପରିବର୍ତ୍ତିତ ଦୃଷ୍ଟିଭଙ୍ଗୀର ପରିଚୟ ଦିଏ । ଏହି ଉପନ୍ୟାସରେ ସେ ସ୍କଟ୍‌ଲଣ୍ଡର ଇତିହାସ ଛାଡ଼ି ପ୍ରଥମ ଥର ପାଇଁ ଇଂଲଣ୍ଡର ଇତିହାସକୁ ଗ୍ରହଣ କରିଛନ୍ତି । ଦ୍ୱାଦଶ ଶତାବ୍ଦୀର ଏକ ସଂକଟପୂର୍ଣ୍ଣ ପର୍ଯ୍ୟାୟ ଏହାର ଭିତ୍ତି । ଇଂଲଣ୍ଡର ତତ୍କାଳୀନ ଅଧିବାସୀ 'ଏଙ୍ଗଲସ୍', 'ସାକ୍‌ସନସ୍' ଓ ଫ୍ରାନ୍‌ସ-ଆଗତ ବିଜୟୀ 'ନର୍ମାନ'ମାନଙ୍କ ଭିତରେ ସମନ୍ୱୟ ପ୍ରଚେଷ୍ଟା ଏ ସମୟର ମୁଖ୍ୟ ଘଟଣା । ସୈନ୍ୟଶିବିର, ରାଜଦରବାର, ଦୁର୍ଗ ଅବରୋଧ, ଯୁଦ୍ଧ-ବର୍ଣ୍ଣନା ଆଦିରେ ଏହାର ପରିବେଶ ବର୍ଣ୍ଣାଢ଼୍ୟ । ଏହା ପରେ ସେ ଇଂଲଣ୍ଡର ଇତିହାସକୁ ମୁଖ୍ୟତଃ ଗ୍ରହଣ କରିଥିଲେ ମଧ୍ୟ ସ୍କଟ୍‌ଲଣ୍ଡ୍‌କୁ ଦମ୍ପୂର୍ଣ୍ଣରୂପେ ଭୁଲିନାହାନ୍ତି ।

କେବଳ ସ୍କଟ୍‌ଲଣ୍ଡ ଓ ଇଂଲଣ୍ଡ ନୁହେଁ, ଫ୍ରାନ୍‌ସର ଇତିହାସରୁ ମଧ୍ୟ ସେ ତାଙ୍କ ଉପନ୍ୟାସ ପାଇଁ ଉପାଦାନ ସଂଗ୍ରହ କରିଛନ୍ତି । 'କ୍ୱିଏନ୍‌ଟିନ ଡାରଓ୍ୱାର୍ଡ୍' (Quentin Durward : ୧୮୨୩)ରେ ଏକାଦଶ ଲୁଇଙ୍କ ସମୟର ଫ୍ରାନ୍‌ସର ଚିତ୍ର ପରିବେଷିତ । ଏହି ଉପନ୍ୟାସର ରଚନା ପରେ ପରେ ସ୍କଟଙ୍କ ଖ୍ୟାତି ଇଂଲଣ୍ଡର ସୀମା ଅତିକ୍ରମ କରି ଇଉରୋପର ବିଭିନ୍ନ ଦେଶକୁ ପରିବ୍ୟାପ୍ତ ହୋଇଥିଲା ।

ଖ୍ରୀ: ୧୮୨୫ ପରେ ସ୍କଟଙ୍କ ଜୀବନରେ ଦୁର୍ଯୋଗ ଦେଖାଦେଲା । ସ୍କଟ୍ ସଂପୃକ୍ତ ଥିବା ଏକ ବ୍ୟବସାୟ ସଂସ୍ଥା ଭାଙ୍ଗିପଡ଼ିବାରୁ ନିଜେ ତାର ସମସ୍ତ କ୍ଷତିର ଦାୟିତ୍ୱ ନେଲେ । ପ୍ରାୟ ପାଞ୍ଚଲକ୍ଷ ଡଲାର ପରିଶୋଧ ପାଇଁ ସେ ନିଜ ଲେଖମୀ ଉପରେହିଁ ନିର୍ଭର କରିଥିଲେ । 'ଉଡ୍‌ଷ୍ଟକ' (୧୮୨୬), 'ଦି ଫେୟାର୍ ମେଡ୍ ଅଫ୍ ପାର୍ଥ' (The Fair Maid of Perth : ୧୮୨୮), 'ଏନ୍ ଅଫ୍ ଗେଇୟାରଷ୍ଟେନ୍' (Anne of Geirstein : ୧୮୨୯), 'କାଉଣ୍ଟ ରୋବର୍ଟ ଅଫ୍ ପେରିସ୍' (Count Robert of Paris : ୧୮୩୨) ଓ 'କ୍ୟାସେଲ ଡେଞ୍ଜାରିସ୍' (Castle Dangerous : ୧୮୩୨) ଲିଖିତ ହେଲା; କିନ୍ତୁ ପୂର୍ବର ଔପନ୍ୟାସିକ ସାଫଲ୍ୟ ଏଥିରେ ରହିଲା ନାହିଁ । ଆହତ ମନର ବେଦନା ଏଥିରେ ସ୍ପଷ୍ଟ । ଖ୍ରୀ: ୧୮୩୦ରେ ସେ ପାରାଲିସିସ୍ ରୋଗରେ ଆକ୍ରାନ୍ତ ହେଲେ । ଶାରୀରିକ

'ଓ ମାନସିକ ଯନ୍ତ୍ରଣା ମଧ୍ୟରେ ଉପରୋକ୍ତ ଉପନ୍ୟାସ ମଧ୍ୟରୁ କେତୋଟି ନିଜେ ଲେଖି ନପାରି ଡାକିଦେଉଥିଲେ—ପରେ ଏ ସଂପର୍କରେ ବିସ୍ମୃତ ହୋଇଥିଲେ ।

ସ୍କଟ୍ ଉପନ୍ୟାସ ପାଇଁ ଗ୍ରହଣ କରିଥିବା ଘଟନାର ସମୟ ପରିସର ଅତି ବ୍ୟାପ୍ତ । କ୍ରୁସେଡ୍ ଯୁଗଠାରୁ ଷ୍ଟୁଆର୍ଟ ବଂଶର ପତନ ପର୍ଯ୍ୟନ୍ତ ବିଭିନ୍ନ ଶତାବ୍ଦୀର ଐତିହାସିକ ଘଟଣା ସେ ଗ୍ରହଣ କରିଛନ୍ତି । କବିତା ତଥା ଉପନ୍ୟାସରେ ଗର୍ଭିତ ଐତିହାସିକ ଉପାଦାନ, ଅତିକଥା, କିମ୍ବଦନ୍ତୀ ଓ ଲୋକକଥା ସଂଗ୍ରହରେ ସେ ପ୍ରାୟ ତ୍ରିଶବର୍ଷ ଅତିବାହିତ କରିଥିଲେ । ତାଙ୍କର ସ୍ମରଣଶକ୍ତି ମଧ୍ୟ ଅତି ପ୍ରବଳ । ଏଣୁ ନିର୍ଭୁଲଭାବରେ ବହୁ ତଥ୍ୟର ଉପସ୍ଥାପନା କରିପାରୁଥିଲେ ।

ଇତିହାସର କଙ୍କାଳ ଉପରେ କଳ୍ପନାର ପୁଟ ଦେଇ ଲେଖକ ଐତିହାସିକ ଉପନ୍ୟାସ ସୃଷ୍ଟି କରେ । ଅତୀତର ଘଟଣାସହ ଆନୁଷଙ୍ଗିକ ପରିବେଶ ସୃଷ୍ଟି କରିପାରି ସ୍କଟ୍ ତାଙ୍କ ଉପନ୍ୟାସକୁ ଐତିହାସିକ 'ରୋମାନ୍ସ'ରେ ପରିଣତ କରିଛନ୍ତି ।

ଚରିତ୍ରଚିତ୍ରଣରେ ସ୍କଟ୍‌ଙ୍କ ପାରଦର୍ଶିତା ଅବଶ୍ୟ ସ୍ୱୀକାର୍ଯ୍ୟ; କିନ୍ତୁ ଐତିହାସିକ ଉପନ୍ୟାସ ଲେଖିବାବେଳେ, ବହୁସଂଖ୍ୟାରେ ଶୂର, ବୀର ଓ ଉଚ୍ଚ ରାଜବଂଶୀୟ ବ୍ୟକ୍ତିଙ୍କୁ ଉପସ୍ଥାପିତ କରିବା ଆବଶ୍ୟକ ହେଉଥିବାବେଳେ ଏହିଭଳି ଉଚ୍ଚଶ୍ରେଣୀର ଚରିତ୍ରଚିତ୍ରଣ କରିବା ତାଙ୍କ ପକ୍ଷେ ସହଜସାଧ୍ୟ ନଥିଲା; ବରଂ ସମାଜର ନିମ୍ନଶ୍ରେଣୀର ଚରିତ୍ରଚିତ୍ରଣରେ ସେ ଅଧିକ ସଫଳ । ଚାକର ଚାକରାଣୀ, କୃଷୀ, ଦୋକାନୀ ଭଳି ଚରିତ୍ର ଅଧିକ ଜୀବନ୍ତ । ପୁରୁଷ ଚରିତ୍ରଚିତ୍ରଣ ଅତ୍ୟନ୍ତ ଆକର୍ଷଣୀୟ ହୋଇଥିବାବେଳେ ନାରୀ ଚରିତ୍ରଚିତ୍ରଣରେ ସେ ଅସଫଳ । ଚରିତ୍ରକୁ ଅତିମାତ୍ରାରେ ଆଦର୍ଶ ବା ଦୋଷରହିତ କରି ସେ କେବେ ଦେଖାଇ-ନାହାନ୍ତି । ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିବାକୁ ମଧ୍ୟ ଚେଷ୍ଟା କରିନାହାନ୍ତି ।

ସ୍କଟ୍‌ଙ୍କ ଉପନ୍ୟାସରେ କେତେକ ତ୍ରୁଟି ଅତି ସ୍ପଷ୍ଟ । ଔପନ୍ୟାସିକଭାବରେ ଖ୍ୟାତି ଓ ଅନିଶ୍ଚିତ ଆର୍ଥିକ ଅବସ୍ଥାହେତୁ ସେ ଅତି ତରବର ଭାବରେ ବହୁ ଉପନ୍ୟାସ ଲେଖିପକାଇଛନ୍ତି । ଏଣୁ ବିଷୟବିନ୍ୟାସ ବା ଚରିତ୍ରଚିତ୍ରଣରେ ବିଶେଷ ଯତ୍ନ ନେଇପାରିନାହାନ୍ତି । କେତୋଟି ଉପନ୍ୟାସକୁ କୌଣସିମତେ ଶେଷ କରାଯାଇଛି । ଭାଷାର ସାବଲୀଳତା ତଥା ଛନ୍ଦ ସେହି କାରଣରୁ ବ୍ୟାହତ ।

ରୋମାଣ୍ଟିକ୍ କବିଙ୍କପରି ସ୍କଟ୍ କଳ୍ପନାକୁ ରଚନାକର୍ମରେ ପ୍ରାଧାନ୍ୟ ଦେଇଛନ୍ତି । ପାଠକକୁ ସେ ଅତୀତ ବା ମଧ୍ୟଯୁଗକୁ ନେଇଆସନ୍ତି । କେବେ କେମିତି ରୋମାଣ୍ଟିକ୍ କବିଙ୍କ ପରି ସେ ଅତିଭୌତିକତା ତଥା ରହସ୍ୟକୁ ମଧ୍ୟ ଗ୍ରହଣ କରିଛନ୍ତି । 'ଦି ବ୍ରାଇଡ୍ ଅଫ୍ ଲାମାର୍ ମୁର' ସେହିପରି ଯୁକ୍ତିଧର୍ମୀ ଓ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ତାଙ୍କୁ କ୍ଲାସିସିଜିମର ଅନୁବର୍ତ୍ତୀ କରିଛି ।

## ପ୍ରବନ୍ଧ ଓ ସମାଲୋଚନା

ଊନବିଂଶ ଶତାବ୍ଦୀର ରୋମାଣ୍ଟିକ୍ ଚେତନା ସମକାଳୀନ ଉପନ୍ୟାସରେ ବିଶେଷ ପ୍ରତିଫଳିତ ହୋଇନଥିଲେ ମଧ୍ୟ ନିବନ୍ଧ ସାହିତ୍ୟରେ ଗଭୀର ମୁଦ୍ରାଙ୍କ ଛାଡ଼ିଯାଇଛି । ଏ ଦୃଷ୍ଟିରୁ ନିବନ୍ଧ ସାହିତ୍ୟ କବିତାର ଅନୁବର୍ତ୍ତୀ । ରୋମାଣ୍ଟିକ୍ କବିତାର ଅନ୍ୟତମ ବୈଶିଷ୍ଟ୍ୟ ବ୍ୟକ୍ତିନିଷ୍ଠତା । ହୃଦୟର ଆବେଗ ଏଥିରେ ଉଚ୍ଛଳ । ରୋମାଣ୍ଟିକ୍ ଯୁଗର ନିବନ୍ଧ ସାହିତ୍ୟ ସମ୍ବନ୍ଧରେ ମଧ୍ୟ ଏଇ କଥା କୁହାଯାଇପାରେ । ଏ ଯୁଗର ପ୍ରାବନ୍ଧିକଙ୍କ ମଧ୍ୟରେ ଚାର୍ଲସ ଲ୍ୟାମ୍ବ, ଉଇଲିୟମ୍ ହାଜ୍‌ଲିଟ୍, ଲି ହାଣ୍ଟ୍ ଓ ଟମାସ ଡିକୁଇନ୍‌ସିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ବ୍ୟତୀତ ଏ ଯୁଗର ବିଶିଷ୍ଟ କବି ଓ୍ୱାର୍ଡସ୍ ଓ୍ୱାର୍ଥ୍, କୋଲ୍‌ରିଜ୍ ଓ କୀଟସ୍‌ଙ୍କର ମଧ୍ୟ ଏ କ୍ଷେତ୍ରରେ ଅବଦାନ ରହିଛି ।

### ଚାର୍ଲସ ଲ୍ୟାମ୍ବ (Charles Lamb : ୧୭୭୫—୧୮୩୪)

ଲ୍ୟାମ୍ବ୍ ଇଂରେଜୀ ନିବନ୍ଧ ସାହିତ୍ୟ କ୍ଷେତ୍ରରେ ବ୍ୟକ୍ତିନିଷ୍ଠଧାରାର ଶ୍ରେଷ୍ଠ ଲେଖକ । ଫରାସୀ ଲେଖକ ମନ୍ଟେନ୍ ଏଇ ଧାରାର ପ୍ରବର୍ତ୍ତକ । କାଉଲି (Abraham Cowley) ପ୍ରଥମେ ଇଂରେଜୀ ସାହିତ୍ୟରେ ଏଭଳି ରଚନାର ସୂତ୍ରପାତ କରିଥିଲେ । କାଉଲି ପ୍ରବନ୍ଧକୁ ଜ୍ଞାନ-ଗରିମାର ପ୍ରଦର୍ଶନୀ କରି ଲେଖକକୁ ତଟସ୍ଥ କରିବା ପରିବର୍ତ୍ତେ, ସୌହାର୍ଦ୍ଦ୍ୟପୂର୍ଣ୍ଣ ଆଳାପର ପରିବେଶ ସୃଷ୍ଟି କରିଥାନ୍ତି । କାଉଲିଙ୍କ ପ୍ରବନ୍ଧର ଏଇ ବୈଶିଷ୍ଟ୍ୟ ବ୍ୟତୀତ ସାର୍ ଟମାସ୍ ବ୍ରାଉନ୍‌ଙ୍କ ବ୍ୟକ୍ତିଗତ ଦୋଷ-ତ୍ରୁଟିର ନିରଭିମାନ ପରିପ୍ରକାଶ ରୀତି ଲ୍ୟାମ୍ବ୍ ଗ୍ରହଣ କରିଛନ୍ତି । ତାଙ୍କର ଏହି ଧାରାର ବଳିଷ୍ଠ କୃତି 'ଦି ଏସେଜ୍ ଅଫ୍ ଏଲିଆ' (The Essays of Elia : ୧୮୨୩) ଓ 'ଦି ଲାଷ୍ଟ ଏସେଜ୍ ଅଫ୍ ଏଲିଆ' (The Last Essays of Elia : ୧୮୩୩) ଇଂରେଜୀ ସାହିତ୍ୟରେ ଅତୁଳନୀୟ ସୃଷ୍ଟି । ପ୍ରବନ୍ଧଗୁଡ଼ିକ ପ୍ରଥମେ 'ଲଣ୍ଡନ ମ୍ୟାଗାଜିନ୍'ରେ ଲେଖକଙ୍କ 'ଏଲିଆ' ଛଦ୍ମନାମରେ ପ୍ରକାଶ ପାଇଥିଲା; ପରେ ପୁସ୍ତକ ଆକାରରେ ସଙ୍କଳିତ ହୋଇଥିଲା ।



ଲ୍ୟାମ୍ବଙ୍କ ପ୍ରବନ୍ଧରେ ଆତ୍ମରିକତାର ସ୍ୱର (Personal tone) ସର୍ବାଦୌ ଦୃଷ୍ଟି ଆକର୍ଷଣ କରିଥାଏ । ବ୍ୟକ୍ତିଗତ ଜୀବନର ଗୋଟିଏ ଗୋଟିଏ ପୃଷ୍ଠା ଏଥିରେ ଉନ୍ମୋଚିତ (autobiographical) । କେବଳ ପ୍ରବନ୍ଧଗୁଡ଼ିକରୁ ହିଁ ତାହାଙ୍କ ସମଗ୍ର ଜୀବନର ବୈଚିତ୍ର୍ୟ କଳନା କରିହୁଏ । 'ଦି ନାଇଟ୍ ଫିଆରସ୍', 'କ୍ରିଷ୍ଟସ୍ ହସପିଟାଲ୍',

'ଡ୍ରିମ୍ ଚିଲଡ୍ରେନ୍', 'ମାଇଁ ଫାଷ୍ଟ ପ୍ଲେ' ପରି ପ୍ରବନ୍ଧରେ ତାଙ୍କ ବାଲ୍ୟଜୀବନର ସ୍ମୃତି ଅବଧାରିତ । 'ମେକ୍‌ରେ ଏଣ୍ଡ୍ ଇନ୍ ହାର୍ଟଫୋର୍ଡସାୟାର୍' (Mackrey End in Hertfordshire) ଓ 'ମିସେସ୍ ବେଟ୍‌ଲସ୍ ଓପିନିଅନ୍‌ସ୍' (Mrs Battle's Opinions)ରେ ତାଙ୍କର ଯୌବନର ଅଭିଜ୍ଞତା ଓ 'ଦି ସାଉଥ୍ ସି ହାଉସ୍'ରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଅଫିସ୍ ଅଭିଜ୍ଞତା ପ୍ରକାଶ ପାଇଛି । ସେହିପରି 'ଦି ଓଲ୍ଡ୍ ବେଞ୍ଚାରସ୍ ଅଫ୍ ଦି ଇନାର୍ ଟେମ୍ପଲ୍' ଓ 'ପୋର୍ ରିଲେସନ୍‌ସ୍'ରେ ସେ ନିଜ ପରିବାର କଥା ହିଁ କହିଛନ୍ତି ।

ରୋମାଣ୍ଟିକ୍ କବିଙ୍କ ପରି ଲ୍ୟାମ୍ବ୍ ଅତୀତ ପ୍ରତି ଅତ୍ୟନ୍ତ ଶ୍ରଦ୍ଧାଶୀଳ । ଅତୀତ ସ୍ମୃତି ତାଙ୍କ ଲେଖନୀର ମୁଖ୍ୟ ଉପାଦାନ । ରୋମାଣ୍ଟିକ୍ କବିଙ୍କ ପରି ସେ ଛୋଟ ଛୋଟ ବିଷୟକୁ ଅପୂର୍ବ କଳାମୂର୍ତ୍ତିରେ ପରିଣତ କରିଥାଆନ୍ତି । ଏଣୁ 'ଡିସାଟେସନ୍ ଅନ୍ ରୋଷ୍ଟ ପିଗ୍' (Dissertation on Roast Pig), 'ପ୍ରେଜ୍ ଅଫ୍ ଚିମନି ସ୍ୱିପାରସ୍' (Praise of Chimney Sweepers). 'ଏ ଚ୍ୟାପଟାର ଅନ୍ ଇଅର୍ସ' (A Chapter on Ears) ପରି ବିମଳ ହାସ୍ୟରସାତ୍ମକ ସୃଷ୍ଟି ତାଙ୍କ କ୍ଷେତ୍ରରେ ସମ୍ଭବ ।

ଲ୍ୟାମ୍ବ୍‌ଙ୍କ କରୁଣାର୍ଦ୍ର ଜୀବନର ଛାପ ତାଙ୍କ ପ୍ରବନ୍ଧକୁ ବେଦନାସିକ୍ତ କରିଛି । ପିଲା-ଦିନରୁ ସେ ଦୁଃଖ-ଦୈନ୍ୟ ଭିତରେ ବଢ଼ିଥିଲେ, ଅନ୍ୟର ଦାକ୍ଷିଣ୍ୟ ପାଇ ପଢ଼ିଥିଲେ, ଅବଶେଷରେ ଜୀବିକା ଉପାର୍ଜନର ସୁଯୋଗ ମଧ୍ୟ ପାଇଥିଲେ; କିନ୍ତୁ ନିଜ ବଡ଼ ଭଉଣୀ ମେରି (ବୟସରେ ଦଶ ବର୍ଷ ବଡ଼)ଙ୍କର ମାନସିକ ବିକୃତି ତାହାଙ୍କ ଜୀବନରେ ଗୋଟିଏ ଗଭୀର ଦୁଃଖର ରେଖା ଟାଣିଦେଇଥିଲା । ଉନ୍ମତ୍ତ ଅବସ୍ଥାରେ ମେରି ନିଜ ମାତାଙ୍କୁ ହତ୍ୟା କରିଥିଲେ, ପିତାଙ୍କୁ ଆହତ କରିଥିଲେ । ସାରା ଜୀବନ ଲ୍ୟାମ୍ବ୍ ଭଉଣୀଙ୍କର ଦାୟିତ୍ୱ ନେଇ-ଥିଲେ, ନିଜେ ବିବାହ କରିନଥିଲେ । କଳାର ଆବରଣ ମଧ୍ୟରେ ଏ ଦୁଃଖକୁ ଢାଙ୍କିବାକୁ ଚେଷ୍ଟାକଲେ ମଧ୍ୟ ତାର ରାଗିଣୀ ଲେଖାର ଛନ୍ଦେ ଛନ୍ଦେ ଫୁଟିଉଠିଛି । କବିଙ୍କ ହାସ୍ୟରସ ଭିତରେ ମଧ୍ୟ ଏହି କରୁଣ ମୂର୍ଚ୍ଛନା ଶୁଣାଯାଏ । ଲେଖକ କିନ୍ତୁ ଜଣେ ଟ୍ରାଜିକ୍ ହିରୋ ଭଳି ଏହି ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ତାଙ୍କର ହାସ୍ୟରସ ଓ କାରୁଣ୍ୟ ମଧ୍ୟରେ ପାର୍ଥକ୍ୟର ସୀମାରେଖା ଗୌଣ । ଏଣୁ ଓ୍ୱାଲ୍‌ଟାର୍ ପେଟାର୍ କହିଛନ୍ତି—"We know that beneath this blithe surface there is something of the domestic horror, of the beautiful heroism, and devotedness too, of Old Greek tragedy." କରୁଣ ଓ ହାସ୍ୟର ଅପୂର୍ବ ସମନ୍ୱୟ ତାଙ୍କ ଲେଖାରେ ଲକ୍ଷ୍ୟ କରାଯାଏ । ଲ୍ୟାମ୍ବ୍‌ଙ୍କ ପ୍ରବନ୍ଧ ଭିତରେ ଆତ୍ମାଭିମାନ ନାହିଁ କହିଲେ ଭୁଲ ହେବ; କିନ୍ତୁ ତାହା କଳାର ପରିଚ୍ଛଦରେ ଆବୃତ ।

ଲ୍ୟାମ୍ବ୍ କଳାର ପୂଜାରୀ । ମନସ୍ତାତ୍ତ୍ୱିକ ହୋଇ ମନର ବିଶ୍ଳେଷଣ କରିବା ବା ଧର୍ମଯାଜକ ସାଜି ନୀତିଶିକ୍ଷା ଦେବା ତାଙ୍କର ଉଦ୍ଦେଶ୍ୟ ନୁହେଁ; ବରଂ କଳାପାଇଁ ହିଁ ସେ

କଳାର ସାଧନା କରୁଥିଲେ । ଜୀବନର ବାସ୍ତବ ଯନ୍ତ୍ରଣାରୁ ଏହାର ଭିତରେ ସେ ସ୍ୱର୍ଗୀୟ ସାନ୍ତ୍ୱନା ପାଉଥିଲେ । କଳାକାର ବାସ୍ତବକୁ ଠିକ୍ ବାସ୍ତବ ରୂପରେ ପରିବେଷଣ କରେନା । ଏଥିରେ ସେ କଳ୍ପନାର ସଂଯୋଗ ଘଟାଏ । ଏଣୁ ଲ୍ୟାମ୍ବ୍ ବାସ୍ତବ ଜୀବନର ଅନୁଭୂତି ପ୍ରବନ୍ଧରେ ପ୍ରକାଶ କରୁଥିଲେ ମଧ୍ୟ ଏହାକୁ ଅବିକୃତ ସତ୍ୟ ଭାବରେ ଗ୍ରହଣ କରିବା ଉଚିତ ନୁହେଁ । ସେ ନିଜ ଭଗିନୀଙ୍କର ମାତୃହତ୍ୟା ପ୍ରସଙ୍ଗ ଉଲ୍ଲେଖ କରି ନ ଥିଲେ ବା 'ଡ୍ରିମ୍ ଚିଲଡ୍ରେନ୍'ରେ ନିଜେ ଜଣେ ବିପତ୍ନୀକ ଓ ଦୁଇଟି ସନ୍ତାନର ଜନକ ବୋଲି କହିଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଶୈଳୀ ଦିଗରୁ ଲ୍ୟାମ୍ବ୍ ପ୍ରାଚୀନପନ୍ଥୀ । ସେ ବ୍ରାଉନ ଓ ଫୁଲରଙ୍କୁ ବିଶେଷ ଭାବରେ ଅନୁସରଣ କରିଛନ୍ତି; ବହୁ ପୁରାତନ ଓ ଅଚଳ ଶବ୍ଦର ପ୍ରୟୋଗ କରିଥାନ୍ତି; ବାଇବେଲରୁ ଉଦ୍ଧୃତି ଦେଇଥାନ୍ତି । ତାଙ୍କ ଶୈଳୀର ଚିତ୍ରଧର୍ମିତା ଓ କାବ୍ୟିକ ଛଟା ଅତ୍ୟନ୍ତ ଉପଭୋଗ୍ୟ ।

ଲ୍ୟାମ୍ବ୍ ସମାଲୋଚକ ମଧ୍ୟ । ଏଲିଜାବେଥୀୟ ନାଟ୍ୟ-ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ପ୍ରାୟ ଏକ ଶତାବ୍ଦୀ ଧରି ଅବହେଳିତ ଏହି ଏଲିଜାବେଥୀୟ ନାଟକକୁ ସେ ପୁଣି ଲୋକଲୋଚନକୁ ଆଣିଥିଲେ । ଏ ସମ୍ପର୍କୀୟ ତାଙ୍କର ବିଶିଷ୍ଟ କୃତି 'ସ୍ପେସିମେନ୍ସ୍ ଅଫ ଦି ଇଂଲିଶ୍ ଡ୍ରାମାଟିକ୍ ପଏଟ୍ସ କଣ୍ଟେମ୍ପୋରାରୀ ଉଇଥ୍ ସେକ୍ସପିଆର' (Specimens of English Dramatic Poets Contemporary with Shakespeare : ୧୮୦୮) । ଏଥିରେ ଉକ୍ତ ଯୁଗର ବିଶିଷ୍ଟ ନାଟକଗୁଡ଼ିକରୁ ସୁନିର୍ବାଚିତ କେତେକ ଦୃଶ୍ୟ ସନ୍ନିବିଷ୍ଟ । ଏଥି ସହିତ ଲେଖକଙ୍କ ବିଶ୍ଳେଷଣାତ୍ମକ ମନ୍ତବ୍ୟ ସେଗୁଡ଼ିକର ରସ ଉପଲବ୍ଧି କରିବାରେ ସହାୟକ ହୋଇଛି । ଏଥିରେ ତାଙ୍କର ନିରପେକ୍ଷ, ଉଦାର ଓ ସମବେଦନଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ନିଜ ଭଉଣୀ ମେରୀଙ୍କ ସହାୟତାରେ ସେ ସେକ୍ସପିଅରଙ୍କ ନାଟକକୁ ଶିଶୁ ଉପଯୋଗୀ ଗଳ୍ପଭାବରେ 'ଟେଲ୍ସ ଫ୍ରମ୍ ସେକସପିଅର'ରେ ପରିବେଷଣ କରିଛନ୍ତି । ଏଲିଜାବେଥୀୟ ନାଟକ ପ୍ରତି ତାଙ୍କର ଅସୀମ ଅନୁରକ୍ତି ଏଥିରୁ ସୂଚିତ ହୁଏ ।

ସମାଲୋଚନା କ୍ଷେତ୍ରରେ ସେ ଲେଖକଙ୍କ ଜୀବନୀ ବା ଇତିହାସକୁ ବିଚାରକୁ ନିଅନ୍ତି ନାହିଁ । ଜଣେ ପାଠକର ଦୃଷ୍ଟିକୋଣରୁ ସେ ସିଧାସଳଖ ଲେଖକଙ୍କର କୃତି ଉପରେ ମନ୍ତବ୍ୟ ଦେଇଥାନ୍ତି । ଉପକ୍ରମଣିକା ବା ଆନୁଷଙ୍ଗିକ ବିଷୟରେ ସମୟର ଅପଚୟ ନଘଟାଇ ସିଧାସଳଖ ବିଷୟରେ ଅନୁଶୀଳନ କରିଥାନ୍ତି ।

## ହାଜ୍‌ଲିଟ (William Hazlitt : ୧୭୭୮—୧୮୩୦)

ଜଣେ ବିଶିଷ୍ଟ ସମାଲୋଚକ ଓ ପ୍ରାବନ୍ଧିକ ଭାବରେ ହାଜ୍‌ଲିଟ୍ ଇଂରାଜୀ ସାହିତ୍ୟରେ ଅଗ୍ରଗଣ୍ୟ । ସମାଲୋଚନା କ୍ଷେତ୍ରରେ ସେ ଅତ୍ୟନ୍ତ ନିର୍ଭୀକ ତଥା କଠୋର; କିନ୍ତୁ ସାହିତ୍ୟ



ତତ୍ତ୍ୱ ଭିତ୍ତିରେ ସମାଲୋଚନା ନ କରି ଅନେକ ସମୟରେ ସେ ବ୍ୟକ୍ତିଗତ ପ୍ରତିକ୍ରିୟା ହିଁ ପ୍ରକାଶ କରିଥାନ୍ତି । ଏଣୁ ତାଙ୍କ ଏକଦେଶଦର୍ଶୀ ହୋଇ-ପଡ଼ିବା ସ୍ୱାଭାବିକ । ଏଭଳି ସମାଲୋଚନା ଜନ୍ଲୁ ସେ କେବଳ ସମସାମୟିକ ସାହିତ୍ୟିକଙ୍କ ସମ୍ବନ୍ଧରେ କରିଥିବାର ଦେଖାଯାଏ । ଅନ୍ୟ ପକ୍ଷରେ ପୁରାତନ ସାହିତ୍ୟର ସମୀକ୍ଷାବେଳେ ତାଙ୍କର ମତାମତ ଅତ୍ୟନ୍ତ ନିରପେକ୍ଷ ତଥା ଯଥାର୍ଥ । ତାଙ୍କର ସମାଲୋଚନା ଗ୍ରନ୍ଥ ମଧ୍ୟରେ 'କେରେକ୍‌ଟାରସ୍ ଅଫ୍ ସେକ୍‌ସ୍-ପିଅରସ୍ ପ୍ଲେ' (୧୮୧୭), 'ଲେକ୍‌ଚର୍ସ ଅନ୍ ଦ ଇଂଲିଶ୍ ପଏଟସ୍' (୧୮୧୯), 'ଲେକଚର୍ସ ଅନ୍ ଦ ଇଂଲିସ କମିକ୍ ରାଇଟାର୍ସ' (୧୮୧୯) ଓ 'ଲେକଚର୍ସ ଅନ୍ ଦ ଇଂଲିଶ୍ ଡ୍ରାମାଟିକ ଲିଟାରେଚର ଅଫ୍ ଦ ଏଜ୍ ଅଫ୍ ଏଲିଜାବେଥ୍' (୧୮୨୦) ଉଲ୍ଲେଖଯୋଗ୍ୟ ।

ନିବନ୍ଧ ରଚନାକ୍ଷେତ୍ରରେ ସେ ବ୍ୟକ୍ତିନିଷ୍ଠ ଧାରାର ଅନୁବର୍ତ୍ତୀ । ତାଙ୍କର ସୃଜନଶୀଳ ପ୍ରବନ୍ଧଗୁଡ଼ିକ 'ଦ ରାଉଣ୍ଡ ଟେବ୍‌ଲ୍ (୧୮୧୭), 'ଟେବ୍‌ଲ୍ ଟକ୍; ଅର୍ ଅରିଜିନାଲ ଏସେଜ୍ ଅନ ମ୍ୟାନ୍ ଆଣ୍ଡ୍ ମେନାରସ୍' (୧୮୨୧-୨୨) ଓ 'ଦ ପ୍ଲେନ୍ ସ୍ପିକାର' (୧୮୨୬)ରେ ସଂକଳିତ ।

ଲ୍ୟାମ୍ବଙ୍କ ପ୍ରବନ୍ଧ ପରି ହାଜ୍‌ଲିଟଙ୍କ ପ୍ରବନ୍ଧରେ ମଧ୍ୟ ବ୍ୟକ୍ତିଗତ ଜୀବନର ବିଭିନ୍ନ ଅଧ୍ୟାୟ ଉନ୍ମୋଚିତ । ନାନାବିଧ ବିଷୟବସ୍ତୁକୁ ସେ ପ୍ରବନ୍ଧର ଉପାଦାନ ଭାବରେ ଗ୍ରହଣ କରିଛନ୍ତି । 'ଅନ୍ ଗୋଇଙ୍ଗ୍ ଏ ଜର୍ଣ୍ଣି', 'ଏ ଫାଇଟ୍', 'ମାଇଁ ଫାଷ୍ଟ ଏକୋଏନ୍‌ଟେନ୍‌ସ୍ ଉଇଥ୍ ପଏଟ୍‌ସ୍,' 'ଅନ୍ ଦ ଫିଅର୍ ଅଫ୍ ଡେଥ୍,' 'ଦ ଇଣ୍ଡିଆନ୍ ଜାଗଲର୍', 'ଅନ୍ ଏ ଲ୍ୟାଣ୍ଡ ସ୍କେପ୍ — ବାଏ ନିକୋଲାସ୍ ପଜିନ୍' ( Poussin ), 'ଅନ୍ ପେଡ୍ରୋନେଜ୍ ଆଣ୍ଡ୍ ପାଫିଙ୍ଗ' (Puffing) ପ୍ରଭୃତି ପ୍ରବନ୍ଧର ନାମକରଣରୁ ତାଙ୍କର ବିଷୟ ନିର୍ବାଚନର ପରିସର ସମ୍ବନ୍ଧରେ ଧାରଣା କରାଯାଇପାରେ । ପ୍ରବନ୍ଧରୁ ହାଜ୍‌ଲିଟଙ୍କର ବ୍ୟକ୍ତିଗତ ରୁଚି, ବିତୃଷ୍ଣା ଓ ଦୋଷ-ଦୁର୍ବଳତାର ସୂଚନା ମିଳିଲେ ମଧ୍ୟ ଲ୍ୟାମ୍ବଙ୍କ ପରି ସେ ଅତି ବ୍ୟକ୍ତିଗତ ଘରୋଇ ବିଷୟ ପ୍ରକାଶ କରିନାହାନ୍ତି । ଅନ୍ୟ ପକ୍ଷରେ ଲ୍ୟାମ୍ବଙ୍କର ରାଜନୀତି କ୍ଷେତ୍ରରେ ଆଗ୍ରହ ନଥିବାବେଳେ ହାଜ୍‌ଲିଟ ସେ ସମ୍ବନ୍ଧରେ ମତାମତ ବ୍ୟକ୍ତ କରିଛନ୍ତି । ହାଜଲିଟଙ୍କର ଦାର୍ଶନିକସୁଲଭ ମନନଶୀଳତା ଲ୍ୟାମ୍ବଙ୍କ ନିକଟରେ ନାହିଁ । 'ଅନ୍ ରିଜିନ୍ ଆଣ୍ଡ ଇମାଜିନେସନ,' 'ଅନ୍ ଇଗୋଟିଜିମ୍',

'ଅନ ଦ ପାଷ୍ଟ ଆଣ୍ଡ ଫ୍ୟୁଚର' ପରି ପ୍ରବନ୍ଧରୁ ଏହି ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ । ଏହି ମନନଶୀଳତା ହେତୁ ତାଙ୍କର ବିଷୟ ପରିବେଷଣ ବିଶ୍ଳେଷଣାତ୍ମକ ହୋଇଥାଏ । ପ୍ରବନ୍ଧର କେତେକାଂଶରେ ପ୍ରସଙ୍ଗାତିରିକ୍ତ ବିଷୟର ଅବତାରଣା ପ୍ରବନ୍ଧକୁ ଆଲୋଚନାଧର୍ମୀ କରିଥାଏ । ଏଥିରେ ସାଧାରଣତଃ ମତ ଓ ଆଦର୍ଶର ପରମ୍ପରାର ଦେଖିବାକୁ ମିଳେ ।

ରଚନାଶୈଳୀ ଦୃଷ୍ଟିରୁ ମଧ୍ୟ ହାଜ୍‌ଲିଟ ଓ ଲ୍ୟାମ୍ବଙ୍କ ଶୈଳୀ ମଧ୍ୟରେ ପାର୍ଥକ୍ୟ ରହିଛି । ଲ୍ୟାମ୍ବ ପ୍ରାଚୀନପନ୍ଥୀ ହୋଇଥିବା ବେଳେ ହାଜ୍‌ଲିଟ ଆଧୁନିକତାର ନିକଟବର୍ତ୍ତୀ । ତାଙ୍କର ବାକ୍ୟଗୁଡ଼ିକ ସରଳ ଆକସ୍ମିକ (abrupt) ଓ ସଂକ୍ଷିପ୍ତ । ଉଦ୍ଧୃତିର ବ୍ୟବହାର ଥିଲେ ମଧ୍ୟ ସେଗୁଡ଼ିକୁ ସେ ଅତି ସତର୍କ ସହିତ ବକ୍ତବ୍ୟର ଅବିଚ୍ଛେଦ୍ୟ ଅଙ୍ଗରେ ପରିଣତ କରିଥାନ୍ତି । ସମୟ ସମୟରେ ତୁଳନାଦ୍ୱାରା ବୈପରୀତ୍ୟ ପ୍ରଦର୍ଶନ (contrast) ମାଧ୍ୟମରେ ନିଜ ମତାମତକୁ ଅତ୍ୟନ୍ତ ଶକ୍ତିଶାଳୀ ତଥା ଚିତ୍ତାକର୍ଷକ କରିଥାନ୍ତି ।

## ଡି'କୁଇନ୍‌ସି (Thomas De Quincey : ୧୭୮୫-୧୮୫୯)

କୋଲରିଜଙ୍କ ପରି ଅଫିମସେବୀ । ତାଙ୍କର ବହୁସଂଖ୍ୟକ ଅସଫଳ ଗଦ୍ୟରଚନା ରହିଛି; କିନ୍ତୁ ଯେଉଁ କେତୋଟି ରଚନା ପାଇଁ ସେ ଯଶସ୍ୱୀ, ସେଥିମଧ୍ୟରୁ ଶ୍ରେଷ୍ଠ କୃତିଟି ଅଫିମ-ସେବା ସମ୍ପର୍କୀୟ ସୃଜନଶୀଳ ରଚନା 'କନଫେସନସ୍ ଅଫ୍ ଏନ୍ ଇଂଲିଶ ଓପିଅମ-ଇଟାର୍'(Confessions of an English Opium Eater : ୧୮୨୧) ଅଫିମ ନିଶାରେ ମଜଗୁଲ୍ ବ୍ୟକ୍ତିର ବର୍ଣ୍ଣିଳ ସ୍ୱପ୍ନ ଓ ଅଭିଜ୍ଞତା ଏଥିରେ ବର୍ଣ୍ଣିତ । ଏଥିପାଇଁ ସେ ବ୍ୟବହାର କରିଥିବା ପଦ୍ୟଧର୍ମୀ ଗଦ୍ୟ ଅତ୍ୟନ୍ତ ଉପଯୋଗୀ ହୋଇଛି ।

ଡି' କୁଇନ୍‌ସିଙ୍କ ଗଦ୍ୟ ବହୁ କ୍ଷେତ୍ରରେ ନୀରସ । ସେ ବହୁ ବିଦ୍‌ବତ୍ତାର ପ୍ରଦର୍ଶନୀ କରିଥାନ୍ତି । ତାହା କିନ୍ତୁ ତ୍ରୁଟିଶୂନ୍ୟ ନୁହେଁ । ସମାନୁପାତିକତା (proportion)ର ଅଭାବ ତାଙ୍କର ଅନ୍ୟ ଏକ ତ୍ରୁଟି; କିନ୍ତୁ ତାଙ୍କ ଗଦ୍ୟର ଗୀତିମୟତା, ଗାମ୍ଭୀର୍ଯ୍ୟ (Sonority), ଲାଳିତ୍ୟପୂର୍ଣ୍ଣ ସହଜ, ସାବଲୀଳ, ପ୍ରକାଶଭଙ୍ଗୀ ଅନ୍ୟତ୍ର ଦୁର୍ଲଭ । ଯେକୌଣସି ବିଷୟ ପରିବେଷଣ କଲେ ମଧ୍ୟ ଛନ୍ଦ ଓ ଲାଳିତ୍ୟର ଅଭାବ କେଉଁଠି ଅନୁଭୂତ ହୁଏନାହିଁ । ତାଙ୍କଠାରେ 'blow through bronze' ଓ 'breathe through silver' ସାଧନ କରିବା ଭଳି ଶକ୍ତିଥିଲା । ତାଙ୍କର ଶୈଳୀ ସମ୍ପର୍କରେ ସମ୍ୟକ୍ ଧାରଣା କରିବାପାଇଁ 'କନଫେସନ୍‌ସ ଅଫ୍ ଏନ୍ ଇଂଲିଶ ଓପିଅମ ଇଟାର'ରୁ କେତୋଟି ପଙ୍କ୍ତି ଉଦ୍ଧୃତ ହେଲା—

"I had the power if I could raise myself, to will it; and yet again had not the power, for the weight of twenty Atlantics was upon me, or the oppression of inexpiable guilt· "Deeper than ever plummet sounded." I lay inactive.

ସମାଲୋଚନା କ୍ଷେତ୍ରରେ ତାଙ୍କର 'ରେମିନସେନ୍‌ସେସ୍ ଅଫ୍ ଦ ଇଂଲିଶ ଲେକ ପଏଟ୍‌ସ' ଉଲ୍ଲେଖଯୋଗ୍ୟ । ଡି' କୁଇନସି ବହୁଦିନ ଲେକ୍ ଅଞ୍ଚଳରେ ରହୁଥିଲେ ଓ ବିଶିଷ୍ଟ ରୋମାଣ୍ଟିକ କବିଙ୍କୁ ଜାଣିବାର ସୁଯୋଗ ପାଇଥିଲେ । ଉକ୍ତ ଗ୍ରନ୍ଥଟିରେ ସେଇ କବିଙ୍କ ସମ୍ପର୍କୀୟ ସ୍ମୃତି ଲିପିବଦ୍ଧ କରାଯାଇଛନ୍ତି । କବିଙ୍କ ଚରିତ୍ର ଓ ବ୍ୟକ୍ତିତ୍ୱକୁ ସେ ଦକ୍ଷତାର ସହିତ ପରିସ୍ଫୁଟ କରିପାରିଛନ୍ତି; ସେମାନଙ୍କ ଚରିତ୍ରର ଦୋଷ-ତ୍ରୁଟିକୁ ମଧ୍ୟ ନିର୍ବିକାର ଚିତ୍ତରେ ପ୍ରକାଶକରିଛନ୍ତି; କିନ୍ତୁ ଅନେକ କ୍ଷେତ୍ରରେ କେବଳ ଅନାବଶ୍ୟକ କଥକତାରେ ଏହା ଭରିଯାଇଛି ।

ଓ୍ୱାର୍ଡ଼ସ୍ ଓ୍ୱାର୍ଥ, କୋଲରିଜ, ସେଲି ଓ କୀଟସ୍‌ଙ୍କ ପରି ବିଶିଷ୍ଟ ରୋମାଣ୍ଟିକ କବିଙ୍କର ମଧ୍ୟ ସମାଲୋଚନା ସାହିତ୍ୟକୁ ଅବଦାନ ରହିଛି । ଏଥିପୂର୍ବରୁ ଲିରିକେଲ ବ୍ୟାଲାଡ଼ସର ଭୂମିକାରେ ପ୍ରତିଫଳିତ ଓ୍ୱାର୍ଡସ ଓ୍ୱାର୍ଥଙ୍କ କାବ୍ୟଦର୍ଶନ କଥା ତାହାଙ୍କ କବିତାର ବୈଶିଷ୍ଟ୍ୟ ପ୍ରସଙ୍ଗରେ ଆଲୋଚିତ ହୋଇଛି । ଲ୍ୟାମ୍ବଙ୍କ ଅବଦାନ ମଧ୍ୟ ଆଲୋଚିତ । ଏଠାରେ ଅନ୍ୟ ତିନି କବିଙ୍କର କୃତି ସମ୍ପର୍କରେ ସୂଚନା ଦେବା ଆବଶ୍ୟକ ।

ସମାଲୋଚକଭାବରେ କୋଲରିଜ୍ କେବଳ ରୋମାଣ୍ଟିକ ଯୁଗରେ ନୁହନ୍ତି, ସମଗ୍ର ଇଂରେଜୀ ସାହିତ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରନ୍ତି । 'ଲେକ୍‌ଚର୍ସ ଅନ୍ ସେକ୍‌ସପିଅର' (୧୮୪୯) ସେକ୍‌ସପିଅର୍‌ଙ୍କ କାବ୍ୟପ୍ରତିଭା ବିଶ୍ଳେଷଣରେ ଏକ ଅପ୍ରତିଦ୍ୱନ୍ଦ୍ୱୀ ରଚନା ପ୍ରଚଳିତ । ସେକ୍‌ସପିଅର୍ ସମାଲୋଚନାର ତ୍ରୁଟିବିଚ୍ୟୁତି ସେ ଅତି ଦକ୍ଷତାର ସହିତ ଦେଖାଇପାରିଛନ୍ତି । 'ଦ ଏଡସ ଟୁ ରିଫ୍ଲେକସନ' (The Aids to Reflection : ୧୮୨୫)ରେ ଧର୍ମ ଓ ଦର୍ଶନ ସମ୍ବନ୍ଧୀୟ ଅନୁଚିନ୍ତା ପ୍ରକାଶ ପାଇଛି । ସମାଲୋଚନା ସାହିତ୍ୟକୁ କୋଲ୍‌ରିଜ୍‌ଙ୍କ ସର୍ବଶ୍ରେଷ୍ଠ ଦାନ 'ବାୟୋଗ୍ରାଫିଆ ଲିଟାରିଆ' (Biographia Litararia, or Sketches of my Literary Life and Opinions : ୧୮୧୭) । ଏଥିରେ ଲେଖକ ଓ୍ୱାର୍ଡସ ଓ୍ୱାର୍ଥଙ୍କ କାବ୍ୟଦର୍ଶନ ବିଶ୍ଳେଷଣ କରିବା ସଙ୍ଗେ ସଙ୍ଗେ ସ୍ୱକୀୟ କାବ୍ୟାନୁଚିନ୍ତା ପ୍ରକାଶ କରିଛନ୍ତି । ପ୍ରଥମ ଷୋହଳଟି ଅଧ୍ୟାୟର ବିଶେଷ ଗୁରୁତ୍ୱ ନାହିଁ । ଶେଷ ସାତଟି ଅଧ୍ୟାୟରେ ଉପସ୍ଥାପିତ ତାଙ୍କର ସ୍ୱକୀୟ ଦୃଷ୍ଟିଭଙ୍ଗୀ ଅତ୍ୟନ୍ତ ବ୍ୟାପକ ତଥା ଗମ୍ଭୀର । କବିତାର ସ୍ୱରୂପ ବିଶ୍ଳେଷଣ କରିବାକୁ ଯାଇ ଲେଖକ ବିଜ୍ଞାନଠାରୁ ଏହାର ପାର୍ଥକ୍ୟ ନିର୍ଦ୍ଦେଶ କରିଛନ୍ତି । ତାଙ୍କ ମତରେ ବିଜ୍ଞାନର ଉଦ୍ଦେଶ୍ୟ ସତ୍ୟ ସନ୍ଧାନ; କିନ୍ତୁ କବିତାର ଲକ୍ଷ୍ୟ ଆନନ୍ଦ ପ୍ରଦାନ । କବିତାର ଜୈବିକ ଐକ୍ୟ ଏକାନ୍ତ ଅପରିହାର୍ଯ୍ୟ; ତାର ଅଂଶବିଶେଷ ପରସ୍ପର ସୁସମନ୍ୱିତ ହେବା ଉଚିତ । କବିତା ସାମଗ୍ରିକ ଭାବରେ ଯେପରି ଆନନ୍ଦ ଦେଇପାରେ, ତାର ଅଂଶବିଶେଷରୁ ମଧ୍ୟ ଅନୁରୂପ ଆନନ୍ଦ ମିଳିବା ବାଞ୍ଛନୀୟ । ଉଭୟ ଆନନ୍ଦ ପରସ୍ପରର ପରିପୂରକ ହେବା ଉଚିତ । କାବ୍ୟିକ ଛନ୍ଦରେ ମଧ୍ୟ ସଦୁପଯୋଗ ହେବା ଆବଶ୍ୟକ । କୋଲରିଜ୍‌ଙ୍କ ଭାଷାରେ—"A poem is that species of composition which opposed to works of science, big proposing for its immediate object pleasure, not Truth."

ଗଦ୍ୟ ଲେଖକ ଭାବରେ ଶେଲିଙ୍କ ସାଫଲ୍ୟ ସୀମିତ । କେବଳ ତାଙ୍କର ସମାଲୋଚନା-ମୂଳକ ରଚନା 'ଡିଫେନସ୍ ଅଫ୍ ପଏଟ୍ରି'ଟି ଉଲ୍ଲେଖଯୋଗ୍ୟ । ରୋମାଣ୍ଟିକ ଚେତନା ସମ୍ପର୍କୀୟ କବିଙ୍କ ଭାବଧାରା ଏଥିରେ ପ୍ରକାଶ ପାଇଛୁ ।

ୱାର୍ଡସ୍‌ୱାର୍ଥ, କୋଲ୍‌ରିଜ ଓ ଶେଲି ନିଜ କାବ୍ୟଚେତନା ସମ୍ବନ୍ଧରେ ଗ୍ରନ୍ଥମାନ ରଚନା କରିଯାଇଥିଲେ ମଧ୍ୟ କୀଟସ୍ ଅନ୍ୟର ସମାଲୋଚନା ବା ଆପଣା ସପକ୍ଷରେ ଓକାଲତି କରିନାହାନ୍ତି । ସେ ଥିଲେ ସମ୍ପୂର୍ଣ୍ଣ କବିଭାବାପନ୍ନ । କେବଳ ଚିଠିପତ୍ରରୁ ତାଙ୍କର କାବ୍ୟାନୁଚିନ୍ତା ସମ୍ପର୍କରେ ଅବହିତ ହେବା ସମ୍ଭବ । ଚିଠିଗୁଡ଼ିକୁ ଏକାଠି ପାଠକଲେ ଏ ସମ୍ବନ୍ଧରେ ଗୋଟିଏ ପୂର୍ଣ୍ଣାଙ୍ଗ ଧାରଣା କରିହୁଏ । କୀଟ୍‌ସଙ୍କ ପାଇଁ ଆନ୍ତରିକ ପ୍ରେମ ଓ କବିତା ଥିଲା ହୋମାଗ୍ନି ପରି ପବିତ୍ର; କଳ୍ପନା ଥିଲା ତାଙ୍କ ପାଇଁ ଚରମ ସତ୍ୟ । କବିଙ୍କ ଭାଷାରେ : "I am creation of nothing but the holiness of the heart's affections, and the truth of imagination. What the imaginations Seires as beauty, must be truth." କବି ଥିଲେ ସୌନ୍ଦର୍ଯ୍ୟର ଶ୍ରେଷ୍ଠ ପୂଜାରୀ । କବି ମାତ୍ରେଇ ସୌନ୍ଦର୍ଯ୍ୟର ବଶବର୍ତ୍ତୀ; ଶ୍ରେଷ୍ଠ କବିଙ୍କ କ୍ଷେତ୍ରରେ ଆଉ ସମସ୍ତ ଚେତନା ଏହି ସୌନ୍ଦର୍ଯ୍ୟବୋଧଦ୍ୱାରା ହିଁ ନିୟନ୍ତ୍ରିତ ବୋଲି ତାଙ୍କର ବିଶ୍ୱାସ : "With a great poet the sense of beauty overcomes every other consideration or rather obliterates all consideration." ୱାର୍ଡ଼ସ୍‌ୱାର୍ଥଙ୍କ ପରି କୀଟସ ମଧ୍ୟ କବିତାର ସ୍ୱତଃସ୍ଫୂର୍ତ୍ତିତା ଉପରେ ବିଶ୍ୱାସ କରନ୍ତି । ସ୍ୱତଃସ୍ଫୂର୍ତ୍ତିତା ବିନା ସମସ୍ତ କବିତା ଅକବିତା—If poetry comes not as naturally as the leaves to a tree it had better not come at all. କୀଟ୍‌ସଙ୍କ ଚିଠିପତ୍ରର ପ୍ରତ୍ୟେକଟି ପଙ୍‌କ୍ତି ତାଙ୍କର କବିତା ପରି ଆବେଗସ୍ପନ୍ଦିତ ଓ ଛନ୍ଦମୟ ।

□□□

## ଏକାଦଶ ଅଧ୍ୟାୟ

# ଭିକ୍‌ଟୋରୀୟ ଯୁଗ

## [ଖ୍ରୀ : ୧୮୩୦—୯୦]

ରାଣୀ ଭିକ୍‌ଟୋରିଆଙ୍କ ଶାସନକାଳ (ଖ୍ରୀ: ୧୮୩୭-୧୯୦୧) ଇଂଲଣ୍ଡ ପକ୍ଷରେ ଶାନ୍ତି ଓ ସମୃଦ୍ଧିର ଯୁଗ । ଏତେବେଳକୁ ଇଂରେଜ ଜାତି ବିଶାଳ ସାମ୍ରାଜ୍ୟର ଅଧିକାରୀ; ବାଣିଜ୍ୟ-ବ୍ୟବସାୟ ସାରା ବିଶ୍ୱକୁ ସଂପ୍ରସାରିତ ହୋଇଛି । ଅନ୍ତର୍ଜାତିକ ରାଜନୀତି ମଧ୍ୟ ଅପେକ୍ଷାକୃତ ଶାନ୍ତ । କ୍ରିମିଆନ୍ ଯୁଦ୍ଧ, ଫ୍ରାଙ୍କୋ ଜର୍ମାନ ଲଢ଼େଇ, ଆମେରିକାର ଅନ୍ତର୍ବିପ୍ଳବ, ଭାରତର ସିପାହି ବିଦ୍ରୋହ ଭଳି ଅସ୍ଥିରତା ଦେଖାଦେଇଥିଲେ ମଧ୍ୟ ଇଂରେଜ ଜୀବନକୁ ତାହା ବିଶେଷ ଆଲୋଡ଼ିତ କରିପାରିନଥିଲା । ତଥାପି ଇଂରେଜ ଜାତିର ନିଜସ୍ୱ ସମସ୍ୟା ଯେ ନଥିଲା, ସେକଥା ନୁହେଁ । ରାଜନୈତିକ ସ୍ଥିରତା ଆସିଲେ ଶିଳ୍ପ, ବିଜ୍ଞାନ, ରାଜନୀତି, ଧର୍ମ, ଦର୍ଶନ—ସମସ୍ତ କ୍ଷେତ୍ରରେ ନୂତନ ଦିଗ ଉନ୍ମୋଚନର ଅବକାଶ ମିଳିଥାଏ । ଏଥିରେ ନୂତନ ସମସ୍ୟା ତଥା ସଂକଟର ସୂତ୍ରପାତ ମଧ୍ୟ ହୋଇପାରେ । ଇଂଲଣ୍ଡରେ ତାହା ହିଁ ଘଟିଥିଲା ।

ଶିଳ୍ପର ଦ୍ରୁତ ବିକାଶ ସମାଜରେ ଶ୍ରମିକଶ୍ରେଣୀର ସୃଷ୍ଟି କରିଥିଲା । ବସ୍ତି ଅଞ୍ଚଳ ପ୍ରସାରିତ ହେଲା । ଅଧିକ ଲାଭ ଆଶାରେ ଶ୍ରମିକକୁ ଶୋଷଣ କରାଗଲା । ଏପରିକି ଶିଶୁମାନେ ମଧ୍ୟ ଏହି ଶୋଷଣ ଓ ନିର୍ଯାତନରୁ ମୁକ୍ତି ପାଇଲେ ନାହିଁ । ଡିକେନ୍‌ସ୍, ମିସେସ୍ ଗାସ୍‌କେଲ୍ ଓ କିଙ୍ଗ୍‌ସ୍‌ଲି'ଙ୍କ ରଚନାରେ ଏହି ସମସ୍ୟା ଉତ୍ଥାପିତ ।

ଡାରଉଇନ (୧୮୦୯-୯୨)ଙ୍କ ବୈଜ୍ଞାନିକ ଆବିଷ୍କାର ଏକ ଯୁଗାନ୍ତକାରୀ ଘଟଣା । ତାଙ୍କର 'ଦି ଅରିଜିନ୍ ଅଫ୍ ସ୍ପେସିଜ୍' (The Origin of Species : ୧୮୫୯) ଓ 'ଦି ଡିସେଣ୍ଟ ଅଫ୍ ମ୍ୟାନ୍' (The Descent of Man : ୧୮୭୧), ଧର୍ମ, ଦର୍ଶନ ତଥା ବିଜ୍ଞାନକ୍ଷେତ୍ରରେ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିଲା । ତାଙ୍କର ବିବର୍ତ୍ତନବାଦ (Theory of Evolution), ସ୍ଥିତି-ସଂଘର୍ଷ (Survival of the fittest) ଓ ପ୍ରାକୃତିକ ନିର୍ବାଚନ (Selection made by Nature) ସଂପର୍କୀୟ ମତବାଦ ବାଇବେଲ-ପ୍ରଣୋଦିତ ଧର୍ମବିଶ୍ୱାସ ଉପରେ କୁଠାରାଘାତ କଲା । ବାଇବେଲ-ପ୍ରବର୍ତ୍ତିତ ସୃଷ୍ଟିତତ୍ତ୍ୱ ତଥା ଆଦି ଦମ୍ପତି ଆଦାମ୍-ଇଭ୍ ପ୍ରସଙ୍ଗ ରୂପକଥାରେ ପରିଣତ ହେଲା ।

ଧର୍ମ ଓ ବିଜ୍ଞାନ ମଧ୍ୟରେ ତୀବ୍ର ସଂଘର୍ଷର ପ୍ରଭାବ ଭିକ୍ଟୋରୀୟ କବିତା ଉପରେ ପଡ଼ିଛି । ବିଜ୍ଞାନକୁ ସଂପୂର୍ଣ୍ଣରୂପେ ଗ୍ରହଣକରିବା ବା ବିଶ୍ୱାସକୁ ସଂପୂର୍ଣ୍ଣରୂପେ ତ୍ୟାଗକରିବା ସମ୍ଭବ ନଥିଲା । ଏଣୁ ଏହା ଭିତରେ ସମନ୍ୱୟ ଆଣିବାପାଇଁ ଚେଷ୍ଟା ହୋଇଛି । ଧର୍ମବିଶ୍ୱାସ ମଧ୍ୟରେ ବିଜ୍ଞାନର ସନ୍ଦେହବାଦକୁ ମଧ୍ୟ ଗ୍ରହଣ କରିନିଆଯାଇଛି—

There remains more faith in honest doubt
Believe me than in half the creeds.-(ଟେନିସନ୍)

କେବଳ ଧର୍ମକ୍ଷେତ୍ରରେ ନୁହେଁ, ରାଜନୀତିକ୍ଷେତ୍ରରେ ମଧ୍ୟ ଏକ ଅବସ୍ଥା । ଖ୍ରୀ: ୧୮୮୮ରେ 'ପିପୁଲ୍‌ସ୍ ଚାର୍ଟାର' (Peoples Charter) ଗୃହୀତ ହେବା ପରେ ରାଜାଙ୍କର ଅଖଣ୍ଡ କ୍ଷମତା ତଥା ଜନ୍ମଗତ ଅଧିକାର (Divine right) ରହିଲନାହିଁ; ପାର୍ଲିଆମେଣ୍ଟ ହେଲ ସର୍ବଶକ୍ତିମାନ । ଖାଲି ସେତିକ ନୁହେଁ, ପାର୍ଲିଆମେଣ୍ଟରେ କେବଳ ସମ୍ଭ୍ରାନ୍ତ, ବିତ୍ତଶାଳୀ ଲୋକଙ୍କ ପରିବର୍ତ୍ତେ ସର୍ବସାଧାରଣଙ୍କ ଭୋଟାଧିକାର ଓ ପ୍ରତିନିଧିତ୍ୱ ପାଇଁ ଦାବି ଉଠିଲ । ଭିକ୍ଟୋରୀୟ ମନୋବୃତ୍ତି ଉଭୟ ସମ୍ଭ୍ରାନ୍ତ ଓ ସର୍ବସାଧାରଣଙ୍କୁ ସ୍ୱୀକାର କରି ମଧ୍ୟମ ପନ୍ଥା ଗ୍ରହଣକଲ । ଏହିଭଳି ଭାବରେ ଧର୍ମ ତଥା ସମାଜର ବିଭିନ୍ନ କ୍ଷେତ୍ରରେ ଭିକ୍ଟୋରୀୟ ଯୁଗ-ମାନସ ମଧ୍ୟମ ପନ୍ଥାର ପକ୍ଷପାତି । ଏହାକୁ ଭିକ୍ଟୋରୀୟ ସମନ୍ୱୟବାଦ (Victorian Compromise) କୁହାଯାଏ । ଭିକ୍ଟୋରୀୟ ଯୁଗରୁଚି ଶୃଙ୍ଖଳା ଓ ସଂଯମର ପକ୍ଷପାତି । ପ୍ରତ୍ୟେକ କାର୍ଯ୍ୟ, କଥାଭାଷା ଓ ବ୍ୟବହାରରେ ଔପଚାରିକତା (decorum), କର୍ତ୍ତବ୍ୟନିଷ୍ଠା, ଆତ୍ମସମ୍ମାନବୋଧ ଓ ଆଦର୍ଶ ଦାମ୍ପତ୍ୟ ଜୀବନଯାପନ ଥିଲ ଭିକ୍ଟୋରୀୟ ଭଦ୍ରବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା (ଅବଶ୍ୟ ବର୍ତ୍ତମାନ ଭିକ୍ଟୋରୀୟ ଶବ୍ଦଟି ହାସ୍ୟାସ୍ପଦ ଅର୍ଥରେ ବ୍ୟବହୃତ ହେଉଛି) । ଏମାନେ ଭ୍ରଷ୍ଟାଚାରକୁ ଘୃଣା କରନ୍ତି; ଅବୈଧ ପ୍ରଣୟକୁ ଘୃଣା କରୁଥିଲେ ମଧ୍ୟ ଦାମ୍ପତ୍ୟ ପ୍ରଣୟକୁ ଈଶ୍ୱରଙ୍କ ଆଶୀର୍ବାଦ ଭାବରେ ଗ୍ରହଣ କରନ୍ତି । ଅନ୍ୟ କଥାରେ କହିବାକୁ ଗଲେ ପ୍ରତ୍ୟେକ କ୍ଷେତ୍ରରେ ଏମାନେ ସଂଯମର ପକ୍ଷପାତି । ଆଭିଜାତ୍ୟ ଓ ସଂଯମ ମଧ୍ୟରେ ଅନ୍ତଃସଲିଳା ଭ୍ରଷ୍ଟାଚାର ଯେ ପ୍ରବାହିତ ହେଉନଥିଲ, ତା ନୁହେଁ । ବିଶିଷ୍ଟ ଔପନ୍ୟାସିକ ଥ୍ୟାକାରେଙ୍କ ଲେଖନୀ ଏହା ବିରୁଦ୍ଧରେ ମୁଖର ହୋଇଉଠିଛି । ଭିକ୍ଟୋରୀୟ ଯୁଗରେ ଶିକ୍ଷାର ବିପୁଳ ବିସ୍ତାର ଘଟିଛି; କିନ୍ତୁ ସମାଜରେ ନାରୀକୁ ସମୁଚିତ ଆସନ ଦିଆଯାଇନାହିଁ । ଧର୍ମବିଶ୍ୱାସ ଓ ନୈତିକବୋଧ ନାରୀକୁ ଗୃହାଙ୍ଗନରେ ଆବଦ୍ଧ କରି ରଖିଛି । ସତେ ଅବା ବାଇବେଲର ନିର୍ଦ୍ଦେଶ "Woman for the herth and man for the field"କୁ ସେମାନେ ଅକ୍ଷରେ ଅକ୍ଷରେ ମାନିଛନ୍ତି । ଶିକ୍ଷାର ପ୍ରସାର ସାହିତ୍ୟର ବିକାଶରେ ସହାୟକ ହୋଇଛି । ଜ୍ଞାନର ପରିସୀମା ବିସ୍ତୃତ ହେବା ସଙ୍ଗେ ସଙ୍ଗେ ଉନ୍ନତ ରୁଚିର ସାହିତ୍ୟ ସୃଷ୍ଟି ହୋଇପାରିଛି । ପଦ୍ୟ ଓ ଗଦ୍ୟ ସାହିତ୍ୟର ସମଧିକ ବିକାଶ ସାଧିତ ହେବା ସଙ୍ଗେ ସଙ୍ଗେ ଉପନ୍ୟାସ-ସାହିତ୍ୟ ଉନ୍ନତ କୋଟୀ ସ୍ପର୍ଶ କରିଛି ।

**କାବ୍ୟ :**

ସାଧାରଣଭାବରେ ଭିକ୍ଟୋରୀୟ କବିତାର ବୈଶିଷ୍ଟ୍ୟ ନିର୍ଦ୍ଧାରଣ କରିବା ସୁବିଧାଜନକ ନୁହେଁ । ଏ ଯୁଗର ବିଶିଷ୍ଟ କବିଦ୍ୱୟ ଟେନିସନ୍ ଓ ବ୍ରାଉନିଙ୍ଗଙ୍କ କବିତାରେ ଆଦର୍ଶଗତ

ପାର୍ଥକ୍ୟ ଅତ୍ୟନ୍ତ ତୀବ୍ର । ପୁନଶ୍ଚ ଏ ଯୁଗର ଶେଷଭାଗରେ ପ୍ରି-ରାଫାଏଲ ଲାଇଟ୍ କବିଗୋଷ୍ଠୀ ଦେଖାଦେଇ ଭିକ୍ଟୋରୀୟ କବିତାକୁ ନୂତନ ରୂପ ଦେଇଛନ୍ତି । ତଥାପି ପୂର୍ବ ଆଲୋଚିତ ଯୁଗଚେତନା ଏ କବିତାରେ ଧ୍ୱନିତ । ଧର୍ମ ଓ ବିଜ୍ଞାନ ମଧ୍ୟରେ ସଂଘର୍ଷ, ଭିକ୍ଟୋରୀୟ ସମନ୍ୱୟବାଦ, ଶୃଙ୍ଖଳା, ସଂଯମ ଓ ରୁଚିବୋଧ ଉକ୍ତ କବିତାକୁ ପ୍ରଭାବିତ କରିଛି ।

ଇତିମଧ୍ୟରେ ରୋମାଣ୍ଟିକ୍ କବିତା ପ୍ରତି ପ୍ରତିକ୍ରିୟା ପ୍ରକାଶ ପାଇଛି । ରୋମାଣ୍ଟିକ୍ କବିମାନେ କଳ୍ପନାର ଏଭଳି ସୋପାନରେ ପହଞ୍ଚିଥିଲେ ଯେ ତା'ଠାରୁ ଉଚ୍ଚତର ସୋପାନକୁ ଯିବା ସମ୍ଭବପର ନଥିଲା । ସାଧାରଣ ଲୋକେ କବିର କଳ୍ପଲୋକରେ ନିଜକୁ ଖୋଜି ପାଇଲେନାହିଁ; ଏଣୁ ବାସ୍ତବତା ପ୍ରତି ଦୃଷ୍ଟି ଫେରିଲା । ରୋମାଣ୍ଟିସିଜ୍‌ମର ନୂତନତା ସାମୟିକଭାବରେ ଆକର୍ଷଣୀୟ ହୋଇଥିଲା । ଏହା ଗଡ୍‌ଡ଼ାଳିକା ପ୍ରବାହରେ ପରିଣତ ହୋଇ ନିଜର ଚମତ୍କାରିତା ହରାଇଲା । ଇତିମଧ୍ୟରେ ବିଜ୍ଞାନ ପ୍ରତି ଲୋକଙ୍କର ବିଶ୍ୱାସ ବଢ଼ିଛି । ବିଜ୍ଞାନ, ଯୁକ୍ତିବାଦ ଓ ବାସ୍ତବତା ପ୍ରତି ଅଭିରୁଚି ହେତୁ ଏଇ ନୂତନ ଯୁଗର ଅଭ୍ୟୁଦୟ ।

କେତେକଙ୍କ ମତରେ ଭିକ୍ଟୋରୀୟ ଯୁଗ ରୋମାଣ୍ଟିକ୍ ଯୁଗର ଏକ ସମ୍ପ୍ରସାରଣ ମାତ୍ର । ଏ ଯୁଗର ବିଶିଷ୍ଟ କବି ଟେନିସନ୍, ବ୍ରାଉନିଂ ଓ ଆର୍ନଲଡ୍ ରୋମାଣ୍ଟିକ୍ ପ୍ରଭାବରୁ ମୁକ୍ତ ନୁହନ୍ତି । କଳ୍ପନା, ଆବେଗ ଓ ପ୍ରକୃତିପ୍ରୀତି ଏମାନଙ୍କ କବିତାରେ ଏକ ବଳିଷ୍ଠ ବିଭାବ । କିନ୍ତୁ ସମସାମୟିକ ଘଟଣା ଓ ପରିବେଶ ଏହାକୁ ନୂତନ ରଙ୍ଗ ପ୍ରଦାନ କରିଛି । ବିଜ୍ଞାନ-ଓ ଧର୍ମର ସଂଘର୍ଷ ମୁଖ୍ୟତଃ ଏହି ପରିବର୍ତ୍ତନର କାରଣ । ଓ୍ୱାର୍ଡସ୍‌ୱାର୍ଥଙ୍କ ପ୍ରକୃତିପ୍ରୀତି ଟେନିସନ୍ ଓ ଆର୍ନଲଡ୍‌ଙ୍କ କବିତାରେ ପ୍ରକାଶ ପାଇଥିଲେ ମଧ୍ୟ ଏହାର ସ୍ୱରୂପ ଭିନ୍ନ । ଟେନିସନ୍‌ଙ୍କ ପ୍ରକୃତି-ସନ୍ଦର୍ଶନରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇଥିବାବେଳେ ଆର୍ନଲଡ୍‌ଙ୍କ ପ୍ରକୃତି ବିଷାଦ ଗ୍ରସ୍ତ୍ୟାମଣ୍ଡିତ । ଶେଲି କଳ୍ପଲୋକ ଉଦ୍ଦେଶ୍ୟରେ ଡେଣା ମିଳିଥିବା ବେଳେ ବ୍ରାଉନିଂ ଅନ୍ତର୍ଲୋକରେ ସଞ୍ଚରଣ କରିଛନ୍ତି । କୀଟସ୍‌ଙ୍କ ରୂପପୂଜା ଓ ଚିତ୍ରଧର୍ମିତା ଭିକ୍ଟୋରୀୟ ପ୍ରୀରାଫାଏ-ଲାଇଟ୍ ଗୋଷ୍ଠୀର କବିତାରେ ପ୍ରତିଫଳିତ ହୋଇଥିଲେ ମଧ୍ୟ ତାହା ଅତିମାତ୍ରାରେ ଦେହଧର୍ମୀ ହୋଇପଡ଼ିଛି ।

ବିଜ୍ଞାନର ଧକ୍କାରେ ପାରମ୍ପରିକ ବିଶ୍ୱାସ ଧୂଳିସାତ୍ ହେବାକୁ ବସିଥିଲେ ମଧ୍ୟ ଭବିଷ୍ୟତ ଜୀବନର ଚିତ୍ର ଅଦ୍ୟାପି ସ୍ପଷ୍ଟ ନୁହେଁ । ଏହାର ଶେଷ ପରିଣତି କୁହେଳିକାଚ୍ଛନ୍ନ । ଏଣୁ ଏକ ତୀବ୍ର ଅସ୍ୱସ୍ତିର ଜ୍ୱାଳା, ଏକ ବିଷଣ୍ଣତାବୋଧ ଏମାନଙ୍କ ମନୋଜଗତକୁ ଗ୍ରାସ କରିଛି ।

ଭିକ୍ଟୋରୀୟ କାବ୍ୟର ଅନ୍ୟତମ ବୈଶିଷ୍ଟ୍ୟ ଏହାର ନୈତିକତାବୋଧ । ମହାରାଣୀ ଭିକ୍ଟୋରୀୟ ଦରବାରର ପ୍ରଭାବ ସମସାମୟିକ ସମାଜ ତଥା ସାହିତ୍ୟ ଉପରେ ପଡ଼ିଥିଲା । ଏପରିକି ସର୍ବସାଧାରଣରେ ଧୂମପାନ କରିବା ଓ ସ୍ତ୍ରୀଲୋକ ସାଇକେଲ ଚଢ଼ିବା ଗର୍ହିତ

ବିବେଚିତ ହେଉଥିଲା । ନୈତିକତା ତଥା ଦାମ୍ପତ୍ୟ-ଜୀବନର ଗୌରବଗାନରେ ଭିକ୍ଟୋରୀୟ କବିତା ମୁଖର ।

ଭିକ୍ଟୋରୀୟ ଚେତନା କିପରି ସମସାମୟିକ କାବ୍ୟରେ ପ୍ରକାଶ ପାଇଛି, କେତେକ ବିଶିଷ୍ଟ କବିଙ୍କ କୃତିକୁ ବିଗ୍ଚାରକୁ ନେଲେ ତାହା ସ୍ପଷ୍ଟ ହେବ ।

**ଟେନିସନ୍** (Alfred Lord Tennyson : ୧୮୦୯-୯୨)

ଟେନିସନ୍‌ଙ୍କର କବିତା ପ୍ରତି ଆଗ୍ରହ କୈଶୋର ଜୀବନରୁ । ଶିକ୍ଷାରେ ସ୍ପୃହା ନଥିଲା । ଷୋହଳବର୍ଷ ବୟସରେ ନିଜ ଭାଇଙ୍କ ସାଥିରେ ଯେ ପ୍ରକାଶ କରିଥିଲେ ଖଣ୍ଡିଏ କବିତା ବହି, "ପଏମ୍‌ସ୍ ବାଇ ଟୁ ବ୍ରଦର୍ସ୍" (Poems by two brothers : ୧୮୨୭) । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଯୋଗଦେଇ-ଥିଲେ ମଧ୍ୟ ପଢ଼ା ଅସମାପ୍ତ ରଖି ସେଠାରୁ ବିଦାୟ ନେଲେ; କିନ୍ତୁ କାବ୍ୟପ୍ରତିଭାର ସ୍ୱାକ୍ଷର ରଖିଥିଲେ ଗୋଟିଏ ପ୍ରତିଯୋଗିତାରେ—'ଟିମ୍-ବାକ୍‌ଟୁ' (Timbuctoo) ନାମକ କବିତା ଲେଖି ସେ ଗ୍ଚାନ୍‌ସେଲର୍‌ଙ୍କ ପଦକ ପାଇଥିଲେ । ଖ୍ରୀ: ୧୮୩୦ରେ ପ୍ରକାଶିତ 'ପଏମ୍‌ସ୍ ଚିଫ୍‌ଲି ଲିରିକେଲ୍'ରେ ଚିତ୍ରଧର୍ମୀ ବର୍ଣ୍ଣନା ଓ ରୂପକଳ୍ପ-ଚୟନରେ ତାଙ୍କ ଦକ୍ଷତାର ପ୍ରଥମ ସ୍ୱାକ୍ଷର ମିଳେ । ଏହାର ପରବର୍ତ୍ତୀ ସଂକଳନ 'ପଏମ୍‌ସ୍'



(୧୮୩୩)ର ପ୍ରକାଶ ପରେ ସେ ଜଣେ ଉଦୀୟମାନ କବିଭାବରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲେ । ଏଥିରେ ସଂକଳିତ କବିତା ମଧ୍ୟରୁ 'ଦି ଲେଡ଼ି ଅଫ୍ ଶେଲଟ୍', 'ଓଏନନ୍', 'ଦି ଲଟସ ଇଟରସ୍' (The Lotos Eaters) ଓ 'ଦି ପେଲେସ ଅଫ ଆର୍ଟ'-ଉଲ୍ଲେଖଯୋଗ୍ୟ ।

ରୋମାଣ୍ଟିକ୍ କବିଙ୍କ ପରି ମଧ୍ୟଯୁଗୀୟ ଅତିପ୍ରାକୃତ ଘଟଣା ପ୍ରତି ଟେନିସନ୍‌ଙ୍କ ମୋହ 'ଦି ଲେଡି ଅଫ୍ ଶେଲଟ୍'ରେ ପ୍ରକାଶିତ । ଲେଡ଼ି ଅଫ୍ ଶେଲଟ୍ ନିଜ ଘରେ ସାରାଦିନ ଆବଦ୍ଧ ରହି ମ୍ୟାଜିକ୍ ବସ୍ତ୍ର ବୁଣୁଛି । ରାଜା ଆର୍ଥର୍‌ଙ୍କ ରାଜଧାନୀ ଆଡ଼କୁ ଗ୍ଚାହିଁଲେ ତାର ମୃତ୍ୟୁ । ଦର୍ପଣରେ ପ୍ରତିବିମ୍ବରେ ହିଁ ସେ ବାହାର ଦୁନିଆର ଦୃଶ୍ୟ ଦେଖିପାରେ । କିନ୍ତୁ ଦିନେ ସେ ସାର ଲ୍ୟାନ୍‌ସେଲଟ୍‌ଙ୍କ କଣ୍ଠସ୍ୱର ଶୁଣିପାରି ନିଜକୁ ସମ୍ଭାଳିପାରିନାହିଁ । ବାହାର ଦୁନିଆକୁ ସେ ଗ୍ଚାହିଁଦେଇଛି ଓ ସଙ୍ଗେ ସଙ୍ଗେ ମୃତ୍ୟୁମୁଖରେ ପତିତ ହୋଇଛି । ଟେନିସନ୍ ଏଠାରେ ଜଣେ ସୁଦକ୍ଷ ଶିଳ୍ପୀ । ପ୍ରକୃତି ତଥା ପରିବେଶ ବର୍ଣ୍ଣନା ଉନ୍ନତ କୋଟୀରେ ଉପନୀତ

ହୋଇଛୁ । ସାର୍ ଆର୍ଥାର୍‌ଙ୍କ ପ୍ରାସାଦର ପରିବେଶ ବର୍ଣ୍ଣନା କରିବାକୁ ଯାଇ କବି କହୁଛନ୍ତି—

On either side the river lie;
Long fields of barley and rye
That clothe the world and meet the sky;
And thro' the fold the road runs by
To many—towered Camelot.

'ଲଟସ୍ ଇଟର୍ସ' ବା 'ପଦ୍ମଭୁକ୍' କବିତାଟିରେ ମଧ୍ୟ ଦୁଃଖଚିନ୍ତାପରିହୃତ ପକ୍ଷୀଙ୍କ କଳରୋଳ-ମୁଖରିତ, ଉଦ୍ଦାମ ଯୌବନର ପ୍ରୀତିକର ପରିବେଶ ପାଠକର ସ୍ନାୟୁତନ୍ତ୍ରୀରେ ତନ୍ଦ୍ରାର ଆବେଶ ସୃଷ୍ଟି କରେ ।

ଖ୍ରୀ: ୧୮୪୨ରେ ଦୁଇଖଣ୍ଡରେ ପ୍ରକାଶିତ କବିତା ସଂକଳନ ତାଙ୍କୁ ଇଂଲଣ୍ଡର ବିଶିଷ୍ଟ କବିଙ୍କ ମଧ୍ୟରେ ସ୍ଥାନ ଯୋଗାଇଦେଇଛୁ । ପ୍ରଥମ ଖଣ୍ଡରେ ପୂର୍ବ ପ୍ରକାଶିତ କବିତାର ମାର୍ଜିତ ସଂକଳନ ପ୍ରକାଶ ପାଇଥିବା ବେଳେ ଦ୍ୱିତୀୟ ଖଣ୍ଡରେ ନୂତନ କବିତାଗୁଚ୍ଛର ଅନ୍ତର୍ଭୁକ୍ତି । 'ମୋର୍ଟେଡ଼୍ ଆର୍ଥାର୍', 'ୟୁଲିସିସ୍' ଓ 'ଲକ୍‌ସଲି ହଲ୍'ପରି କବିଙ୍କ ଉତ୍କୃଷ୍ଟ ଶ୍ରେଣୀର କବିତା ଏଥିରେ ଗ୍ରଥିତ । ଏଥିମଧ୍ୟରୁ 'ୟୁଲିସିସ୍' କବିତାରେ କବିଙ୍କ ରୋମାଣ୍ଟିକ୍ ଓ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀର ଅପୂର୍ବ ସମନ୍ୱୟ ଘଟିଛି । ବୀର ୟୁଲିସିସ୍ ସୁଦୂର ସାଗରଯାତ୍ରୀ । ହତୋତ୍ସାହିତ ଅନୁଗାମୀଙ୍କ ପ୍ରାଣରେ ଉଦ୍ଦୀପନା ସଞ୍ଚାର କରିବାକୁ ଯାଇ ସେ କହିଛନ୍ତି—"To strive, to seek, to find, and not to yield."

'ଦି ପ୍ରିନ୍‌ସେସ୍' (The Princess, a Medley : ୧୮୪୭) ଏକ ଦୀର୍ଘ କବିତା । ଏଥିରୁ ନାରୀଶିକ୍ଷା, ନାରୀ-ଅଧିକାର ତଥା ସମାଜରେ ନାରୀର ଭୂମିକା ସମ୍ବନ୍ଧରେ କବିଙ୍କ ଚିନ୍ତାଧାରା ପ୍ରକାଶ ପାଇଛି । ନାରୀର ଉଚ୍ଚଶିକ୍ଷା ଓ ପୁରୁଷ ସହ ନାରୀର ସମାନାଧିକାରକୁ କବି ବ୍ୟଙ୍ଗ ବିଦ୍ରୂପ କରିଛନ୍ତି । ନାରୀର ଭୂମିକା ତତ୍କାଳୀନ ସମାଜର ଏକ ଆଲୋଚ୍ୟ ବସ୍ତୁ ହୋଇଉଠିଥିଲା । କବି ଗୋଟିଏ ନାରୀ ପ୍ରତିଷ୍ଠାନର କଳ୍ପନା କରିଛନ୍ତି । ତାର ଅଧ୍ୟକ୍ଷା ଜଣେ ବିପ୍ଳବିନୀ—'ସେ ଯୁଗର ଆଧୁନିକା' । ଏଥିରେ କଥାବସ୍ତୁର ଏକମୁଖୀନତା ରକ୍ଷା କରାଯାଇନାହିଁ । ବାସ୍ତବରେ ଏହା ଏକ ବିଶୃଙ୍ଖଳ ସୃଷ୍ଟି (medley) । କେତୋଟି ସଙ୍ଗୀତ ସଂଯୋଜନାଦ୍ୱାରା ଏହାକୁ ଆକର୍ଷଣୀୟ କରିବାର ପ୍ରଚେଷ୍ଟା ହୋଇଛି । ସଙ୍ଗୀତଗୁଡ଼ିକ ମଧ୍ୟରୁ 'ଟିଆର୍ସ', 'ଆଇଡ଼୍‌ଲ ଟିଆର୍ସ' (Tears, Idle Tears), 'ବିଗୁଲ୍ ସ' (Bugle Song), 'ସ୍ୱିଟ୍ ଆଣ୍ଡ ଲୋ' (Sweet and low) ପରି କେତୋଟି କବିତା ବାସ୍ତବିକ୍ ଉତ୍କୃଷ୍ଟ ପର୍ଯ୍ୟାୟର ।

'ଇନ୍ ମେମୋରିଆମ୍' (In Memoriam : ୧୮୫୦) ବନ୍ଧୁ ଆର୍ଥର୍ ହାଲାମ୍ (Arthur Hallam)ଙ୍କ ମୃତ୍ୟୁରେ ରଚିତ ଏକଶହ ଏକଚାଳିଶଟି ଶୋକଗୀତର ସମଷ୍ଟି । ହାଲାମଙ୍କ ମୃତ୍ୟୁ ହୁଏ ଖ୍ରୀ: ୧୮୩୩ରେ । ଦୀର୍ଘ ସତରବର୍ଷ ପରେ କବିତା ଗ୍ରନ୍ଥଟି ପ୍ରକାଶିତ । ବିରହଜନିତ ଶୋକୋଚ୍ଛ୍ୱାସ ବ୍ୟତୀତ ଜନ୍ମ, ମୃତ୍ୟୁ, ଆତ୍ମା ଓ ଈଶ୍ୱର ସମ୍ବନ୍ଧୀୟ ବିଭିନ୍ନ ସମସ୍ୟର ଅନୁଚିନ୍ତା ଏଥିରେ ପ୍ରକାଶ ପାଇଛି । ବିମଳ ବନ୍ଧୁତ୍ୱ ବା ପ୍ରେମର ଅମରତ୍ୱ ଏହାର ବକ୍ତବ୍ୟ । ଗୀତିଗୁଚ୍ଛର ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଗୋଟିଏ କଥାବସ୍ତୁର କ୍ରମିକ ବିକାଶ ଖୋଜିବାକୁ ହତାଶ ହେବାକୁ ହୁଏ । ତଥାପି ଏଥିରେ ତାଙ୍କ ମାନସିକ ଅବସ୍ଥାର ମୁଖ୍ୟତଃ ତିନୋଟି ପର୍ଯ୍ୟାୟ ଲକ୍ଷ୍ୟ କରାଯାଏ । ପ୍ରଥମ ଅବସ୍ଥାରେ କବି କେବଳ ଶୋକୋଚ୍ଛ୍ୱାସରେ ଭାସିଯାଇଛନ୍ତି । ତା'ପରେ ଜନ୍ମମୃତ୍ୟୁର ସମସ୍ୟାରେ ଛନ୍ଦି ହୋଇ ହତାଶ ହୋଇପଡ଼ିଛନ୍ତି । ଅବଶେଷରେ ଅଧ୍ୟାତ୍ମ ଚିନ୍ତା ମଧ୍ୟରେ ସାନ୍ତ୍ୱନା ପାଇଛନ୍ତି । ପ୍ରଥମ ପର୍ଯ୍ୟାୟର ବ୍ୟକ୍ତିଗତ ଶୋକ କ୍ରମେ ସାର୍ବଜନୀନ ଅନୁଭୂତିରେ ରୂପାନ୍ତରିତ ହୋଇଛି । ଗୋଟିଏ ଗୋଟିଏ ମାନସିକ ଅବସ୍ଥାର ପରିପ୍ରକାଶ ପାଇଁ କବି ଉପଯୁକ୍ତ ପରିବେଶ ମଧ୍ୟ ସୃଷ୍ଟି କରିଛନ୍ତି । ମଝିରେ ମଝିରେ ପ୍ରାକୃତିକ ଦୃଶ୍ୟ ଉଦ୍ଭାସିତ ହୋଇଉଠେ ! ଗୋଟିଏ ସକାଳରେ ନିଜର ଶାନ୍ତ ମନୋଭାବକୁ ବ୍ୟକ୍ତ କରିବାକୁ ଯାଇ କବି ଗୋଟିଏ ସୁନ୍ଦର ପରିବେଶ ପ୍ରଦାନ କରିଛନ୍ତି—

> Calm is the morn without a sound
> Clam as to suit a Calmer grief
> And only through the faded leaf
> The chestnut pattering to the ground.

ନିଜର ବଳିଷ୍ଠ ଆବେଗକୁ ପ୍ରକାଶ କରିବାପାଇଁ କବି ଉପଯୁକ୍ତ ଛନ୍ଦର ପ୍ରୟୋଗ ମଧ୍ୟ କରିଛନ୍ତି । ଏହା ବର୍ତ୍ତମାନ 'ଇନ୍ ମେମୋରିଆମ୍ ମିଟର' (In Memoriam Metre) ନାମରେ ସୁପରିଚିତ । ଏଇ ଗ୍ରନ୍ଥର ପ୍ରକାଶ ପରେ ପରେ ଟେନିସନ୍ ରାଜକବି (Poet Laureate) ପଦ ଲାଭ କରିଥିଲେ ।

'ମଡ୍ ଆଣ୍ଡ୍ ଅଦର ପଏମସ୍' (Maud and other Poems : ୧୮୫୫) ସଙ୍କଳନର ପ୍ରଥମ କବିତା 'ମଡ୍' ଗୋଟିଏ ଏକକ ନାଟକ (monodrama) । ପ୍ରେୟସୀର ଭାଇଙ୍କୁ ହତ୍ୟାକରି ପଳାୟନ କରିଥିବା ଜଣେ ପ୍ରେମିକର ଆଶା, ନୈରାଶ୍ୟ, ପ୍ରେମ, ଘୃଣା ଆଦି ବିଭିନ୍ନ ମାନସିକ ଅବସ୍ଥା ଏଥିରେ ବର୍ଣ୍ଣିତ । ଟେନିସନ୍ଙ୍କର ଏହା ଥିଲା ଅତି ପ୍ରିୟ କବିତା । ଏଇଟିକୁ ସେ ନିଜେ ଅନ୍ୟକୁ ପଢ଼ି ଶୁଣାଇବାକୁ ଭଲ ପାଉଥିଲେ । କିନ୍ତୁ ଏହା ତାଙ୍କର ବିଶିଷ୍ଟ କୃତି ଭାବରେ ଗୃହୀତ ହୁଏ ନାହିଁ ।

'ଇଡ଼ିଲସ ଅଫ୍ ଦି କିଂ' (Idylls of the King) ରେ ରାଜା ଆର୍ଥର ଓ ତାଙ୍କ ରାଉଣ୍ଡ ଟେବୁଲକୁ କେନ୍ଦ୍ରକରି ପ୍ରଚଳିତ ଥିବା ବହୁ ରୋମାଞ୍ଚକର କାହାଣୀକୁ

ଟେନିସନ୍ କାବ୍ୟିକ ରୂପ ଦେଇଛନ୍ତି । ପଞ୍ଚଦଶ ଶତାବ୍ଦୀର ଲେଖକ ସାର୍ ଟମାସ ମେଲୋରି (ମୃତ୍ୟୁ—୧୪୭୧) ତାଙ୍କର ପ୍ରଖ୍ୟାତ ଗଦ୍ୟଗ୍ରନ୍ଥ 'ମୋର୍ଟେଡ୍ ଆର୍ଥର୍ (Morted' Arthur)ରେ ଏହି କାହାଣୀମାନ ସନ୍ନିବିଷ୍ଟ କରିଥିଲେ । ଏହି ବିପୁଳସଂଖ୍ୟକ ଆର୍ଥରୀୟ କାହାଣୀ ଗୋଟିଏ ମହାକାବ୍ୟର ଉପାଦାନ ହୋଇପାରେ । କିନ୍ତୁ ସ୍ପେନ୍‌ସାର ବା ମିଲ୍‌ଟନ୍‌ଙ୍କ ପରି ମହାକବିମାନେ ସେହି ଉଦ୍ଦେଶ୍ୟରେ ଉକ୍ତ ଉପାଦାନର ବିନିଯୋଗ କରିନାହାନ୍ତି । ଟେନିସନ୍ ନିଜର 'ମୋର୍ଟେଡ୍ ଆର୍ଥର' (୧୮୪୨) କାବ୍ୟଗ୍ରନ୍ଥରେ ପ୍ରଥମେ ଏହି ଉପାଦାନ ଗ୍ରହଣ କରନ୍ତି । ପରେ ପରେ ସେ ଏହାକୁ ନେଇ ମହାକାବ୍ୟ ରଚନାର ପରିକଳ୍ପନା କରନ୍ତି । ବିଭିନ୍ନ ସମୟରେ ପ୍ରକାଶିତ ଇଡ଼ିଲଗୁଡ଼ିକୁ ଏକତ୍ରିତ କରିଛନ୍ତି । ରାଜା ଆର୍ଥରଙ୍କୁ କେନ୍ଦ୍ର କରି କାହାଣୀଗୁଡ଼ିକ ମଧ୍ୟରେ ସମନ୍ୱୟ ଆଣିବାକୁ ଚେଷ୍ଟା କରିଛନ୍ତି । ରାଜା ଆର୍ଥର ଏଠାରେ ଜଣେ ଆଦର୍ଶ ଚରିତ୍ର; କିନ୍ତୁ ଗୋଟିଏ ଆଦର୍ଶ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ଯାଇ ସେ ବିଫଳ ହୋଇଛନ୍ତି ।

ମହାକାବ୍ୟ ସୃଷ୍ଟିରେ ତାଙ୍କର ଏହି ଉଦ୍ୟମ ସଫଳ ହୋଇନାହିଁ । କାହାଣୀଗୁଡ଼ିକ ବଡ଼ ଶିଥିଳ ଗ୍ରନ୍ଥିରେ ସଂଯୋଜିତ; କଥାବସ୍ତୁର ଐକ୍ୟ ବ୍ୟାହତ । ଏହା କେତେଗୁଡ଼ିଏ ସମଧର୍ମୀ କବିତାର ସମାବେଶ ମାତ୍ର । ମେଲୋରିଙ୍କ ଗ୍ରନ୍ଥକୁ ପ୍ରଧାନ ଉତ୍ସଭାବରେ ଗ୍ରହଣ କରିଥିଲେ ମଧ୍ୟ ପରିବେଷଣରେ ଟେନିସନ୍ ନିଜର ମୌଳିକତା ପ୍ରକାଶ କରିଛନ୍ତି । ମଧ୍ୟଯୁଗୀୟ ଚରିତ୍ରଙ୍କୁ ସେ ଭିକ୍‌ଟୋରୀୟ ପୋଷାକ ପିନ୍ଧେଇଛନ୍ତି । ଏଠାରେ ରାଜା ଆର୍ଥର ଜଣେ ଭିକ୍‌ଟୋରୀୟ ଭଦ୍ରଲୋକ—ଶୃଙ୍ଖଳା, ରୁଚି, ସଂଯମର ପକ୍ଷପାତୀ । କବି ଏହାକୁ କେତେକାଂଶରେ ରୂପକଧର୍ମୀ କରିବାକୁ ଚେଷ୍ଟା କରିଛନ୍ତି । ରାଜା ଆର୍ଥର ପରିପୂର୍ଣ୍ଣତାର ପ୍ରତୀକ । ତାଙ୍କର ତିନିରାଣୀ ଯଥାକ୍ରମେ ବିଶ୍ୱାସ, ଆଶା ଓ ଦାକ୍ଷିଣ୍ୟର ପ୍ରତୀକ । ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗରେ କବିଙ୍କ ପାରଦର୍ଶିତା ଲକ୍ଷ୍ୟ କରାଯାଏ ।

**ଇଂଲିଶ୍ ଇଡିଲସ୍ :**

ଆର୍ଥରଙ୍କ କାହାଣୀକୁ ଭିତ୍ତିକରି ଇଡ଼ିଲ ଲେଖିବାପରେ ଟେନିସନ୍ ଇଂରେଜ ଜୀବନର ବୈଚିତ୍ର୍ୟକୁ ନେଇ ଏକ ନୂତନ ରୁଚିର ଇଡ଼ିଲ୍‌ଗୁଚ୍ଛ ରଚନା କରିବାର ପରିକଳ୍ପନା କରିଥିଲେ । ଏହି ରଚନାର ସୂତ୍ରପାତ ହୋଇଥିଲା ଖ୍ରୀ: ୧୮୪୨ର କବିତା ସଂକଳନରେ । ଏହି ଇଡ଼ିଲ୍‌ଗୁଡ଼ିକ ମଧ୍ୟରେ 'ଡୋରା', 'ଦି ଗାର୍ଡ଼େନାର୍ସ ଡଟର', 'ୟୁଲିସିସ୍', 'ଲକ୍‌ସଲି ହଲ୍', 'ସାର୍ ଗାଲହାଡ଼୍' ଓ 'ଏନକ୍ ଆର୍ଡ଼େନ' ସର୍ବୋତ୍କୃଷ୍ଟ ।

ପ୍ରକୃତିର ପୃଷ୍ଠଭୂମିରେ ସରଳ ଜୀବନର ଚିତ୍ର ଆଙ୍କିବା ଇଡ଼ିଲ୍‌ର ଲକ୍ଷ୍ୟ । ଏନକ୍ ଆର୍ଡ଼େନ (୧୮୬୪) ଏ କ୍ଷେତ୍ରରେ ବହୁ ଆଦୃତ । ସରଳ ନିଷ୍କପଟ ଏକ ଧୀବରଜୀବନକୁ କେନ୍ଦ୍ର କରି ଏହାର କଥାବସ୍ତୁ ପରିକଳ୍ପିତ । ବିଦେଶକୁ ବଣିଜ କରିବାକୁ ଯାଇ ନାୟକ ଏନକ୍ ନିରୁଦ୍ଦିଷ୍ଟ ହୋଇଛି । ନାୟିକା ଏନି ବହୁ ବର୍ଷର ପ୍ରତୀକ୍ଷା ପରେ ହତାଶ ହୋଇ

ନିଜର ପିଲଙ୍କ ମଙ୍ଗଳପାଇଁ ବାଲ୍ୟବନ୍ଧୁ ଫିଲିପଙ୍କୁ ବିବାହ କରିଛି । ଏକ ନିର୍ଜନ ଦ୍ୱୀପରେ ଦୀର୍ଘଦିନ ଅଟକି ରହି ଏନକ୍ ଫେରିଆସିଛି, କିନ୍ତୁ ନିଜ ସ୍ତ୍ରୀ ଓ ପିଲଙ୍କ ସୁଖରେ ବାଧାଦେଇ ନାହିଁ; ଆତ୍ମଗୋପନକରି ଦୂରରୁ କେବଳ ସେମାନଙ୍କୁ ଦେଖିଛି । ଗ୍ରାମ୍ୟ ତଥା ସାମୁଦ୍ରିକ ପ୍ରକୃତି ଏହାର ପଟ୍ଟଭୂମି । ଦୁଃଖ ପ୍ରଦାନାତ୍ମକର ଅନୁପସ୍ଥିତିରେ ମଧ୍ୟ ଏଥିରେ ଟ୍ରାଜିକ୍ କାରୁଣ୍ୟ ସୃଷ୍ଟି ହୋଇପାରିଛି । ଖ୍ରୀଷ୍ଟୀୟ ଧର୍ମାନୁମୋଦିତ ସାହସ, ବୀରତ୍ୱ ଓ ଆତ୍ମସଂଯମର ପ୍ରତୀକ ଏହାର ନାୟକ ଏନକ୍ ଆର୍ଡେନ ।

କବିଙ୍କ ପରବର୍ତ୍ତୀ ସଂକଳନ 'ବ୍ୟାଲେଡ୍‌ସ୍' (୧୮୮୦) ଓ 'ଡିମିଟାର' (୧୮୮୯) ରେ କେତେକ ଉଚ୍ଚକୋଟୀର କବିତା ରହିଥିଲେ ମଧ୍ୟ ଏଥିରେ ବାର୍ଦ୍ଧକ୍ୟର ଶିଥିଳତା, ଅନାସକ୍ତି ତଥା ବିରକ୍ତି ଅତି ସ୍ପଷ୍ଟ । 'ଲକ୍‌ସ୍‌ଲି ହଲ', 'ସିକ୍‌ସ୍‌ଟି ଇୟାର୍‌ସ୍ ଆଫ୍‌ଟର' (୧୮୮୬) ଓ 'ଦି ଡେଥ୍ ଅଫ୍ ଓଏନନ୍' (୧୮୯୨) ରେ କାରୁଣ୍ୟର ସ୍ୱର ଝଙ୍କୃତ । ତାଙ୍କର 'ଦି ଚାର୍ଜ ଅଫ୍ ଦି ଲାଇଟ୍ ବ୍ରିଗେଡ୍' ଓ 'ଦି ବ୍ରୁକ୍' କିଶୋର ପ୍ରାଣରେ ଉନ୍ମାଦନା ତୋଳୁଥିବାବେଳେ 'ଓ୍ୱେଜେସ୍' ଓ 'ହାୟାର ପାନ୍ଥେଇଜିମ୍'ର ଜୀବନ ମୃତ୍ୟୁ ସମ୍ବନ୍ଧୀୟ ମନନଶୀଳତା ଚିନ୍ତାଶୀଳ ପ୍ରୌଢ଼ର ମନରେ ଆଲୋଡ଼ନ ସୃଷ୍ଟି କରେ ।

## ସାଧାରଣ ବୈଶିଷ୍ଟ୍ୟ :

ଟେନିସନ୍ ଯୁଗଚେତନାର ପ୍ରତିନିଧି । ଭିକ୍‌ଟୋରୀୟ ଯୁଗ ଥିଲା ମାତ୍ରା, ଶୃଙ୍ଖଳା ଓ ମାର୍ଜିତ ରୁଚିବୋଧର ଯୁଗ । ଟେନିସନ୍ ନିଜ ଜୀବନରେ ଏହି ଆଦର୍ଶକୁ ଗ୍ରହଣ କରିଛନ୍ତି; କବିତାରେ ତାହାହିଁ ଶୁଣାଇଛନ୍ତି । ସମାଜ ଓ ରାଜନୀତିକ୍ଷେତ୍ରରେ ମଧ୍ୟ ସେ ଶାନ୍ତି ଓ ଶୃଙ୍ଖଳାରେ ବିଶ୍ୱାସୀ । ଗଣତନ୍ତ୍ରରେ ତାଙ୍କର ବିଶ୍ୱାସ ନଥିଲା । ସେ ଥିଲେ ସମ୍ଭ୍ରାନ୍ତ ଓ ଆଭିଜାତ୍ୟର ପକ୍ଷପାତୀ । ସାଧାରଣ ଲୋକ ନୁହଁନ୍ତି, ଯୁଗଜନ୍ମା ଶକ୍ତିଧର ପୁରୁଷ ହିଁ ଶାସନ କରିପାରନ୍ତି ବୋଲି ସେ ବିଶ୍ୱାସ କରୁଥିଲେ । ତଥାପି ସେ ଥିଲେ ପରମ ଦେଶଭକ୍ତ । ସୁଶାସନ, ଗୌରବାବହ ଅତୀତ ଓ ମୁକ୍ତ ପରିବେଶପାଇଁ ସେ ଇଂଲଣ୍ଡକୁ ପ୍ରାଣଦେଇ ଭଲ ପାଉଥିଲେ—

> A land of settled government
> A land of just and old renown
> Where freedom slowly broadens down
> From precedent to precedent.

ବିଜ୍ଞାନ ଓ ଧର୍ମ ମଧ୍ୟରେ ସଂଘର୍ଷ ହେତୁ ଯେଉଁ ସନ୍ଦେହର କୁହେଳିକା ସୃଷ୍ଟି ହୋଇଥିଲା ତାହା ଟେନିସନଙ୍କ ଲେଖାରେ ରୂପ ପାଇଛି । ସେ ଉଭୟର ସମନ୍ୱୟ ସାଧନପାଇଁ ଚେଷ୍ଟା କରିଛନ୍ତି ।

ଟେନିସନ୍ ସୁନ୍ଦର ଓ ଆଦର୍ଶ ଜୀବନର ପୂଜାରୀ । ତାଙ୍କର ନାୟକ ନାୟିକା ପ୍ରେମ କରି ବିବାହ କରନ୍ତି । ପବିତ୍ର ଗାର୍ହସ୍ଥ୍ୟ ଜୀବନଯାପନ କରନ୍ତି; କିନ୍ତୁ ଭୋଗାଗ୍ନିରେ ଲିପ୍ତ ହୁଅନ୍ତି ନାହିଁ । ସେ ନାରୀଶିକ୍ଷା ଓ ନାରୀ ଅଗ୍ରଗତିର ବିରୋଧୀ । ନାରୀ ଓ ପୁରୁଷଙ୍କ ଭୂମିକା ସ୍ଥିର କରିବାକୁ ଯାଇ ସେ କହିଛନ୍ତି :

Man for the field and woman for the hearth,
Man for the sword and for the needle she,
Man to command and woman to obey
All else confusion.

କବିଙ୍କ ମତରେ କାବ୍ୟକାର କେବଳ ଜଣେ ଶିଳ୍ପୀ ନୁହେଁ; ସମାଜ ପ୍ରତି ତା'ର କର୍ତ୍ତବ୍ୟ ରହିଛି । ସେ ଜଣେ ପୁରୋଦ୍ରଷ୍ଟା ଓ ନେତୃସ୍ଥାନୀୟ ବ୍ୟକ୍ତି । ଏଣୁ ଆଦର୍ଶବାଦର ପ୍ରଖ୍ୟାପନରେ ତାଙ୍କର କୁଣ୍ଠା ନାହିଁ । କିନ୍ତୁ ମିଲଟନ୍‌ଙ୍କ ପରି ଆଦର୍ଶର କଥା କହିଲେବି ତାହାକୁ ସାର୍ଥକ ଶିଳ୍ପମୂର୍ତ୍ତିରେ ପରିଣତ କରିବାପାଇଁ ଯେଉଁ ଉଚ୍ଚୁଙ୍ଖଳ ପ୍ରତିଭା ଆବଶ୍ୟକ, ଟେନିସନ୍‌ଙ୍କର ତା ନଥିଲା । ଜୀବନ, ମୃତ୍ୟୁ ଓ ଈଶ୍ୱର ସମ୍ବନ୍ଧରେ ତାଙ୍କର ସ୍ୱକୀୟ ବିଶ୍ୱାସ ଅତି ଦୃଢ଼ ? ଅବଶ୍ୟ ଦର୍ଶନଜଗତକୁ ତାଙ୍କର କିଛି ସ୍ୱତନ୍ତ୍ର ଅବଦାନ ନାହିଁ । ତାଙ୍କ ଆଖିରେ ଦୁନିଆର ସବୁକିଛି ନିୟମର ବଶବର୍ତ୍ତୀ । ଏପରିକି ଜୀବନର ସୁଖ, ଦୁଃଖ ଭିତରେ ବି ସେ ସେଇ ନିୟମର ଅସ୍ତିତ୍ୱ ଉପଲବ୍ଧି କରିଛନ୍ତି । ତାଙ୍କ ଭାଷାରେ—

One far-off devine event
To which the whole creation moves.

ଏଇ ନିୟମ ଭିତରେ ସେ ଈଶ୍ୱରଙ୍କ ପ୍ରେମର ପ୍ରବାହ ଅନୁଭବ କରନ୍ତି । ପାର୍ଥିବ ପ୍ରେମ ସେଇ ସ୍ୱର୍ଗୀୟ ପ୍ରେମର ପ୍ରତିରୂପ ମାତ୍ର ।

କିମ୍ବଦନ୍ତୀ ଓ ଲୋକକଥାକୁ ନେଇ ଗୀତିମୟ ଆଖ୍ୟାନ-ଧର୍ମୀ କବିତା ଓ ଗୀତି-କବିତା ଲେଖିବାପାଇଁ ଟେନିସନ୍‌ଙ୍କ କାବ୍ୟପ୍ରତିଭା ଅତ୍ୟନ୍ତ ଅନୁକୂଳ । ଏତଦ୍‌ବ୍ୟତୀତ ଅନ୍ୟ ବିଷୟବସ୍ତୁ ପରିବେଷଣ କରିବାର ଉଦ୍ୟମ କଲେ ତାଙ୍କର କବିତ୍ୱ ଦୂରକୁ ଅପସରି-ଯାଏ । ତାଙ୍କର ସମସାମୟିକ ଅନୁଷ୍ଠାନ ଓ ଘଟଣାକୁ ନେଇ ରଚିତ କବିତା ଏହାର ଉଦାହରଣ । ଏଥିପାଇଁ ବିଦ୍ରୂପ କରି କବିଙ୍କୁ ଉକ୍ତ ଯୁଗର ସମ୍ବାଦପତ୍ର ବୋଲି କୁହାଯାଇ-ଥାଏ । ଏପରିକି ତାଙ୍କର ଗୀତି-ପ୍ରତିଭା କେତେଦୂର ବଳିଷ୍ଠ ଓ ସ୍ୱତଃସ୍ଫୂର୍ତ୍ତ ସେ ସମ୍ବନ୍ଧରେ ମଧ୍ୟ ପ୍ରଶ୍ନ ଉଠେ । ଟେନିସନ୍ ଅତିମାତ୍ରାରେ ସଚେତନ କବି; ପୁଣି ତାଙ୍କର ଜୀବନଯାପନ ପ୍ରଣାଳୀ ଶୃଙ୍ଖଳାବଦ୍ଧ । ଗୀତି-ଉଚ୍ଛ୍ୱାସପାଇଁ ଏଭଳି ବ୍ୟକ୍ତିତ୍ୱ ଅନୁକୂଳ ନୁହେଁ । ଏଣୁ ତାଙ୍କ ଗୀତି-କବିତାକୁ ଏକ ବିରାଟ ସାଫଲ୍ୟ କୁହାଯିବ ନାହିଁ ।

ଟେନିସନ୍ ବାସ୍ତବରେ ଜଣେ କାବ୍ୟ-ଶିଳ୍ପୀ । କବିତାର ପ୍ରତି ଅଂଶ ଉପରେ ସେ ନିଜର ସମସ୍ତ ଚେଷ୍ଟା ଓ ଯତ୍ନ ଢାଳିଦେଇଥାନ୍ତି । ଏଣୁ କବିତାର ଭାବ ଓ ସ୍ୱର ମଧ୍ୟରେ ଅପୂର୍ବ ସମନ୍ୱୟ ସ୍ଥାପିତ ହୋଇଥାଏ । ଆଲ୍‌ବର୍ଟଙ୍କ ଭାଷାରେ, "No one excels Tennyson in the deft application of sound to sense and in the subtle and pervading employment of alliteration and vowel-music." ଉଦାହରଣ ସ୍ୱରୂପ ସେ ନିମ୍ନଲିଖିତ ପଙ୍‌କ୍ତିଗୁଡ଼ିକ ପ୍ରତି ଦୃଷ୍ଟି ଆକର୍ଷଣ କରନ୍ତି :

> Myriads of rivulets hurrying thro' the lawn,
> The moan of doves in immemorial elms,
> And murmuring of innumerable bees.
>
> (The Princess)

ଟେନିସନ୍‌ଙ୍କ କବିତାର ବୈଜ୍ଞାନିକ ଦୃଷ୍ଟି ଓ ଚିତ୍ରଧର୍ମିତା ଅବଶ୍ୟ ଆଦର୍ଶ ସ୍ଥାନୀୟ । ପ୍ରକୃତି ତଥା ପରିବେଶ ବର୍ଣ୍ଣନାବେଳେ ଅତି ଟିକିନିଖି ବିଷୟ ସେ ଅତି ସରସ ସୁନ୍ଦର ଭାବରେ ପରିବେଷଣ କରିଥାନ୍ତି । 'ଏନକ୍ ଆର୍ଡେନ'ର ସମୁଦ୍ରକୂଳ ମତ୍ସ୍ୟଜୀବୀ, ପଲ୍ଲୀ ଓ ଜଙ୍ଗଲର ବର୍ଣ୍ଣନା ଏହାର ପ୍ରକୃଷ୍ଟ ଉଦାହରଣ । କବିଙ୍କ ସୂକ୍ଷ୍ମ ଦୃଷ୍ଟି (minute observation) ଓ ପ୍ରାଞ୍ଜଳ ବର୍ଣ୍ଣନା (vivid description) ସମକାଳୀନ ବିଜ୍ଞାନ ପ୍ରଭାବରୁ ହୋଇଥିବା ସମ୍ଭବ । ସୁନିର୍ବାଚିତ, ଭାବବ୍ୟଞ୍ଜକ ଭାଷା ଓ ଲାଳିତ୍ୟପୂର୍ଣ୍ଣ ଶବ୍ଦ ସମନ୍ୱୟ ମଧ୍ୟରେ ଏଇ ବର୍ଣ୍ଣନା ଚିତ୍ରଧର୍ମୀ ହୋଇଉଠେ; ପାଠକ ଆଗରେ ବର୍ଣ୍ଣିତ ବିଷୟ ଅବିକଳ ଜୀବନ୍ତରୂପରେ ଦେଖାଦିଏ । ଟେନିସନ୍‌ଙ୍କ କବିତାର ଏଇ ଚିତ୍ରଧର୍ମିତା କୀଟସ୍‌ଙ୍କ ପ୍ରତିଭା ସ୍ମରଣ କରାଇଦିଏ । 'ଲଟସ୍ ଇଟରସ' କବିତାରେ ପଦ୍ମମଧୁପାନଜନିତ ତନ୍ଦ୍ରାଳସ-ପ୍ରାଣର ଅଭିବ୍ୟକ୍ତି ୟୁଲିସିସ୍‌ଙ୍କ ଅନୁଗାମୀଙ୍କ ମୁହଁରେ ଦିଆଯାଇଛି :

> There is sweet music here that softer falls,
> Than petals from blown roses on the grass
> Or night dews on still waters between walls
> Of shadowy granite, in a gleaming pass :
> Music that gentlier on the spirit lies,
> Than tired eyelids upon tired eyes.
> Music that brings sweet sleep down from
> the blissful skies.

ଏହିପରି ଗୀତିମୟତା ଓ ଚିତ୍ରଧର୍ମିତା ପାଇଁ ଟେନିସନ୍‌ଙ୍କ ସମ୍ବନ୍ଧରେ କୁହାଯାଇ-ଥାଏ, "He gave eyes and ears to the English Public" । ଭାବର ଗମ୍ଭୀରତା ଓ କଳ୍ପନାର ଉଲ୍ଲଙ୍ଘନ ଅଭାବରେ ଟେନିସନ୍ ପୃଥିବୀର ଶ୍ରେଷ୍ଠ କବିଙ୍କ ସାର୍ଥକ୍ୟର କୋଠୀ ସ୍ପର୍ଶ କରିପାରିନାହାନ୍ତି ।

## ରବର୍ଟ ବ୍ରାଉନିଂ (Robert Browning : (୧୮୧୨-୧୮୮୯)

ବ୍ରାଉନିଂ କବି ଟେନିସନ୍‌ଙ୍କର ଏକ ବିପରୀତମୁଖୀ ପ୍ରତିଭା । ତାଙ୍କର କବିତ୍ୱର ପରାକାଷ୍ଠା ସମ୍ବନ୍ଧରେ ସେହିପରି ଭିନ୍ନମୁଖୀ ମତବାଦ ପ୍ରକାଶ ପାଇଥାଏ । କେହି କେହି ତାଙ୍କୁ ସମଗ୍ର ଇଂରେଜୀ ସାହିତ୍ୟରେ ସେକ୍‌ସ୍‌ପିଅର ପରବର୍ତ୍ତୀ ଶ୍ରେଷ୍ଠ କବି ଭାବରେ ଗ୍ରହଣ କରୁଥିବା-ବେଳେ ଅନ୍ୟମାନେ ତାଙ୍କୁ କେବଳ ଭିକ୍‌ଟୋରିୟ ଯୁଗରେ ଟେନିସନ୍‌ଙ୍କ ପଛକୁ ଆସନ ଦିଅନ୍ତି । ଆଉ କେହି ଅବା ତାଙ୍କୁ କବି ଭାବରେ ସମ୍ପୂର୍ଣ୍ଣ ବିଫଳ ପ୍ରତିପାଦିତ କରିବାକୁ ଚେଷ୍ଟା କରିଥାନ୍ତି । ବ୍ରାଉନିଂଙ୍କ କବିଯଶ ସମ୍ବନ୍ଧରେ ଏଭଳି ପରସ୍ପରବିରୋଧୀ ମତବାଦର କାରଣ ତାଙ୍କ କବିତାର ଆଙ୍ଗିକ । ତାଙ୍କ ରଚନା ଅତିମାତ୍ରାରେ ଦୁର୍ବୋଧ, ପ୍ରକାଶଭଙ୍ଗୀର ମନୋହାରିତା ପାଇଁ ସେ ଆଦୌ ଯତ୍ନ କରିନଥାନ୍ତି । ଅବିରାମ ଗତିରେ ନିଜର ବିପୁଳ ବର୍ଣ୍ଣାଢ୍ୟ ଭାବଧାରା ବ୍ୟକ୍ତ କରିଚାଲିଥିବାବେଳେ ପଛକୁ ଦୃଷ୍ଟି ଫେରାଇ ଲେଖାର ଯତ୍ନ ନେବାର ଅବକାଶ ସମ୍ଭବତଃ ସେ ପାଇନଥାନ୍ତି । କଥାବସ୍ତୁ ହିଁ ବ୍ରାଉନିଂଙ୍କ କବିତାର ମୁଖ୍ୟ ଆକର୍ଷଣ । ବିଭିନ୍ନ ଦେଶ ତଥା ବିସ୍ମୃତ ସମୟର କଥାବସ୍ତୁ କବିମାନସର ବିଶାଳ ପରିଧି ମଧ୍ୟରେ ଧରାଦେଇଛି । ବ୍ରାଉନିଂଙ୍କ କେତୋଟି ବିଶିଷ୍ଟ କୃତିର ସମ୍ୟକ୍ ଆଲୋଚନା ଏହି ବିସ୍ମୟକର ପ୍ରତିଭା ଉପରେ କିଞ୍ଚିତ୍ ଆଲୋକପାତ କରିପାରେ ।

'ପଲିନ୍ (Pauline : ୧୮୩୩) କବିଙ୍କର ଏକ ପ୍ରାଥମିକ ରଚନା । କୀଟସ୍ ଓ ଶେଲିଙ୍କ ପ୍ରଭାବ ଏହା ଉପରେ ପଡ଼ିଛି । ଓ୍ୱାର୍ଡ଼ସ୍ ଓ୍ୱାର୍ଥଙ୍କ 'ପ୍ରିଲ୍ୟୁଡ୍' ପରି ଏହା କବିଙ୍କ ବ୍ୟକ୍ତିଗତ ଜୀବନର ଏକ ଆଲେଖ୍ୟ । ଏକ ଚିନ୍ତାଶୀଳ ବ୍ୟକ୍ତିତ୍ୱର ସୂଚନା ଏଥିରୁ ମିଳୁଥିଲେ ମଧ୍ୟ ତାଙ୍କ ଶିଳ୍ପପ୍ରତିଭାର ଆଭାସ ମିଳେନାହିଁ ।

ପରବର୍ତ୍ତୀ ବିଶିଷ୍ଟ ରଚନା 'ପାରାସେଲ୍‌ସସ୍' (Paracelsus : ୧୮୩୫)ରେ କବି ନିଜ ଗତିପଥର ସନ୍ଧାନ ପାଇଛନ୍ତି । ଏହାର କଥାବସ୍ତୁ ଆତ୍ମାର ବିକାଶ । ମାନବାତ୍ମାର

ଜ୍ଞାନ-ପିପାସା(Development of a soul thirsting for knowledge) ଓ ସୌନ୍ଦର୍ଯ୍ୟ-ପ୍ରୀତି ତାଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରିଛି । ପାରାସେଲସସ୍ ରେନାସାଁ ଯୁଗର ଜଣେ ବୈଜ୍ଞାନିକ । ଜ୍ଞାନର ଆହରଣ ଉଦ୍ଦେଶ୍ୟରେ ସେ ଯୌବନର ସମସ୍ତ ଆନନ୍ଦ ପ୍ରତ୍ୟାଖ୍ୟାନ କରିଛି; ପ୍ରେମ, ସମାଜ ସବୁ କିଛି ତା'ଠାରେ ତୁଚ୍ଛ । ନିଜର ପ୍ରେମିକାର ମୃତ୍ୟୁ ପରେ ହିଁ ସେ ନିଜର ପରିସ୍ଥିତି ବୁଝିପାରିଛି । ଗବେଷଣାରେ ସାଫଲ୍ୟ ସମ୍ଭବ ହୋଇନାହିଁ । ବ୍ରାଉନିଂଙ୍କ ଦୃଷ୍ଟିରେ ଏହାହିଁ ଜୀବନରେ ପ୍ରେମର ଭୂମିକା । ପ୍ରେମ ବିନା ଜୀବନ ବିଫଳ ବୋଲି ତାଙ୍କର ବିଶ୍ୱାସ । ଈଶ୍ୱରଙ୍କୁ ସେ ସର୍ବଜନସ୍ରଷ୍ଟା ଭାବରେ ଦେଖିଛନ୍ତି । ଅମିତ୍ରାକ୍ଷର ଛନ୍ଦରେ ସ୍ଥାନେ ସ୍ଥାନେ କବିଙ୍କ ପାରଦର୍ଶିତା ପ୍ରକାଶ ପାଇଛି । କେତୋଟି ଗୀତ-କବିତା ଉପରେ କୀଟ୍‌ସଙ୍କ ପ୍ରଭାବ ସ୍ପଷ୍ଟ ।

ପରବର୍ତ୍ତୀ ରଚନା 'ସର୍‌ଡେଲୋ' (Sordello : ୧୮୪୦) କବିଙ୍କର ଅତୀବ ଦୁର୍ବୋଧ ରଚନା । ଜଣେ ଇଟାଲୀୟ ଗୌଣ କବି ଏହାର ନାୟକ । ବହୁ ଐତିହାସିକ ଉପାଦାନର ସମ୍ପୃକ୍ତି ଏହାର ଦୁର୍ବୋଧତାର କାରଣ । ଟେନିସନ୍ ଥରେ ରହସ୍ୟ କରି କହିଥିଲେ ଯେ ଏଇ କବିତାର କେବଳ ପ୍ରଥମ ଓ ଶେଷ ପଙ୍‌କ୍ତି ଦୁଇଟି ତାଙ୍କର ବୋଧଗମ୍ୟ । ପ୍ରଥମ ପଙ୍‌କ୍ତିଟି ହେଉଛି 'Who will may hear Sordello's story told' । ଶେଷ ପଙ୍‌କ୍ତିଟି 'Who would have heard Sordello's story told.'

'ଡ୍ରାମାଟିକ୍ ଲିରିକ୍' (Dramatic Lyric : ୧୮୪୨) ଓ 'ଡ୍ରାମାଟିକ୍ ରୋମାନ୍‌ସେସ୍ ଆଣ୍ଡ୍ ଲିରିକ୍ସ୍' (Dramatic Romances and Lyrics : ୧୮୪୫) ରେ ସ୍ୱଗତସଂଳାପ (Dramatic Monologue) ପ୍ରତି କବିଙ୍କ ମୋହ ଲକ୍ଷ୍ୟକରାଯାଏ । ଏହି ସ୍ୱଗତସଂଳାପ ତାଙ୍କ ପରବର୍ତ୍ତୀ ଲେଖାରେ ବିଶେଷ ବ୍ୟବହୃତ । ପ୍ରଥମ ସଂକଳନଟି ଗୀତଗୁଚ୍ଛ, ନିଜ ପ୍ରେମୋଚ୍ଛଳ ବୈବାହିକ ଜୀବନର ସ୍ମାରକୀ । ଦ୍ୱିତୀୟ ସଂକଳନଟିରେ ତାଙ୍କର କେତୋଟି ସାର୍ଥକ କବିତା ସନ୍ନିବିଷ୍ଟ; ଯଥା—'ଦି ବିଶପ୍ ଅର୍ଡର୍‌ସ୍ ହିଜ୍ ଟମ୍ବ୍, ଏଟ୍ ସେଣ୍ଟ ପ୍ରେକ୍‌ସଡ଼ସ୍', 'ଦି ଇଟାଲିଆନ୍ ଇନ୍ ଇଂଲଣ୍ଡ', 'ଦି ଲଷ୍ଟ ରାଇଡ଼୍ ଟୁଗେଦର', 'ଏ ଗ୍ରାମାରିଆନ୍‌ସ୍ ଫ୍ୟୁନାରେଲ' ଓ 'ପିକ୍‌ଟୋର ଇଗ୍‌ନୋଟସ୍' । ବିଷୟ ନିର୍ବାଚନରେ ବ୍ରାଉନିଂ ପ୍ରଚଳିତ ଧାରାରୁ କିପରି ଦୂରେଇଯାଇଛନ୍ତି ଗୋଟିଏ କବିତାର ଆଲୋଚନାରୁ ତାହା ସ୍ପଷ୍ଟ ହେବ । 'ଦି ବିଶପ୍ ଅର୍ଡର୍‌ସ୍ ହିଜ୍ ଟମ୍'ରେ ଜଣେ ଧର୍ମଯାଜକ ନିଜର ଅବୈଧ ସନ୍ତାନଙ୍କୁ ତାର ମୃତ୍ୟୁକାଳୀନ ଶେଷ ଇଚ୍ଛା ପୂର୍ଣ୍ଣ କରିବାକୁ ବ୍ୟାକୁଳ ଅନୁରୋଧ ଜଣାଇଛି । ମୃତ୍ୟୁପରେ ତାର ଗୋଟିଏ ସ୍ମୃତିମନ୍ଦିର ନିର୍ମିତ ହେବ, ତାହା ଯେପରି ନିଜର ପ୍ରତିଦ୍ୱନ୍ଦ୍ୱୀର ସ୍ମୃତି-ମନ୍ଦିରଠାରୁ ଉତ୍କୃଷ୍ଟତର ହୁଏ । କେଉଁ ସ୍ଥାନରେ ତା'ର ଶବ ସତ୍କାର ହେବ, ମନ୍ଦିରଦେହରେ କଉଳି କାରୁକାର୍ଯ୍ୟ ହେବ, ବିଶୁଦ୍ଧ ଲାଟିନରେ ଲିଖିତ ସ୍ମୃତିଫଳକ କିପରି ମନ୍ଦିରର

ଶୋଭି ବର୍ଦ୍ଧନ କରିବ, ତାର ଏକ ବିଶଦ ବିବରଣୀ ସେ ପୁଅଙ୍କୁ ମୃତ୍ୟୁଶଯ୍ୟାରେ ଶୁଣାଇ ଯାଇଛି । ମଧ୍ୟଯୁଗୀୟ ଧର୍ମଜୀବନର ହାସ୍ୟାସ୍ପଦ ଚିତ୍ର ଏଥିରେ ଅଙ୍କିତ । ମୃତ୍ୟୁରେ ବି ପ୍ରତିଯୋଗିତାର ଶେଷ ନାହିଁ । 'ଦି ଲଷ୍ଟ ରାଇଡ଼ ଟୁଗେଦର'ରେ ଜଣେ ବିଫଳ ପ୍ରେମିକ କେତୋଟି ମୁହୂର୍ତ୍ତପାଇଁ ନିଜ ପ୍ରେୟସୀକୁ ଅଶ୍ୱପୃଷ୍ଠରେ ପାଇଛି । ଏହି ମୁହୂର୍ତ୍ତିକର ସାନ୍ନିଧିରେ ସେ ଚିରନ୍ତନତ୍ୱର କଳ୍ପନା କରି ନିଜ ପ୍ରେମର ସାର୍ଥକତା ଉପଲବ୍ଧି କରିଛି ।

'ମେନ୍ ଆଣ୍ଡ ଓମାନ୍' (Men and Women : ୧୮୫୫) ପ୍ରକାଶ ବେଳକୁ ବ୍ରାଉନିଂଙ୍କ ଲେଖନୀ ଚରମ ଉତ୍କର୍ଷ ହାସଲ କରିଛି । ସମସ୍ତ କବିତା ସ୍ୱଗତୋକ୍ତି ସ୍ୱୟଂଚାଳିତ (Dramatic monologue) ରେ ଲିଖିତ । ଏଥିରେ କେବଳ ଗୋଟିଏ ଚରିତ୍ର ନିଜର ବକ୍ତବ୍ୟ ଶୁଣାଇଯାଇଛି; ଅନ୍ୟର ଉପସ୍ଥିତି ପାଠକ କଳ୍ପନା କରିପାରେ ମାତ୍ର । 'ମେନ୍ ଆଣ୍ଡ ଓମେନ୍'ରେ କେତୋଟି ସ୍ମରଣୀୟ କବିତା ରହିଛି; ଯଥା 'ଫ୍ରା ଲିପୋଲିପି', 'ଏନ୍ ଏପିସ୍ଟିଲ୍ କଣ୍ଟେନିଂ ଦି ଷ୍ଟ୍ରେଞ୍ଜ ମେଡ଼ିକେଲ୍ ଏକ୍ସପେରିଏନ୍ସ', 'ଦି ଆରବ ଫିଜିସିଆନ୍', 'ଏଣ୍ଡ୍ରିଏ ଡେଲ୍ ସାର୍ଟୋ', 'କ୍ଲିଅନ୍' ଇତ୍ୟାଦି । 'ଫ୍ରା ଲିପୋଲିପି' ଖ୍ରୀଷ୍ଟୀୟ ଧର୍ମଗୋଷ୍ଠୀର ଅନ୍ତର୍ଭୁକ୍ତ ହେଲେ ମଧ୍ୟ ଚିତ୍ରାଙ୍କନ ପ୍ରତି ତାର ଅସୀମ ଆଗ୍ରହ । ଗିର୍ଜା ଭିତରେ ଚିତ୍ର ଆଙ୍କିବାର ଦାୟିତ୍ୱ ଦିଆହୋଇଛି ତାକୁ । କିନ୍ତୁ ତା' ଚିତ୍ର ହୋଇଉଠିଛି ଅତିମାତ୍ରାରେ ଜୀବନଧର୍ମୀ । ନରନାରୀଙ୍କର ମୁଖମଣ୍ଡଳ ଓ ଅଙ୍ଗଭଙ୍ଗୀରେ ଜୀବନର ଆବେଦନ ଭରି-ଉଠିଛି । ଏଇ ତାର ଦୋଷ । ଧର୍ମସ୍ୱାମୀମାନେ ଶରୀରକୁ ଗୌଣକରି ଆତ୍ମା ଉପରେ ଅଧିକ ଗୁରୁତ୍ୱ ଦେଇଥାନ୍ତି; କିନ୍ତୁ ଫ୍ରା ଲିପୋଲିପି ରକ୍ତ-ମାଂସର ଶରୀର ବିନା ଆତ୍ମାର କଳ୍ପନା କରିପାରେନା । ଏଇ ସଙ୍କଳନଟିରେ ଲେଖକଙ୍କର ଚରିତ୍ରଚିତ୍ରଣ କ୍ଷେତ୍ରରେ ବ୍ୟୁତ୍ପତ୍ତି ଅବଶ୍ୟ ସ୍ୱୀକାର୍ଯ୍ୟ । ଚରିତ୍ରଗୁଡ଼ିକ ମଧ୍ୟରୁ କେତେକ କାଳ୍ପନିକ ଓ କେତେକ ଐତିହାସିକ । ଭଲ ଓ ମନ୍ଦ ଉଭୟ ପ୍ରକାର ଚରିତ୍ରଙ୍କ ବ୍ୟକ୍ତିତ୍ୱ ସ୍ୱଗତୋକ୍ତି ମଧ୍ୟରେ ଉନ୍ମୋଚିତ । ଏ ସମସ୍ତ କବିତା ଅମିତ୍ରାକ୍ଷର ଛନ୍ଦରେ ଲିଖିତ ।

କବିଙ୍କର ଅନ୍ୟତମ ଶ୍ରେଷ୍ଠ ସଂକଳନ 'ଡ୍ରାମାଟିକ୍ ପାର୍ଶୋନା' (Dramatic Personae : ୧୮୬୪) ମଧ୍ୟ ଏକ ଗୁଚ୍ଛ ସ୍ୱଗତୋକ୍ତି । ବୌଦ୍ଧିକତା ଓ ଦାର୍ଶନିକତାର ସ୍ପର୍ଶରେ ଗୀତିମୟତା ମ୍ଳାନ । ଏଥିରେ ମଧ୍ୟ କବିଙ୍କ ଉଦ୍ଦେଶ୍ୟ ମାନବଚରିତ୍ର ଅଧ୍ୟୟନ । ବିଶପ୍ ବ୍ଲୁଗ୍ରାମ୍ସ ଏପୋଲୋଜି (Bishop Bloughrams Apology) ଏହାର ଉଦାହରଣ । ବିଶପ୍ ବ୍ଲୁଗ୍ରାମ୍ସ କେଥୋଲିକ୍ ସଂପ୍ରଦାୟର ଅନ୍ତର୍ଗତ । ଧର୍ମତତ୍ତ୍ୱରେ ତା'ର ସମ୍ପୂର୍ଣ୍ଣ ବିଶ୍ୱାସ ନାହିଁ । ବସ୍ତୁତଃ ଯୁକ୍ତିନିଷ୍ଠ, ବିଜ୍ଞାନ ପ୍ରଭାବିତ ଯେକୌଣସି ବ୍ୟକ୍ତି ପକ୍ଷରେ ଧର୍ମତତ୍ତ୍ୱକୁ ସମ୍ପୂର୍ଣ୍ଣ ମାନିନେବା ସମ୍ଭବ ନୁହେଁ । ଏଣୁ ତା ମନରେ ଧର୍ମର ଆନୁଗତ୍ୟ ସଂପର୍କରେ ନାନା ପ୍ରଶ୍ନ ଉଠୁଛି । ଅବଶେଷରେ ସେ ସୁବିଧାବାଦୀ ହେବାକୁ ସ୍ଥିରକରିଛି ।

ତା ମତରେ ନିଜକୁ ନାସ୍ତିକ ବୋଲି ଘୋଷଣା କଲେ ମଣିଷ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟରୁ ବଞ୍ଚିତ ହେବ । ତା ଅପେକ୍ଷା ବରଂ ଧର୍ମୀୟ ଜୀବନଧାରାକୁ ବରଣକରିନେଇ ସୁଖ-ସ୍ୱାଚ୍ଛନ୍ଦ୍ୟ ତଥା ପ୍ରତିଷ୍ଠାର ଅଧିକାରୀ ହେବା ଉଚିତ । ଗୋଟିଏ ନାସ୍ତିକ, ସୁବିଧାବାଦୀ ମନର ଯନ୍ତ୍ରଣା ଅତି ସୁସ୍ପଷ୍ଟ ଭାବରେ ଏଥିରେ ଚର୍ଚ୍ଚିତ ।

'ଦି ରିଂ ଆଣ୍ଡ୍ ଦି ବୁକ୍, (The Ring and the Book : ୧୮୬୮-୬୯) ବ୍ରାଉନିଂଙ୍କର ସର୍ବଶ୍ରେଷ୍ଠ ରଚନା—ବାର ଖଣ୍ଡରେ ବିଭକ୍ତ । ଏହା ଆକାରରେ ଯେପରି ବିପୁଳ-କାୟ, ସେହିପରି ତାଙ୍କ କବିପ୍ରତିଭାର ଶ୍ରେଷ୍ଠ ପରିଚାୟକ । ଆକାରରେ ଏହା ପ୍ରାୟ ମିଲ୍‌ଟନ୍‌ଙ୍କ 'ପାରାଡ଼ାଇଜ୍ ଲଷ୍ଟ'ର ଦୁଇଗୁଣ, ହୋମରଙ୍କ 'ଇଲିଆଡ୍'ଠାରୁ ଦୁଇହଜାର ପଙ୍କ୍ତି ଅଧିକ ଦୀର୍ଘ । କାଉଣ୍ଟ ଗିଡ଼ୋ (Count Guido) ତାଙ୍କ ସୁନ୍ଦରୀ ସ୍ତ୍ରୀ ପମ୍ପିଲିଆ (Pompilia)ଙ୍କୁ ଦୋସ୍ତରିଣୀ ବୋଲି ସନ୍ଦେହକରି ହତ୍ୟାକରିବା ଘଟଣା ଏଥିରେ ବର୍ଣ୍ଣିତ । ଧର୍ମଯାଜକ କପୋନସାଚ ପମ୍ପିଲିଆକୁ ତାହାର ନିଷ୍ଠୁର ସ୍ୱାମୀ କବଳରୁ ଉଦ୍ଧାର କରିବାକୁ ଉଦ୍ୟମକରି ନାରୀହରଣ ଅପରାଧରେ ଅଭିଯୁକ୍ତ ହୋଇଛି । ଏହା ଖ୍ରୀ: ୧୬୯୮ର ଘଟଣା । କବି କେଉଁ ସୂତ୍ରରୁ ଏ ଘଟଣା ସମ୍ପର୍କରେ ଜାଣିବାକୁ ପାଇଛନ୍ତି, ତାର ସୂଚନା କାବ୍ୟ ଆରମ୍ଭରେ ଦେଇଛନ୍ତି । କାବ୍ୟର ଶୀର୍ଷକ ସମ୍ବନ୍ଧରେ ମଧ୍ୟ ସେ ନିଜର ବକ୍ତବ୍ୟ ଉପସ୍ଥାପିତ କରିଛନ୍ତି । ସୁନାରେ ଖାଦ ମିଶିଲେ ଯେପରି ଅଳଙ୍କାର ତିଆରି ହୁଏ, ସେହିପରି ବାସ୍ତବତା ସହିତ କଳ୍ପନାର ସମ୍ମିଶ୍ରଣରେ ସେ ଏହି କାବ୍ୟଟିର ପରିକଳ୍ପନା କରିଛନ୍ତି । ଏଣୁ ଗ୍ରନ୍ଥଟିର ନାମ 'ରିଂ ଆଣ୍ଡ୍ ଦି ବୁକ୍' ।

ପମ୍ପିଲିଆ ମୃତ୍ୟୁଶଯ୍ୟାରେ । ପୋପ୍‌ଙ୍କ ସାମ୍ନାରେ ବିଚାର ଚାଲିଛି । କାବ୍ୟର କଥାବସ୍ତୁ ନଅ ଥର ପୁନରାବୃତ୍ତି ହୋଇଛି । ନିଜେ ଗିଡ଼ୋ, ମୃତ୍ୟୁଶଯ୍ୟାସ୍ଥ ପମ୍ପିଲିଆ, କପୋନ୍‌ସାଚ, ଓକିଲମାନେ, କେତେଜଣ ଶ୍ରୋତା ତଥା ବିଚାରପତି ପୋପ୍ ନିଜ ନିଜ ଦୃଷ୍ଟିକୋଣରୁ ଗଳ୍ପଟି ଉପସ୍ଥାପନ କରିଛନ୍ତି । ଏହାଦ୍ୱାରା କବିଙ୍କର ଏକ ମହାନ୍ ଉଦ୍ଦେଶ୍ୟ ସାଧିତ ହୋଇଛି । ନିଜ ଦୃଷ୍ଟିରୁ କାହାଣୀଟି କହିବାକୁ ଯାଇ ନଅଟି ଚରିତ୍ର ନିଜ ନିଜକୁ ହିଁ ପ୍ରକାଶ କରିଛନ୍ତି । ନିର୍ଦ୍ଦୋଷ କପୋନ୍‌ସାଚ ଓ ପମ୍ପିଲିଆଙ୍କର ବକ୍ତବ୍ୟ ଅତ୍ୟନ୍ତ ହୃଦ୍ୟ ହୋଇଛି । ପମ୍ପିଲିଆ ସେକ୍ସପିଅରଙ୍କ ନାୟିକାସ୍ତରକୁ ଉତ୍ତୀର୍ଣ୍ଣ ହୋଇପାରିଛି । ପୋପ୍‌ଙ୍କ ନିରପେକ୍ଷ ବିଚାର ପ୍ରୟାସ ତାଙ୍କୁ ଏକ ବଳିଷ୍ଠ ପୌରୁଷ ପ୍ରଦାନକରିଛି । ଚରିତ୍ର ଅଧ୍ୟୟନ ଦୃଷ୍ଟିରୁ ଏହା ଏକ ସାର୍ଥକ ପ୍ରୟାସ । ବିଭିନ୍ନ ପାତ୍ରଙ୍କ ସମ୍ପର୍କରେ ଆସି ଗୋଟିଏ କଥାବସ୍ତୁ କିପରି ବିକୃତ ହୋଇପଡ଼େ, ଏଠାରେ ତା'ର ଏକ ପ୍ରକୃଷ୍ଟ ଉଦାହରଣ ଦେଖିବାକୁ ମିଳେ । ପ୍ରତ୍ୟେକ ଚରିତ୍ରର ବକ୍ତବ୍ୟ ଗୋଟିଏ ଗୋଟିଏ ସ୍ୱଗତସଂଳାପ । କଥାବସ୍ତୁର ନାଟକୀୟ ବିକାଶ ରକ୍ଷା କରାଯାଇନାହିଁ । ବିଭିନ୍ନତା ସତ୍ତ୍ୱେ ବାରମ୍ବାର ଗଳ୍ପଟି ବିବୃତ ହେଉଥିବାରୁ କେତେକାଂଶରେ ବିରକ୍ତିକର ମନେହୁଏ ।

କାବ୍ୟ ବ୍ୟତୀତ ବ୍ରାଉନିଂ କେତେଗୁଡ଼ିଏ ନାଟକ ମଧ୍ୟ ରଚନା କରିଛନ୍ତି । ବିଭିନ୍ନ ସମ୍ପର୍କରେ ଲିଖିତ ତାଙ୍କର ଛଅଟି ନାଟକ 'ବେଲସ୍ ଆଣ୍ଡ୍ ପମ୍‌ଗ୍ରେନେଟସ୍' (୧୮୪୬)ରେ ସଂକଳିତ । ବ୍ରାଉନିଂଙ୍କ ନାଟକଗୁଡ଼ିକ ଅଭିନୟପାଇଁ ଉପଯୋଗୀ ନୁହେଁ । ଏଥିରେ ଘଟଣା ଓ ବଳିଷ୍ଠ କଥାବସ୍ତୁର ଅଭାବ ଦେଖାଯାଏ । ସତେ ଅବା ସେକ୍‌ସପିଅରଙ୍କ 'to be or not to be' ପରିବେଶ ସବୁ ନାଟକକୁ ଗ୍ରାସକରିଛି । ଚରିତ୍ର-ବିଶ୍ଳେଷଣ ଉପରେ ଅତିରିକ୍ତ ଗୁରୁତ୍ୱ ଆରୋପ ପ୍ରକୃତ ନାଟକର ପରିପନ୍ଥୀ ।

କେତେକଙ୍କ ମତରେ 'ପିପା ପାସେସ୍'(Pippa Passes : ୧୮୪୧) ନାଟକ ନୁହେଁ, ଏକ ଦୀର୍ଘ କବିତା । ଏଇଟିକୁ ମଞ୍ଚସ୍ଥ କରିବା ଅତ୍ୟନ୍ତ ଦୁରୂହ ବ୍ୟାପାର । ଅନ୍ୟ ଦିଗରେ ଏହାର ଗୀତିମୟତା ହୃଦୟସ୍ପର୍ଶୀ । କୌଣସି ବ୍ୟକ୍ତିବିଶେଷର କ୍ରିୟାକଳାପ ପରୋକ୍ଷ ଭାବରେ କିଭଳି ଅନ୍ୟ ଉପରେ ପ୍ରଭାବ ପକାଇଥାଏ ତାର ଏକ ପ୍ରକୃଷ୍ଟ ନିଦର୍ଶନ କବି ଏଠାରେ ଉପସ୍ଥାପିତ କରିଛନ୍ତି । ପିପା ଜଣେ ସିଲ୍‌କ-ଶ୍ରମିକ । ବର୍ଷରେ ଗୋଟିଏ ଦିନ ତାର ଛୁଟି । ଗୀତ ଗାଇ ଗାଇ ସେ ଯାଉଛି । କଳ୍ପନା କରୁଛି, ତା ଆନନ୍ଦରୁ କେହି ଭାଗ ନେଇପାରନ୍ତା ଭଲ, ତାହେଲେ କିଛି ଭଲକାମ ହୁଅନ୍ତା । ଏଇ ଶ୍ରେଷ୍ଠ ଝିଅଟିର ଗୀତ ସତକୁ ସତ ବିଭିନ୍ନ ଲୋକଙ୍କ ଜୀବନରେ କଲ୍ୟାଣକର ହୋଇଛି । ଅନ୍ତତଃ ଚାରିଦଳ ଲୋକ ଜୀବନର ସଂକଟପୂର୍ଣ୍ଣ ମୁହୂର୍ତ୍ତରେ ତା ଗୀତ ଶୁଣି ପ୍ରଭାବିତ ହୋଇଛନ୍ତି । ଜୀବନ ତାଙ୍କର ମଧୁମୟ ହୋଇଉଠିଛି । ଝିଅଟି ସେ କଥା ଜାଣେନାହିଁ । ଛୁଟି ଉପଭୋଗକରି ସଙ୍ଗୀତମୁଖର ଝିଅଟି ବିଶ୍ରାମ ନେବାକୁ ଯାଇଛି । ଏହାହିଁ ତାର କଥାବସ୍ତୁ । ଗୀତିମୟତା ବ୍ୟତୀତ କବିଙ୍କ ଅନ୍ତର୍ଦୃଷ୍ଟି, ଶାନ୍ତ, ସ୍ନିଗ୍ଧ ଦୃଶ୍ୟ ଓ ଗଭୀର ଆଶାବାଦ ଏହାକୁ ସଫଳ ସୃଷ୍ଟିରେ ପରିଣତ କରିଛି ।

ନିମ୍ନରେ ପିପାର ବହୁ ଆଦୃତ ଗୀତଟିଏ ପ୍ରଦତ୍ତ ହେଲା—

The year's at the Spring
And day's at the morn;
Morning's at seven;
The hillside's dew-pearled ;
The lark's on the wing;
The Snail's on the thorn
God's in his heaven—
All's right with the world !

**ସାଧାରଣ ବୈଶିଷ୍ଟ୍ୟ :**

କଥାବସ୍ତୁଦୃଷ୍ଟିରୁ ବ୍ରାଉନିଂଙ୍କ କବିତାକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ; ଯଥା—(୧) ଦାର୍ଶନିକ ବା ଧର୍ମସମ୍ବନ୍ଧୀୟ, (୨) ପ୍ରେମ ବିଷୟକ ଓ (୩) ଅନ୍ୟାନ୍ୟ ଲଘୁ ବିଷୟକୈନ୍ଦ୍ରିକ ।

ବ୍ରାଉନିଂ କୌଣସି ଦାର୍ଶନିକ ଗୋଷ୍ଠୀର ଅନ୍ତର୍ଭୁକ୍ତ ନ ଥିଲେ । କବିତା ଭିତରେ ଈଶ୍ୱର, ଆତ୍ମା, ଜୀବନ ଓ ପ୍ରେମ ସମ୍ବନ୍ଧୀୟ ନିଜର ଚିନ୍ତାଧାରା ବ୍ୟକ୍ତ କରିଯାଇଛନ୍ତି ମାତ୍ର । ଆରମ୍ଭରୁ ଶେଷପର୍ଯ୍ୟନ୍ତ ସେ ଆଶାବାଦୀ, ଏଥିରେ ବ୍ୟତିକ୍ରମ ଦେଖାଯାଇନାହିଁ । ଭିକ୍ଟୋରୀୟ ଯୁଗ ଥିଲା ହତାଶା, ସନ୍ଦେହ ଓ ବିଷଣ୍ଣତାର ଯୁଗ । କିନ୍ତୁ ବ୍ରାଉନିଂ ଅତିମାତ୍ରାରେ ଆଶାବାଦୀ । ଓ୍ୱାର୍ଡ଼ସ୍ୱର୍ଥଙ୍କ ପରି ଈଶ୍ୱରଙ୍କ ସତ୍ତା ସେ ସର୍ବତ୍ର ଅନୁଭବ କରନ୍ତି : "In the star, in the stone, in the flesh, in the soul and the cloud." ଜୀବନର ବିଫଳତା ମଧ୍ୟରେ ବି ସେ ଆଶାବାଦରେ ବିଶ୍ୱାସୀ—

What I aspired to be
And was not, comforts me.

ଜୀବନର ଜଟିଳତା ଏଡ଼ାଇଯିବାର ଏହା ଏକ ଦୁର୍ବଳ ସାଲିସ୍ ବୋଲି ଆଧୁନିକ ସମାଲୋଚକମାନେ ମତ ଦିଅନ୍ତି ।

ଆତ୍ମା ସମ୍ବନ୍ଧୀୟ ଅନୁଚିନ୍ତା ବ୍ରାଉନିଂଙ୍କ କବିମାନସକୁ ସର୍ବଦା ଆଚ୍ଛନ୍ନ କରିଛି । ମଣିଷର ଚିନ୍ତା ଓ ଚରିତ୍ର ବିଶ୍ଳେଷଣ କରିବାରେ ତାଙ୍କର ଅସୀମ ଆଗ୍ରହ । ଏଥିପାଇଁ ମାନସିକ ଭାରସାମ୍ୟହୀନ ଚରିତ୍ରଙ୍କୁ ସେ ନିର୍ବାଚିତ କରିଥାନ୍ତି ।

ପ୍ରେମକବିତା ରଚନାରେ ହିଁ ବ୍ରାଉନିଂଙ୍କର ଶ୍ରେଷ୍ଠ ସାଫଲ୍ୟ ପ୍ରକାଶ ପାଇଛି । ପ୍ରେମର ବିଭିନ୍ନ ରୂପ ତାଙ୍କ ଆଖିରେ ଧରାପଡ଼ିଛି । 'ପିପା ପାସେସ୍' ନାଟକର ଓଟିମା ଚରିତ୍ରରେ ପାଶବିକ ପ୍ରେମର ନମୁନା ଦେବାବେଳେ 'ଲାଷ୍ଟ ରାଇଡ଼୍ ଟୁଗେଦାର'ରେ ରୋମାଣ୍ଟିକ୍ ପ୍ରଣୟ ଚିତ୍ର ପରିବେଷଣ କରିଛନ୍ତି । ଅନ୍ୟ ପକ୍ଷରେ 'ଚୁଡ଼େଲ୍ ଟୁ ଦ ଲେଣ୍ଡ ଅଫ୍ ଦି ପୋଲ୍'ରେ ପ୍ରେୟସୀ ହୋଇଛି ଉପାସ୍ୟା ଦେବୀ । କବି ପ୍ରେୟସୀକୁ ତାର କେବେ ଦେଖିନାହିଁ; ସେ ତାର ସ୍ୱପ୍ନର ପ୍ରତିମା । କିନ୍ତୁ ସମଗ୍ର ସତ୍ତାକୁ ସେ ଅଧିକାର କରି ରହିଛି । ସବୁବେଳେ କବି ବ୍ରାଉନିଂ ପ୍ରେମର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିବାକୁ ତତ୍ପର । ପ୍ରେମ ଓ ଶକ୍ତି ଉଭୟକୁ ଗୁରୁତ୍ୱ ଦେଇ ଶକ୍ତିର ସନ୍ଧାନ କରିବା ମାନବାତ୍ମାର ଲକ୍ଷ୍ୟ ହେବା ଉଚିତ ବୋଲି ସେ ମତବ୍ୟକ୍ତ କରିଛନ୍ତି ।

Love preceding power,
And with much power, always much more love.

ସମସାମୟିକ କବି ଟେନିସନ୍‌ଙ୍କ ସହ ସମ୍ୟକ୍ ତୁଳନା ବ୍ରାଉନିଂଙ୍କ କବିତା ଅବବୋଧରେ ସହାୟକ ହେବ ।

ଉଭୟେ ପ୍ରେମର କବି; କିନ୍ତୁ ପରିବେଷଣ ରୀତିରେ ଭିନ୍ନ । ଟେନିସନ୍ ପ୍ରଥମେ କବି, ତା ପରେ ଶିକ୍ଷକ; କିନ୍ତୁ ବ୍ରାଉନିଂ ନିଜର ବକ୍ତବ୍ୟକୁ ହିଁ ସବୁଠାରୁ ବେଶି ଗୁରୁତ୍ୱ ଦେଇଥାନ୍ତି । ଟେନିସନ୍ଙ୍କ ଉପରେ ରୋମାଣ୍ଟିକ୍ ପ୍ରଭାବ ତୀବ୍ର, ତେଣୁ ବିଷୟ ନିର୍ବାଚନରେ ସେ ଯଥେଷ୍ଟ ସତର୍କ; କିନ୍ତୁ ବ୍ରାଉନିଂଙ୍କ ଜାଲରେ ଯାହା ପଡ଼ିଲା, ସବୁ ମାଛ । ଟେନିସନ୍ଙ୍କ ଦୃଷ୍ଟିଭଙ୍ଗୀ ଶିଳ୍ପୀର ଦୃଷ୍ଟିଭଙ୍ଗୀ; କିନ୍ତୁ ସେ କଳାର ଛନ୍ଦ ନଥିଲେ, ବିଜ୍ଞାନର ଦ୍ରାବକ । ଅନ୍ୟ ପକ୍ଷରେ ବ୍ରାଉନିଂ ବିଜ୍ଞାନ ଅଧ୍ୟୟନର ପକ୍ଷପାତୀ ନଥିଲେ ହେଁ ତାଙ୍କ ଦୃଷ୍ଟିଭଙ୍ଗୀ ବୈଜ୍ଞାନିକ । ଟେନିସନ୍ ଭିକ୍ଟୋରୀୟ ଯୁଗ ସଂକଟରେ ବିଜ୍ଞାନ ଓ ଧର୍ମର ଦ୍ୱନ୍ଦ୍ୱରେ ଆନ୍ଦୋଳିତ ତଥା ସନ୍ଦେହାକୁଳ ହୋଇଉଠିଥିବାବେଳେ ବ୍ରାଉନିଂ ନିପଟ ଆଶାବାଦୀ । ଟେନିସନ୍ ଯୌବନର କବି ହୋଇଥିବାବେଳେ ପ୍ରୌଢ଼ ଓ ବୃଦ୍ଧଙ୍କ ପାଇଁ ବ୍ରାଉନିଂ ଖୋରାକ ଯୋଗାଇଥାନ୍ତି । ଟେନିସନ୍ ନିଜ କବିତାର ଶୈଳୀ ସମ୍ବନ୍ଧରେ ଅତିମାତ୍ରାରେ ସଚେତନ ଓ ଲଳିତ ସୁନ୍ଦର ଶବ୍ଦଯୋଜନାର ପକ୍ଷପାତୀ । ବ୍ରାଉନିଂ କର୍କଶ ଓ ଦୁର୍ବୋଧ । ଏହିପରି ଭାବରେ ଏ ଦୁଇ କବିଙ୍କ ଭିତରେ ଦୁଇ ମେରୁର ବ୍ୟବଧାନ ଲକ୍ଷ୍ୟ କରାଯାଉଥିଲେ ମଧ୍ୟ କେତେକ ଦୃଷ୍ଟିରୁ ଉଭୟେ ପରସ୍ପରର ପରିପୂରକ ।

## ଏଲିଜାବେଥ ବେରେଟ୍ ବ୍ରାଉନିଂ (Mrs.. Browning : ୧୮୦୬-୬୧)

କବି ରବର୍ଟ ବ୍ରାଉନିଂଙ୍କ ସ୍ତ୍ରୀ; ସ୍ୱାମୀଙ୍କଠାରୁ ଛଅ ବର୍ଷ ବଡ଼ । ଆଠବର୍ଷ ବୟସରୁ କବିତା ଲେଖା ଆରମ୍ଭକରନ୍ତି । ଦୁର୍ବଳ ସ୍ୱାସ୍ଥ୍ୟ ହେତୁ ଚାଳିଶବର୍ଷ ବୟସ ବେଳକୁ ସେ ପ୍ରାୟ ଶଯ୍ୟାଶାୟିନୀ, ଅକର୍ମଣ୍ୟା । ମନଟି କିନ୍ତୁ ଅତି କୋମଳ, ସ୍ପର୍ଶକାତର । କୋଠରି ଭିତରେ



ଆବଦ୍ଧ ରହି ମନଭିତରେ ସେ ଗୋଟିଏ ସାମ୍ରାଜ୍ୟର ଅବସ୍ଥିତି କଳ୍ପନା କରୁଥିଲେ । "My mind to me a kingdom is", 'ଦି ସେରାଫିମ୍ ଆଣ୍ଡ୍ ଅଦାର ପଏମ୍ସ୍' ତାଙ୍କୁ ବିପୁଳ କବିଖ୍ୟାତି ଆଣିଦିଏ । ସାମାଜିକ ସମସ୍ୟାକୁ ଲେଖନୀରେ ରୂପଦେଇ ସେ ପାଠକ-ସମାଜର ଦୃଷ୍ଟି ଆକର୍ଷଣ କରନ୍ତି । 'ଦି କ୍ରାଇ ଅଫ୍ ଦି ଚିଲ୍ଡ୍ରେନ୍' (The cry of the children : ୧୮୪୧)ରେ କଳକାରଖାନାର ଶିଶୁ ଶ୍ରମିକ ନିର୍ଯାତନା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସେ ବହୁ ପ୍ରଶଂସିତ ହୋଇଥିଲେ । ଏପରିକି ତାଙ୍କ କବିଖ୍ୟାତି ଟେନିସନ୍ ଓ ବ୍ରାଉନିଂଙ୍କୁ ମଧ୍ୟ ଅତିକ୍ରମ କରିଯାଇଥିଲା । ଖ୍ରୀ: ୧୮୫୦ରେ ଓ୍ୱାର୍ଡ଼ସ ଓ୍ୱାର୍ଥଙ୍କ ମୃତ୍ୟୁ ପରେ ତାଙ୍କୁ ରାଜକବି ପଦବୀ ପ୍ରଦାନର ପ୍ରସ୍ତାବ ହୋଇଥିଲା । ଖ୍ରୀ: ୧୮୪୬ରେ ସ୍ୱଗୃହରୁ ପଳାୟନ କରି ପିତାଙ୍କ ଅନିଚ୍ଛାସତ୍ତ୍ୱେ ସେ ବ୍ରାଉନିଂଙ୍କୁ ବିବାହ କରିଥିଲେ । ଏହା ପରେ

ସେମାନେ ଇଟାଲିରେ ବସବାସ କଲେ । ତାଙ୍କର ସମସ୍ତ କବିଖ୍ୟାତି ମୁଖ୍ୟତଃ 'ସନେଟ୍‌ସ୍ ଫ୍ରମ୍ ଦ ପର୍ତ୍ତୁଗୀଜ୍' (Sonnets from the Portuguese : ୧୮୪୭) ଉପରେ ନିର୍ଭରକରେ । ଏହା ନିଜ ସ୍ୱାମୀ ବ୍ରାଉନିଂଙ୍କ ପ୍ରତି ଗଭୀର ପ୍ରେମାସକ୍ତିର ଆନ୍ତରିକତାପୂର୍ଣ୍ଣ ଅଭିବ୍ୟକ୍ତି । ବସ୍ତୁତଃ ଉଭୟଙ୍କ ଦାମ୍ପତ୍ୟ-ଜୀବନ ଅତୀବ ସୁଖମୟ ଥିଲି । ପ୍ରାଣର ଦୋସର ପ୍ରତି ପ୍ରେମର ନୈବେଦ୍ୟ ଢାଳି ନାୟିକବି ଲେଖିଛନ୍ତି,

......"I love thee with the breath
Smiles, tears, of all my life !—and if God choose,
I shall but love thee better after death."

ପରିଶେଷରେ ଖ୍ରୀ: ୧୮୬୧ରେ ଆକସ୍ମାତ୍ ଫ୍ଲରେନ୍‌ସରେ ତାଙ୍କର ମୃତ୍ୟୁ ହୁଏ । ନିଷ୍ଠାପର ସ୍ୱାମୀ ଓ ପ୍ରେମିକ କବି ବ୍ରାଉନିଂଙ୍କ ହୃଦୟ ଏଇ ଦାରୁଣ ବିଚ୍ଛେଦରେ ବିଳପି ଉଠିଥିଲା—

"O lyric love, half an angel and half bird."

ଶ୍ରୀମତୀ ବ୍ରାଉନିଂଙ୍କ ଶୈଳୀ ବଡ଼ ପରିଚ୍ଛନ୍ନ, ମଧୁର ଓ ଆବେଗମୟ; କିନ୍ତୁ ଅଖ୍ୟାନ-ଧର୍ମୀ କବିତା ଲେଖିବାରେ ସେ ସଫଳତା ହାସଲ କରିପାରିନାହାନ୍ତି । ସେଥିରେ ବହୁ ଅବାନ୍ତର ପ୍ରସଙ୍ଗ ଉତ୍ଥାପନକରି କଥାବସ୍ତୁକୁ ଜଟିଳ କରିପକାଇଥାନ୍ତି ।

## ମାଥ୍ୟୁ ଆର୍ନଲଡ୍ (Mattheu Arnold : ୧୮୨୨-୮୮)

ମ୍ୟାଥ୍ୟୁ ଆର୍ନଲଡ୍‌ଙ୍କ ଜୀବନ ତଥା ରଚନାରେ ଭିକ୍ଟୋରୀୟ ଯୁଗଯନ୍ତ୍ରଣାର ତୀବ୍ର ଦହନ ପ୍ରକାଶ ପାଇଛି । ରୁଗ୍‌ବି ହାଇସ୍କୁଲର ସୁଖ୍ୟାତ ପ୍ରଧାନ ଶିକ୍ଷକ ଡ: ଟମାସ୍ ଆର୍ନଲଡ୍‌ଙ୍କ ପୁତ୍ର ଭାବରେ ସେ ପିଲାଦିନରୁ ନୀତି, ନିୟମ ଓ ଶୃଙ୍ଖଳା ମଧ୍ୟରେ ପ୍ରତିପାଳିତ; ଧର୍ମବିଶ୍ୱାସକୁ ନିର୍ବିଘ୍ନରେ ମାନିନେବାରେ ଅଭ୍ୟସ୍ତ; ଅନ୍ୟ ପକ୍ଷରେ କଲେଜ ଜୀବନରେ ଯେଉଁ ଶିକ୍ଷା ପାଇଲେ ତାର ମୂଳମନ୍ତ୍ର ସନ୍ଦେହ ଓ ପ୍ରଶ୍ନ । ଏଣୁ ଯୁଗଯନ୍ତ୍ରଣାର ପ୍ରତିଫଳନ ପାଇଁ ତାଙ୍କ ହୃଦୟ ଥିଲା ଅତ୍ୟନ୍ତ ଉପଯୋଗୀ । ଏକ ଦିଗରେ ଗ୍ରୀକ୍ କବି ଓ ମିଲ୍‌ଟନ୍‌ଙ୍କ ପରି କ୍ଲାସିକ କବି ତାଙ୍କର ଆଦର୍ଶ ଥିଲାବେଳେ ଅନ୍ୟ ଦିଗରେ ତାଙ୍କର ସ୍ୱଭାବଗତ ରୋମାଣ୍ଟିକ୍ କବି ମନ ସ୍ୱତଃ ଆତ୍ମପ୍ରକାଶ କରିଛି । ତାଙ୍କର ବହୁ କବିତାର ଶୈଳୀରେ ହୋମାର, ଥିଓକ୍ରିଟାସ୍ ଓ ବର୍ଥଙ୍କ ପ୍ରଭାବ ପରିଲକ୍ଷିତ । ଅନ୍ୟ ପକ୍ଷରେ ଅସ୍ଥିରତା, ଶୋକାକୁଳ ଭାବ ତଥା ବିଷଣ୍ଣତା ତାଙ୍କ



ରୋମାଣ୍ଟିକ୍ ମନର ସାକ୍ଷ୍ୟ ଦିଏ । ଏଣୁ ସମାଲୋଚକ ଡାଷ୍ଟାମିଆଁ ଆର୍ନଲ୍ଡଙ୍କ ଅନ୍ତର୍ନିହିତ ଭାବ (inner Romanticism) କଥା କହିଥାନ୍ତି । ନିଜର ରୋମାଣ୍ଟିକ୍ ଚେତନାକୁ ଚାପି ରଖିବାର ପ୍ରୟାସ ତାଙ୍କର ବ୍ୟର୍ଥ ହୋଇଛି କହିବାକୁ ହେବ । ଫଳସ୍ୱରୂପ ଆର୍ନଲ୍ଡଙ୍କ କାବ୍ୟକବିତାରେ ଆମେ ଗୋଟିଏ ଦ୍ୱିଧାବିଭକ୍ତ ବ୍ୟକ୍ତିତ୍ୱର ମାନସିକ ସଙ୍କଟ ଅନୁଭବ କରୁଁ । ବସ୍ତୁତଃ ଏହାହିଁ ଭିକ୍ଟୋରୀୟ ଯୁଗ-ସଂକଟ ।

'ବାଲଡାର ଡେଡ୍' (Balder Dead: ୧୮୫୫) ଓ 'ସୋରାବ୍ ଆଣ୍ଡ୍ ରୁସ୍ତାମ୍' (Sohrab and Rustum: ୧୮୫୩) ତାଙ୍କର ଦୁଇଟି ଆଖ୍ୟାନଧର୍ମୀ ଦୀର୍ଘକବିତା । ପ୍ରଥମଟି ନରୱେର ଏକ ପୌରାଣିକ କାହାଣୀ ଓ ଦ୍ୱିତୀୟଟି ଏକାଦଶ ଶତାବ୍ଦୀର ପାର୍ଶିଆନ୍ କବି ଫିରଦୁସିଙ୍କ 'ସାହାନାମା'ର ଏକ କାହାଣୀ ଉପରେ ଆଧାରିତ । ଦ୍ୱିତୀୟ କବିତାଟି ଅପେକ୍ଷାକୃତ ଅଧିକ ସଫଳ ।

'ସୋରାବ୍ ଆଣ୍ଡ୍ ରୁସ୍ତାମ୍' ପିତାପୁତ୍ର ଦ୍ୱନ୍ଦ୍ୱଯୁଦ୍ଧର ଏକ କରୁଣ କାହାଣୀ । ପାର୍ସିଆନ୍ ବୀର ରୁସ୍ତାମ୍ ନିଜ ଅପହୃତ ଅଶ୍ୱଟିର ସନ୍ଧାନରେ ବାହାରି ରାଜା ସାମେନ୍‌ଗାନ୍‌ଙ୍କ ପ୍ରାସାଦରେ ପହଞ୍ଚିଛି । ପ୍ରେମରେ ପଡ଼ି ରାଜକନ୍ୟା ତାମିନାଃ (Temineh)କୁ ବିବାହ କରିଛି । କର୍ତ୍ତବ୍ୟ ଅନୁରୋଧରେ ସେ ପୁଣି ତାମିନାଃକୁ ଛାଡ଼ି ସ୍ୱଦେଶକୁ ବାହୁଡ଼ିଯାଇଛି । ଇତିମଧ୍ୟରେ ତାମିନାଃ ଗୋଟିଏ ପୁତ୍ରର ଜନନୀ ହୋଇଛି । ଏଇ ପୁତ୍ର ହୋଇଛି ବୀର ସୋରାବ୍, ତୁରାନ ସୈନ୍ୟବାହିନୀର ଶ୍ରେଷ୍ଠ ବୀର । ଅବସ୍ଥାଚକ୍ରରେ ଉଭୟଗୋଷ୍ଠୀ ମଧ୍ୟରେ ଯୁଦ୍ଧ ଦେଖାଦେଇଛି; ଗୋଟିଏ ଦଳର ଶ୍ରେଷ୍ଠ ବୀର ରୁସ୍ତାମ୍, ଅନ୍ୟ ଦଳର ସୋରାବ୍ । ଯୁଦ୍ଧରେ ବହୁଲୋକଙ୍କ ଜୀବନ ନଷ୍ଟକରିବା ପରିବର୍ତ୍ତେ ଉଭୟ ଦଳ ପକ୍ଷରୁ କେବଳ ଗୋଟିଏ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ରାଜିନାମା ହୋଇଛି । ପିତାପୁତ୍ର ଯୁଦ୍ଧରେ ଅବତୀର୍ଣ୍ଣ ହୋଇଛନ୍ତି । ଜୀବନସାରା ସୋରାବ୍ ତାର ପିତାଙ୍କୁ ଖୋଜିଆସିଛି; କିନ୍ତୁ ପ୍ରୌଢ଼ ରୁସ୍ତାମ୍ ନିଜର ଆତ୍ମବିଶ୍ୱାସ ଅଭାବରୁ ଆତ୍ମ-ପରିଚୟ ଦେଇନାହିଁ । ପ୍ରଥମ ଦିନର ଲଢ଼େଇରେ ରୁସ୍ତାମ୍ ପ୍ରାୟ ପରାଭୂତ ହେଲେହେଁ ସୋରାବ ତାକୁ ଛାଡ଼ିଦେଇଛି; ଦ୍ୱିତୀୟ ଦିନ କିନ୍ତୁ ସୁଯୋଗ ପାଇବାମାତ୍ରେ ସୋରାବ ବକ୍ଷରେ ସେ ଛୁରିକାଘାତ କରିଛି । ସୋରାବ ବାହୁରେ ସୁନାର ବଳୟ ଦେଖି ରୁସ୍ତାମ୍ ତାକୁ ଚିହ୍ନିପାରିଛି । ଏଇ ସନ୍ତକଟି ସେ ତାର ସ୍ତ୍ରୀ ହାତରେ ଦେଇଆସିଥିଲା । ଅକ୍‌ସାସ୍ ନଦୀକୂଳରେ ରକ୍ତ ଓ ଅଶ୍ରୁର ପ୍ଲାବନ ଭିତରେ ପିତା-ପୁତ୍ରର ମିଳନ ଘଟିଛି । କବିତାର ଶେଷଭାଗରେ ଅକ୍‌ସାସ୍ ନଦୀ ଗୋଟିଏ ପ୍ରତୀକ ସ୍ତରକୁ ଉନ୍ନୀତ ହୋଇଛି । ସଂସାରର ହସକାନ୍ଦ ଭିତରେ ସେ ଦାର୍ଶନିକ ପରି ସ୍ଥିତପ୍ରଜ୍ଞ, ନିଜର ସ୍ୱାଭାବିକ ଧାରାରେ ବହିଗ୍ଲିଛି ।

କବିତାଟିରେ ଯେପରି କ୍ଲାସିକେଲ୍ ସଂଯମ ରକ୍ଷାକରାଯାଇଛି, ସେହିପରି ରୋମାଣ୍ଟିକ୍ ଆବେଗ ଓ ଅନୁଭୂତି ପ୍ରକାଶ ପାଇଛି । ମହାକାବ୍ୟିକ ଉପମାଗୁଡ଼ିକ ଚିତ୍ତାକର୍ଷକ ହୋଇଛି ।

ଏହା ଅମିତ୍ରାକ୍ଷର ଛନ୍ଦରେ ଲିଖିତ । କବି ମିଲ୍‌ଟନ୍‌ଙ୍କ ଅନୁସରଣ କରିଛନ୍ତି; କିନ୍ତୁ ତାଙ୍କର ଲାଳିତ୍ୟ ଏଠାରେ ଖୋଜିବା ବିଡ଼ମ୍ବନା ମାତ୍ର ।

ଆର୍ନଲ୍‌ଡ୍‌ଙ୍କ ଅନ୍ୟାନ୍ୟ କବିତା ମଧ୍ୟରେ 'ଥର୍ସିସ୍' (Thyrsis), 'ଦି ସ୍କଲର୍ ଜିପ୍‌ସି', 'ରୁଗ୍‌ବି ଚ୍ୟାପେଲ', 'ମେମୋରିଏଲ୍ ଭର୍ସେସ୍,' 'ଏ ସାଉଥ୍‌ଡାଉଣ୍ଡ ନାଇଟ୍' ଓ 'ଅବାରମାନ' ପରି ଶୋକଗୀତ ଉଲ୍ଲେଖଯୋଗ୍ୟ । ସମସାମୟିକ କବି ଆର୍ଥର ହ୍ୟୁ କ୍ଲାଫ୍ (Arthur Hugh Clough : ୧୮୧୯-୬୧) ଙ୍କ ମୃତ୍ୟୁରେ ଲିଖିତ' 'ଥର୍ସିସ୍' ଏକ ପାଷ୍ଟୋରାଲ୍ ଏଲିଜି । ଏହା ମିଲଟନ୍‌ଙ୍କ ଲିସିଡାସ୍ ଓ ଶେଲିଙ୍କ 'ଏଡୋନାଇସ୍' ଭଳି ଉଚ୍ଚକୋଟୀର ଶୋକଗୀତ ସ୍ମରଣ କରାଇଦିଏ । 'ଦି ସ୍କଲର ଜିପ୍‌ସି' ତାଙ୍କର ଅନ୍ୟତମ ସୁଖ୍ୟାତ କବିତା । କବି ଏହାର କଥାବସ୍ତୁ ଜୋସେଫ୍ ଗ୍ଲାନଭିଲ୍ (୧୬୩୬-୧୬୮୦)ଙ୍କ 'ଭ୍ୟାନିଟି ଅଫ୍ ଡଗ୍‌ମାଟାଇଜିଂ'ରୁ ଗ୍ରହଣ କରିଛନ୍ତି । କଥାବସ୍ତୁ ଜନୈକ ଅକ୍‌ସ୍‌ଫୋର୍ଡ ଛାତ୍ରର ଜିପ୍‌ସି ଦଳରେ ଯୋଗଦାନ ବିଷୟକୁ କେନ୍ଦ୍ର କରି ପରିକଳ୍ପିତ । ଛାତ୍ର ଜଣକ ପଢ଼ା ଛାଡ଼ି ଜିପ୍‌ସି ଦଳରେ ଯୋଗଦେଇ ବଣପାହାଡ଼ରେ ଘୂରିବୁଲେ । ଅଲୌକିକ ତନ୍ତ୍ର-ବିଦ୍ୟାଶିକ୍ଷା ତାର ଉଦ୍ଦେଶ୍ୟ । କେବେ କେମିତି ସେ ଅକ୍‌ସ୍‌ଫୋର୍ଡ ଅଞ୍ଚଳରେ ଦେଖାଦିଏ; କିନ୍ତୁ ଜିପ୍‌ସି ଜୀବନ ଛାଡ଼ି କେବେ ଫେରିଆସେନା । ଭିକ୍‌ଟୋରୀୟ ଯୁଗ-ଯନ୍ତ୍ରଣାରେ ଅଧୀର ଗୋଟିଏ ତରୁଣପ୍ରାଣପାଇଁ ଏଭଳି ଜିପ୍‌ସି ଜୀବନ ଆକର୍ଷଣୀୟ ମନେହୋଇଛି । ଏ ଯୁଗରେ ମାନବର ଲକ୍ଷ୍ୟ ଅସ୍ଥିର, ଦ୍ୱିଧାଗ୍ରସ୍ତ; କିନ୍ତୁ ସ୍କଲର ଜିପ୍‌ସିର ଲକ୍ଷ୍ୟ ସ୍ଥିର, ଏଣୁ କବିଙ୍କ ପାଇଁ ଆକର୍ଷଣୀୟ । ସମସ୍ୟାକ୍ଳିଷ୍ଟ, ସତତ ଆନ୍ଦୋଳିତ ସମାଜରୁ ପଳାୟନପାଇଁ ବରଂ ସେ ସ୍କଲର୍ ଜିପ୍‌ସିଙ୍କୁ ଉତ୍ସାହିତ କରିଛନ୍ତି ।

'ଡୋଭର ବିଚ୍,' 'ଏ ସମାର ନାଇଟ' ପରି କବିତାରେ ତାଙ୍କର ଚିନ୍ତାଶୀଳତା, ବିଷଣ୍ଣତା, ତଥା ଅନାସକ୍ତ ଭାବ ପ୍ରକାଶ ପାଇଛି । ଷ୍ଟୋଇସିଜିମ୍ (Stoicism)ର ଆତ୍ମ-ସଂଯମ ଓ ଅନାସକ୍ତ ଭାବଦ୍ୱାରା ସେ ପ୍ରଭାବିତ ହୋଇଥିଲେ; କିନ୍ତୁ ଏହାକୁ ସଂପୂର୍ଣ୍ଣରୂପେ ଆତ୍ମସ୍ଥ କରି ନ ପାରିଥିବାରୁ ବିଷଣ୍ଣତାର ଛାଇ ତାଙ୍କ ମନୋରାଜ୍ୟକୁ ଅଧିକାରକରି ବସିଛି । କବିତାକୁ ସେ ଜୀବନର ସମାଲୋଚନା ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ଭାଷାରେ କବିତା ହେଉଛି "a criticism of life under the conditions fixed for such criticism by the laws of poetic truth and poetic beauty." ଏହି ତତ୍ତ୍ୱକୁ ସେ ନିଜ କବିତା କ୍ଷେତ୍ରରେ ପ୍ରୟୋଗ କରିବାକୁ ଚେଷ୍ଟା କରିଛନ୍ତି । ପ୍ରକୃତରେ ତାଙ୍କ କବିତା ଭିକ୍‌ଟୋରୀୟ ଜୀବନର ଏକ ସମାଲୋଚନା । କ୍ଲାସିକ୍ ରୀତିର ପ୍ରଭାବରେ ନିଜର ଶୈଳୀକୁ ଅଳଙ୍କାରମୁକ୍ତ, ସରଳ ତଥା ପରିଚ୍ଛିନ୍ନ କରିବାରେ ତାଙ୍କର ଇଚ୍ଛାକୃତ ପ୍ରୟାସ ସ୍ପଷ୍ଟ ।

### ଏଡ଼୍‌ୱାର୍ଡ ଫିଟ୍‌ସ୍‌ଜେରାଲ୍‌ଡ୍ (Edward Fitzgerald :୧୮୦୯-୮୩)

ଗୋଟିଏ ମାତ୍ର କବିତା ପାଇଁ ଏଡ଼୍‌ୱାର୍ଡ଼ ଫିଟ୍‌ସ୍‌ଜେରାଲ୍‌ଡ଼୍ ଇଂରେଜୀ ସାହିତ୍ୟରେ ସ୍ମରଣୀୟ । କବିତାଟି ପୁଣି ତାଙ୍କ ମୌଳିକ ସୃଷ୍ଟି ନୁହେଁ; ଓମର ଖୈୟାମଙ୍କ 'ରୁବାୟତ'ର

ଅନୁବାଦ । ଓମର ଖୈୟାମ୍ (Omar Khayyam) ଏକାଦଶ ଶତାବ୍ଦୀର ପାରସୀ କବି ଓ ଜ୍ୟୋତିର୍ବିଦ । ତାଙ୍କ ମତରେ ମନୁଷ୍ୟ ଭାଗ୍ୟଦ୍ୱାରା ନିୟନ୍ତ୍ରିତ । ଏହା ଅପରିବର୍ତ୍ତନୀୟ ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ । ମୃତ୍ୟୁ ସୁନିଶ୍ଚିତ । ଏପରି ଅବସ୍ଥାରେ ବର୍ତ୍ତମାନର ମୁହୂର୍ତ୍ତକୁ ସୁରା, ସାକୀ ଓ ସଙ୍ଗୀତର ମୂର୍ଚ୍ଛନା ମଧ୍ୟରେ ଉପଭୋଗ କରିବା ଉଚିତ । ଚାର୍ବାକ୍-ଦର୍ଶନ ସାଥିରେ ଏହାର ସାମ୍ୟ ରହିଛି । ସାରା କବିତାଟି ଭିତରେ ନୈରାଶ୍ୟ ଓ ଦୁଃଖବାଦର ସ୍ରୋତ । ଅନୂଦିତ ଇଂରେଜୀ କବିତାଟିରେ ମୂଳ କବିତାର ଆବେଦନ ସୁରକ୍ଷିତ । ଫିଜ୍‌ଜେରାଲ୍ଡ ରୁଚିକୁ ସମ୍ମାନ ଦେଇ କବି ବିଷୟବସ୍ତୁରେ କିଛି ପରିବର୍ତ୍ତନ କରିଛନ୍ତି । ନିମ୍ନରେ କେତୋଟି ସୁପରିଚିତ ପଙ୍‌କ୍ତି ଉଦ୍ଧୃତ ହେଲା ।

Here with a Loaf of Bread beneath the Bough
A Flask of wine, a Book of Verse—and Thou
Beside me singing in the wilderness
And wilderness is Paradise a now !

× × ×

The Moving Finger writes, and, having writ,
Moves on; nor all thy piety nor Wit,
Shall lure it back to cancel half a Line,
Nor all thy Tears wash out a word of it,

× × ×

Unborn tomorrow and dead yesterday
Why fret about them if today be sweet ?

## ପ୍ରି-ରାଫେଲାଇଟ୍ କବିତା (The Pre-Raphaelites):

ଭିକ୍ଟୋରୀୟ ଯୁଗର ଦ୍ୱିତୀୟାର୍ଦ୍ଧରେ (୧୮୭୫-୧୯୧୪) ମୂଳଧାରା ପ୍ରତି ପ୍ରତିକ୍ରିୟା ପ୍ରକାଶ ପାଇଲା । ଟେନିସନ୍ ଓ ବ୍ରାଉନିଂ ଆଦିଙ୍କ - କବିତା ବା ଡିକେନ୍‌ସଙ୍କ ଉପନ୍ୟାସ ଉତ୍କୃଷ୍ଟ କଳାସୃଷ୍ଟି ଭାବରେ ଗୃହୀତ ହେଲା ନାହିଁ । କାରଣ ସେମାନେ ଥିଲେ ଆଦର୍ଶବାଦୀ । ନୀତିଶିକ୍ଷା ଦେଇ, ସମାଜଜୀବନରେ ସଂସ୍କାର ଆଣି ସୁଶୃଙ୍ଖଳ, ସୁରୁଚିସମ୍ପନ୍ନ ଜୀବନ ଆଡ଼କୁ ସମସ୍ତଙ୍କୁ ଆଗେଇନେବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ଏଭଳି ପ୍ରଚାରଧର୍ମୀ ସାହିତ୍ୟ ଉତ୍କୃଷ୍ଟ କଳାକୃତିର ଗୌରବ ପାଇ ନ ପାରେ । ଏଣୁ 'କଳାପାଇଁ କଳା' (Art for Art's sake)ର ସ୍ଲୋଗାନ ଦେଇ ଦେଖାଦେଲା ଏକ ତରୁଣ ଗୋଷ୍ଠୀ । ତାର ନେତୃତ୍ୱ ନେଲେ ଦାନ୍ତେ ଗେବ୍ରିଏଲ-ରୋସେଟି (Dante Gabriel Rossetti : ୧୮୨୮-୮୨) । ସାତଜଣ ଯୁବବନ୍ଧୁ ଏକତ୍ର ହୋଇ ଖ୍ରୀ: ୧୮୪୮ରେ 'ପ୍ରି-ରାଫେଲାଇଟ୍ ଭ୍ରାତୃସଂଘ'

(Pre-Raphaelite Brotherhood) ଗଠନ କରିଥିଲେ । ରୋସେଟିଙ୍କ ବ୍ୟତୀତ ଅନ୍ୟ ସାତ ଜଣ ହେଲେ ତାଙ୍କ ଭାଇ ଉଇଲିଅମ୍ ରୋସେଟି, ଉଇଲିଅମ୍ ହୋଲମାନ୍ ହାଣ୍ଟ୍ (Holman Hunt), ଜନ୍ ଏଭରେଟ୍ ମିଲେସ୍ (Everett Millais), ଜେମସ୍ କଲିନ୍ ସନ୍ (Collinson), ଫ୍ରେଡ୍ରେରିକ୍ ଜର୍ଜ ଷ୍ଟିଭେନସନ୍ ଓ ଟମାସ୍ ଉଲ୍ ନାର୍ (Woolner) । ଏମାନଙ୍କ ସହ ରୋସେଟିଙ୍କ ଭଉଣୀ କ୍ରିଷ୍ଟିନା ରୋସେଟି, ଉଇଲିଅମ ମରିସ୍ (William Morris) ଓ ସୁଇନବାର୍ଣ୍ଣ (Swinburne) ଯୋଗଦେଇ ପ୍ରି-ରାଫେଲାଇଟ୍ କବିଭାବରେ ଯଶସ୍ୱୀ ହୋଇଥିଲେ; କିନ୍ତୁ ସୁଇନ୍ ବାର୍ଣ୍ଣଙ୍କ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ବେଶି ଦିନ ତାଙ୍କୁ ଏଇ କବିଗୋଷ୍ଠୀର ବନ୍ଧନୀ ମଧ୍ୟରେ ଆବଦ୍ଧ ରଖି ପାରିନଥିଲା ।

ଶ୍ରେଷ୍ଠ ପ୍ରି-ରାଫେଲାଇଟ୍ କବି ହିସାବରେ ଦାନ୍ତେ ଗେବ୍ରିଏଲ୍ ରୋସେଟି, କ୍ରିଷ୍ଟିନା ରୋସେଟି ଓ ଉଇଲିଅମ୍ ମରିସ୍ ହିଁ ଗୃହୀତ ହୋଇଥାନ୍ତି ।

ଏଇ କବିଗୋଷ୍ଠୀର ଅଧିକାଂଶ ଥିଲେ ଉଭୟ ଚିତ୍ରଶିଳ୍ପୀ ଓ କବି । କଳା କ୍ଷେତ୍ରରେ ଏମାନେ ଇଟାଲୀୟ ଚିତ୍ରଶିଳ୍ପୀ ରାଫେଲ (Raphael)ଙ୍କ ପୂର୍ବବର୍ତ୍ତୀ ଧାରାର ଅନୁସରଣ କରୁଥିଲେ । ରାଫେଲଙ୍କ ଉଚ୍ଚାଙ୍ଗ ଚିନ୍ତାଧାରା ଓ ପରିପୂର୍ଣ୍ଣ କଳାନୈପୁଣ୍ୟ (Loftiness of conception and perfection of technique) ତାଙ୍କ ପକ୍ଷେ ଗ୍ରହଣଯୋଗ୍ୟ ନ ଥିଲା । ଅନ୍ୟପକ୍ଷରେ ତାଙ୍କ ପୂର୍ବବର୍ତ୍ତୀ ଶିଳ୍ପୀଙ୍କର ସରଳତା ତଥା ସ୍ୱାଭାବିକତା ଦ୍ୱାରା ସେମାନେ ଆକୃଷ୍ଟ ହୋଇଥିଲେ । ଏମାନେ ସତ୍ୟ ଓ ସୌନ୍ଦର୍ଯ୍ୟର ଏକନିଷ୍ଠ ଉପାସକ ।

କବିତାକ୍ଷେତ୍ରରେ ଏମାନେ ଚିତ୍ରକଳାର ଆଦର୍ଶ ପ୍ରୟୋଗ କରିଥିଲେ । କବିତା ହେଲା ଚିତ୍ରଧର୍ମୀ; ଏମାନେ ଏ କ୍ଷେତ୍ରରେ କୀଟ୍ସ ଓ ଟେନିସନଙ୍କୁ ମଧ୍ୟ ଅତିକ୍ରମ କରିଥିଲେ; ସତେ ଅବା କଲମକୁ ତୂଳୀରେ ପରିଣତ କରି ଏମାନେ କେବଳ ଚିତ୍ର ହିଁ ଆଙ୍କିଚାଲିଥିଲେ । ପ୍ରକୃତି ପର୍ଯ୍ୟବେକ୍ଷଣ, ପ୍ରକୃତିର ଅନୁସରଣ ଓ ଗତାନୁଗତିକ ଅନୁଭୂତି ବଦଳରେ ନିଜସ୍ୱ ଜୀବନ୍ତ ଅନୁଭୂତି ପ୍ରକାଶ ପାଇଲା । ସୌନ୍ଦର୍ଯ୍ୟପ୍ରୀତି ଗଭୀର ଇନ୍ଦ୍ରିୟାନୁଭୂତିରେ ପରିଣତ ହେଲା । ଶିଳ୍ପୀର ଦୃଷ୍ଟି ନେଇ ଏମାନେ ତନ୍ନତନ୍ନ ଅନୁଧ୍ୟାନପୂର୍ବକ ଠିକଣାଖି ବିବରଣୀ ପରିବେଷଣର ପକ୍ଷପାତୀ ଥିବାରୁ ନରନାରୀଙ୍କ ଶାରୀରିକ ସୌନ୍ଦର୍ଯ୍ୟର ରୂପାୟନବେଳେ ତା'ର ପ୍ରତ୍ୟେକଟି ରେଖା ଓ ଛକ କବିତାର ପଙ୍କ୍ତିରେ ଫୁଟିଉଠିଲା । ଏଣୁ ଏ କବିତାକୁ ଦେହବାଦୀ କବିତା (Fleshy school of poetry) ବୋଲି ଆକ୍ଷେପ କରାଯାଇଥାଏ; କିନ୍ତୁ ଏଥିପ୍ରତି ଏଇ କବିଗୋଷ୍ଠୀର ଭ୍ରୂକ୍ଷେପ ନଥିଲା । ସମାଜ ପ୍ରତି କଳାର ଦାୟିତ୍ୱ ଏମାନେ ସ୍ୱୀକାର କରୁ ନ ଥିଲେ । ରୋସେଟିଙ୍କ 'ଦି ବ୍ଲେସେଡ୍ ଡାମୋଜେଲ୍' (The Blessed Damozel) ପ୍ରି-ରାଫେଲାଇଟ୍ କବିତାର ଶ୍ରେଷ୍ଠ ଉଦାହରଣ । ସ୍ୱର୍ଗଗାମିନୀ ପ୍ରେୟସୀ ତାର ପ୍ରେମିକର ଆଗମନକୁ ଅପେକ୍ଷା କରି ପୃଥିବୀ ଆଡ଼କୁ ଚାହିଁରହିଛି—

The Blessed damozel leaned out
From the gold bar of heaven;
Her eyes were deeper than the depth
Of waters stilled at even;
She had three lilies in her hand,
and the stars in her hair were seven.

କବିଙ୍କ ଚିତ୍ରଧର୍ମୀ, ସହଜ, ସରଳ ଓ ଲାଳିତ୍ୟପୂର୍ଣ୍ଣ ପ୍ରକାଶଭଙ୍ଗୀର ଦୃଷ୍ଟାନ୍ତ ଏଥିରୁ ମିଳେ । ଏହା ହିଁ ବସ୍ତୁତଃ ପ୍ରି-ରାଫେଲାଇଟ୍ କବିତାର ବୈଶିଷ୍ଟ୍ୟ ।

## ସ୍ୱିନ୍‌ବାର୍ଣ୍ଣ ଓ ନବ ସ୍ୱୈରବାଦ (Neo-Romanticism : ୧୮୭୫-୧୯୧୪)

ସ୍ୱିନବାର୍ଣ୍ଣ ପ୍ରି-ରାଫେଲାଇଟ୍ ଗୋଷ୍ଠୀରେ କିଛିକାଳ ସାମିଲ ହୋଇଥିଲେ; କିନ୍ତୁ ପ୍ରି-ରାଫେଲାଇଟ୍ କବିଙ୍କ ପରି ସେ ଚିତ୍ରଶିଳ୍ପୀ ନଥିଲେ । ଚିତ୍ର ଅପେକ୍ଷା ସଙ୍ଗୀତ ପ୍ରତି ତାଙ୍କର ଆକର୍ଷଣ ଥିଲା ଅଧିକ । ଏଣୁ ଅନ୍ୟମାନଙ୍କ କବିତା ଚିତ୍ରଧର୍ମୀ ହୋଇଥିବାବେଳେ ତାଙ୍କ କବିତା ସଙ୍ଗୀତଧର୍ମୀ । ଏତଦବ୍ୟତୀତ ତାଙ୍କ ବ୍ୟକ୍ତିତ୍ୱ ଓ ଦୃଷ୍ଟିଭଙ୍ଗୀର ସ୍ୱାତନ୍ତ୍ର୍ୟ ହେତୁ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଆଦର୍ଶ ଭିତରେ ବାନ୍ଧିହୋଇ ରହିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ସେ ଏଥିରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ଧାରାରେ କବିତା ଲେଖିବାକୁ ଲାଗିଲେ । ଊନବିଂଶ ଶତାବ୍ଦୀର ଶେଷ ତିନି ଦଶକରେ ଭିକ୍ଟୋରୀୟ ଚିନ୍ତାଚେତନାର ପ୍ରତିକ୍ରିୟା ସ୍ୱରୂପ ଦେଖାଦେଇଥିବା ନବ ସ୍ୱୈରବାଦୀ ଦୃଷ୍ଟିଭଙ୍ଗୀ ତାଙ୍କ ଲେଖାରେ ରୂପ ପାଇଛି ।

ଊନବିଂଶ ଶତାବ୍ଦୀର ଆଦ୍ୟଭାଗରେ ଦେଖାଦେଇ ଭିକ୍ଟୋରୀୟ ରକ୍ଷଣଶୀଳତା ମଧ୍ୟରେ ସଙ୍କୁଚିତ ହୋଇପଡ଼ିଥିବା ରୋମାଣ୍ଟିକ୍ ଚେତନା ସ୍ୱିନ୍‌ବାର୍ଣ୍ଣଙ୍କ ଲେଖାରେ ପୁଣି ଆତ୍ମପ୍ରକାଶ କରିଛି । ବିଶିଷ୍ଟ ରୋମାଣ୍ଟିକ କବି ବାଇରନ୍, ଶେଲି, କୀଟସ୍ ଓ ଲାଣ୍ଡୋରଙ୍କ ସ୍ୱର ଏହାଙ୍କ କବିତାରେ ଶୁଣାଯାଏ । ରୋମାଣ୍ଟିକ୍ କବିଙ୍କ ପରି ସ୍ୱିନ୍‌ବାର୍ଣ୍ଣଙ୍କ କବିତାରେ ସ୍ୱାଧୀନତାର ଦୃପ୍ତ ଆବାହନୀ ଶୁଣାଯାଇଛି । କୀଟ୍‌ସ୍‌ଙ୍କ ପରି ତାଙ୍କର ଗ୍ରୀକ୍‌ପ୍ରୀତି ଅତି ତୀବ୍ର । ଇଟାଲୀୟ ସ୍ୱାଧୀନତା ସଂଗ୍ରାମ ତାଙ୍କ ହୃଦୟରେ ଆନ୍ଦୋଳନ ସୃଷ୍ଟି କରିଛି (A Song of Italy : ୧୮୬୭; Songs before Sunrise : ୧୮୭୧) । ସେ ଧର୍ମଯାଜକଙ୍କ ସ୍ୱେଚ୍ଛାଚାରିତାର ଦୃଢ଼ ପ୍ରତିବାଦ କରିଛନ୍ତି, ଚର୍ଚ୍ଚର ଭିତ୍ତିହୀନ ବିଶ୍ୱାସକୁ ଗ୍ରହଣ କରିନାହାନ୍ତି । ଇନ୍ଦ୍ରିୟପ୍ରବଣତା, ମଧ୍ୟଯୁଗୀୟ ପ୍ରୀତି ଓ ପାଗାନ୍ ସଭ୍ୟତା ପ୍ରତି ତାଙ୍କର ଆକର୍ଷଣ ଅତ୍ୟଧିକ । ସେ ପ୍ରକୃତି-କବି, ସମୁଦ୍ରବର୍ଣ୍ଣନାରେ ଶତମୁଖ ।

ସ୍ୱିନ୍‌ବାର୍ଣ୍ଣ ଏହିପରି ଭାବରେ ପୂର୍ବସୂରୀଙ୍କଠାରେ ଋଣୀ; କିନ୍ତୁ ତାଙ୍କର ନବସ୍ୱୈର-ବାଦୀ ଦୃଷ୍ଟିଭଙ୍ଗୀ ଏଥିରେ କିଛି ନୂତନତାର ସଂଯୋଗ ଘଟାଇଛି । ପ୍ରଥମତଃ ଭିକ୍ଟୋରିୟ ପ୍ୟୁରିଟାନିଜ୍‌ମ୍ ପ୍ରତି ସେ ଏକ ଆହ୍ୱାନ । ଭିକ୍ଟୋରିୟ ନୀତି, ଶୃଙ୍ଖଳା ଓ ଶୁଚିତା ଭିତରେ ସେ ବାନ୍ଧି ହୋଇନାହାନ୍ତି । ଭିକ୍ଟୋରିୟ ସାହିତ୍ୟ ଥିଲା ସାମାଜିକ ରୁଚିର ନିୟନ୍ତ୍ରଣାଧୀନ । ସ୍ୱିନ୍‌ବାର୍ଣ୍ଣ ଏ ଧାରାକୁ ଗ୍ରହଣ କରିପାରି ନାହାନ୍ତି । ନିଜର ଇନ୍ଦ୍ରିୟପ୍ରବଣତାକୁ ଦ୍ୱିଧାହୀନ ଭାବରେ ସେ ପ୍ରକାଶ କରିଛନ୍ତି । ରୋସେଟିଙ୍କ କବିତାରେ ବି ଏହିଭଳି ଇନ୍ଦ୍ରିୟପ୍ରବଣତା ପ୍ରକାଶ ପାଇଥିଲା । ବସ୍ତୁତଃ ଊନବିଂଶ ଶତାବ୍ଦୀର ପ୍ରଥମ ଓ ଶେଷଭାଗରେ ଦେଖା-ଦେଇଥିବା ରୋମାଣ୍ଟିକ୍ ଚେତନା ମଧ୍ୟରେ ରୋସେଟି ଥିଲେ ସଂଯୋଗ-ସୂତ୍ର । ଏଥିପାଇଁ ସେତେବେଳେ ସେ ବହୁ ସମାଲୋଚିତ ହୋଇଥିଲେ; କିନ୍ତୁ ଖ୍ରୀ: ୧୮୬୬ରେ ପ୍ରକାଶିତ ସ୍ୱିନ୍‌ବାର୍ଣ୍ଣଙ୍କ 'ପଏମ୍‌ସ୍ ଆଣ୍ଡ୍ ବ୍ୟାଲେଡ୍‌ସ୍' ଭିକ୍ଟୋରିୟ ନୈତିକତାର ପ୍ରାଚୀର ଭେଦ-କରି ନବ ସ୍ୱୈରବାଦର ପଥ ଉନ୍ମୁକ୍ତ କଲା । କ୍ରମେ ତାହା ଅଧିକ ପ୍ରସାରିତ ହୋଇଥିଲା । ରୋସେଟି ଚିତ୍ରଧର୍ମିତା ଭିତରେ ଯେପରି ଇନ୍ଦ୍ରିୟପ୍ରବଣତାର ପ୍ରକାଶ ଘଟାଇଛନ୍ତି, ସ୍ୱିନ୍‌ବାର୍ଣ୍ଣ ସେହିପରି ସାଙ୍ଗୀତିକତା ଭିତରେ ଉକ୍ତ ଅନୁଭୂତିକୁ ପ୍ରକାଶ କରିଛନ୍ତି । ନିମ୍ନ ଉକ୍ତିରୁ ତାଙ୍କର ସାଙ୍ଗୀତିକତା ଓ ରୋମାଣ୍ଟିକ୍ ଇନ୍ଦ୍ରିୟପ୍ରବଣତାର ସୂଚନା ମିଳିବ ।

"Where shall we find her, how shall we sing to her,
Fold our hands round our knees, and cling ?
O that man's heart were as fire and could spring
to her
Fire, or the strength of the streems that spring !
For the stars and the winds are unto her
As raiment, as songs of the harp-player,
For the risen stars and the fallen cling to her,
And the south-west wind and the west wind sing."

—Atalanta

ସମସାମୟିକ ରୋମାଣ୍ଟିକ୍ ଚେତନା କବିତା ବ୍ୟତୀତ ସାହିତ୍ୟର ଅନ୍ୟାନ୍ୟ ବିଭାଗକୁ ମଧ୍ୟ ଆକ୍ରାନ୍ତ କରିଛି । ଷ୍ଟିଭେନ୍‌ସନ୍ (Robert Louis Stevenson : ୧୮୫୦-୯୪)ଙ୍କ 'ଟ୍ରେଜାର ଆଇଲ୍ୟାଣ୍ଡ'ପରି ଉପନ୍ୟାସ ଦୁଃସାହସିକ ଯାତ୍ରାକୁ ଉପଜୀବ୍ୟ କରି ଲେଖା ହୋଇଥିବାବେଳେ ୱାଲ୍‌ଟାର୍ ପେଟାର (Walter Pater : ୧୮୩୯-୯୪)ଙ୍କର ବ୍ୟକ୍ତିନିଷ୍ଠ ସମାଲୋଚନା ଆତ୍ମପ୍ରକାଶ କରିଛି । ବ୍ୟକ୍ତିଗତ ରୁଚି ଓ ମତ ହେଲା ଏହାର ନିୟାମକ । କାଜାମିଆଁଙ୍କ ଭାଷାରେ (Appreciations of Pater are recre-

ations, the substance of which is, we feel, drawn from himself.

ଗାଲ୍ଟିକ ଜର୍ଜବରୋ (George Borrow : ୧୮୦୩-୮୧) ନିଜେ ଏକ ଖିଆଲି ଜୀବନ ବିତେଇଛନ୍ତି । ନୀଚ, ବାସ୍ତୁହୀନ, ଗୁଣି ଗାରୁଡ଼ିରେ ବିଶ୍ୱାସୀ ଲୋକଙ୍କ ସହ ତାଙ୍କର କାରବାର । ସ୍ପେନ୍‌କୁ ସେ ବାଇବେଲ୍ ବିତରଣ କାମରେ ଯାଇଥିଲେ । ନିଜର ବିଚିତ୍ର ଅନୁଭୂତି 'ଦି ବାଇବେଲ୍ ଇନ୍ ସ୍ପେନ୍'ରେ ପ୍ରକାଶ କରିଛନ୍ତି । 'ଦି ରୋମାନି ରାଇ' (The Romany Rye : ୧୮୫୭)ରେ ଜିପ୍‌ସି ସମ୍ବନ୍ଧୀୟ ତାଙ୍କର ଅନୁଭୂତି ରୂପାୟିତ । ରିଚର୍ଡ ଜେଫାରିଜ(Richard Jefferies)ଙ୍କ ଗଦ୍ୟରେ ରହସ୍ୟମୟ ପ୍ରକୃତି ପୁଣି ଜୀବନ୍ତ ହୋଇଉଠିଛି ।

## ଉପନ୍ୟାସ :

ଭିକ୍ଟୋରୀୟ ଯୁଗରେ ସାହିତ୍ୟର ଅନ୍ୟାନ୍ୟ ଶାଖା ଅପେକ୍ଷା ଉପନ୍ୟାସ ସର୍ବାଧିକ ବିକାଶ ଲାଭ କରିଥିଲା । ଏଥିପାଇଁ ସମସାମୟିକ ପରିବେଶ ମୁଖ୍ୟତଃ ଦାୟୀ । ସୁଶାସନ ଓ ସାମାଜିକ ଜୀବନର ସ୍ଥିରତା, ବିଶେଷତଃ ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁଦୟ ଏଥିପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । ବିଜ୍ଞାନର ଅଗ୍ରଗତି ଓ ଶିଳ୍ପର ବିକାଶ ଫଳରେ ଯେଉଁ ନୂତନ ସାମାଜିକ ସମସ୍ୟାର ଉଦ୍‌ଭବ ହେଲା ଔପନ୍ୟାସିକମାନେ ତାହାକୁ ରୂପ ଦେବାରୁ ପାଠକଙ୍କ ଆଦର ଲାଭକଲେ । କେବଳ ଚିତ୍ତବିନୋଦନ ନୁହେଁ, ସମାଜକୁ ନୂଆ ଭାବରେ ଗଢ଼ିବାକୁ ଲେଖକମାନେ ପଥ-ପ୍ରଦର୍ଶକର ଭୂମିକା ଗ୍ରହଣକଲେ । ସମାଜ-ସଂସ୍କାର ପ୍ରବୃତ୍ତି ଓ ନୀତି-ନିଷ୍ଠତା ଏହି ଲେଖାରେ ଧ୍ୱନିତ ହେଲା । ଏଣୁ ଏ ଉପନ୍ୟାସ ମାନବବାଦୀ । ବିଜ୍ଞାନ ଏ ସାହିତ୍ୟକୁ ବାସ୍ତବମୁଖୀ ତଥା ବିଶ୍ଳେଷଣଧର୍ମୀ କରିଥିବାବେଳେ ଗଣତନ୍ତ୍ରର ବିକାଶ ଏହାକୁ ମାନବବାଦୀ ହେବାରେ ସାହାଯ୍ୟ କଲା । ଶିଳ୍ପାଞ୍ଚଳର ଅସ୍ୱାସ୍ଥ୍ୟକର ପରିବେଶ, ଶିଳ୍ପପତିଙ୍କର ଅମାନୁଷିକ ଶୋଷଣ, ଅପ୍ରାପ୍ତବୟସ୍କଙ୍କ ଉପରେ ନିର୍ଯ୍ୟାତନା, ଶିକ୍ଷାର ଦୁରବସ୍ଥା, ଧର୍ମାଧି-କାରୀଙ୍କ ଦୁର୍ନୀତିପରାୟଣତା, ରାଜନୀତିକ୍ଷେତ୍ରରେ ନିର୍ବାଚନର ପ୍ରହସନ, ବସ୍ତିବାଳୀୟର ମଜୁର ଗଡ଼ି ପରି ବିବିଧ ସାମାଜିକ ସମସ୍ୟା ଏଥିରେ ରୂପାୟିତ ହେଲା । ଡିକେନ୍‌ସ୍ ଥ୍ୟାକାରେ, ଜର୍ଜ ଇଲିଅଟ୍, ଶାର୍ଲଟ୍ ବ୍ରଣ୍ଟି ଓ ମେରେଡ଼ିଥ୍‌ଙ୍କ ରଚନାର ସମ୍ୟକ୍ ଆଲୋଚନା କଲେ ଏ ଯୁଗର ଉପନ୍ୟାସ ସାହିତ୍ୟ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିହେବ । ଏମାନଙ୍କ ମଧ୍ୟରୁ ଡିକେନ୍‌ସ୍‌ଙ୍କ 'ଏ ଟେଲ୍ ଅଫ୍ ଟୁ ସିଟିଜ୍' ଓ ଥାକାରେଙ୍କ 'ହେନ୍‌ରି ଏସ୍‌ମଣ୍ଡ' ପରି କେତୋଟି ଉପନ୍ୟାସ ଐତିହାସିକ ହୋଇଥିଲେ ମଧ୍ୟ ସାମାଜିକ ଉପନ୍ୟାସ ହିଁ ବିଶେଷ ଭାବରେ ଲେଖକ ତଥା ପାଠକଙ୍କୁ ଆକୃଷ୍ଟ କରିଛି ।

## ଚାର୍ଲସ ଡିକେନ୍ସ (Charles Dickens : ୧୮୧୨-୭୦) :

ଡିକେନ୍ସଙ୍କ ଜନ୍ମ ଲ୍ୟାଣ୍ଡପୋର୍ଟର ଗୋଟିଏ ଦରିଦ୍ର ପରିବାରରେ । ପିତା ନେଭି ଅଫିସର କିରାଣି, ଆଠଟି ସନ୍ତାନର ଜନକ; ମିତବ୍ୟୟିତା ଓ ଦୂରଦୃଷ୍ଟି ଅଭାବରୁ ଋଣ ସୁଝି



ନ ପାରି ସେ ଜେଲ ଯାଆନ୍ତି । ମା' ବହୁକଷ୍ଟରେ ହୋଟେଲ ଚଳାଇ ପରିବାରର ଖର୍ଚ୍ଚ ତୁଲାନ୍ତି । ଡିକେନ୍ସ ଏଗାର ବର୍ଷରେ ସ୍କୁଲ ଛାଡ଼ି ଗୋଟିଏ ରଙ୍ଗ କାରଖାନାରେ କାମ କଲେ । ସକାଳରୁ ସନ୍ଧ୍ୟା ଦୁର୍ବଳ ଦେହରେ ଖଟିବାକୁ ପଡ଼େ । ଅବସର ମିଳିଲେ ବଜାରି ଦୁଷ୍ଟ ପିଲାଙ୍କ ସାଥିରେ ମେଳ । ପିତାଙ୍କ ମୁକ୍ତି ପରେ ୱେଲିଂଟନ୍ ହାଉସ୍ ଏକାଡେମୀରେ ପୁଣି ନାଁ ଲେଖାହୁଏ । ଏହାର ପ୍ରଧାନ ଶିକ୍ଷକଙ୍କୁ ପାଠ-ଶାଠ ବିଶେଷ ଜଣା ନଥିଲା । ସେ ମାଡ଼ଗୁଣ୍ଡରେ ବିଶ୍ୱାସୀ । ଏହା ହିଁ ଥିଲା ତତ୍କାଳୀନ ଇଂଲଣ୍ଡର ବେସରକାରୀ ସ୍କୁଲର ଅବସ୍ଥା । ପନ୍ଦର ବର୍ଷ ବୟସରେ ପୁଣି ପାଠ ଛାଡ଼ିବାକୁ ପଡ଼ିଲା; ଜଣେ ଓକିଲଙ୍କ କିରାଣି ଭାବରେ ଯୋଗଦେଲେ; ରାତିରେ ସର୍ଟହ୍ୟାଣ୍ଡ ଶିଖୁଥାନ୍ତି । ଅବଶେଷରେ ଜଣେ ଖବରକାଗଜ ରିପୋର୍ଟର ହୋଇପାରିଥିଲେ । ଖବର ସଂଗ୍ରହ ପାଇଁ ଗାଁଗହଳି ତଥା ସହରର ଗଳିକନ୍ଦି ବୁଲିବାକୁ ପଡ଼ିଥିଲା । ଉପନ୍ୟାସ ଲେଖିବାପାଇଁ ଏସବୁ ଅଭିଜ୍ଞତା ସହାୟକ ହୋଇଥିଲା । ତାଙ୍କର ଗଳ୍ପ ସଂକଳନ 'ସ୍କେଚେସ୍ ବାଇ ବଜ୍' (୧୮୩୬) ଓ ଉପନ୍ୟାସ 'ପିକ୍ ଓ୍ୱିକ୍ ପେପର୍ସ' ପ୍ରକାଶିତ ହେବା ପରେ ଗାଲ୍ତିକ ଭାବରେ ତାଙ୍କର ଖ୍ୟାତି ପ୍ରସରି-ଯାଇଥିଲା । ସେ ଗୋଟିକ ପରେ ଗୋଟିଏ ଉପନ୍ୟାସ ଲେଖି ଚାଲିଲେ । ଏଗୁଡ଼ିକପାଇଁ ପ୍ରକାଶକ ଓ ପାଠକ ଚାହିଁରହୁଥିଲେ । ଅର୍ଥର ଅଭାବ ରହିଲା ନାହିଁ । ସେ କେତେକ ଅଭିନେତାଙ୍କୁ ନେଇ ତାଙ୍କ ଉପନ୍ୟାସର 'ନାଟକୀୟ ଆବୃତ୍ତି' ପରିବେଷଣ କଲେ । ଏଗୁଡ଼ିକ ବହୁ ଆଦୃତ ହୋଇଥିଲା । ଖ୍ରୀ: ୧୮୪୨ରେ ସେ ଆମେରିକା ଓ କାନାଡ଼ାକୁ ନିମନ୍ତ୍ରିତ ହେଲେ; କିନ୍ତୁ ଆମେରିକୀୟ ଜୀବନଧାରାକୁ ସେ ପସନ୍ଦ କରିପାରି ନଥିଲେ; ଏ ସମ୍ପର୍କରେ ଉପନ୍ୟାସ ଲେଖି ସମାଲୋଚିତ ହୋଇଥିଲେ । ଶେଷ ଜୀବନକୁ ତାଙ୍କର ପାରିବାରିକ ଜୀବନ ମଧ୍ୟ ଶାନ୍ତିପ୍ରଦ ନଥିଲା । ଖ୍ରୀ: ୧୮୫୮ରେ ନିଜ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେଲେ । ଜୀବନର ଶେଷ ପର୍ଯ୍ୟାୟରେ ମଧ୍ୟ ଉପନ୍ୟାସ ଲେଖା ଓ 'ନାଟକୀୟ ଆବୃତ୍ତି' ଯୋଜନା ଚାଲୁରଖିଥିଲେ । 'ଏଡ୍ ଓ୍ୱିନ୍ ଡ୍ରୁଡ୍' ତାଙ୍କର ଶେଷ ଅସମାପ୍ତ ଲେଖା ।

## ଡିକେନ୍‌ସଙ୍କ ଉପନ୍ୟାସ :

ଡିକେନ୍‌ସ୍ ଅନ୍ୟୂନ ସତରଟି ଉପନ୍ୟାସର ଲେଖକ । ତାଙ୍କର ବହୁସମାଦୃତ ରଚନା କେତୋଟି ହେଲା—'ଦ ପିକ୍‌ଓ୍ୱିକ୍ ପେପାର୍ସ' (୧୮୩୬), 'ଅଲିଭର ଟ୍ୱିଷ୍ଟ' (୧୮୩୭), 'ନିକୋଲାସ୍ ନିକ୍‌ଲବି' (୧୮୩୮), 'ଦ ଓଲ୍ଡ଼ କ୍ୟୁରିଅସିଟି ସପ୍' (୧୮୪୦), 'ମାର୍ଟିନ୍ ଚୁଜ୍‌ଲ୍ ଓ୍ୱିଟ୍' (୧୮୪୩), 'ଡେଭିଡ୍ କପାରଫିଲ୍ଡ଼' (୧୮୪୯-୫୦), 'ବ୍ଲିକ୍ ହାଉସ୍' (୧୮୫୨), 'ହାର୍ଡ଼ ଟାଇମ୍‌ସ୍' (୧୮୫୪), 'ଏ ଟେଲ୍ ଅଫ୍ ଟୁ ସିଟିଜ୍' (୧୮୫୯), 'ଗ୍ରେଟ୍ ଏକ୍‌ସପେକ୍‌ଟେସନ୍‌ସ୍' (୧୮୬୦) ଓ 'ଆଓ୍ୱାର୍ ମ୍ୟୁଚୁଏଲ ଫ୍ରେଣ୍ଡ୍‌ସ୍' (୧୮୬୪) ।

ଡିକେନ୍‌ସ୍‌ଙ୍କ ପ୍ରଥମ ଗଳ୍ପ ସଙ୍କଳନ 'ସ୍କେଚେସ୍ ବାଇ ବଜ୍' (Sketches by Boz : ୧୮୩୬) ରେ ଲଣ୍ଡନ ଜୀବନର ଚିତ୍ର ଅଙ୍କିତ । ସାଧାରଣ ଚକ୍ଷୁର ଅନ୍ତରାଳରେ ଗଢ଼ିଉଠିଥିବା କଳୁଷିତ ଜୀବନଧାରା ଏଥିରେ ଉଦ୍‌ଘାଟିତ ହୋଇଛି । ଖବରକାଗଜର ରିପୋର୍ଟ ଲେଖିବା ଅଭ୍ୟାସ ଏହା ଭିତରେ କାମ କରିଛି । ପରବର୍ତ୍ତୀ ରଚନା 'ଦ ପିକଓ୍ୱିକ୍ ପେପାର୍ସ' (The Pickwick Papers : ୧୮୩୬) ଜନ୍ତୁ ତାଙ୍କୁ ଉଚ୍ଚକୋଟୀର ଖ୍ୟାତି ଆଣିଦିଏ । ଜଣେ ସମ୍ପାଦକଙ୍କ ଅନୁରୋଧରେ ଧାରାବାହିକ ପ୍ରକାଶ ଉଦ୍ଦେଶ୍ୟରେ ସେ ଏହାର ପରିକଳ୍ପନା କରିଥିଲେ । ଏହାକୁ ଗୋଟିଏ ପର୍ଯ୍ୟଟନ ଉପନ୍ୟାସ (Picaresque novel) କୁହାଯାଇପାରେ । ସ୍ନିଗ୍ଧ ହାସ୍ୟରସିକ ଡିକେନସ୍ ବହୁବିଧ ଘଟଣା ଅନୁଭୂତିର ସମାବେଶ ପାଇଁ ଗୋଟିଏ କାଳ୍ପନିକ କ୍ଲବ୍(Pickwick Club)ର ପରିକଳ୍ପନା କରନ୍ତି । ଏହାର ସଭ୍ୟମାନେ ଇଂଲଣ୍ଡର ବିଭିନ୍ନ ସ୍ଥାନ ବୁଲି ନିଜ ନିଜର ଅଭିଜ୍ଞତା କ୍ଲବ୍‌କୁ ଜଣାଇଥାନ୍ତି । ବିଭିନ୍ନ ଘଟଣା ଓ ପରିବେଶର ଟିକିନିଖି ବିବରଣୀ ଅତ୍ୟନ୍ତ ପ୍ରୀତିପ୍ରଦ ଭାବରେ ବର୍ଣ୍ଣିତ । ଏଥିରେ ବର୍ଣ୍ଣିତ ଘଟଣାବଳୀ ମଧ୍ୟରେ ଐକ୍ୟ ଖୋଜିବା ବିଡ଼ମ୍ବନା ମାତ୍ର । ଚରିତ୍ରଚିତ୍ରଣରେ କିନ୍ତୁ ଅପୂର୍ବ ଦକ୍ଷତା ପ୍ରକାଶ ପାଇଛି । ସମଗ୍ର ଗଳ୍ପଗୁଚ୍ଛଟି ଭିତରେ ପ୍ରାୟ ସାଢ଼େ ତିନିଶହ ଚରିତ୍ର ପାଠକଙ୍କ ସମ୍ମୁଖୀନ ହୁଅନ୍ତି । ଏମାନଙ୍କ ମଧ୍ୟରୁ ମିଷ୍ଟର ପିକ୍‌ଓ୍ୱିକ, ଓ୍ୱାର୍ଲ, ସ୍ନଡ଼ଗ୍ରାସ, ଟପ୍‌ମ୍ୟାନ୍, ସାମଓ୍ୱେଲର୍ ପରି ଚରିତ୍ର ସ୍ୱୟଂ ଲେଖକଙ୍କ ପରି କାଳଜୟୀ । କଥାବସ୍ତୁର ପରିକଳ୍ପନା, ଚରିତ୍ରଚିତ୍ରଣ ତଥା ପ୍ରକାଶଭଙ୍ଗୀ—ସର୍ବତ୍ର ଲେଖକଙ୍କ ସ୍ନିଗ୍ଧ ପରିହାସ (humour)ର ଅବାରିତ ପ୍ରବାହ ପରିଦୃଷ୍ଟ ।

ଲେଖକଙ୍କ ଶ୍ରେଷ୍ଠ ଔପନ୍ୟାସିକ କୃତି 'ଡେଭିଡ୍ କପାରଫିଲ୍ଡ଼' (David Copperfield ; ୧୮୪୯-୫୦)

ଡେଭିଡ଼୍ କପାରଫିଲ୍ଡ଼ ଜଣେ ପିତୃହୀନ ବାଳକ । ତା'ର ମା' ଦ୍ୱିତୀୟ ବିଭା କରନ୍ତି । ନୂଆ ବାପା ମିଷ୍ଟର ମାର୍ଡ଼୍‌ଷ୍ଟୋନ୍ ପାଠ ପଢ଼ାଇବା ଆଳରେ ନିର୍ଘାତ ମାଡ଼ ଚଢ଼ାନ୍ତି । ମାଡ଼ଗୁଟ ପାଇଁ ସୁନାମ ଥିବା ଲଣ୍ଡନର ଗୋଟିଏ ପ୍ରାଇଭେଟ୍ ସ୍କୁଲରେ ଡେଭିଡ଼୍‌ର ନାମ ଲେଖାହୁଏ । ସ୍କୁଲରେ ଶିକ୍ଷକଙ୍କ ଅମାନୁଷିକ ବ୍ୟବହାର ମର୍ମନ୍ତୁଦ । ମାତାଙ୍କ ମୃତ୍ୟୁରେ

ପାଠପଢ଼ା ବନ୍ଦହୁଏ । ମିଷ୍ଟର ମାର୍ଡ୍‌ଷ୍ଟୋନ୍ ମଦ ଦୋକାନରେ ବୋତଲ ସଫା କରିବା ଭଳି ସମ୍ମାନହୀନ ଚାକିରିରେ ତାଙ୍କୁ ନିଯୁକ୍ତ କରନ୍ତି । ଡେଭିଡ଼୍ ନିଜର ସମ୍ପର୍କୀୟା ମାଉସୀ ବେଟ୍‌ସି ଟ୍ରଟ୍‌ଉଡ଼୍‌ଙ୍କ ଆଶ୍ରୟ ପାଏ । ଭାଗ୍ୟର ପରିବର୍ତ୍ତନ ଘଟେ । ଡେଭିଡ଼୍ ଓକିଲାତି ପଢ଼େ, ବିବାହ କରେ । ପ୍ରଥମ ପତ୍ନୀ ଡୋରାର ଅକାଳରେ ମୃତ୍ୟୁ ଘଟେ । ଡେଭିଡ଼୍ ଡୋରାର ବାନ୍ଧବୀ ଆଗ୍ନେସ୍‌ଙ୍କୁ ପୁଣି ବିବାହ କରେ । ଏହା ହିଁ ଡୋରାର ଶେଷ ଇଚ୍ଛା ଥିଲା ବୋଲି ଜଣାପଡ଼େ ।

ଉପନ୍ୟାସଟି ଆତ୍ମଜୀବନୀମୂଳକ । ଡେଭିଡ଼୍‌ର ବାଲ୍ୟାବସ୍ଥା ସହ ଲେଖକଙ୍କ ବାଲ୍ୟ ଜୀବନର ବହୁ ସାମ୍ୟ ରହିଛି । ଉପନ୍ୟାସର ଖାମ୍‌ଖିଆଲି ଅଦ୍ଭୁତକ ଆଶାବାଦୀ ଚରିତ୍ର ମିଷ୍ଟର ମିକ୍‌ଓ୍ୱାର ଓ ମିସେସ୍ ମିକ୍‌ଓ୍ୱାରଙ୍କ ଭିତରେ ଆମେ ଡିକେନ୍‌ସ୍‌ଙ୍କ ପିତାମାତାଙ୍କୁ ଭେଟୁଁ । ଡିକେନ୍‌ସ୍‌ଙ୍କ ଜୀବନର ଉତ୍ଥାନ ପତନ ଓ ବାଲ୍ୟ ଜୀବନର ଦୁରବସ୍ଥା ଡେଭିଡ଼୍-ଚରିତ୍ର ଭିତରେ ଅତି ନିଛକ ଭାବରେ ଫୁଟିଉଠିଥିବାରୁ କୁହାଯାଏ, ଲେଖକ ନିଜ ବୁକୁର ରକ୍ତକୁ ସ୍ୟାହି କରି ଏଇ ଉପନ୍ୟାସଟି ଲେଖିଛନ୍ତି—"The pen which wrote David Copperfield was of ten dipped in his own blood." (Hugh Walker) ।

ଘରୋଇ ଓ ସାମାଜିକ ପ୍ରତିକୂଳ ପରିବେଶ ପ୍ରତି ଗୋଟିଏ ସରଳ କିଶୋରର ପ୍ରତିକ୍ରିୟା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି । ଶିକ୍ଷାନୁଷ୍ଠାନର ନିଷ୍ଠୁରତା ବର୍ଣ୍ଣନା କରି ଲେଖକ ଡକ୍‌ଟର ଷ୍ଟ୍ରାର୍ଙ୍କ ସ୍କୁଲକୁ ଆଦର୍ଶ ଭାବରେ ଉପସ୍ଥାପିତ କରିଛନ୍ତି । କଥାବସ୍ତୁରେ ବହୁ ଅବାନ୍ତର ପ୍ରସଙ୍ଗ ସଂଯୋଜିତ । ଖଳନାୟକ ୟୁରିଆ ହିପ୍‌କୁ କେହି ଭୁଲିପାରେ ନାହିଁ । ଏତଦ୍‌ବ୍ୟତୀତ ସ୍ୱୟଂ ଡେଭିଡ୍, ତାର ଉପପିତା ମାର୍ଡଷ୍ଟୋନ୍, ମାଉସୀ ଟ୍ରଟ୍‌ଉଡ୍ ଓ ନିଷ୍ଠୁର ଶିକ୍ଷକ ମିଷ୍ଟର କ୍ରିକଲ ତାଙ୍କର ଭୂମିକା ସ୍ୱର୍ଣ୍ଣରେ ଅମର ହୋଇଛନ୍ତି ।

'ଏ ଟେଲ ଅଫ୍ ଟୁ ସିଟିଜ୍' (A Tale of two Cities : ୧୮୫୯) ଏକ ଐତିହାସିକ ଉପନ୍ୟାସ । ପ୍ୟାରିସ୍ ଓ ଲଣ୍ଡନ ଏଇ ଦୁଇ ନଗରୀକୁ ଘଟଣାର ପୃଷ୍ଠଭୂମି ଭାବରେ ଗ୍ରହଣ କରାଯାଇଛି । ଫରାସୀ-ବିପ୍ଲବର ଭୟାବହତା ଏଥିରୁ କଳ୍ପନା କରିହୁଏ ।

ନିରପରାଧ ଡାକ୍ତର ମ୍ୟାନେଟ୍ ଫରାସୀ ଅତ୍ୟାଚାରୀ ସାମନ୍ତ ଏଭ୍ରେମଣ୍ଡି ପରିବାର-ଦ୍ୱାରା ବହୁବର୍ଷ ବନ୍ଦୀ ହୋଇ ଅବଶେଷରେ ମୁକ୍ତି ପାଇଛନ୍ତି । ନିଜ ଝିଅ ଲୁସିର ସେବା-ଶୁଶ୍ରୂଷାରେ ସେ ପୁନର୍ଜୀବନ ଲାଭକରିଛନ୍ତି । ସେଇ ଅତ୍ୟାଚାରୀ ଏଭ୍ରେମଣ୍ଡି ପରିବାରର ଜନୈକ ହୃଦୟବାନ୍ ପୁରୁଷ ଚାର୍ଲସ ଡାର୍ନେ ଲଣ୍ଡନ ପଳାୟନ କରିଛି, ଲୁସିକୁ ସେ ଭଲ ପାଇ ବସିଛି । ବୃଦ୍ଧ ମ୍ୟାନେଟ୍ ଏଥିରେ ବାଧାଦେଇ ପାରିନାହାନ୍ତି । ସିଡ୍‌ନି କାର୍ଟନ ନାମକ ଜଣେ ଉଚ୍ଛୃଙ୍ଖଳ, ମଦ୍ୟପୀ ଓକିଲ ମଧ୍ୟ ଅନ୍ତରରେ ଲୁସିକୁ ଭଲପାଏ । ଇତିମଧ୍ୟରେ ଡାର୍ନେ ନିଜ ଚାକରର ଜୀବନ ରକ୍ଷାକରିବାକୁ ଯାଇ ପ୍ୟାରିସର ବିପ୍ଳବୀଜନତା ଦ୍ୱାରା ବନ୍ଦୀ ହୋଇଛି । ତାକୁ ମୃତ୍ୟୁଦଣ୍ଡାଦେଶ ହୋଇଛି । ସିଡ୍‌ନି କାର୍ଟନ ଓ ଡାର୍ନେ ଦେଖିବାକୁ

ଏକାପରି । ସିଡନି କାର୍ଟନ୍ ପ୍ରେମର ଚରମ ପରାକାଷ୍ଠା ପ୍ରଦର୍ଶନ କରିଛି । ସେ କୌଶଳକ୍ରମେ ଡାର୍ନେର ବନ୍ଦୀଶାଳାରେ ପ୍ରବେଶକରି ତାକୁ ମୁକ୍ତିଦେଇଛି । ନିଜେ ତା ବଦଳରେ ମୃତ୍ୟୁଦଣ୍ଡ ଭୋଗିଛି । ବିପ୍ଳବୀନାରୀଙ୍କ ମଧ୍ୟରେ ମାଡ଼ାମ୍ ଡିଫାର୍ଜଙ୍କ ରକ୍ତଲୋଲୁପୀ ଚରିତ୍ର ଅତ୍ୟନ୍ତ ପ୍ରାଣବନ୍ତ । ଦିନରାତି ତାଙ୍କର ଉଲ୍‌ବୁଣା କାମ ଚାଲିଛି, ତାରି ଦେହରେ ସେ ଶହ ଶହ ଅତ୍ୟାଚାରୀଙ୍କ ନାମ ଲେଖି ରଖିଛନ୍ତି । ଯାହାର ନାମ ସେଥିରେ ରହିଛି, ମୃତ୍ୟୁଦଣ୍ଡ ତାର ସୁନିଶ୍ଚିତ । ଟେଲ୍‌ସନ୍ ବ୍ୟାଙ୍କର ମ୍ୟାନେଜର ମିଷ୍ଟର ଲରୀ ସେହିପରି ଜଣେ ଉଦାର ହୃଦୟ, କର୍ତ୍ତବ୍ୟନିଷ୍ଠ କର୍ମଚାରୀ ଭାବରେ ପାଠକ ମନରେ ରେଖାପାତ କରନ୍ତି । ଲେଖକ ବିଭିନ୍ନ ସୂତ୍ରରୁ କିଛି ବିବରଣୀ ସଂଗ୍ରହ କରିଥିଲେ ମଧ୍ୟ ଐତିହାସିକ ପ୍ରାମାଣିକତା ରକ୍ଷାକରିବାକୁ ବିଶେଷ ଚେଷ୍ଟା କରିନାହାନ୍ତି । ତଥାପି ପରିବେଶ ସୃଷ୍ଟି ଦୃଷ୍ଟିରୁ ଏହାକୁ ଇତିହାସର ସମ୍ମାନ ଦିଆଯାଇପାରେ । ଅନ୍ୟାନ୍ୟ ଉପନ୍ୟାସ ପରି ପ୍ରତ୍ୟେକଟି ଘଟଣା କଥାବସ୍ତୁକୁ ଆଗେଇ ନେବାରେ ସାହାଯ୍ୟ କରୁଛି । ଚରିତ୍ରଚିତ୍ରଣରେ ମଧ୍ୟ ସାଫଲ୍ୟ ପରିଦୃଷ୍ଟ ହୁଏ । ଏହାର ଘଟଣା ବିନ୍ୟାସରେ ନାଟକୀୟତା ରକ୍ଷା କରାଯାଇଛି । ପର୍ଯ୍ୟବେକ୍ଷଣ ଶୈଳୀ ଚିତ୍ରଧର୍ମୀ ।

## ଔପନ୍ୟାସିକ ବୈଶିଷ୍ଟ୍ୟ :

ଡିକେନ୍‌ସଙ୍କ ଉପନ୍ୟାସର ପ୍ରଧାନ ବୈଶିଷ୍ଟ୍ୟ ତାଙ୍କର ସମାଜସଂସ୍କାର ମନୋବୃତ୍ତି । ଧର୍ମ, ରାଜନୀତି, ଶିଳ୍ପସଂସ୍ଥା ତଥା ଶିକ୍ଷାନୁଷ୍ଠାନର ବିଭିନ୍ନ ଦୋଷତ୍ରୁଟି ପ୍ରତି ସେ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ସମାଜ ତତ୍ତ୍ୱବିତ୍ ଦାର୍ଶନିକ ଭାବରେ ନୂତନ ସାମାଜିକ ଦର୍ଶନ ଉତ୍ଥାପନ କରିବା ତାଙ୍କର ଲକ୍ଷ୍ୟ ନ ଥିଲା । କେବଳ ଏଇ ସମାଜକୁ ସୁନ୍ଦରତର ଭାବରେ ଦେଖିବା ଥିଲା ତାଙ୍କର ଉଦ୍ଦେଶ୍ୟ, ପ୍ରଚଳିତ ସମାଜପ୍ରତି ସେ ବୀତସ୍ପୃହ ନ ଥିଲେ ।

ଖ୍ରୀଷ୍ଟୀୟ ଦାତବ୍ୟାନୁଷ୍ଠାନ (Parish) ମାନଙ୍କରେ ଅନାଥ ପିଲାଙ୍କୁ କିଭଳି ଅବହେଳା କରାଯାଉଥିଲା, ତାଙ୍କ ଉପରେ କିଭଳି ଅକଥନୀୟ ଅତ୍ୟାଚାର କରାଯାଉଥିଲା, ତାହା 'ଅଲିଭର୍ ଟ୍ୱିଷ୍ଟ'ରେ ବର୍ଣ୍ଣିତ । ଅଲିଭର୍ ଏହି ଅତ୍ୟାଚାର ସହି ନପାରି କିଭଳି ପଳାଇଯାଇଛି, ଶେଷରେ ଠକ ସର୍ଦ୍ଦାର ଫାଗିନ୍‌ର ଏକାଡେମୀରେ ତାଲିମ ପାଇଛି, ତାର କରୁଣ କାହାଣୀ ପାଠକର ହୃଦୟକୁ ଆନ୍ଦୋଳିତ କରେ । 'ନିକୋଲାସ ନିକଲବି'ରେ ଇଂଲଣ୍ଡର ତତ୍କାଳୀନ ଶିକ୍ଷାବ୍ୟବସ୍ଥା ସମାଲୋଚିତ । ସ୍କୁଲ ଶିକ୍ଷକଙ୍କ ଦୌରାତ୍ମ୍ୟ ଓ ଅତ୍ୟାଚାରରେ ପିଷ୍ଟ ହୋଇପଡ଼ୁଥିବା ପିଲାଙ୍କ ପ୍ରତି ଡିକେନ୍‌ସଙ୍କ ସମବେଦନା ଅତି ଗଭୀର । ଏହା ତାଙ୍କର ଶୈଶବର ଶିକ୍ଷାନୁଷ୍ଠାନ ଅନୁଭୂତିରେ ଶୋକାର୍ଦ୍ର । 'ଡେଭିଡ୍ କପାରଫିଲଡ୍'ରେ ମଧ୍ୟ ସେ ଏଇ ବେସରକାରୀ ଶିକ୍ଷାନୁଷ୍ଠାନର ମୁଖା ଉନ୍ମୋଚନ କରିଛନ୍ତି । 'ବ୍ଲିକ୍ ହାଉସ'ରେ ନ୍ୟାୟାଳୟର ମନ୍ଥର ବିଚାରଧାରା ଓ 'ହାର୍ଡ଼ ଟାଇମସ୍'ରେ ଯାନ୍ତ୍ରିକ ସଭ୍ୟତାର କୁଫଳ ବର୍ଣ୍ଣିତ । ମ୍ୟାନ୍‌ଚେଷ୍ଟାର୍‌ର ବସ୍ତ୍ରଶିଳ୍ପ ସଂସ୍ଥା ଏଠାରେ ଆଲୋଚିତ । ଶ୍ରମିକମାନଙ୍କ

ଦୁରବସ୍ଥା ଅତି କରୁଣ ଭାବରେ ଚିତ୍ରିତ ହୋଇଛି । ଉପନ୍ୟାସଟି ସେ କାର୍ଲାଇଲ୍‌ଙ୍କୁ ଉତ୍ସର୍ଗ କରିଛନ୍ତି ।

ସମାଜସଂସ୍କାର ଉଦ୍ଦେଶ୍ୟ ହୋଇଥିବାରୁ ଲେଖକ ନୈତିକତା ଉପରେ ଗୁରୁତ୍ୱ ଆରୋପ କରିବା ସ୍ୱାଭାବିକ; କିନ୍ତୁ ତାଙ୍କ ଲେଖାରୁ ମିଥ ବାଗୀଶର ଗୁରୁଗମ୍ଭୀର ସ୍ୱର ଶୁଣାଯାଏ ନାହିଁ; ଏ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ; ଏଣୁ ରଚନାର କଳାତ୍ମକତା ବ୍ୟାହତ ହୁଏ ନାହିଁ । ଅନ୍ୟାୟ, ଅତ୍ୟାଚାର ଓ ଅମିତର ଉପସ୍ଥାପନ କରିଥିଲେ ମଧ୍ୟ ଅବଶେଷରେ ସେ ତାହାକୁ ଅମ୍ପୃହଣୀୟ ବୋଲି ପ୍ରତ୍ୟାଖ୍ୟାନ କରନ୍ତି । ସାଧୁ, ସଚ୍ଚୋଟ ବ୍ୟକ୍ତି ପୁରସ୍କୃତ ହୁଏ, ଦୁଷ୍କୃତିକାରୀ ଦଣ୍ଡିତ ହୁଏ—ଏଇ କାବ୍ୟିକ ନ୍ୟାୟ ତାଙ୍କ ଉପନ୍ୟାସରେ ପ୍ରାୟତଃ ସର୍ବତ୍ର ରକ୍ଷିତ । ସମାଜର ଦୁର୍ବଳ ଶ୍ରେଣୀ ପ୍ରତି ସାମାଜିକ ନ୍ୟାୟ ପାଇଁ ତାଙ୍କର ସମଗ୍ର ସାଧନା ଉଦ୍ଦିଷ୍ଟ । —

କଥା ବିନ୍ୟାସରେ ଡିକେନ୍‌ସଙ୍କ ଦୁର୍ବଳତା ସହଜରେ ଆଖିରେ ପଡ଼େ । ସେ ମୂଳ କଥାବସ୍ତୁକୁ ଆଗେଇ ନେଉ ନଥିବା ବହୁ ଅବାନ୍ତର ପ୍ରସଙ୍ଗର ଅବତାରଣା କରିଥାନ୍ତି । ସମାଲୋଚକ ଡେଭିଡ୍ ସିସିଲ୍‌ଙ୍କ ମତରେ ତାଙ୍କ ଉପନ୍ୟାସ ଗୋଟିଏ ଗୋଟିଏ ବିଚିତ୍ର ମୁଣି; ଭିନ୍ନ ଭିନ୍ନ ଆକୃତିର ବିବିଧ ବସ୍ତୁ ଏଥିରେ ଜାକଜୁକ ଭର୍ତ୍ତି କରାହୋଇଥାଏ । ଶିଥିଳଭାବରେ ଗ୍ରଥିତ ବହୁ ଉପକଥା ଶେଷ ପର୍ଯ୍ୟନ୍ତ କୌଣସି ଉପସଂହାରରେ ନ ପହଞ୍ଚି ଅପୂର୍ଣ୍ଣ ରହିଯାଏ । ଡେଭିଡ୍ ସିସିଲ୍ ଏ ସମ୍ପର୍କରେ ଅତି ମଞ୍ଜୁଳ ଭାଷାରେ କହନ୍ତି—

Very often he leaves a great many threads loose till the last chapter; and then finds there is not enough time to tie them up neatly. The main strands are knotted roughly together, the minor wisps are left hanging forlornly.

ଅନେକ କ୍ଷେତ୍ରରେ ଡିକେନ୍‌ସଙ୍କ ଉପନ୍ୟାସ ଅତି ଅତିରଞ୍ଜନ ଦୋଷଦୁଷ୍ଟ । କିରୁଣ ଚିତ୍ରଟିଏ ଫୁଟାଇବାକୁ ଯିବାବେଳେ ସେ ତା ଉପରେ ଅତିରିକ୍ତ ଗୁରୁତ୍ୱ ଦେଇ ପାଠକକୁ ଅଧିକ ଶୋକାତୁର କରିବାକୁ ଚେଷ୍ଟା କରିଥାନ୍ତି । କେବଳ ଅବସ୍ଥାର ଯଥାଯଥ ଉପସ୍ଥାପନା ହୋଇ ପାରିଲେ ହିଁ ପାଠକ ହୃଦୟରେ ସ୍ୱତଃ କରୁଣଭାବର ଉଦ୍ରେକ ହୋଇପାରେ । ତା ନକରି ଡିକେନ୍‌ସ ପାଠକର ଅଶ୍ରୁପାତ ପର୍ଯ୍ୟନ୍ତ କଥାବସ୍ତୁର ଅତିରଞ୍ଜନ କରି ଚାଲିଥାନ୍ତି । ଡେଭିଡ୍ ସିସିଲ୍ ଯଥାର୍ଥରେ କହିଛନ୍ତି, "He overstates, He tries to wring an extra tear from the situation; he never lets it speak for itself," କଥା ବିନ୍ୟାସରେ ଦୁର୍ବଳତା ଥିଲେ ମଧ୍ୟ କଥନ ଭଙ୍ଗୀ ଅତି ମନୋରମ ।

କଥାବସ୍ତୁ ଅପେକ୍ଷା ଚରିତ୍ର ଚିତ୍ରଣ ଉପରେ ଲେଖକ ଅଧିକ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ଉପନ୍ୟାସରେ ଅସଂଖ୍ୟ ଚରିତ୍ରଙ୍କ ଭିଡ଼; କିନ୍ତୁ ପ୍ରତ୍ୟେକ ଚରିତ୍ରର କିଛି ନା କିଛି

ସ୍ୱାତନ୍ତ୍ର୍ୟ ରହିଛି । ଏଇ ଚରିତ୍ରକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇପାରେ; ଯଥା (୧) ଡେଭିଡ୍ କପାର୍‌ଫିଲଡ୍ ବା ଅଲିଭର ପରି ନିରୀହ ଶିଶୁ, (୨) ଫେଗିନ୍ ବା ୟୁରିଆହିପ୍ ପରି ଦୁରାତ୍ମା, (୩) ମିକର୍‌ଓ୍ୱାର ବା ସାମ୍‌ଓ୍ୱେଲାର ପରି ହାସ୍ୟକର ଚରିତ୍ର, (୪) 'ବ୍ଲିକ୍ ହାଉସ୍'ର ଲେଡି ଡେଡ୍‌ଲକ୍ ବା 'ଏ ଟେଲ ଅଫ ଟୁ ସିଟିଜ୍'ର ସିଡ୍‌ନି କାର୍ଟନ୍ ପରି ଅତି କୋମଳ ବା ଶକ୍ତିଶାଳୀ ଚରିତ୍ର । କାହାରି କାହାରି ମତରେ ତାଙ୍କ ଚରିତ୍ରଚିତ୍ରଣ ଦୋଷ-ରହିତ ନୁହେଁ; ସମସ୍ତ ଚରିତ୍ରକୁ ଅତିନାଟକ (melodrama)ର ଭଲ ଓ ମନ୍ଦ—ଏଇ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଚରିତ୍ରଗୁଡ଼ିକ ପ୍ରତୀକଧର୍ମୀ । ମାନସିକ ଜଟିଳତା-ସମ୍ପନ୍ନ ଚରିତ୍ର, ଶିକ୍ଷିତ ବା ଆଭିଜାତ୍ୟପୂର୍ଣ୍ଣ ଚରିତ୍ର ଚିତ୍ରଣରେ ତାଙ୍କର ପାରଦର୍ଶିତା ଲକ୍ଷ୍ୟ କରାଯାଏ ନାହିଁ । ନାରୀ ଚରିତ୍ର ଚିତ୍ରଣରେ ସେ ଅସମର୍ଥ, ବିଶେଷକରି ପ୍ରଣୟୀଳପ୍ରିୟା ନାରୀ ଚରିତ୍ର ଆଙ୍କିବା ତାଙ୍କ ଅକ୍ତିଆରର ବାହାରେ । ଅତିରଞ୍ଜନ ହେତୁ ଚରିତ୍ରଗୁଡ଼ିକ ଅବାସ୍ତବ ମନେହୁଏ ।

ଡିକେନ୍‌ସଙ୍କ ଅତିରଞ୍ଜନ ମୂଳରେ ତାଙ୍କର ତୀକ୍ଷ୍ଣ କଳ୍ପନାଶକ୍ତି କାର୍ଯ୍ୟ କରିଥାଏ । ଅନ୍ୟ ପକ୍ଷରେ କଳ୍ପନାର ପୁଟ ନ ଦେଲେ ଚରିତ୍ର ଗୁଡ଼ିକ ନିର୍ଜୀବ ହୋଇପଡ଼େ । ଏଣୁ ଦେଖାଯାଏ, ତାଙ୍କ ଚରିତ୍ର ଗୁଡ଼ିକ ବାସ୍ତବ ମନେ ନ ହେଲେ ମଧ୍ୟ ଅତିମାତ୍ରାରେ ଜୀବନ୍ତ । ଏଗୁଡ଼ିକ ଅଧିକାଂଶ ସରଳ (flat) ।

ହାସ୍ୟରସିକ ଭାବରେ ଡିକେନ୍‌ସ ଶାଶ୍ୱତ ଗୌରବର ଅଧିକାରୀ । ହାସ୍ୟରସକୁ ବାଦଦେଲେ ତାଙ୍କ ଉପନ୍ୟାସ ସମାଜସଂସ୍କାର ବିଷୟକ ପ୍ରାଣହୀନ ଗଦ୍ୟ ରଚନାରେ ପରିଣତ ହେବ । ତାଙ୍କ ହାସ୍ୟରସ ଅନାବିଳ, ସ୍ୱତଃସ୍ଫୂର୍ତ୍ତି ଓ ଉଚ୍ଛଳ । ଏହା ସ୍ଥୂଳ (broad) ସମ୍ବେଦନଶୀଳ (humane) ତଥା ସୃଜନଶୀଳ (creative) । ମି: ପିକ୍‌ଓ୍ୱିକ୍ ଓ ମି. ମିକାଓ୍ୱାର ପରି ଚରିତ୍ର ଏଭଳି ହାସ୍ୟରସ ଉଦ୍ରେକ ପାଇଁ ଅତ୍ୟନ୍ତ ଉପଯୋଗୀ । ତାଙ୍କର ହାସ୍ୟରସିକତା ବୌଦ୍ଧିକତାର ଆବରଣ ଭିତରେ ପ୍ରଚ୍ଛନ୍ନ ନୁହେଁ ।

ହାସ୍ୟରସ ଭଳି କରୁଣ ରସର ପ୍ରାଧାନ୍ୟ ମଧ୍ୟ ତାଙ୍କ ଉପନ୍ୟାସରେ ଦେଖାଯାଏ । କିନ୍ତୁ ଅତିନାଟକୀୟ ପରିବେଶ ଓ ଭୟଙ୍କର ଚରିତ୍ର ଚିତ୍ରଣରେ ତାଙ୍କର ପାରଦର୍ଶିତା କରୁଣ ରସ ସୃଷ୍ଟିରେ ଦେଖାଯାଏ ନାହିଁ । ଏଥିପାଇଁ ସେ ନିକୃଷ୍ଟ ଶ୍ରେଣୀର ପନ୍ଥା ଅବଲମ୍ବନ କରିଥାନ୍ତି । ଉଦାହରଣ ସ୍ୱରୂପ ଗ୍ରେଟ ପିଲାଙ୍କ ଯନ୍ତ୍ରଣା ଓ ମୃତ୍ୟୁ ତାଙ୍କର ଏକ ମୁଖ୍ୟ ଉପାଦାନ । ଉକ୍ତ ପ୍ରସଙ୍ଗକୁ ସେ ଟିକିନିଖି ଭାବରେ ବର୍ଣ୍ଣନ କରିଥାନ୍ତି । କିନ୍ତୁ ସେକ୍‌ସ-ପିଅର୍‌ଙ୍କ ପରି ଉଚ୍ଚକୋଟୀର ଟ୍ରାଜିକ୍ ଚରିତ୍ର ସୃଷ୍ଟିକରିବା ତାଙ୍କ ପକ୍ଷରେ ସମ୍ଭବ ହୋଇନାହିଁ ।

ଡିକେନ୍‌ସଙ୍କ ଶୈଳୀ ମଧ୍ୟ ମାର୍ଜିତ ବୋଲି କହିହେବ ନାହିଁ; କିନ୍ତୁ ଏହା ସ୍ୱଚ୍ଛ । ଆଖ୍ୟାନରୀତି ଅତିଦ୍ରୁତ । ଶବ୍ଦ କସରତ (Pun) ତାଙ୍କ ଶୈଳୀର ଏକ ସାଧାରଣ ବିଷୟ । ବ୍ୟାବହାରିକ ଜୀବନର କଥିତ ଭାଷା ( Cockneyism ) ଓ ଶବ୍ଦବାହୁଲ୍ୟ

(Circumlocution) ତାଙ୍କ ରଚନାର କଳାସୌଷ୍ଠବ ହ୍ରାସକରେ; କିନ୍ତୁ କେତେକ ଆବେଗଭରା କରୁଣ ପରିବେଶର ବର୍ଣ୍ଣନାବେଳେ ସେ ପଦ୍ୟମୟୀ ଭାଷାରେ ଗୀତି-କବିତାର ଉଚ୍ଛ୍ୱାସ ସୃଷ୍ଟି କରିଥାଆନ୍ତି ।

ଥ୍ୟାକାରେ (William Makepeace Thackeray : ୧୮୧୧-୬୩)ଙ୍କ ଜନ୍ମ କଲିକତାରେ । ପାଞ୍ଚବର୍ଷ ବୟସବେଳକୁ ପିତାଙ୍କ ମୃତ୍ୟୁହୁଏ । ଶିକ୍ଷାଲାଭ ପାଇଁ ସେ ଲଣ୍ଡନ ଯାଆନ୍ତି । ସ୍କୁଲ୍ ଜୀବନରେ ଖୁବ୍ ଅଳସୁଆ, ମାନବିକ ମୂଲ୍ୟବୋଧ ସମ୍ବନ୍ଧରେ ଅନାସ୍ଥାଶୀଳ (Cynical) । ସ୍କେଚ୍ କରିବା ଓ ବିଦ୍ରୂପାତ୍ମକ କବିତା ଲେଖିବାରେ ତାଙ୍କର ବିଶେଷ ଆଗ୍ରହଥିଲା । ସେ ଚିତ୍ରକଳା ଅଧ୍ୟୟନ କରିଥିଲେ । ଅବଶେଷରେ ସାମ୍ବାଦିକତାକୁ ପେଶାକଲେ । ଡିକେନ୍‌ସ୍ ବା ସ୍କଟ୍‌ଙ୍କ ପରି ଆକାରରେ ଅଧିକ ସଂଖ୍ୟକ ଉପନ୍ୟାସ ଲେଖି ନ ଥିଲେ ମଧ୍ୟ କଳାତ୍ମକତା ପ୍ରତି ଅଧିକ ଦୃଷ୍ଟି ଦେଇଛନ୍ତି । ଭ୍ୟାନିଟି ଫେଅାର୍ (୧୮୪୭ ୪୮), ପେନ୍ ଡେନିସ (୧୮୪୮-୫୦), ହେନେରୀ ଏସମଣ୍ଡ (୧୮୫୨-୫୩) ଓ ଦି କାମ୍‌ସ୍ (୧୮୫୩-୫୫) ତାଙ୍କର କେତୋଟି ସାର୍ଥକ ରଚନା ।



'ଭ୍ୟାନିଟି ଫେଅାର୍' ଲେଖକଙ୍କର ସର୍ବାଧିକ ଜନପ୍ରିୟ ସୃଷ୍ଟି । ବ୍ଲୁମ୍‌ସ୍ ବେରି-ସ୍କୋୟାର ଅଞ୍ଚଳର ଉଚ୍ଚମଧ୍ୟବିତ୍ତ ଶ୍ରେଣୀର ବାସ୍ତବ ସ୍ୱରୂପ ଉଦ୍‌ଘାଟନ ଏହାର ଉଦ୍ଦେଶ୍ୟ । ବାହ୍ୟ ଆଡ଼ମ୍ବର ତଳେ ଏ ସମାଜର କୁତ୍ସିତ ରୂପ ଲେଖକଙ୍କ ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ହୋଇଛି । ଲେଖକଙ୍କ ଦୃଷ୍ଟିରେ ଏ ସମାଜ ଗୋଟିଏ ଆତ୍ମପ୍ରୌଢ଼ିର ମେଳା (Vainity-fair) । ଏଠି ସବୁବେଳେ ଆତ୍ମପ୍ରୌଢ଼ି (ଫୁଟାଣି)ର ବିକାକିଣା ଚାଲିଛି; ଠକ, ଭଣ୍ଡ ଓ ନିର୍ବୋଧଙ୍କ ଭିଡ଼ ସବୁବେଳେ ଲାଗିରହିଛି ।

ଏମେଲିଆ ଓ ବେକିସାର୍ପ—ଏଇ ଦୁଇ ନାରୀ ଚରିତ୍ରକୁ କେନ୍ଦ୍ରକରି ଉପନ୍ୟାସର କଥାବସ୍ତୁ ଗଢ଼ିଉଠିଛି । ଏମେଲିଆ ସୁଚରିତା, ପତିପରାୟଣା କିନ୍ତୁ ଅତି ସରଳ ପ୍ରକୃତିର । ଅନ୍ୟ ପକ୍ଷରେ ବେକି ସାର୍ପ ବିଚକ୍ଷଣା, ଧୂର୍ତ୍ତା । ପିତା ତାର ଦରିଦ୍ର ଶିଳ୍ପୀ, ମାତା ନର୍ତ୍ତକୀ । ନାରୀତ୍ୱର ବିନିମୟରେ ବି ବେକି ଚାହେଁ ସାମାଜିକ ପ୍ରତିଷ୍ଠା । ଏମେଲିଆର ସ୍ୱାମୀ ତା କବଳରେ ପଡ଼ିଛି । ସ୍ୱାମୀର ମୃତ୍ୟୁପରେ ହିଁ ଏମେଲିଆ ପ୍ରକୃତ ଘଟଣା ଜାଣିଛି ଓ ନିଜର ଏକନିଷ୍ଠ ପ୍ରେମିକ କାପ୍‌ଟେନ୍ ଡବିନ୍‌ଙ୍କୁ ଗ୍ରହଣକରିଛି ।

ଉପନ୍ୟାସଟିର ବିଷୟ-ପରିକଳ୍ପନା ଅତି ଦୁର୍ବଳ; ଐକ୍ୟ ବ୍ୟାହତ । କଥାବସ୍ତୁର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳ ନାହିଁ । ଘଟଣାଗୁଡ଼ିକ ଅତି ଶିଥିଳ ଭାବରେ ଗ୍ରଥିତ ।

ଚରିତ୍ର ଚିତ୍ରଣରେ କିନ୍ତୁ ଥ୍ୟାକାରେଙ୍କର ପ୍ରତିଭା ଅସାମାନ୍ୟ । ଅସାଧାରଣ ଧୂର୍ତ୍ତାମି, ଛଳନା ଓ କୌଶଳ ମଧ୍ୟରେ ସ୍ୱାର୍ଥ ସାଧନର ପ୍ରୟାସ ଭଳି କଥାବସ୍ତୁ ଉପନ୍ୟାସଟିକୁ ଯେଉଁଭଳି ବାସ୍ତବ ସେହିଭଳି ଜୀବନ୍ତ କରି ତୋଳିଛି । ସମ୍ପୂର୍ଣ୍ଣ ଭଲ ବା ସମ୍ପୂର୍ଣ୍ଣ ମନ୍ଦ ଚରିତ୍ର ସାଧାରଣତଃ ତାଙ୍କ ଉପନ୍ୟାସରେ ଦେଖାଯାଏନାହିଁ; ବୁଦ୍ଧିମତ୍ତାସହ ଚରିତ୍ରହୀନତା ଓ ସାଧୁତା ସହ ନିର୍ବୋଧତାର ସମନ୍ୱୟ ଘଟାଇଥାନ୍ତି । ଏହାକୁ ମାନବିକ ମୂଲ୍ୟବୋଧ ଉପରେ ଅନାସ୍ଥାଶୀଳତା (Cynicism)ର ଲକ୍ଷଣ ବୋଲି କେହି କେହି କହିଥାନ୍ତି । ଏହା ନାୟକ (hero) ବିରହିତ ଉପନ୍ୟାସ ।

ହେନେରୀ ଏସ୍‌ମଣ୍ଡ (The History of Henry Esmond ; ୧୮୫୨) ଥ୍ୟାକାରେଙ୍କ ସର୍ବଶ୍ରେଷ୍ଠ ରଚନା । ଏହା ଏକ ଐତିହାସିକ ଉପନ୍ୟାସ । ଅଷ୍ଟାଦଶ ଶତାବ୍ଦୀର ଐତିହାସିକ ପରିବେଶ ଏହାର ଅବଲମ୍ବନ । କର୍ଣ୍ଣେଲ୍ ଏସ୍‌ମଣ୍ଡ ଏହାର ନାୟକ । ତାର ଆତ୍ମକାହାଣୀ ଭିତରେ ରାଣୀ ଏନେ (Anne)ଙ୍କ ଦରବାର ଓ ସମସାମୟିକ ଐତିହାସିକ ଘଟଣାର ଉପସ୍ଥାପନା କରାଯାଇଛି । ତୀବ୍ର କଳ୍ପନାଶକ୍ତି ସାହାଯ୍ୟରେ ଲେଖକ ତତ୍କାଳୀନ ପରିବେଶର ସଠିକ ପୁନର୍ନିର୍ମାଣ କରିପାରିଛନ୍ତି । କେବଳ ସେତିକି ନୁହେଁ, ଅଷ୍ଟାଦଶ ଶତାବ୍ଦୀର ଭାଷାକୁ ମଧ୍ୟ ଅନୁକରଣ କରି ସେ ଏଥିରେ ପ୍ରୟୋଗ କରିଛନ୍ତି । ଏ ଉପନ୍ୟାସର ଶୈଳୀ ଏଡ଼ିସନ୍ ଓ ଷ୍ଟିଲ୍‌ଙ୍କ ଶୈଳୀଠାରୁ ବିଶେଷ ପୃଥକ୍ ନୁହେଁ । ଅଷ୍ଟାଦଶ ଶତାବ୍ଦୀର ସାହିତ୍ୟ, ସଂସ୍କୃତି ତଥା ସମାଜ ପ୍ରତି ଲେଖକଙ୍କର ବିଶେଷ ଆଗ୍ରହ ହେତୁ ଏପରି ହୋଇଛି । ବିଷୟ ବିନ୍ୟାସ ଦୃଷ୍ଟିରୁ ଲେଖକଙ୍କର ଏକମାତ୍ର ଏହି ଉପନ୍ୟାସଟି ତ୍ରୁଟିବିହୀନ । ଚରିତ୍ର ଚିତ୍ରଣର ଶ୍ରେଷ୍ଠ ନିଦର୍ଶନ ଏଇଠାରେ ହିଁ ପ୍ରକାଶପାଇଛି । ହେନେରୀ ଏସ୍‌ମଣ୍ଡ ଓ ଲେଡ଼ି କେସ୍‌ଲ ଉଡ୍‌ଙ୍କ ଚରିତ୍ର ଏହାର ଉଦାହରଣ ।

**ଉପନ୍ୟାସର ବୈଶିଷ୍ଟ୍ୟ :** ସମସାମୟିକ ଉପନ୍ୟାସ ଧାରାରୁ ଥାକାରେଙ୍କ ଉପନ୍ୟାସ କେତେକ ମାତ୍ରାରେ ପୃଥକ୍ । ତାଙ୍କ ରଚନା ସମସାମୟିକ ରୋମାନ୍‌ସ୍ ଓ ସେଣ୍ଟିମେଣ୍ଟର୍ ପ୍ରତିକ୍ରିୟା ବୋଲି କୁହାଯାଇପାରେ । ସେ ବାସ୍ତବବାଦୀ; ତାଙ୍କର ଆବେଗ ଅପେକ୍ଷାକୃତ ସଂଯତ । ଡିକେନ୍‌ସଙ୍କ ପରି ସେ ଆବେଗର ଆତିଶଯ୍ୟରେ କଥା କଥାକେ ଲୁହ ଝରାନ୍ତି ନାହିଁ । ଜୀବନକୁ ଓ ସମାଜକୁ ସେ ଯେଉଁଭଳି ଭାବରେ ଦେଖନ୍ତି, ସେଇ ଭାବରେହିଁ ଆଙ୍କନ୍ତି । ତାଙ୍କ ଭାଷାରେ "I have no brains above my eyes, describe what I see." ଦୁର୍ବଳ ଓ ଦୁରାତ୍ମାଙ୍କ ଚିତ୍ର ସେ ଯଥାଯଥ ଭାବରେ ଆଙ୍କି ପାରିଛନ୍ତି; କିନ୍ତୁ ଏଇମାନେ ହିଁ ତାଙ୍କ ଉପନ୍ୟାସରେ ପ୍ରାଧାନ୍ୟ ବିସ୍ତାର କରିଥିବାର ଦେଖାଯାଏ । ସମାଜର ନିମ୍ନଶ୍ରେଣୀ ଅପେକ୍ଷା ଉଚ୍ଚମଧ୍ୟବିତ୍ତ ଶ୍ରେଣୀ ସମ୍ପର୍କରେ ସେ ଅଧିକ ଆଗ୍ରହୀ । ନାରୀଚରିତ୍ର ଚିତ୍ରଣରେ ସେ ଡିକେନ୍‌ସଙ୍କଠାରୁ ଅଧିକ ସଫଳ; କିନ୍ତୁ ଭିକ୍ଟୋରୀୟ ନୀତି ଓ ଆଦର୍ଶବାଦ ଭିତରେ ଅବରୁଦ୍ଧ ହୋଇ ତାଙ୍କ ନାରୀଚରିତ୍ରର ଆବେଗ ଓ ଅନୁଭୂତି ସ୍ୱଚ୍ଛନ୍ଦ ଭାବରେ ପ୍ରକାଶ ପାଇନାହିଁ ।

ସମାଜର ଦୋଷ ଦୁର୍ବଳତା ପ୍ରତି ବ୍ୟଙ୍ଗ ବିଦ୍ରୂପ କରୁଥିବାବେଳେ ସେ ଅତ୍ୟନ୍ତ ସମବେଦନଶୀଳ । ପୋପ୍‌ଙ୍କ ବ୍ୟକ୍ତିଗତ ଆକ୍ରୋଶ ବା ସ୍ୱିଫ୍‌ଟଙ୍କ ନିଷ୍ଠୁରତା ଏଥିରେ ନାହିଁ । ଡିକେନ୍‌ସ୍ ସ୍ଥୂଳ ହାସ୍ୟରସ ଓ କରୁଣ ରସର ଆତିଶଯ୍ୟରେ ଆଗ୍ରହୀ ହୋଇଥିବାବେଳେ ଥାକାରେଙ୍କ ଭାବାବେଗ ସଂଯତ ତଥା ପରିମିତ । ସୃଷ୍ଟିର ପ୍ରାଚୁର୍ଯ୍ୟ ଅପେକ୍ଷା ସେ 'ତୀକ୍ଷ୍ଣ' ପର୍ଯ୍ୟବେକ୍ଷଣ ଓ ସୂକ୍ଷ୍ମ ବିଶ୍ଳେଷଣ ଉପରେ ଗୁରୁତ୍ୱ ଦେଇଛନ୍ତି ।

## ଭିକ୍ଟୋରୀୟ ନାରୀ ଔପନ୍ୟାସିକ :

ଭିକ୍ଟୋରୀୟ ଉପନ୍ୟାସ ଜଗତରେ କେତେଜଣ ନାରୀ ସ୍ରଷ୍ଟାଙ୍କ ଆବିର୍ଭାବ ଏହାର ସମୃଦ୍ଧିରେ ସହାୟତା କରିଛି । ବ୍ରଣ୍ଟି ଭଗିନୀତ୍ରୟ, ଜର୍ଜ ଇଲିଅଟ୍ ଓ ମିସେସ୍ ଗ୍ୟାସ୍‌କେଲ୍‌ଙ୍କ ନାମ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ।

ବ୍ରଣ୍ଟି ଭଗିନୀତ୍ରୟ ସାର୍ଲଟ (୧୮୧୬-୫୫), ଏମିଲି (୧୮୧୮-୪୮) ଓ ଏନ୍ (୧୮୨୦-୪୯)ଙ୍କ ମଧ୍ୟରୁ ସାର୍ଲଟଙ୍କ ରଚନା ସର୍ବାଧିକ । ଏମିଲି ମାତ୍ର ଗୋଟିଏ ଉପନ୍ୟାସ ଲେଖି ଅମର ହୋଇଛନ୍ତି । ଏନ୍ ବିଶେଷ ପ୍ରତିଭାର ଅଧିକାରୀ ନଥିଲେ ।



ସାର୍ଲଟ ବ୍ରଣ୍ଟିଙ୍କ ପ୍ରଥମ ଉପନ୍ୟାସ 'ଦି ପ୍ରଫେସର' ନିଜର ବ୍ୟକ୍ତିଗତ ଜୀବନର ଅନୁଭୂତି ଉପରେ ଆଧାରିତ । ଏହା ଏକ ଚେଷ୍ଟାକୃତ, ନିକୃଷ୍ଟ ଧରଣର ରଚନା । ଲେଖିକାଙ୍କ ମୃତ୍ୟୁ ପରେହିଁ ଏହାର ପ୍ରକାଶ ସମ୍ଭବ ହୋଇଛି । ତାଙ୍କର ଅନ୍ୟ ତିନୋଟି ରଚନା ଜେନ୍ ଆୟାର୍ (୧୮୪୭), ସାର୍ଲି (୧୮୪୯) ଓ ଭିଲେଟ୍ (୧୮୫୩) ମଧ୍ୟରୁ 'ଜେନ୍ ଆୟାର୍' ସର୍ବଶ୍ରେଷ୍ଠ ବିବେଚିତ ହୁଏ ।

ନାୟିକା ଜେନ୍ ଆୟାର୍ ଶୈଶବରୁ ପିତୃ-ମାତୃହୀନା । କୌଣସି ସମ୍ପର୍କୀୟା ଘରେ ପିତାମାତା ତାଙ୍କୁ ରଖେଇଥିଲେ । ଅଭିଭାବିକାଙ୍କ ଦୌରାତ୍ମ୍ୟରେ ସେ ପଳାୟନ କରି କୌଣସି ଦାତବ୍ୟ ଅନୁଷ୍ଠାନରେ ଆଶ୍ରୟପାଏ । ପାଠ ପଢ଼େ, ଶିକ୍ଷକତା କରେ, ଅବଶେଷରେ ଜଣଙ୍କର ଗୃହ ଶିକ୍ଷିକା ନିଯୁକ୍ତ ହୁଏ । ଗୃହସ୍ୱାମୀ ରୋଚେଷ୍ଟାର୍ ତାଙ୍କ ପ୍ରେମରେ ପଡ଼ନ୍ତି । ବିବାହ ଦିନ ସ୍ଥିର ହୁଏ । ଏତିକିବେଳେ ଜେନ୍ ଜାଣିପାରେ ଗୃହସ୍ୱାମୀଙ୍କ ଅର୍ଦ୍ଧପାଗଳ ଜୀବିତା ସ୍ତ୍ରୀ କଥା । ଜେନ୍ ରୋଚେଷ୍ଟାରଙ୍କ ଘରୁ ପଳାୟନକରେ । ହତାଶ ହୋଇ ବୁଲୁ ବୁଲୁ ଧର୍ମଯାଜକ ରିଭର୍ସଙ୍କ ପ୍ରଭାବରେ ସେ ପୁଣି ରୋଚେଷ୍ଟାରଙ୍କୁ ବିବାହ କରିବାକୁ ରାଜିହୁଏ । ବିବାହପରେ ସ୍ୱାମୀ ସହିତ ଭାରତକୁ ଚାଲିଯିବାର ସ୍ଥିର ହୁଏ;

କିନ୍ତୁ ଏଇ ସିଦ୍ଧାନ୍ତ ନେଇ ରୋଚେଷ୍ଟାରଙ୍କ ପାଖକୁ ଯିବାବେଳକୁ ସେ ଅଗ୍ନିଦଗ୍ଧ ଓ ବିକଳାଙ୍ଗ । ତଥାପି ବିବାହ ସମ୍ପନ୍ନ ହୋଇଯାଏ ।

କଥାବସ୍ତୁର ବିନ୍ୟାସକୁ ଲକ୍ଷ୍ୟକଲେ ସାର୍ଲଟଙ୍କ ବୈଶିଷ୍ଟ୍ୟ ବୁଝାଯାଏ । ଗତାନୁଗତିକ ଧାରାରେ ନାୟକ ନାୟିକାଙ୍କ ମିଳନ ଆନନ୍ଦମୁଖର ହୋଇନାହିଁ । ଏଥିରେ କାରୁଣ୍ୟର ଆବେଦନ ଉଣା ନୁହେଁ । କଥାବସ୍ତୁ ବ୍ୟତୀତ ଅତ୍ୟନ୍ତ ଦ୍ୱିଧାହୀନ ଭାବରେ ସେ ନାରୀ ମନର ବାସ୍ତବଧର୍ମୀ ଚିତ୍ର ଆଙ୍କି ଭିକ୍ଟୋରୀୟ ଉପନ୍ୟାସରେ ନୂତନତାର ସ୍ପନ୍ଦନ ଖେଳାଇ ଦେଇଛନ୍ତି ।

ଉପନ୍ୟାସଟିରେ ବାସ୍ତବତା ଓ ରୋମାଣ୍ଟିସିଜିମ୍‌ର ଅପୂର୍ବ ସମନ୍ୱୟ ଦେଖାଯାଏ । ଅନାଥାଶ୍ରମରେ ଆଶ୍ରୟ ଓ ସ୍କୁଲ ଅଭିଜ୍ଞତା କଥା ନିଜ ଜୀବନର ବାସ୍ତବ ଘଟଣା । ଏହା ସାଙ୍ଗକୁ ସେ ରୋଚେଷ୍ଟାରଙ୍କ ସହ ପ୍ରେମ ଭଳି ଏକ ରୋମାଣ୍ଟିକ୍ ପ୍ଲଟ୍ ସଂଯୋଜିତ କରିଛନ୍ତି ।

ସାର୍ଲଟଙ୍କ ଅନ୍ୟ ଦୁଇଟି ରଚନା ସାର୍ଲି ଓ ଭିଲେଟ୍ ମଧ୍ୟ ତାଙ୍କ ବ୍ୟକ୍ତିଗତ ଅନୁଭୂତି ଉପରେ ଆଧାରିତ । ବେଳେବେଳେ ସେ ଅତି ଭାବଗମ୍ଭୀର । ହାସ୍ୟର କଲ୍ଲୋଳରେ ତାର ତୀବ୍ରତା ହ୍ରାସପାଏନାହିଁ; ପୁଣି କେତେବେଳେ ତାଙ୍କର ଆବେଗର ଆଧିକ୍ୟ ମାନସିକ ଭାରସାମ୍ୟହୀନତାର ସ୍ତରରେ ଉପନୀତ ହୋଇଥାଏ । ଏହାହିଁ ଥିଲା ତାଙ୍କ ନିଃସଙ୍ଗ ଜୀବନର ଅବସ୍ଥା । ଉପନ୍ୟାସରେ ଏହି ଭାରସାମ୍ୟହୀନ ରୋମାଣ୍ଟିସିଜିମ୍ (unbalanced romanticism) ସହିତ ସେ ଥ୍ୟାକାରେଙ୍କ ବାସ୍ତବବାଦର ସମନ୍ୱୟ ଘଟାଇଛନ୍ତି ।

'ଏମିଲି ବ୍ରଣ୍ଟି' (Emile Bronte) ଗୋଟିଏ ମାତ୍ର ଉପନ୍ୟାସ 'ଉଦାରିଂ ହାଇଟ୍‌ସ (Wuthering Heights; ୧୮୪୭) ଲେଖିଥିଲେ ମଧ୍ୟ ଭଗିନୀ ତ୍ରୟଙ୍କ ମଧ୍ୟରେ ସେଇହିଁ ଶ୍ରେଷ୍ଠ ଲେଖିକା ।



ଉଦାରିଂ ହାଇଟ୍‌ସ୍ ଗୋଟିଏ ପ୍ରାଚୀନ ଖମାର ଘରର ନାମ । ମିଷ୍ଟର ଆର୍ନସ୍ ଏହାର ମାଲିକ । ଆର୍ନସଙ୍କ ପୁଅ ହିଣ୍ଡଲେ ଓ ଝିଅ କ୍ୟାଥରିନ୍ । ଆର୍ନସ ଗୋଟିଏ ଅନାଥ ନୀଚ ଜାତୀୟ ବାଳକ ହିଥ୍‌କ୍ଲିଫ୍‌କୁ ଆଦରରେ ନିଜ ଘରେ ରଖନ୍ତି, ନିଜର ସନ୍ତାନ ଭଳି ପ୍ରତିପାଳନ କରନ୍ତି । ଯୌବନରେ କିନ୍ତୁ ସମସ୍ୟା ଦେଖାଦିଏ । ହିଥ୍‌କ୍ଲିଫ୍ ଓ କ୍ୟାଥେରିନ୍ ପରସ୍ପରକୁ ଭଲପାଆନ୍ତି, ହିଣ୍ଡଲେ ତାର ବିରୋଧ କରେ । ମିଷ୍ଟର ଆର୍ନସ ଏତେବେଳକୁ ମୃତ । ହିଣ୍ଡଲେର ଦୁର୍ବ୍ୟବହାର ହେତୁ ହିଥ୍‌କ୍ଲିଫ୍ ପଳାୟନ କରେ; ମାତ୍ର କେଇବର୍ଷ ପରେ ବିପୁଳ ସମ୍ପଦର

ଅଧିକାରୀହୋଇ, ମାମାଙ୍କ ପ୍ରତିଷ୍ଠା ଅର୍ଜନ କରି ଫେରିଆସେ ଉଦାହରଣ ହାଇଟ୍ସକୁ । କ୍ୟାଥେରିନ୍ କିନ୍ତୁ ଅନ୍ୟ ଏକ ସମ୍ଭ୍ରାନ୍ତ ପରିବାରର ଏଡ୍‌ଗାର୍‌ଲିଣ୍ଟନ୍‌କୁ ବିବାହ କରିଯାଇଛି । ହିଥ୍‌କ୍ଲିଫ୍ ଫେରିବା ପରେ କ୍ୟାଥେରିନ୍ ମନରେ ତୀବ୍ର ଦ୍ୱନ୍ଦ୍ୱ ଦେଖା-ଦେଇଛି । ସେଥିରେ ସେ ପ୍ରାଣତ୍ୟାଗ କରିଛି । ହିଣ୍ଡ୍‌ଲେଙ୍କୁ ସମସ୍ତ ଦୁର୍ଯୋଗର କାରଣ ବୋଲି ଧରିନେଇ ହିଥ୍‌କ୍ଲିଫ୍ ଜାନ୍ତବ ପ୍ରତିହିଂସାରେ ଜର୍ଜରିତ ହୋଇପଡ଼ିଛି, ମଦ୍ୟ ଓ ପଶାଖେଳରେ ମତାଇ ତାର ସମସ୍ତ ସମ୍ପଦ ଅଧିକାର କରିନେଇଛି । ଲିଣ୍ଟନ୍ ପରିବାରର ସର୍ବସ୍ୱ ଅଧିକାର କରିବାକୁ ମଧ୍ୟ ଜାଲ ବିଛାଇଛି, କିନ୍ତୁ ଅବସ୍ଥା ତାର ଅନୁକୂଳ ହୋଇନାହିଁ, ତାର ଏ କୁଉଦ୍ଦେଶ୍ୟ ସଫଳ ହୋଇପାରିନାହିଁ । ଅପଶକ୍ତି କ୍ରମେ ପରାଜିତ ହୋଇଛି ।

ପ୍ରେମ ଓ ପ୍ରତିହିଂସା ଉପନ୍ୟାସଟିର କଥାବସ୍ତୁ । ଏହାର କଥା ବିନ୍ୟାସ ସରଳ ନୁହେଁ, ତଥାପି ସୁସମ୍ବଦ୍ଧ । ଉତ୍ତେଜନାପୂର୍ଣ୍ଣ ଘଟଣାର ସମାବେଶ ତଥା ପ୍ରବଳ ନାଟକୀୟ ଉତ୍କଣ୍ଠା ଭିତରେ ପାଠକର ଅସ୍ପୃହା ବସ୍ତୁତ ହୁଏ । ନାୟକ ହିଥକ୍ଲିଫ୍ ଯେପରି ଆଦିମ ପ୍ରବୃତ୍ତିର ପ୍ରତୀକ, ସେହିପରି ଆଧୁନିକ ଜଟିଳ ସମାଜର କୁଟିଳ ବୁଦ୍ଧିବୃତ୍ତିର ଅଧିକାରୀ ।

ନାୟିକାର ଗଭୀର ପ୍ରଣୟାବେଗ ଅନବଗୁଣ୍ଠିତ ଭାଷାରେ ପ୍ରକାଶପାଇଛି । ବସ୍ତୁତଃ ଏହା ସାର୍ଲଟ ଓ ଏମିଲିଙ୍କ ଅବଦମିତ ବ୍ୟକ୍ତିଗତ ପ୍ରଣୟାବେଗର ପରିପ୍ରକାଶ । ମାନସିକ ସାନ୍ତ୍ୱନା ପାଇଁ ସେ ଦୁହେଁ କଳ୍ପନାର ନୂତନ ଦୁନିଆଁ ଗଢ଼ିବାକୁ ଚେଷ୍ଟାକରିଛନ୍ତି; କିନ୍ତୁ ସେଠାରେ ମଧ୍ୟ ବାସ୍ତବ ଜୀବନର କରୁଣ ରାଗିଣୀ ଶୁଣାଯାଇଛି । ଉପନ୍ୟାସର ଛନ୍ଦେ ଛନ୍ଦେ ହୃଦୟର ସ୍ପନ୍ଦନ ଅବାରିତ ।

ତିନି ଭଉଣୀଙ୍କ ଭିତରେ ଏନ୍ ବ୍ରଣ୍ଟି (Anne Bronte) ଯେପରି ସବୁଠୁଁ ଛୋଟ, ସେହିପରି ସର୍ବାପେକ୍ଷା ଅଳ୍ପ ପ୍ରତିଭାର ଅଧିକାରିଣୀ । ସେ ଦୁଇଟି ମାତ୍ର ଉପନ୍ୟାସ ଲେଖିଛନ୍ତି—'ଏଗ୍‌ନେସ୍ ଗ୍ରେ' ଓ 'ଦି ଟେନାଣ୍ଟ୍ ଅଫ୍ ଓ୍ୱାଇଲ୍‌ଡ୍ ଫେଲ୍ ହଲ୍' । ପ୍ରଥମ ଉପନ୍ୟାସଟି ଗୋଟିଏ ଗୃହ ଶିକ୍ଷିକା ଏଗ୍‌ନେସ୍‌ର ଜୀବନକୁ କେନ୍ଦ୍ରକରି ଲିଖିତ । ବିଭିନ୍ନ ସ୍ଥାନରେ ଗୃହଗୃହୀ ଓ ଗୃହସ୍ୱାମୀଙ୍କ ସମ୍ପର୍କୀୟ ତାର ଅନୁଭୂତି ଅଭିଜାତ ସମାଜର ସ୍ଖଳନ ଓ କ୍ୟୁରେଟର ମିଃ ଓ୍ୱେସ୍‌ଟନ (Weston)ଙ୍କ ସହ ତାହାର ପ୍ରଣୟାଶକ୍ତିକୁ ନେଇ ଏହାର କଥାବସ୍ତୁ ପରିକଳ୍ପିତ । ଦ୍ୱିତୀୟ ଉପନ୍ୟାସଟିର ନାୟକ ଗୋଟିଏ ମଦ୍ୟପ । ଏଇ ମଦ୍ୟପ ଚରିତ୍ର ଚିତ୍ରଣରେ ତାଙ୍କର ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ମିଳେ ।

ଜର୍ଜ ଇଲିଅଟ୍ (George Eliot : ୧୮୧୯-୮୦)ଙ୍କ ପ୍ରକୃତ ନାମ ମେରି ଏନ୍ ଇଭାନ୍‌ସ୍ (Mary Ann Evans) । ଜେନ୍ ଅଷ୍ଟିନ୍‌ଙ୍କ ପରେ ସମ୍ଭବତଃ ସେଇହିଁ ପ୍ରଧାନ ମହିଳା ଔପନ୍ୟାସିକ ।

ଇଭାନସ୍ କୃଷକ କନ୍ୟା । ମିଡଲାଣ୍ଡର ଗ୍ରାମାଞ୍ଚଳରେ ତାଙ୍କର ବାଲ୍ୟଜୀବନ ଅତିବାହିତ ହୋଇଥିଲା । ସ୍ୱଭାବତଃ ପଲ୍ଲୀଜୀବନ ପ୍ରତି ତାଙ୍କର ମମତା ଅଧିକ । ତାଙ୍କର କେତୋଟି ସଫଳ ଉପନ୍ୟାସ 'ଆଡ଼ାମ ବଡ଼୍' (Adam Bede: ୧୮୫୯) 'ସାଇଲସ୍ ମାର୍ଣ୍ଣର' (Silas Marner : ୧୮୬୧) ଓ 'ମିଲ୍ ଅନ୍ ଦ ଫ୍ଲସ' (Mill on the Floss : ୧୮୬୦)ରେ ପଲ୍ଲୀଚିତ୍ର ଅତି ଜୀବନ୍ତ ଭାବରେ ପରିବେଷିତ ହୋଇଛି । ଏଗୁଡ଼ିକରେ ତାଙ୍କର ବାସ୍ତବ ଅନୁଭୂତ ରସାଣିତ ।



'ଆଡ଼ାମ ବଡ଼୍'ର ନାୟିକା ହେଟି (Hetty) ନାସ୍ତାପର ପ୍ରେମିକ ଆଡ଼ାମଙ୍କୁ ପରିତ୍ୟାଗ କରି ଜଣେ ଧନିକ ଯୁବକ ସହ ପାପ-ପ୍ରଣୟରେ ଲିପ୍ତ ହୋଇଛି । ଗର୍ଭବତୀ ଅବସ୍ଥାରେ ଉକ୍ତ ଯୁବକ ତାକୁ ପରିତ୍ୟାଗ କରିଛି । ସନ୍ତାନ ଭୂମିଷ୍ଠ ହେବାପରେ ଉକ୍ତ ଯୁବକକୁ ସେ ଖୋଜି ପାଇପାରି ନାହିଁ । ଅନନ୍ୟୋପାୟ ହୋଇ ଶିଶୁଟିକୁ ସେ ହତ୍ୟା କରିଛି ଓ ହତ୍ୟା ଅପରାଧରେ ବନ୍ଦୀ ହୋଇଛି । ନୀତିଶିକ୍ଷାମୂଳକ ହେଲେ ମଧ୍ୟ ପଲ୍ଲୀ ଜୀବନ ଚିତ୍ର ଓ ଚରିତ୍ର ଚିତ୍ରଣଯୋଗୁଁ ଏହାର ସାହିତ୍ୟିକ ମୂଲ୍ୟ କମ ନୁହେଁ । 'ଦ ମିଲ୍ ଅନ୍ ଦ ଫ୍ଲସ୍' (୧୮୬୦) ଅନେକାଂଶରେ ଆତ୍ମଜୀବନୀମୂଳକ । ଭାଇ ଭଉଣୀର ଶତ୍ରୁତା ଏହାର ମୂଳକଥା । ଅନ୍ତଃସ୍ୱର କରୁଣ । ଏଥିରେ ଚିତ୍ରିତ ଭାଇ ଭଉଣୀଙ୍କ ରୁଚି ଓ ପ୍ରକୃତି ଭିନ୍ନ ଭିନ୍ନ । ଦୀର୍ଘ ଦିନର ଶତ୍ରୁତା ପରେ ଗୋଟିଏ ପ୍ରଳୟଙ୍କରୀ ବନ୍ୟା ସମୟରେ ଭଉଣୀ ଭାଇର ଜୀବନ ରକ୍ଷା କରିବାକୁ ଉଦ୍ୟମ କରିଛି । ଉଭୟେ କିନ୍ତୁ ମୃତ୍ୟୁମୁଖରେ ପଡ଼ିଛନ୍ତି । ଏଇ ଅତି ନାଟକୀୟ (melodramatic) ପରିଣତି ଏହାର କଳାଗତ ଉତ୍କର୍ଷ ହ୍ରାସ କରିଛି ।

ସାଇଲସ୍ ମାର୍ଣ୍ଣର ଶିଳ୍ପୋତ୍କର୍ଷ ଦୃଷ୍ଟିରୁ ଲେଖିକାଙ୍କ ସର୍ବଶ୍ରେଷ୍ଠ ରଚନା । ସାଇଲସ୍ ଜଣେ ଗରିବ ତନ୍ତୁବାୟ । ସୁବର୍ଣ୍ଣ ପ୍ରତି ତାର ମୋହ ଅତ୍ୟଧିକ । ଅତି କଷ୍ଟରେ ସଂଗୃହୀତ ସୁବର୍ଣ୍ଣଖଣ୍ଡ ତାର ଚୋରି ଯାଇଛି । ଜଣେ ନିରାଶ୍ରିତା ଝିଅକୁ ପାଳନ କରି ସେ ତାର ଦୁଃଖ ଭୁଲିବାକୁ ଚେଷ୍ଟା କରିଛି । ଏହି ଉପନ୍ୟାସଟିର ଅନ୍ତଃସ୍ୱର ମଧ୍ୟ କରୁଣ ।

'ରୋମୋଲା' (Romola : ୧୮୬୩) ଲେଖିକାଙ୍କର ଭିନ୍ନସ୍ୱାଦର ଉପନ୍ୟାସ । ଇଟାଲୀୟ ଇତିହାସରୁ ଏହାର କଥାବସ୍ତୁ ଗୃହୀତ । ଐତିହାସିକ ତଥ୍ୟ ଆହରଣରେ ଲେଖିକା ବହୁ ଶ୍ରମ ସ୍ୱୀକାର କରିଛନ୍ତି । ଏହି ଉଦ୍ଦେଶ୍ୟରେ ସେ ଫ୍ଲୋରେନସ୍‌ରେ ଛ' ମାସ ରହିଛନ୍ତି । ଶ୍ରେଷ୍ଠ ଇଂରେଜୀ ଐତିହାସିକ ଉପନ୍ୟାସ ମଧ୍ୟରେ ଏହା ପରିଗଣିତ । କିନ୍ତୁ କେତେକ ବିଶେଷ ତ୍ରୁଟି ଏହି ର ମାନ-ହ୍ରାସକରିଦିଏ । ଚରିତ୍ରଗୁଡ଼ିକୁ ସେ ଠିକ୍ ଇଟାଲୀୟ କରିପାରିନାହାନ୍ତି; ଯେଉଁ ଯେଉଁ ଅଞ୍ଚଳ କଥା ଉଲ୍ଲେଖ କରିଛନ୍ତି ସେଗୁଡ଼ିକ ମଧ୍ୟ ସଠିକ ହୋଇପାରିନାହିଁ ।

ଏଣୁ ତାଙ୍କର ଅନ୍ୟାନ୍ୟ ଉପନ୍ୟାସ ପରି ଏହା ବାସ୍ତବଧର୍ମୀ ହୋଇପାରିନାହିଁ । ଚରିତ୍ରର କ୍ରମବିକାଶ ଘଟାଇବାରେ ସେ ସିଦ୍ଧହସ୍ତତାର ପ୍ରମାଣ ଦେଇଛନ୍ତି । ଉକ୍ତ ଉପନ୍ୟାସରେ ଗୋଟିଏ ଚରିତ୍ରର ନୈତିକ ଅଧଃପତନ କ୍ରମେ ଦ୍ରୁତତର ହେଉଥିବା ବେଳେ ଅନ୍ୟ ଏକ ଚରିତ୍ରର ଆଧ୍ୟାତ୍ମିକ କ୍ରମବିକାଶ ଦର୍ଶାଇବା ତାଙ୍କ ଶିଳ୍ପନୈପୁଣ୍ୟର ପରିଚାୟକ । ଲେଖିକାଙ୍କ ନୀତିବାଦୀ ସ୍ୱର ଏଠାରେ ମଧ୍ୟ ଉଦାତ୍ତ ।

ଜର୍ଜ ଇଲିଅଟ୍‌ଙ୍କ ସମସ୍ତ ଔପନ୍ୟାସିକ ପରିବେଶ ମଧ୍ୟରେ ଗୋଟିଏ କାରୁଣ୍ୟର ଉଚ୍ଛ୍ୱାସ ମୂର୍ତ୍ତିମନ୍ତ । ତାଙ୍କ ମତରେ ଦୁଃଖ ଓ ଯନ୍ତ୍ରଣା ମଣିଷର ପଛେ ପଛେ ଗୁପ୍ତଭଳି ଘୂରି ବୁଲୁଛି; ଜୀବନର ଯେକୌଣସି ଛକରେ ଯେକୌଣସି ବାଙ୍କରେ ଏହା ଫଣା ଟେକିପାରେ । ଏକଷଠି ବର୍ଷ ବୟସରେ ସେ ବିଦାୟ କରିଥିଲେ (୧୮୮୦) । ଉପନ୍ୟାସଗୁଡ଼ିକ ଦୁଃଖାତ୍ମକ ବୋଲି ସ୍ୱାମୀ ତାଙ୍କର କହିବାରୁ ସେ କାନ୍ଧ ପକାଇ କହିଥିଲେ, "ଜୀବନକୁ ସେ ଯେଭଳି ଦେଖିଛନ୍ତି, ସେଇଭଳି ଆଙ୍କିବେ ତ !" ଏଥିରୁ ତାଙ୍କର ବାସ୍ତବବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ ।

ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ତାଙ୍କର ଉପନ୍ୟାସର ଗୁରୁତ୍ୱ ରହିଛି । ମାନବର ଅନ୍ତର୍ଲୋକ ଉନ୍ମୋଚନ କରିବାରେ ସେ ସିଦ୍ଧହସ୍ତ । ଏ ଦିଗରୁ ତାଙ୍କୁ ବ୍ରାଉନିଂଙ୍କ ସହ ତୁଳନା କରାଯାଇପାରେ । ତାଙ୍କ ଚରିତ୍ରଗୁଡ଼ିକ ପ୍ରତିନିଧିମୂଳକ (type) ହେବା ଅପେକ୍ଷା ବ୍ୟକ୍ତିବିଶେଷ ହୋଇଥାନ୍ତି । ଚରିତ୍ରର କ୍ରମିକ ଅବନତି ବା ବିକାଶ ତାଙ୍କ ଚରିତ୍ର ଚିତ୍ରଣରେ ଅନ୍ୟତମ ବୈଶିଷ୍ଟ୍ୟ । ସ୍ତ୍ରୀ ଚରିତ୍ର ଅଙ୍କନରେ ସେ ପୁରୁଷର ଅନଧିଗମ୍ୟ ସୋପାନରେ ଉପନୀତ ହୋଇଛନ୍ତି । ସେହିଭଳି ଶିଶୁର ଭାବମୂର୍ତ୍ତି ଚିତ୍ରଣରେ ସେ ବିଶେଷ ସାଫଲ୍ୟର ମୁଦ୍ରାଙ୍କ ରଖିଯାଇଛନ୍ତି । ଗ୍ରାମ୍ୟପରିବେଶ ତଥା ଗ୍ରାମବାସୀଙ୍କ ଚିତ୍ର ଅତି ଜୀବନ୍ତଭାବରେ ଫୁଟିଉଠିଛି; ସମସ୍ତେ କିନ୍ତୁ ନୈତିକତା ବନ୍ଧନରେ ଆବଦ୍ଧ । ପାପୀ ବା ଦୁଷ୍ଟ ବ୍ୟକ୍ତିକୁ ଉପଯୁକ୍ତ ଶାସ୍ତି ଦେବାକୁ ସେ ସର୍ବଦା ଉନ୍ମୁଖ । ନୈତିକତା ତାଙ୍କଠାରେ ମାଧ୍ୟାକର୍ଷଣ ଶକ୍ତି ଭଳି ଅପରିହାର୍ଯ୍ୟ । ପାଣ୍ଡିତ୍ୟ ଓ ଅତିଶୟ ବିଶ୍ଳେଷଣ ପ୍ରବୃତ୍ତି ତାଙ୍କ ସୃଷ୍ଟି ପ୍ରତିଭାର ପ୍ରତିକୂଳ ହୋଇଛି ।

✓ମିସେସ୍ ଗାସ୍‌କେଲ (Mrs Elizabeth Gaskell : ୧୮୧୦-୧୮୬୫)ଙ୍କ ଉପନ୍ୟାସକୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଇପାରେ; ଯଥା: ସମସ୍ୟାମୂଳକ ଓ ମନସ୍ତାତ୍ତ୍ୱିକ । ସମସ୍ୟାମୂଳକ ଉପନ୍ୟାସ ମଧ୍ୟରେ 'ମେରି ବାର୍ଟନ' (୧୮୪୮) ଓ 'ନର୍ଥ ଆଣ୍ଡ୍ ସାଉଥ' (୧୮୫୫) ଉଲ୍ଲେଖଯୋଗ୍ୟ । କାରଖାନା ଶ୍ରମିକଙ୍କର ସମସ୍ୟା, ସେମାନଙ୍କ ଦାରିଦ୍ର୍ୟ ଓ ବସ୍ତିଅଞ୍ଚଳର ଅସ୍ୱାସ୍ଥ୍ୟକର ପରିବେଶ ଉକ୍ତ ଉପନ୍ୟାସରେ ରୂପାୟିତ । ମାନ୍‌ଚେଷ୍ଟାର୍‌ର ଜଣେ ଧର୍ମଯାଜକଙ୍କ ପତ୍ନୀଭାବରେ ଏଇ ଶ୍ରମିକ-ସମସ୍ୟା ସହିତ ସେ ସୁପରିଚିତ ଥିଲେ ।

ପାରିବାରିକ ଚିତ୍ର ପରିବେଷଣ ତଥା ଶିଶୁ ଓ ନାରୀ ମନର ବିଶ୍ଲେଷଣରେ ତାଙ୍କର ପାରଦର୍ଶିତା ଅନୁଭୂତ ହୁଏ । ତାଙ୍କର ଶ୍ରେଷ୍ଠ ରଚନା ଭାବରେ ଗୃହୀତ କ୍ରାନ୍‌ଫୋର୍ଡ଼ (Cranford : ୧୮୫୩) ଉପନ୍ୟାସଟି ନାରୀ-ମନସ୍ତତ୍ତ୍ୱ ଉପରେ ଆଧାରିତ । କ୍ରାନଫୋର୍ଡ଼ ଗୋଟିଏ କାଳ୍ପନିକ ନାରୀ ଅଧ୍ୟୁଷିତ ଗ୍ରାମ । ବିଧବା, ଅବିବାହିତା ଓ ପୁରୁଷ-ଭାବାପନ୍ନ ନାରୀ ବ୍ୟତୀତ ପୁରୁଷଙ୍କର ଏଠି ପ୍ରବେଶାଧିକାର ନାହିଁ । ପୁରୁଷ ପ୍ରତି ଏମାନଙ୍କ ଅସହିଷ୍ଣୁ ଭାବସତ୍ତ୍ୱେ ଜଣେ ଡାକ୍ତର ମଝିରେ ମଝିରେ ସେଠାକୁ ଆସିପାରନ୍ତି । ନାରୀଙ୍କର ବାକ୍ୟେ ଗଳ୍ପ, ସୂର୍ଯ୍ୟ-ସ୍ନାନ, ଚା'ପାନ ଆଦି ଭିତରେ ସମସ୍ତ ଯାପନର ଚିତ୍ତାକର୍ଷକ ବର୍ଣ୍ଣନା ଲେଖିକା ଦେଇଛନ୍ତି । ଏହା ଭିତରେ ନାରୀ ମନର ଚିତ୍ର ଆଙ୍କିବାକୁ ଯଥେଷ୍ଟ ସୁଯୋଗ ସୃଷ୍ଟି କରିପାରିଛନ୍ତି । ଜେନ୍ ଅଷ୍ଟିନଙ୍କ ଲଘୁ ହାସ୍ୟରସ ଓ ଜର୍ଜ ଇଲିଅଟ୍‌ଙ୍କ ନୈତିକ ସ୍ୱର ତାଙ୍କ ଲେଖାରେ ଶୁଣାଗଲେ ମଧ୍ୟ ସେ ସେମାନଙ୍କ ସ୍ତରକୁ ଉନ୍ନୀତ ହୋଇପାରିନାହାନ୍ତି । ସାର୍ଲଟ ବ୍ରଣ୍ଟିଙ୍କ ଜୀବନୀ ଲେଖି ସେ ଯଶସ୍ୱୀ ହୋଇଛନ୍ତି ।

ଜର୍ଜ ମେରେଡ଼ିଥ୍ (George Meredith : ୧୮୨୮-୧୯୦୯) 'ଡାୟାନା ଅଫ୍ ଦି କ୍ରସ ୱେଜ' (Diana of the Cross ways : ୧୮୮୫) ଲେଖି ପ୍ରତିଭାବାନ ଲେଖକ ଭାବରେ ସ୍ୱୀକୃତ ହୁଅନ୍ତି । ଏତଦ୍‌ବ୍ୟତୀତ ତାଙ୍କର 'ଦି ଏଡ୍‌ଭେନ୍‌ଚରସ୍ ଅଫ୍ ହେନରୀ ରିଚ୍‌ମଣ୍ଡ' (The Adventures of Henry Richmond : ୧୮୭୧) 'ବିଉଚ୍ୟାମ୍ପସ୍ କ୍ୟାରିଅର' (Beauchamp's career : ୧୮୭୬) ଓ 'ଦି ଇଗୋଇଷ୍ଟ' (The Egoist : ୧୮୭୯) ପରି କେତେଖଣ୍ଡ ଉଚ୍ଚକୋଟୀର ଉପନ୍ୟାସ ରହିଛି । 'ଦି ଇଗୋଇଷ୍ଟ' ତାଙ୍କର ଶ୍ରେଷ୍ଠ କୃତି । ଏହା ଏ ଯୁଗର ଶ୍ରେଷ୍ଠ ଉପନ୍ୟାସ ମଧ୍ୟରେ ପରିଗଣିତ । ଏଥିରେ ସେ ପୁରୁଷର ସ୍ୱୈରାଚାର ବିରୁଦ୍ଧରେ ସ୍ତ୍ରୀ ଜାତିକୁ ଆତ୍ମରକ୍ଷାର ଆବାହନୀ ଶୁଣାଇଛନ୍ତି । ଜର୍ଜ ଇଲିଅଟ୍‌ଙ୍କ ଉପନ୍ୟାସର ସ୍ୱର ଓ ଶୈଳୀସହ ତାଙ୍କର କେତୋଟି ବିଶେଷ ସାମ୍ୟ ଓ ବୈଷମ୍ୟ ପରିଲକ୍ଷିତ ହୁଏ । ଜର୍ଜ ଇଲିଅଟ୍ ନୀତିଶିକ୍ଷା ଦେବାପାଇଁ ଟ୍ରାଜେଡ଼ିର ସାହାଯ୍ୟ ନେଉଥିବାବେଳେ ମେରେଡ଼ିଥ୍ କମେଡ଼ିର ଆଶ୍ରୟ ନିଅନ୍ତି । ଜର୍ଜ ଇଲିଅଟ୍‌ଙ୍କ ଲେଖନୀରେ ପାପ ଓ ଭ୍ରାନ୍ତି ହୋଇଉଠେ ଅତି ଭୟଙ୍କର, କିନ୍ତୁ ମେରେଡ଼ିଥ୍‌ଙ୍କ ଲେଖନୀରେ ତାହା ଭୟଙ୍କର ହେବା ପରିବର୍ତ୍ତେ ହୁଏ ହାସ୍ୟାସ୍ପଦ; ଏଣୁ ଅସ୍ପୃହଣୀୟ । ଜର୍ଜ ଇଲିଅଟ୍‌ଙ୍କ ଚରିତ୍ରଗଣ ସ୍ୱକୀୟ ବ୍ୟକ୍ତିତ୍ୱରେ ଭାସ୍ୱର, କିନ୍ତୁ ମେରେଡ଼ିଥ୍‌ଙ୍କ ଚରିତ୍ର ପ୍ରତିନିଧିମୂଳକ (types) । ଉଭୟଙ୍କ ଦୃଷ୍ଟିଭଙ୍ଗୀ ବାସ୍ତବବାଦୀ ଓ ଉଭୟେ ମନସ୍ତାତ୍ତ୍ୱିକ ବିଶ୍ଲେଷଣ ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିଛନ୍ତି । କିନ୍ତୁ ମେରେଡ଼ିଥ୍‌ଙ୍କ ପ୍ରକାଶଭଙ୍ଗୀରେ ବ୍ରାଉନିଂଙ୍କ ଧାରା ଲକ୍ଷ୍ୟ କରିହୁଏ । ତାଙ୍କର ବିଶ୍ଲେଷଣ ଅତିମାତ୍ରାରେ ପଲ୍ଲବିତ କିନ୍ତୁ ଉକ୍ତି ସଂକ୍ଷିପ୍ତ । ଗୋଟିଏ ପାରାଗ୍ରାଫର ଉପାଦାନକୁ ସେ ଗୋଟିଏ ବାକ୍ୟରେ କହିବାକୁ ଚେଷ୍ଟା କରିଥାନ୍ତି । ଏହା ଉପନ୍ୟାସର ଦୁର୍ବୋଧତାର କାରଣ ହୋଇଥାଏ ।

ଉପରୋକ୍ତ ଲେଖକଙ୍କ ବ୍ୟତୀତ ବହୁ ଗୌଣ ପ୍ରତିଭା ଏ ଯୁଗରେ ଦେଖାଦେଇଛନ୍ତି । କିଂସ୍ ଲି, ଚାର୍ଲସ୍ ରିଡ୍, ଆଣ୍ଟୋନି ଟ୍ରଲେପ, ଉଇଲ୍ କି କଲିନସ୍, ରୋବାର୍ଟ ଲୁଇ ଷ୍ଟିଭେନ୍‌ସନ୍, ଜର୍ଜ ବରୋ ଓ ଜର୍ଜ ଗିସିଂଙ୍କ ନାମ ଏମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ । କିଂସ ଲି ଦୁଃସ୍ଥ ଜନତା ଓ ଶୋଷିତ ଶ୍ରମିକ ଶ୍ରେଣୀ ପ୍ରତି ସମବେଦନା ପ୍ରକାଶ କରିଥିବା ବେଳେ ଷ୍ଟିଭେନ୍‌ସନ୍ ଯୁଗଯନ୍ତ୍ରଣାରୁ ମୁକ୍ତ । ତାଙ୍କର ଟ୍ରେଜର୍ ଆଇଲେଣ୍ଡ (Treasure Island) ଓ କିଡ୍‌ନ୍ୟାପଡ୍ (Kidnapped) ପରି ଉପନ୍ୟାସ ରୋମାଞ୍ଚକର ଅଭିଯାନ ଓ ଦୁଃସାହସିକ କଥାବସ୍ତୁ ହେତୁ କିଶୋର ପ୍ରାଣକୁ ବିଶେଷ ଆକୃଷ୍ଟ କରେ । ସେହିପରି ଜର୍ଜ ବରୋ ତାଙ୍କର 'ଲ୍ୟାଭେଂଗ୍ରୋ' ଓ 'ଦ ରୋମାନି ରାଇ' (The Romany Rye) ଉପନ୍ୟାସରେ ଯାଯାବର ଜୀବନର ଚିତ୍ର ଆଙ୍କିଛନ୍ତି । କେତେକ ଲେଖକ ଏକ ପ୍ରକାର ଅର୍ଥହୀନ (nonsense) ଆମୋଦଦାୟକ ରଚନାରେ ମନୋନିବେଶ କରିଛନ୍ତି । ଇଚ୍ଛାକୃତ ଯୁକ୍ତିହୀନତା, ଅସଂଲଗ୍ନତା ଓ ଅବାସ୍ତବତା ଏହାର ବୈଶିଷ୍ଟ୍ୟ । ଲୁଇ କ୍ୟାରଲଙ୍କ 'ଏଲିସେସ୍ ଅଡ୍‌ଭେନ୍‌ଚର୍ସ ଇନ୍ ଓ୍ୱଣ୍ଡର ଲ୍ୟାଣ୍ଡ୍' ଓ 'ଥ୍ରୁ ଦ ଲୁକିଂ ଗ୍ଲାସ୍' ଦୁଇଟି ଅନବଦ୍ୟ ସୃଷ୍ଟି । ଏ ଦୃଷ୍ଟିରୁ ଭିକ୍ଟୋରୀୟ ଉପନ୍ୟାସ ଯେପରି ବର୍ଦ୍ଧିତ ସେହିପରି ସମୃଦ୍ଧ ।

(ଗଦ୍ୟ : ଉପନ୍ୟାସ ବ୍ୟତୀତ)

ଭିକ୍ଟୋରୀୟ ଯୁଗରେ ପ୍ରବନ୍ଧ ସାହିତ୍ୟର ପୁଷ୍କଳ ବିକାଶ ଘଟିଛି । ରୋମାଣ୍ଟିକ୍ ଯୁଗରେ କବିହିଁ ଥିଲ ଚିନ୍ତାଜଗତର ନିୟନ୍ତା; କିନ୍ତୁ ଏ ଯୁଗରେ ଗଦ୍ୟକାର ଉଚ୍ଚସ୍ଥାନ ଅଧିକାର କରିଛି । ଜୀବନର ସମସ୍ୟାରେ ଋଦ୍ଧ ହୋଇ ଏ ଯୁଗର ସାମାଜିକ ପଥ ନିର୍ଦ୍ଦେଶ ପାଇଁ କାର୍ଲାଇଲ୍, ରସ୍‌କିନ୍ ଓ ମାଥ୍ୟୁ ଆର୍ନଲ୍‌ଡଙ୍କ ପରି ଚିନ୍ତାନାୟକଙ୍କ ଆଡ଼କୁ ମୁହାଁଇଛନ୍ତି । ରୋମାଣ୍ଟିକ ଯୁଗର କଳ୍ପନାଶ୍ରୁ ପ୍ରବନ୍ଧଧାରା ଏଠାରେ ବ୍ୟାହତ । ରାଜନୀତି, ଧର୍ମ, କଳା, ସାହିତ୍ୟ ଆଦି ସମୁନ୍ନତ ଚିନ୍ତାଧାରାର ବାହକ ଏହି ପ୍ରବନ୍ଧର ସ୍ୱର ଗୁରୁଗମ୍ଭୀର ହୋଇଉଠିଛି । ବ୍ୟଞ୍ଜନାଧର୍ମୀ ଭାଷା, ଶବ୍ଦ ଗୁମ୍ଫନ ଓ ଛନ୍ଦପ୍ରବାହରେ ଏହା କାବ୍ୟିକ ଉତ୍କର୍ଷ ଲାଭ କରିଛି । ଅନ୍ୟାନ୍ୟ ପ୍ରାବନ୍ଧିକଙ୍କ ଅପେକ୍ଷା କାର୍ଲାଇଲ୍‌ଙ୍କ ଲେଖନୀ ହିଁ ସମସାମୟିକ ସମାଜକୁ ବିଶେଷ ଭାବରେ ପ୍ରଭାବିତ କରିଛି ।

କାର୍ଲାଇଲ୍ (Thomas Carlyle : ୧୭୯୫-୧୮୮୧)ଙ୍କ ମୁଖ୍ୟ ରଚନା ମଧ୍ୟରେ କେତେକ ସାହିତ୍ୟିକ ପ୍ରବନ୍ଧ ଓ ସମାଲୋଚନା, ଐତିହାସିକ ରଚନା, ଦାର୍ଶନିକତା ପୂର୍ଣ୍ଣ କାଳ୍ପନିକ ରଚନା (Sartor Resartus), ଜନ୍ ଷ୍ଟେରିଂ (Stering)ଙ୍କ ଜୀବନୀ ଓ ଚିଠିପତ୍ର ତଥା ସ୍ମୃତି (Letters and Reminiscences)କୁ ଗ୍ରହଣ କରାଯାଇଥାଏ ।

କାର୍ଲାଇଲ୍‌ଙ୍କ ସାହିତ୍ୟିକ ପ୍ରବନ୍ଧ ଓ ସମାଲୋଚନା ମଧ୍ୟରେ ବାର୍ଣ୍ଣସ୍, ସ୍କଟ୍ ଓ ଗେଟେ ଆଦିଙ୍କ ସମ୍ବନ୍ଧୀୟ ପ୍ରବନ୍ଧ ଉଚ୍ଚକୋଟୀର । ଏଥିରେ ସେ ଲେଖକଙ୍କ ରଚନାବଳୀର

ବିସ୍ତାର କରିବା ପରିବର୍ତ୍ତେ ତାଙ୍କର ଅନ୍ତରାତ୍ମାର ସ୍ୱରୂପ ନିର୍ଣ୍ଣୟ କରିବାକୁ ଚେଷ୍ଟିତ । ଲେଖକର ଲକ୍ଷ୍ୟ, ଆଦର୍ଶ ଓ ଦୃଷ୍ଟିଭଙ୍ଗୀ ଉପରେ ସେ ଅଧିକ ଗୁରୁତ୍ୱ ଦେଇଥାନ୍ତି । କିନ୍ତୁ ସମାଲୋଚକର ଅନାସକ୍ତ ଓ ନିରପେକ୍ଷ ଦୃଷ୍ଟିଭଙ୍ଗୀର ଘୋର ଅଭାବ ତାଙ୍କଠାରେ ଦେଖାଯାଏ । ଆଲୋଚ୍ୟ କବି ବା ଲେଖକଙ୍କ ସମ୍ପର୍କରେ କହିବାକୁ ଯାଇ ସେ ଆପଣା ମନର ଛବି ହିଁ ଆଙ୍କିଥାନ୍ତି ।

ହିରୋ ଆଣ୍ଡ୍ ହିରୋ ଓ୍ୱାର୍ସିପ୍ (Hero and Hero worship : ୧୮୪୧) ଲେଖକଙ୍କର ବହୁ ପଠିତ ତଥା ସମାଲୋଚିତ ରଚନା । ସେ ଛ' ଶ୍ରେଣୀର ବୀରଙ୍କ କଥା ଉଲ୍ଲେଖ କରିଛନ୍ତି; ଯଥା—(୧) ଦେବତା, (୨) ଧର୍ମ ପ୍ରବର୍ତ୍ତକ, (୩) ମହାକବି, (୪) ପୁରୋହିତ (୫) ଲେଖକ ଓ (୬) ରାଜା । ମହାକବି ଭାବରେ ଦାନ୍ତେ ଓ ସେକ୍ସପିୟରଙ୍କୁ ଗ୍ରହଣ କରିଥିବାବେଳେ ଲେଖକ ଭାବରେ ସେ ଜନ୍‌ସନ୍, ରୁଷୋ ଓ ବାର୍ଣ୍ଣସ୍‌ଙ୍କ ଉଦାହରଣ ଦେଇଛନ୍ତି । ତାଙ୍କ ମତରେ ଇତିହାସ ଏଇ ଶକ୍ତିଧର ପୁରୁଷଙ୍କ କାର୍ଯ୍ୟାବଳୀର ବିବରଣୀ ବ୍ୟତୀତ ଅନ୍ୟ କିଛି ନୁହେଁ । କାର୍ଲାଇଲ୍ ବିଜ୍ଞାନ ଓ ଗଣତନ୍ତ୍ରର ଘୋର ବିରୋଧୀ । ଈଶ୍ୱରପ୍ରେରିତ ଏଇ ଶକ୍ତିଧର ପୁରୁଷଙ୍କ ନିର୍ଦ୍ଦେଶ ମାନି ଚାଲିଲେ ସମାଜରେ ଶାନ୍ତି ପ୍ରତିଷ୍ଠିତ ହେବ ବୋଲି ତାଙ୍କର ବିଶ୍ୱାସ । ଗ୍ରନ୍ଥଟିରେ ସନ୍ନିବିଷ୍ଟ ତଥ୍ୟ ବହୁ ତ୍ରୁଟିପୂର୍ଣ୍ଣ ।

ପୂର୍ବୋକ୍ତ ଶକ୍ତିଧର ପୁରୁଷ ପ୍ରୀତି ତାଙ୍କ 'ଫ୍ରେଞ୍ଚ୍ ରିଭୋଲ୍ୟୁସନ୍' (French revolution) ଖ୍ରୀ: ୧୮୩୭ କୁ ମଧ୍ୟ ପ୍ରଭାବିତ କରିଛି । ବିପ୍ଳବର ଅନ୍ତଃସ୍ୱର ବିଶ୍ଳେଷଣ କରିବା ଅପେକ୍ଷା ସେ ବୀରମାନଙ୍କୁ ଧରି ପାଠକଙ୍କ ସାମ୍ନାରେ ଉଭା କରାଇଛନ୍ତି; ଐତିହାସିକ ତଥ୍ୟ ପରିବେଷଣ କରିବା ପରିବର୍ତ୍ତେ ସେ ନୀତିଶିକ୍ଷା ଦେବାରେ ବ୍ୟସ୍ତ ।

'ସାର୍‌ଟର୍ ରିସାର୍‌ଟସ୍' (Sartor Resartus : ୧୮୩୪) ଦାର୍ଶନିକତା ଓ ରୋମାନସ୍‌ର ଏକ ମିଶ୍ରଣ । ଏହା ତାଙ୍କର ଏକମାତ୍ର ସୃଜନଧର୍ମୀ ରଚନା । ନାୟକ ଟିଉଫେଲ୍‌ସ୍ ଡୋକ୍ (Teufelsdroeckh)ର ଜୀବନ ଓ ଚିନ୍ତାଧାରା ଭିତରେ କାର୍ଲାଇଲ୍ ନିଜକୁ ହିଁ ବ୍ୟକ୍ତ କରିଛନ୍ତି । ଗ୍ରନ୍ଥଟିର ଆଲୋଚ୍ୟ ବିଷୟ ପରିଚ୍ଛଦ । ଏହା ପ୍ରତୀକ-ଧର୍ମୀ । ବ୍ୟାପକ ଅର୍ଥରେ ଦେହ ଆତ୍ମାର ପୋଷାକ ଓ ବିଶ୍ୱଜଗତ ଈଶ୍ୱରଙ୍କ ପୋଷାକ । ରଚନାଟି ସୁଖପାଠ୍ୟ ହୋଇପାରିନାହିଁ ।

ଜୀବନୀ ରଚନା କ୍ଷେତ୍ରରେ କାର୍ଲାଇଲ୍‌ଙ୍କର ସ୍ୱକୀୟ ଚିନ୍ତାଧାରା ରହିଛି । ସମାଜ ଉପରେ ବ୍ୟକ୍ତିବିଶେଷର ପ୍ରଭାବ ଓ ବ୍ୟକ୍ତି ଉପରେ ସମାଜର ପ୍ରଭାବ ଦର୍ଶାଇବାକୁ ସେ ବିଶେଷ ଯତ୍ନ କରିଥାନ୍ତି ।

ବିଜ୍ଞାନ ଓ ଗଣତନ୍ତ୍ରର ବିରୋଧ କରିବା ସଙ୍ଗେ ସଙ୍ଗେ ବୀରପୂଜାର ଆବଶ୍ୟକତା ପ୍ରତିପାଦନ କରିବାକୁ ଯାଇ କାର୍ଲାଇଲ୍ ବହୁ ସମାଲୋଚିତ ତଥା ନିନ୍ଦିତ ହୋଇଛନ୍ତି । କିନ୍ତୁ ତାଙ୍କର ମହାନ୍ ଉଦ୍ଦେଶ୍ୟ ସମ୍ବନ୍ଧରେ ଅବହିତ ହେଲେ ତାଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଜାଗ୍ରତ ହୋଇଥାଏ । ସେ ସବୁବେଳେ ସତ୍ୟ ଓ ନ୍ୟାୟର ପୂଜକ । ସାମାଜିକ ଶୃଙ୍ଖଳା ଓ

ଶାନ୍ତି ତାଙ୍କର ଏକମାତ୍ର କାମ୍ୟ । ଛଳନା ଓ ପ୍ରତାରଣାରୁ ଦୂରେଇ ରହି ଆନ୍ତରିକତାର ସହିତ ଶାରୀରିକ ଓ ମାନସିକ ଶ୍ରମ କରିଗଲେ ଜୀବନ ସୁନ୍ଦର ତଥା ସୁଖକର ହୋଇପାରିବ ବୋଲି ତାଙ୍କର ବିଶ୍ୱାସ ।

କାର୍ଲାଇଲ୍‌ଙ୍କ ପ୍ରକାଶଭଙ୍ଗୀ ଅତ୍ୟନ୍ତ ତୀବ୍ର ତଥା ପ୍ରଖର । ତାଙ୍କ ରଚନା କେତେବେଳେ ଝଡ଼ଝଞ୍ଜାର ନିର୍ଘୋଷରେ ପ୍ରକମ୍ପିତ, କେତେବେଳେ ଅବା ଶାନ୍ତ, ମଧୁର କୂଜନରେ ପ୍ରତିଧ୍ୱନିତ । ବ୍ୟାକରଣର ନିୟମ ପ୍ରତି ତାଙ୍କର ଭ୍ରୂକ୍ଷେପ ନଥିଲେ ମଧ୍ୟ ଗୀତିମୟ ଉଚ୍ଛ୍ୱାସ ଓ ଚିତ୍ରଧର୍ମିତା ଭିତରେ ସେ ପ୍ରାଞ୍ଜଳ ଭାବରେ ନିଜକୁ ପ୍ରକାଶ କରିପାରିଛନ୍ତି ।

କାର୍ଲାଇଲ୍‌ଙ୍କ ଲେଖାରେ ସମାଜୋପଯୋଗୀ ଉନ୍ନତ, ନୂତନ ଚିନ୍ତାଧାରା ବିଶେଷ କିଛି ନାହିଁ । ସମସାମୟିକ ସମାଜରେ ସେ ଯଦି ବିଶେଷ ପ୍ରତିଷ୍ଠାର ଅଧିକାରୀ ହୋଇଥାନ୍ତି ତାହା ତାଙ୍କର ବ୍ୟକ୍ତିଗତ ପ୍ରଭାବ ହେତୁ ସମ୍ଭବ ହୋଇଛି । ନଚେତ୍ ଛଳନା ଓ ପ୍ରତାରଣା ବିରୋଧରେ ପ୍ରତିମୁହୂର୍ତ୍ତରେ ବିଷୋଦ୍‌ଗାର କରି କରି ସେ ନିଜେ ଜଣେ ପ୍ରତାରଣାଶୀଳ ବ୍ୟକ୍ତିତ୍ୱରେ ପରିଣତ ହୋଇଛନ୍ତି ବୋଲି କେତେକଙ୍କ ମତ ।

ମେକ୍‌ଲେ (Thomas Babington Macaulay : ୧୮୦୦-୫୯) ଭିକ୍ଟୋରୀୟ ଯୁଗର ଏକ ବିସ୍ମୟ; ତାଙ୍କର ସ୍ମରଣଶକ୍ତି ଥିଲା ଅସାଧାରଣ । ପାଞ୍ଚବର୍ଷ ବୟସରେ ସେ ବିଜ୍ଞ ପଣ୍ଡିତଙ୍କ ପରି କଥା କହୁଥିଲେ (talked like a book); ଅତି ଦ୍ରୁତ-ବେଗରେ ଗ୍ରନ୍ଥ ପାଠ କରିପାରୁଥିଲେ । ସୁଦୀର୍ଘ କବିତାମାନ ଆବୃତ୍ତି କରିବା ତାଙ୍କ ପକ୍ଷରେ ଅତି ସାଧାରଣ କଥା ଥିଲା । ପିଲ୍‌ଗ୍ରିମ୍‌ସ୍ ପ୍ରୋଗ୍ରେସ୍, ପାରାଡ଼ାଇଜ୍ ଲଷ୍ଟ ଓ କ୍ଲାରିସା ଭଳି ଉପନ୍ୟାସ ସେ ମୁହେଁ ମୁହେଁ ବୋଲିପାରୁଥିଲେ । ଥରେ ଚାଳିଶ ବର୍ଷ ତଳେ ଖବର-କାଗଜରେ ପଢ଼ିଥିବା ଦୁଇଟି କବିତାକୁ ଅବିକଳ ଆବୃତ୍ତି କରିପାରିଥିଲେ; ମଝିରେ ସେ କବିତା ଦୁଇଟି କେବେ ମନେପକାଇବା ତାଙ୍କର ଆବଶ୍ୟକ ହୋଇନଥିଲା । ଇଂରେଜ ସରକାରଙ୍କ ଆଇନ ପରାମର୍ଶଦାତା ଭାବରେ ସେ ଚାରିବର୍ଷ (୧୮୩୪-୩୮) ଭାରତରେ କଟାଇଥିଲେ; ଦଣ୍ଡବିଧି ଆଇନ ପ୍ରଣୟନ ତାଙ୍କର ଦାୟିତ୍ୱ ଥିଲା ।

ମେକ୍‌ଲେ ପ୍ରାବନ୍ଧିକ ଓ ଐତିହାସିକ ଭାବରେ ସୁବିଦିତ । ତାଙ୍କ ପ୍ରବନ୍ଧଗୁଡ଼ିକ ମୁଖ୍ୟତଃ ଦୁଇଶ୍ରେଣୀରେ ବିଭକ୍ତ—ସାହିତ୍ୟିକ ଓ ଐତିହାସିକ । ସାହିତ୍ୟିକ ପ୍ରବନ୍ଧ ମଧ୍ୟରେ ମିଲ୍‌ଟନ୍, ବାଇରନ୍ ଓ ବାନିୟାନ୍‌ଙ୍କ ସମ୍ପର୍କୀୟ ଓ ଐତିହାସିକ ପ୍ରବନ୍ଧ ମଧ୍ୟରେ ୱାରେନ୍ ହେଷ୍ଟିଂସ୍ ଓ ଲର୍ଡ଼ କ୍ଲାଇଭ୍‌ଙ୍କ ସମ୍ବନ୍ଧୀୟ ରଚନା ଉଲ୍ଲେଖଯୋଗ୍ୟ ।

'ଇଂଲଣ୍ଡର ଇତିହାସ' (History of England) ରଚନାପାଇଁ ସେ ବିପୁଳ ଯଶର ଅଧିକାରୀ । ଗ୍ରନ୍ଥଟି ଅପୂର୍ଣ୍ଣ । ସେ ଦ୍ୱିତୀୟ ଜେମସ୍‌ଙ୍କ ସିଂହାସନ ଆରୋହଣ (୧୬୮୫)ଠାରୁ ଚତୁର୍ଥ ଜର୍ଜଙ୍କ ମୃତ୍ୟୁ (୧୮୩୦) ପର୍ଯ୍ୟନ୍ତ ଲେଖିବାକୁ ସ୍ଥିର କରିଥିଲେ । ଏ ଦିଗରେ ଉଦ୍ୟମ କରି ପାଞ୍ଚଖଣ୍ଡ ପୁସ୍ତକ ପୂର୍ଣ୍ଣାଙ୍ଗ କରିଥିଲେ ମଧ୍ୟ ସେଥିରେ ମାତ୍ର ଷୋହଳ

ବର୍ଷର ଇତିହାସ ସନ୍ନିବିଷ୍ଟ । ଏହି ଧାରାରେ ଗ୍ରନ୍ଥ ଲେଖା ଗ୍ରୁଲିଥିଲେ ଗ୍ରନ୍ଥଟି ପ୍ରାୟ ପଗ୍ଭୃଶ ଖଣ୍ଡରେ ପୂର୍ଣ୍ଣାଙ୍ଗ ହୋଇଥାଆନ୍ତା । ଏଥିପାଇଁ ଜଣେ ଲେଖକଙ୍କୁ ଶହେ ବର୍ଷ ପରିଶ୍ରମ କରିବାକୁ ପଡ଼ିଥାଆନ୍ତା । ଥ୍ୟାକରେ ଥରେ ପରିହାସ କରି କହିଥିଲେ ଯେ, ମେକଲେ କୋଡ଼ିଏ ଖଣ୍ଡ ବହି ପଢ଼ିଲେ ଗୋଟିଏ ବାକ୍ୟ ଲେଖନ୍ତି; ଶହେ ମାଇଲ ଭ୍ରମଣ କଲେ ଧାଡ଼ିଏ ବର୍ଣ୍ଣନା ଦିଅନ୍ତି ।

ଗଣିତ ଓ ବିଜ୍ଞାନ ପ୍ରତି ବୀତସ୍ପୃହତା ହେତୁ ମେକଲେଙ୍କ ଲେଖାରେ ଯୌକ୍ତିକ ନିର୍ଦ୍ଦିଷ୍ଟତାର ଅଭାବ ପରିଲକ୍ଷିତ ହୁଏ । ଅତିମାତ୍ରାରେ ଟିକିନିଖି ବିବରଣୀ ପ୍ରଦାନର ପ୍ରଯ୍ୟାସ ପ୍ରତିପାଦ୍ୟ ବିଷୟକୁ ଦୂରେଇ ନିଏ । ଗଭୀର ତାତ୍ତ୍ୱିକ ଉପସଂହାରରେ ମଧ୍ୟ ଉପନୀତ ହେବାକୁ ସେ ଅକ୍ଷମ । ଲେଖାରେ ତାଙ୍କର ଭାଷଣ ଦେବାର ଭଙ୍ଗୀ ଲକ୍ଷ୍ୟଣୀୟ ।

କାର୍ଡ଼ିନେଲ୍ ନିଉମ୍ୟାନ (John Henry Newman : ୧୮୦୧-୯୦) ଭିକ୍ଟୋରୀୟ ଯୁଗର ଶ୍ରେଷ୍ଠ ଧର୍ମୀୟ କବିତା ଓ ଗଦ୍ୟର ଲେଖକ । ସେ ପ୍ରଥମେ କାଲଭିନିଷ୍ଟ (ସ୍ୱିଜରଲ୍ୟାଣ୍ଡର ପ୍ରୋଟେଷ୍ଟାଣ୍ଟ ସଂସ୍କାରକ କାଲଭିନ୍‌ଙ୍କ ମତାବଲମ୍ବୀ) ଥିଲେ; ପରେ ରୋମାନ୍ ଚର୍ଚ୍ଚର ଆନୁଗତ୍ୟ ସ୍ୱୀକାର କରିଥିଲେ । ଖ୍ରୀ: ୧୮୩୨ରୁ ସେ ରୋମାନ୍ ଚର୍ଚ୍ଚର ଆଦର୍ଶ (କ୍ୟାଥୋଲିସିଜ୍‌ମ୍) ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ ହେଁ ଖ୍ରୀ: ୧୮୪୫ରେ ଉକ୍ତ ସଂପ୍ରଦାୟରେ ଯୋଗ ଦେଇଥିଲେ । ଧର୍ମବିଶ୍ୱାସ ପରିବର୍ତ୍ତନ ସମୟର ମାନସିକ ସଂକଟ ତାଙ୍କ କବିତା ଓ ଗଦ୍ୟ ରଚନାରେ ପ୍ରତିଫଳିତ ।

ଖ୍ରୀ: ୧୮୩୩ରେ ଇଟାଲିରୁ ଫେରି ସେ 'ଅକ୍‌ସ୍‌ଫୋର୍ଡ ଆନ୍ଦୋଳନ' ସହ ଜଡ଼ିତ ହୋଇପଡ଼ିଥିଲେ । ଏହି ଆନ୍ଦୋଳନର ଅନ୍ୟ ନାମ 'ଟ୍ରାକ୍‌ଟାରିଆନ୍ ମୁଭ୍‌ମେଣ୍ଟ୍ ।' ସେତେବେଳକୁ ଧର୍ମୀୟ ବିଶ୍ୱାସକୁ ବିଜ୍ଞାନର ଯୁକ୍ତିବାଦଦ୍ୱାରା ପରୀକ୍ଷା କରିବାର ପ୍ରବଣତା ଦେଖା ଦେଇଥିଲା । ଅକ୍‌ସ୍‌ଫୋର୍ଡ଼ ଆନ୍ଦୋଳନର ଉଦ୍ୟୋକ୍ତାମାନେ ଏହି ଯୁକ୍ତିବାଦର ବିରୋଧୀ ଥିଲେ । ଚର୍ଚ୍ଚର ପ୍ରଭାବ ବୃଦ୍ଧି ଏମାନଙ୍କର ଲକ୍ଷ୍ୟ ଥିଲା । ନିଉମ୍ୟାନ୍ ଏଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଆନ୍ଦୋଳନ ସପକ୍ଷରେ ସେ ବହୁ ଗଦ୍ୟ ରଚନା ପ୍ରକାଶ କରିଥିଲେ ମଧ୍ୟ ସେଗୁଡ଼ିକ ଉଚ୍ଚକୋଟୀର କଳାକୃତିରେ ପରିଣତ ହୋଇପାରିନାହିଁ ।

'ଏପୋଲୋଜିଆ' (Apologia pro vita sua) ଲେଖକଙ୍କ ଅନ୍ୟତମ ସୁଖ୍ୟାତ ରଚନା । ଏହା ତାଙ୍କ ବ୍ୟକ୍ତିଗତ ଜୀବନର ଆଧ୍ୟାତ୍ମିକ ବିବର୍ତ୍ତନର ଇତିହାସ । ଲେଖକ କ୍ୟାଥୋଲିକ୍ ମତବାଦ ଗ୍ରହଣ କରିବା ପରେ ଅନେକେ ତାଙ୍କୁ ସନ୍ଦେହୀ ଚକ୍ଷୁରେ ଦେଖିଲେ । ଏଣୁ ଲେଖକ ବାଲ୍ୟଜୀବନରୁ ନିଜ ଧର୍ମବିଶ୍ୱାସର ବିବରଣୀ ଉପସ୍ଥାପିତ କରି ନିଜ ଧର୍ମମତ ପରିବର୍ତ୍ତନକୁ ଏକ ଅପରିହାର୍ଯ୍ୟ ପରିଣତି ବୋଲି ପ୍ରତିପାଦନ କରିଛନ୍ତି । ଏହାର ପ୍ରକାଶଭଙ୍ଗୀ ସରଳ; ଅନ୍ତଃସ୍ୱରରେ ଆନ୍ତରିକତା ଭରି ରହିଛି ।

ଲେଖକଙ୍କ ଅନ୍ୟତମ ବିଶିଷ୍ଟ ରଚନା 'ଦ ଆଇଡ଼ିଆ ଅଫ୍ ଏ ୟୁନିଭର୍ସିଟି' (The Iodea of a University) । ଏହା ଲେଖକଙ୍କ ଶିକ୍ଷା ବିଷୟକ ଅଭିଭାଷଣର

ସଂକଳନ । ବିଶ୍ୱବିଦ୍ୟାଳୟଗୁଡ଼ିକ ଜ୍ଞାନଚର୍ଚ୍ଚାର ପୀଠ ହେବା ସଙ୍ଗେ ସଙ୍ଗେ ସୁନାଗରିକ ଗଠନ କରିବା ଦିଗରେ ଉପଯୋଗୀ ହେବାକୁ ସେ ପରାମର୍ଶ ଦେଇଛନ୍ତି । ତାଙ୍କ ମତରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ଉଦ୍ଦେଶ୍ୟ ଜୀବିକା ନିର୍ବାହପାଇଁ ଛାତ୍ରକୁ ତାଲିମ ଦେବା ନୁହେଁ; ଛାତ୍ରକୁ ଉତ୍ତମ ମଣିଷ ଭାବରେ ଗଢ଼ିବା ।

ଚିନ୍ତାଧାରାର ସୁଶୃଙ୍ଖଳ ବିନ୍ୟାସ ଓ ପରିଚ୍ଛନ୍ନ ପ୍ରକାଶଭଙ୍ଗୀପାଇଁ ସେ ଜଣେ ଉଚ୍ଚ-କୋଟୀର ଗଦ୍ୟ ଲେଖକ ଭାବରେ ପରିଗଣିତ ।

ରସ୍କିନ୍ (John Raskin : ୧୮୧୯-୧୯୦୦) କାର୍ଲାଇଲ୍ଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ ମଧ୍ୟ ତାଙ୍କଠାରୁ ଅଧିକ ଉଦାର ଓ ମାନବବାଦୀ । କାର୍ଲାଇଲ୍ଙ୍କ ଭଳି ସେ ଜଣେ ନୀତିବେତ୍ତା । କାର୍ଲାଇଲ୍ଙ୍କ ଭଳି ନିଜ ଗଦ୍ୟଶୈଳୀ ପାଇଁ ସେ ପ୍ରସିଦ୍ଧ; କିନ୍ତୁ କାର୍ଲାଇଲ୍ଙ୍କ ଅପେକ୍ଷା ଏହାଙ୍କର ଆଦର୍ଶବାଦ ସମାଜ ପକ୍ଷରେ ଅଧିକ ଶୁଭଙ୍କର । ରସ୍କିନ୍ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ଫାଇନ୍ ଆର୍ଟ ବିଭାଗର ପ୍ରଫେସର ଥିଲେ । କଳା ଓ ସମାଜ ସମ୍ବନ୍ଧୀୟ ତାଙ୍କର ରଚନାବଳୀରେ ଏହି ମହାନ୍ ନୀତିବାଦୀଙ୍କ ବ୍ୟକ୍ତିତ୍ୱ ପ୍ରତିଫଳିତ ହୋଇଛି ।

କଳା-ସମାଲୋଚନା କ୍ଷେତ୍ରରେ ତାଙ୍କର 'ମଡ଼ର୍ଣ୍ଣ ପେଣ୍ଟର୍ସ' (Modern Painters : ୧୮୪୩-୬୦) ଉଲ୍ଲେଖଯୋଗ୍ୟ । ଚିତ୍ରଶିଳ୍ପୀ ଟର୍ନର୍ (Turner)ଙ୍କ ଶିଳ୍ପାଦର୍ଶରେ ପ୍ରତିକୂଳ ସମାଲୋଚନାର ଉତ୍ତରରେ ଏହାର ପରିକଳ୍ପନା; କିନ୍ତୁ ଏହି ଉଦ୍ଦେଶ୍ୟ ସାଧନା କରିବାକୁ ଯାଇ ସେ କଳାର ତାତ୍ତ୍ୱିକ ଆଲୋଚନା କ୍ଷେତ୍ରକୁ ଏକ ମହାନ୍ ଅବଦାନ ଯୋଗାଇ ଦେଇଛନ୍ତି । ଗ୍ରନ୍ଥଟି ପାଞ୍ଚଖଣ୍ଡରେ ବିଭକ୍ତ । ଏଥିରେ ସେ ସୌନ୍ଦର୍ଯ୍ୟବୋଧ, ପ୍ରକୃତିର ଅନୁକରଣ ଓ ନୀତିବୋଧ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

'ସେଭେନ୍ ଲ୍ୟାମ୍ପ୍ସ୍ ଅଫ୍ ଆର୍କିଟେକ୍ଚର' (Seven Lamps of Architecture : ୧୮୪୯)ରେ ଲେଖକଙ୍କ ସ୍ଥାପତ୍ୟ ସମ୍ପର୍କୀୟ ଚିନ୍ତାଧାରା ପ୍ରକାଶ ପାଇଛି । ନୀତିବାଦୀର ଦୃଷ୍ଟିଭଙ୍ଗୀ ଏଥିରେ ମଧ୍ୟ ତୀବ୍ର । ସ୍ଥାପତ୍ୟର ଭିତ୍ତି ସ୍ୱରୂପ ସେ ସାତଟି ପ୍ରଦୀପର ପରିକଳ୍ପନା କରିଛନ୍ତି; ସେଗୁଡ଼ିକ ହେଲ—ତ୍ୟାଗ, ସତ୍ୟ, ଶକ୍ତି, ସୁନ୍ଦରଶିଳ୍ପ, ସୌନ୍ଦର୍ଯ୍ୟ-ବୋଧ, ପ୍ରାଣ ଓ ଆନୁଗତ୍ୟ (obedience) । ରେନାସାଁର ଉଚ୍ଛୃଙ୍ଖଳ କଳାକୁ ସେ ଘୃଣା କରନ୍ତି ।

'ଅନ୍ଟୁ ଦିସ୍ ଲାଷ୍ଟ' (Unto this Last : ୧୮୬୨)ରେ ରସ୍କିନ୍ଙ୍କ ସାମାଜିକ ନ୍ୟାୟ ଓ ଅର୍ଥନୀତି ସମ୍ବନ୍ଧୀୟ ବୈପ୍ଳବିକ ଚିନ୍ତାଧାରା ପ୍ରକାଶ ପାଇଛି । ସମକାଳୀନ ଚିନ୍ତାଶୀଳ ବ୍ୟକ୍ତିଙ୍କ ତୀବ୍ର ପ୍ରତିବାଦ ଯୋଗୁଁ ଏହା ଗୋଟିଏ ପତ୍ରିକାରେ ସଂପୂର୍ଣ୍ଣ ହେବା ପର୍ଯ୍ୟନ୍ତ ପ୍ରକାଶ ପାଇପାରିନଥିଲ । ଏହାର ମହନୀୟତା କିନ୍ତୁ ବହୁ ଆଧୁନିକ ମନୀଷୀଙ୍କଦ୍ୱାରା ସ୍ୱୀକୃତ ହୋଇଛି । ମହାତ୍ମା ଗାନ୍ଧିଙ୍କ ଜୀବନରେ ଏହାର ପ୍ରଭାବ ପଡ଼ିଥିଲା । ରସ୍କିନ୍ଙ୍କ ମତରେ ଧନ

ସମ୍ପଦ ଅପେକ୍ଷା ମନୁଷ୍ୟର ହିଁ ମୂଲ୍ୟ ଅଧିକ । ଅନ୍ୟ କଥାରେ ମନୁଷ୍ୟର ପ୍ରକୃତ ମୂଲ୍ୟ ତା ପକେଟରେ ନଥାଏ; ଥାଏ ତାର ଆତ୍ମାରେ । ଏଣୁ ପ୍ରକୃତ ମଣିଷ ଗଢ଼ିବା ହିଁ ସମସ୍ତ ସାଧନାର ଲକ୍ଷ୍ୟ ହେବା ଉଚିତ । ଏଥିପାଇଁ କିଶୋର କିଶୋରୀଙ୍କୁ ସ୍ୱାସ୍ଥ୍ୟ, ସୌଜନ୍ୟ, ନ୍ୟାୟପରାୟଣତା ଓ ଉପଯୁକ୍ତ ବୃତ୍ତି ସମ୍ବନ୍ଧରେ ଶିକ୍ଷା ଦେବାପାଇଁ ସ୍କୁଲମାନ ପ୍ରତିଷ୍ଠା କରିବାର ଆବଶ୍ୟକତା ସେ ବୁଝାଇଛନ୍ତି । ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥର ଉତ୍ପାଦନ ଦାୟିତ୍ୱ ସରକାର ବହନ କରିବା ଉଚିତ ବୋଲି ସେ ମତ ବାଢ଼ିଛନ୍ତି । ବେକାରମାନଙ୍କ ପ୍ରତି ଉପଯୁକ୍ତ ବୃତ୍ତି ଦେବାକୁ, ରୁଗ୍ଣ, ଦୁଃଖୀ ଓ ବୃଦ୍ଧମାନଙ୍କ ପାଇଁ ସାମାଜିକ ନ୍ୟାୟଦୃଷ୍ଟିରୁ ସେବାଗୃହମାନ ପ୍ରତିଷ୍ଠା କରିବାକୁ ପରାମର୍ଶ ଦେଇଛନ୍ତି । ଜଣେ ଶ୍ରମିକ ଓ ଜଣେ ସୈନିକଙ୍କ ଦେଶସେବାକୁ ସମାନ ସ୍ତରର ବୋଲି କହିବାକୁ ଯାଇ ସେ ନିଷ୍ଠାପର ସେବାର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ।

ରସ୍କିନଙ୍କ ଶ୍ରେଷ୍ଠକୃତି 'ସିସେମ୍ ଆଣ୍ଡ୍ ଲିଲିଜ୍' (Sesame and Lilies) ଗ୍ରନ୍ଥଟି ତିନି ଭାଗରେ ବିଭକ୍ତ । ପ୍ରଥମ ଭାଗରେ ପୁସ୍ତକ ପଠନ ରୀତି, ଦ୍ୱିତୀୟ ଭାଗରେ ସମାଜରେ ନାରୀର ଭୂମିକା ଓ ତୃତୀୟ ଭାଗରେ ବ୍ୟକ୍ତିଗତ ଜୀବନର ସଫଳତା ପ୍ରସଙ୍ଗରେ ଏକ ବିଷାଦବାଦୀ ସ୍ୱଗତୋକ୍ତି ଅନ୍ତର୍ଭୁକ୍ତ । ଗ୍ରନ୍ଥଟିର ମହତ୍ତ୍ୱ ପ୍ରଥମ ଦୁଇଭାଗ ଉପରେ ହିଁ ନିର୍ଭର କରେ । ଏ ଦୁଇଖଣ୍ଡର ନାମ ଯଥାକ୍ରମେ 'କିଂସ୍ ଟ୍ରେଜାରିଜ୍' ଓ 'ଅଫ୍ କୁଇନ୍ସ୍ ଗାର୍ଡେନ୍ସ୍' ।

ଗ୍ରନ୍ଥଟିର ନାମକରଣ ପ୍ରତୀକାତ୍ମକ । 'ସିସେମ୍' ଶବ୍ଦଟି ଆରବ୍ୟ କାହାଣୀରୁ ଗୃହୀତ । ଆଲିବାବା ଗଳ୍ପରେ ଏହି ଶବ୍ଦ ଉଚ୍ଚାରଣ ମାତ୍ରେ ଅମିତ ଗୁପ୍ତଧନ-ଭଣ୍ଡାରର ଦ୍ୱାରଦେଶ ଖୋଲିଯାଏ । ଲେଖକଙ୍କ କଳ୍ପନାରେ ଉତ୍ତମ ପୁସ୍ତକ ସେହିଭଳି ଭାବ-ସମ୍ପଦର ଗନ୍ତାଘର । ଏଗୁଡ଼ିକ ଉନ୍ନତମନା ଲେଖକଙ୍କ ସୃଷ୍ଟି । ପୁସ୍ତକରେ ବ୍ୟବହୃତ ଶବ୍ଦସମଷ୍ଟିର ଅର୍ଥ ଉପଲବ୍ଧି କଲେ ହିଁ ଏଇ ଗନ୍ତାଘରର ସନ୍ଧାନ ମିଳେ । ଶବ୍ଦଗୁଡ଼ିକ ଆରବ୍ୟ କାହାଣୀର 'ସିସେମ୍' ଭଳି ରହସ୍ୟପୂର୍ଣ୍ଣ । ସାମୟିକ ଭାବରେ ଆବେଦନକ୍ଷମ ପୁସ୍ତକ ପାଠ ନକରି ଚିରନ୍ତନ ମୂଲ୍ୟରେ ଗରୀୟାନ୍ ଗ୍ରନ୍ଥମାନ ପଢ଼ିବାକୁ ଲେଖକ ପ୍ରେରଣା ଦେଇଛନ୍ତି ।

ଗ୍ରନ୍ଥ ଶୀର୍ଷକର 'ଲିଲିଜ୍' ଶବ୍ଦଟି 'ଅଫ୍ କୁଇନ୍ସ୍ ଗାର୍ଡେନ୍ସ୍' ପ୍ରତି ପ୍ରଯୁଜ୍ୟ । 'ଲିଲି' ପବିତ୍ରତା, ସୌନ୍ଦର୍ଯ୍ୟ ଓ ଶାନ୍ତିର ପ୍ରତୀକ । ନାରୀଜାତିର ଏଭଳି ଏକ ମହାନ୍ ରୂପ ସେ ପ୍ରତ୍ୟକ୍ଷ କରିଛନ୍ତି । ସମାଜର ଉନ୍ନତି ଓ ଅଗ୍ରଗତିପାଇଁ ନାରୀ ସମାଜକୁ ଅଗ୍ରଣୀ ହେବାକୁ ପଡ଼ିବ ବୋଲି ତାଙ୍କର ମତ । ନାରୀଙ୍କ ସମ୍ବନ୍ଧରେ ଲେଖିବାର ବିଶେଷ ପ୍ରବଣତା ରସ୍କିନଙ୍କର ରହିଛି । ସେହିଭଳି ବିଷୟରେ ଆତ୍ମନିବିଷ୍ଟ ଥିବାବେଳେ ତାଙ୍କ ପ୍ରକାଶଭଙ୍ଗୀ ଉନ୍ନତକୋଟୀ ସ୍ପର୍ଶ କରିଥାଏ । ଏତଦ୍‌ବ୍ୟତୀତ କଳା, ସାହିତ୍ୟ, ବିଜ୍ଞାନ, ଶିକ୍ଷା, ଶ୍ରମ ଓ ପ୍ରକୃତି ସମ୍ପର୍କୀୟ ତାଙ୍କର ଅଭିମତ ପ୍ରଣିଧାନଯୋଗ୍ୟ ।

ସତ୍ୟାନୁସନ୍ଧାନ, ସୌନ୍ଦର୍ଯ୍ୟବୋଧ ଓ ଚରିତ୍ରବତ୍ତା ମଧ୍ୟରେ ରସ୍କିନ୍ ପୂର୍ଣ୍ଣାଙ୍ଗ ଜୀବନର ସମ୍ଭାବନା ଦେଖିପାରିଛନ୍ତି । ଏପରିକି ଶିଳ୍ପକ୍ଷେତ୍ରରେ ମାଲିକ ଓ ଶ୍ରମିକଙ୍କ

ମଧ୍ୟରେ ଭ୍ରାତୃତ୍ୱର ଆବଶ୍ୟକତା ଦର୍ଶାଇ ଦୂରଦୃଷ୍ଟିର ପରିଚୟ ଦେଇଛନ୍ତି । କଳାର ସେ ଶ୍ରେଷ୍ଠ ପୂଜାରୀ, ଏ କ୍ଷେତ୍ରରେ ଉଚ୍ଛୃଙ୍ଖଳତା ତାଙ୍କ ପକ୍ଷରେ ଅସହ୍ୟ । ନୀତିବୋଧର ଅଭାବରେ କଳା ଅର୍ଥହୀନ ବୋଲି ତାଙ୍କର ବିଶ୍ୱାସ । କଳକାରଖାନାର ପଛରେ ଥିବା ଉଗ୍ର ଧନ-ଲିପ୍ସା ଓ ଶିଳ୍ପୋତ୍ପାଦନରେ ରୁଚିବୋଧ ତଥା ଶିଳ୍ପୀର ଆତ୍ମସମ୍ମାନବୋଧର ଅଭାବ ଲକ୍ଷ୍ୟକରି ସେ ତୀବ୍ର ଅନ୍ତର୍ଦାହ ଅନୁଭବ କରିଛନ୍ତି । ସମାଜତାନ୍ତ୍ରିକ ଚିନ୍ତାଧାରାପାଇଁ ସେ ବିଶେଷ ସମ୍ମାନିତ ।

ରସ୍କିନ୍‌ଙ୍କ ଗଦ୍ୟଶୈଳୀ ଇଂରେଜୀ ସାହିତ୍ୟରେ ଆଦର୍ଶ ସ୍ଥାନୀୟ । ତାଙ୍କ ଗଦ୍ୟ ଆବେଗପ୍ରଧାନ । ଏହାକୁ କାବ୍ୟିକ ଗଦ୍ୟ କୁହାଯାଇପାରେ । ପ୍ରଥମେ ପ୍ରଥମେ ସ୍ୱର-ଗାମ୍ଭୀର୍ଯ୍ୟ, ଚିତ୍ରକଳ୍ପ ଓ ଛନ୍ଦର ପ୍ରୟୋଗ ହେତୁ ଏହା ଅମିତାକ୍ଷର ଛନ୍ଦ (blank verse)ରେ ପରିଣତ ହେଉଥିଲା । ପରେ ପରେ ସେ ବାଇବେଲ୍‌ର ସରଳ, ସାବଲୀଳ ଶୈଳୀ ଗ୍ରହଣ କରିଛନ୍ତି; ଗଦ୍ୟରେ ଗୀତି-କବିତାର ଆବେଦନ ଫୁଟି ଉଠିଛି । ତାଙ୍କର ବକ୍ତବ୍ୟ ଅପେକ୍ଷା ଗଦ୍ୟଶୈଳୀ ପ୍ରତି ପାଠକମାନେ ବିଶେଷ ଆକୃଷ୍ଟ ହେଉଥିବାର ଲକ୍ଷ୍ୟକରି ଏକଦା ସେ କ୍ଷୋଭ ପ୍ରକାଶ କରିଥିଲେ ।

ମାଥ୍ୟୁ ଆର୍ନଲଡ୍‌ (Matthew Arnold : ୧୮୨୨-୮୮) କବି ଅପେକ୍ଷା ସମାଲୋଚକ ଭାବରେ ଅଧିକ ଯଶସ୍ୱୀ । ଅନାସକ୍ତି ଓ ନିରପେକ୍ଷତା ସମାଲୋଚନାର ମାନଦଣ୍ଡ ବୋଲି ସେ ବିଶ୍ୱାସ କରନ୍ତି । ତାଙ୍କ ମତରେ ସମାଲୋଚନାର ଲକ୍ଷ୍ୟ ହେଉଛି, ପୃଥିବୀର ଶ୍ରେଷ୍ଠ ଚିନ୍ତା ଓ ଜ୍ଞାନର ପ୍ରସାର ଘଟାଇବା; ଆଞ୍ଚଳିକତା ବା ସମୟର ସୀମା ମଧ୍ୟରେ ସମାଲୋଚନା ଆବଦ୍ଧ ହେବା ଉଚିତ ନୁହେଁ, ସୃଷ୍ଟିଧର୍ମୀ କଳାପରି ଏହା ସାର୍ବଜନୀନ; କଳାକାର ବା ଲେଖକପରି ସମାଲୋଚକ ମଧ୍ୟ ସମାଜର ମୁଖପାତ୍ର । ଉତ୍କୃଷ୍ଟ ସମାଲୋଚନା ପାଇଁ ସେ ତୁଳନାତ୍ମକ ପଦ୍ଧତି (Comparative method)ର ପକ୍ଷପାତୀ । ତାଙ୍କ ମତରେ ଅତୀତ ଓ ବର୍ତ୍ତମାନର ସୃଷ୍ଟି ଓ ଚିନ୍ତାଧାରା ତଥା ଭିନ୍ନ ଭାଷାଭାଷୀ ଅଞ୍ଚଳର ଚିନ୍ତା ଓ ଚେତନାକୁ ଆଖି ଆଗରେ ରଖି ସମାଲୋଚକ କୌଣସି ନିର୍ଦ୍ଦିଷ୍ଟ କୃତି ଉପରେ ନିଜର ମତାମତ ବ୍ୟକ୍ତ କରିବା ଉଚିତ । ଐତିହାସିକ ପଦ୍ଧତି ତ୍ରୁଟିଶୂନ୍ୟ ନୁହେଁ ବୋଲି ତାଙ୍କର ମତ, କାରଣ ଲେଖକଙ୍କ ଜୀବନୀ ଓ ପରିବେଶ ଅନୁଧ୍ୟାନ କଲେ ସେଥିରୁ ତାଙ୍କ ରଚନାର ଯଥାର୍ଥ ଅବବୋଧ ସବୁ ସମୟରେ ସମ୍ଭବ ହୋଇନପାରେ । ନାଟକ-ସମାଲୋଚନା କ୍ଷେତ୍ରରେ ସେ କଥାବସ୍ତୁର ସୁଷ୍ଠୁ ବିନ୍ୟାସ ଉପରେ ଗୁରୁତ୍ୱ ଦେଇଥାନ୍ତି । କବିତାର ରୂପରେଖ ସମ୍ବନ୍ଧରେ ତାଙ୍କର ନିଜସ୍ୱ ଅଭିମତ ରହିଛି । ସେ କହନ୍ତି କବିତା ହେଉଛି, "A criticism of life under the conditions fixed for such criticism by the Laws of poetic truth and poetic beauty."

ଏସେଜ୍ ଇନ୍ କ୍ରିଟିସିଜ୍‌ମ୍ (Essays in criticism) ଲେଖକଙ୍କ ସର୍ବଶ୍ରେଷ୍ଠ ସମାଲୋଚନା ଗ୍ରନ୍ଥ । କେବଳ ଦୋଷ ତ୍ରୁଟି ନିର୍ଦ୍ଦେଶ କରିବା ବା ନିଜର ପାଣ୍ଡିତ୍ୟ ପ୍ରଦର୍ଶନ

କରିବା ଅପେକ୍ଷା ଏଠାରେ ତାଙ୍କର ଉଦ୍ଦେଶ୍ୟ ହୋଇଛି ଜୀବନର ଆହରଣ ତଥା ବିକାଶରେ ସହାୟତା କରିବା । ଏଥିରେ ସନ୍ନିବିଷ୍ଟ 'ଦ ଷ୍ଟଡ଼ି ଅଫ୍ ପଏଟ୍ରି', 'ଓ୍ୱାର୍ଡସ୍‌ଓ୍ୱାର୍ଥ', 'ବାଇରନ୍' ଓ 'ଇମାରସନ୍' ପରି ପ୍ରବନ୍ଧ ଅତି ଉଚ୍ଚକୋଟୀର । ତଥାପି ତାଙ୍କ ମତ ସବୁକ୍ଷେତ୍ରରେ ଗ୍ରହଣ-ଯୋଗ୍ୟ ହୋଇନାହିଁ । ଶେଲିଙ୍କ ସମ୍ପର୍କରେ ବିରୂପ ମନ୍ତବ୍ୟ ଦେଇ ସେ ବହୁ ସମାଲୋଚିତ ହୋଇଛନ୍ତି । ତାଙ୍କ ମତରେ ଶେଲି ଗୋଟାଏ ଅପଦାର୍ଥ—ଚହଟ ଚକ୍‌ମକ ଦେବଦୂତ; ଉଚ୍ଛ୍ୱାଟାକୁ ସେ ଶୂନ୍ୟରେ ତାଙ୍କର ଉଜ୍ଜ୍ୱଳ ଡେଣା ବାଡ଼ଉଥାନ୍ତି, "an ineffectual angel beating in the void his luminous wings in vain"

ଆର୍ନଲ୍ଡ଼ ଧର୍ମ ଦିଗରୁ ଉଦାରବାଦୀ । ତାଙ୍କର ଏହି ଦୃଷ୍ଟି ଭଙ୍ଗୀ 'ଲିଟରେଚର୍ ଆଣ୍ଡ୍ ଡଗ୍‌ମା' (Literature and dogma) ଗ୍ରନ୍ଥରେ ପ୍ରକାଶ ପାଇଛି । ଧର୍ମାନ୍ଧତା ଓ ଅନ୍ଧବିଶ୍ୱାସ ପ୍ରତି ସେ ଖଡ଼୍‌ଗହସ୍ତ । ତାଙ୍କ ମତରେ ଧର୍ମଭାବରେ ଗଦ୍‌ଗଦ୍ ନ ହୋଇ ବାଇବେଲ୍‌କୁ ଅନ୍ୟାନ୍ୟ ଦର୍ଶନ ବା ସାହିତ୍ୟ ପୁସ୍ତକ ଭାବରେ ପାଠ କରାଯାଇପାରେ ।

'କଲ୍‌ଚର୍ ଆଣ୍ଡ୍ ଆନାର୍କି' (Culture and Anarchy) ଗ୍ରନ୍ଥରେ ଲେଖକ ଇଂଲଣ୍ଡର ସାମାଜିକ ଜୀବନର ଦୋଷତ୍ରୁଟି ପ୍ରତି କଟାକ୍ଷ କରିଛନ୍ତି । ଉକ୍ତ ସମାଜର ସଂସ୍କୃତିହୀନତା, ଭୌତିକ ବିକାଶ ପ୍ରତି ଆଗ୍ରହ ଓ ଆଧ୍ୟାତ୍ମିକତା ପ୍ରତି ଅନାସକ୍ତି ଭଳି ଦୁର୍ବଳତା ପ୍ରତି ଶ୍ଳେଷୋକ୍ତି ପ୍ରୟୋଗ କରିଛନ୍ତି । ସମାଜର ଉଚ୍ଚଶ୍ରେଣୀକୁ ସେ ବର୍ବର ଆଖ୍ୟା ଦେଇଛନ୍ତି ବାହ୍ୟ ଚାକଚକ୍ୟ ଓ ଚଳଣୀ ମଧ୍ୟରେ ଏମାନଙ୍କ ବ୍ୟକ୍ତିସତ୍ତା ଅତ୍ୟନ୍ତ ଅମାର୍ଜିତ । ମଧ୍ୟବିତ୍ତଶ୍ରେଣୀରେ ମଧ୍ୟ ନାନା ଦୁର୍ଗୁଣ ଭରିରହିଛି—ଏମାନେ ଆତ୍ମକୈନ୍ଦ୍ରିକ, ଏମାନଙ୍କ ଦୃଷ୍ଟିଭଙ୍ଗୀ ଅତ୍ୟନ୍ତ ସଂକୀର୍ଣ୍ଣ । ଲେଖକ ଏମାନଙ୍କୁ ଅସଂସ୍କୃତ (Philistine) ଆଖ୍ୟା ଦେଇଛନ୍ତି; ଜ୍ଞାନାନ୍ୱେଷଣରେ ଯେ ଗୋଟାଏ ସାତ୍ତ୍ୱିକ ଆନନ୍ଦ ଥାଇପାରେ, ଏମାନେ ତାହା ବୁଝିବାକୁ ଅକ୍ଷମ । ସଂସ୍କୃତିର ମୂଳପିଣ୍ଡ ଜୀବନଦୀପ୍ତ, ପ୍ରାଣୋଚ୍ଛଳ, ପ୍ରୀତିପ୍ରଦ, ମଧୁର ବ୍ୟକ୍ତିତ୍ୱ । ଏମାନଙ୍କଠାରେ ତା ସ୍ୱପ୍ନ । ଆର୍ନଲ୍ଡ଼୍‌ଙ୍କ ଭାଷାରେ, "Culture is the minister of the sweetness and light essential to the perfect character." ଏ ଯୁଗରେ କାର୍ଲାଇଲ୍ ନୀତିବୋଧ (hebraism)ର ପ୍ରଖ୍ୟାପନ କରିଥିବା ବେଳେ ଆର୍ନଲଡ଼୍ ଜ୍ଞାନ ଓ ସୌନ୍ଦର୍ଯ୍ୟବୋଧ (hellenism)ର ପ୍ରତିଷ୍ଠା କରିଛନ୍ତି ।

ବକ୍ରୋକ୍ତି ଓ ଶ୍ଳେଷ ସମନ୍ୱିତ ସାବଲୀଳ ପ୍ରକାଶଭଙ୍ଗୀରୁ ଲେଖକଙ୍କ ବ୍ୟକ୍ତିତ୍ୱ ପରିସ୍ଫୁଟ ହୋଇଉଠେ ।

ଓ୍ୱାଲ୍‌ଟର୍ ପେଟାର୍ (Walter Horatio Pater : ୧୮୩୯-୯୪) କଳା ଓ ସାହିତ୍ୟର ଏକନିଷ୍ଠ ପୂଜାରୀ । ତାଙ୍କର ପ୍ରଥମ ପ୍ରବନ୍ଧ ସଂକଳନ 'ଷ୍ଟଡ଼ିଜ୍ ଇନ୍ ଦ ହିଷ୍ଟ୍ରି ଅଫ୍ ଦ ରେନାସାଁ' (Studies in the History of the Renaissa-nce)ଟି କଳା ସମ୍ପର୍କିତ ଏକ ଆଲୋଚନା ଗ୍ରନ୍ଥ । 'ଏପ୍ରିସିଏସନ୍‌ସ୍' (Apprecia-tions) ତାଙ୍କର ଶ୍ରେଷ୍ଠ ସମାଲୋଚନା କୃତି । ଏଥିରେ ସେ ଚାର୍ଲସ୍ ଲ୍ୟାମ୍ବ୍, ଓ୍ୱାର୍ଡସ୍

ଓ୍ୱାର୍ଥ କଲରିଜ୍ ପରି କେତେଜଣ କବି ଓ ଲେଖକଙ୍କର ମୂଲ୍ୟାୟନ କରିଛନ୍ତି । ଏହାର ମୁଖବନ୍ଧ ଭାବରେ ପ୍ରଦତ୍ତ ଶୈଳୀ ସମ୍ପର୍କୀୟ ପ୍ରବନ୍ଧଟି ଅତ୍ୟନ୍ତ ମୂଲ୍ୟବାନ । ତାଙ୍କ ମତରେ କଳା ବା ସାହିତ୍ୟ ବସ୍ତୁଜଗତର ପ୍ରତିଲିପି ନୁହେଁ; ଏହା ତତ୍ସମ୍ପୃକ୍ତ ଅନୁଭୂତି (Sense of fact)ର ପରିପ୍ରକାଶ ମାତ୍ର । ଏହି ଅନୁଭୂତିର ଯଥାଯଥ ପ୍ରକାଶପାଇଁ ଉପଯୁକ୍ତ ଶବ୍ଦ ଚୟନ ଲେଖକର ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । ପେଟାରଙ୍କ ଏହି ମତବାଦ ଫରାସୀ କଳାକାର ଫ୍ଲବାର୍ଟ (Flaubert)ଙ୍କ ଆଦର୍ଶ ପ୍ରଣୋଦିତ ।

ପେଟାର କଳା-କୈବଲ୍ୟ-ବାଦ (Art for Art's sake)ରେ ବିଶ୍ୱାସୀ । ସେ ସୌନ୍ଦର୍ଯ୍ୟବାଦୀ ଗୋଷ୍ଠୀ (School of aesthetic criticism)ର ପ୍ରତିନିଧିସ୍ଥାନୀୟ । କଥାବସ୍ତୁ ଅପେକ୍ଷା ପ୍ରକାଶଭଙ୍ଗୀ ଉପରେ ସେ ଅଧିକ ଗୁରୁତ୍ୱ ଦେଉଥିଲେ । ସମବେଦନଶୀଳ ଦୃଷ୍ଟି ବିନା କଳାକୃତିର ଆସ୍ୱାଦନ ସମ୍ଭବ ନୁହେଁ ବୋଲି ତାଙ୍କର ବିଶ୍ୱାସ । ଅତିମାତ୍ରିକ କଳା ସଚେତନତା ବା ପରିପୂର୍ଣ୍ଣତା (Perfectness) ହାସଲ କରିବାର ପ୍ରୟାସ ହେତୁ ଅନେକ ସମୟରେ ତାଙ୍କ ଲେଖା ପ୍ରାଣ-ପ୍ରାଚୁର୍ଯ୍ୟ ହରାଇଛି ।

ଷ୍ଟିଭେନସନ୍ (Robert Louis Stevenson : ୧୮୫୦-୯୪) କେବଳ ଔପନ୍ୟାସିକ ନୁହନ୍ତି, ପ୍ରାବନ୍ଧିକ ମଧ୍ୟ । ଲ୍ୟାମ୍ବ ଓ ହାଜ୍‌ଲିଟ୍‌ଙ୍କ ପରି ସେ ବ୍ୟକ୍ତିନିଷ୍ଠଧାରାକୁହିଁ ଭାବପ୍ରକାଶର ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି । ସାର୍ଥକ ବ୍ୟକ୍ତିନିଷ୍ଠ ପ୍ରାବନ୍ଧିକ ଭାବରେ ସେ ନିଜେ ହିଁ ନିଜ କଥାବସ୍ତୁର କେନ୍ଦ୍ର । ପ୍ରବନ୍ଧଗୁଡ଼ିକ ତାଙ୍କ ବ୍ୟକ୍ତିଗତ ଜୀବନର ଘଟଣା, ଅଭିଜ୍ଞତା, ଅଭ୍ୟାସ ତଥା ରୁଚିର ପରିଚୟ ଦିଏ । ସେ ବଡ଼ ଆନ୍ତରିକତାର ବାୟୁମଣ୍ଡଳ ସୃଷ୍ଟିକରି ପାଠକ ଆଗରେ ନିଜର ସୁଖ, ଦୁଃଖ, ଚିନ୍ତା, ଚେତନା ବାଢ଼ି ବସନ୍ତି ।



ଷ୍ଟିଭେନ୍‌ସନ୍ ଥିଲେ ଆଜୀବନ ରୁଗ୍‌ଣ । ଯକ୍ଷ୍ମା ରୋଗ ତାଙ୍କୁ ଦିନକୁ ଦିନ ମୃତ୍ୟୁର ଗହ୍ୱର ଆଡ଼କୁ ଟାଣି ନେଉଥିଲା । ତଥାପି ମନର ସରସତା ସେ କେବେ ହରାଇ ନାହାନ୍ତି । ଜୀବନର ଗୁରୁତ୍ୱପୂର୍ଣ୍ଣ ସମସ୍ୟାକୁ ଆଡ଼େଇ ଯାଇ ଅପେକ୍ଷାକୃତ ଲଘୁ ଉପାଦାନକୁ ସେ ଲେଖନୀର ଉପଜୀବ୍ୟ ଭାବରେ ଗ୍ରହଣ କରିଛନ୍ତି । ଭିକ୍ଟୋରୀୟ ନୈତିକବୋଧ ତାଙ୍କ ସ୍ୱରରେ ଝଂକୃତ । 'ଭର୍ଜିନିବାସ ପିଉରିସ୍‌କ୍' ( Virginibus Puerisque ) ପ୍ରବନ୍ଧ ସଙ୍କଳନଟି ତାଙ୍କର ଏକ ଅମ୍ଳାନ କୀର୍ତ୍ତି । ଶିଳ୍ପୀ ଭାବରେ ସେ ଅଧ୍ୟବସାୟ ଓ ନିଷ୍ଠାରେ ବିଶ୍ୱାସୀ ।

ଏ ଯୁଗର ନିତ୍ୟ ସମ୍ପ୍ରସାରିତ ପ୍ରବନ୍ଧ ସାହିତ୍ୟର ପରିସୀମା ମଧ୍ୟରେ ମିଲ୍ (John Stuart Mill : ୧୮୦୬-୭୩) ଓ ହାକ୍‌ସ୍‌ଲି (Aldous Huxley : ଜନ୍ମ ୧୮୯୪)ଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ଏ ଦୁଇ ଲେଖକ ଯଥାକ୍ରମେ ରାଜନୈତିକ ଓ ବୈଜ୍ଞାନିକ ଚିନ୍ତାଧାରା ସମ୍ବଳିତ ନିଜ ନିଜ ରଚନାକୁ ସାହିତ୍ୟ ପର୍ଯ୍ୟାୟକୁ ଉନ୍ନୀତ କରି ଅପୂର୍ବ କଳା କୁଶଳତାର ପରିଚୟ ଦେଇଛନ୍ତି ।



# ଦ୍ୱାଦଶ ଅଧ୍ୟାୟ

# ଆଧୁନିକ ଯୁଗ

## [ଖ୍ରୀ: ୧୮୯୦—୧୯୩୯]

ଆଧୁନିକ ଯୁଗ ଅସ୍ଥିରତା, ଉଦ୍‌ବେଗ, ବିଷଣ୍ଣତା ଓ ହତାଶାର ଯୁଗ । ବିଜ୍ଞାନର ନିତ୍ୟନୂତନ ଆବିଷ୍କାର, ଯାନ୍ତ୍ରିକତାର ପ୍ରସାର, ସମାଜତତ୍ତ୍ୱ ଓ ମନସ୍ତତ୍ତ୍ୱ କ୍ଷେତ୍ରରେ ନୂତନ ବୈପ୍ଲବିକ ଚିନ୍ତାଧାରା—ଏ ସମସ୍ତ ମାନବ ସଭ୍ୟତାର ନୂତନ ଦିଗ୍‌ବଳୟ ଉନ୍ମୋଚନ କରିବା ସଙ୍ଗେ ସଙ୍ଗେ ନୂତନ ସମସ୍ୟାର ସୂତ୍ରପାତ ମଧ୍ୟ କରିଛି । ରାଜନୈତିକ ପ୍ରତିପତ୍ତିର ମୋହ ଓ ବାଣିଜ୍ୟିକ ପ୍ରତିଯୋଗିତା ମାନବଜାତି ପାଇଁ ଚରମ ସଙ୍କଟ ଡାକିଆଣିଛି । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ମଧ୍ୟରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ସମସ୍ତ ପ୍ରାଚୀନ ମୂଲ୍ୟବୋଧର ମୂଳଦୁଆକୁ ଦୋହଲାଇ ଦେଇ ଭବିଷ୍ୟତ ସମ୍ପର୍କରେ ଏକ ବିରାଟ ପ୍ରଶ୍ନବାଚୀ ତୋଳିଛି । ଧର୍ମବିଶ୍ୱାସ, ନୈତିକତା ତଥା ମାନବିକ ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇ ଆଜିର ମଣିଷ ଭୌତିକତାର ଏକନିଷ୍ଠ ପୂଜାରୀ; ଅମିତ ଶକ୍ତିର ଆହରଣ ତାର ଏକମାତ୍ର ଲକ୍ଷ୍ୟ । ରୋମାଣ୍ଟିକ୍ କବିର କଳ୍ପନା ଓ ସୌନ୍ଦର୍ଯ୍ୟବୋଧକୁ ପ୍ରତ୍ୟାଖ୍ୟାନ କରି ସେ ଅତିମାତ୍ରାରେ ବାସ୍ତବବାଦୀ । କାବ୍ୟ, ଉପନ୍ୟାସ ଓ ନାଟକ—ସର୍ବତ୍ର ଏଇ ଯୁଗଚେତନା ପ୍ରତିବିମ୍ବିତ ।

### କବିତା :

ଆଧୁନିକ ଇଂରେଜୀ କବିତାକୁ ମୁଖ୍ୟତଃ ତିନି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ —(୧)ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବବର୍ତ୍ତୀ କବିତା, (୨) ଦୁଇ ବିଶ୍ୱ ଯୁଦ୍ଧ ଅନ୍ତର୍ବର୍ତ୍ତୀ କବିତା ଓ (୩) ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରବର୍ତ୍ତୀ କବିତା । ଆମର ଆଲୋଚନା ପ୍ରଥମ ଦୁଇଟି ପର୍ଯ୍ୟାୟରେ ହିଁ ସୀମିତ ।

ପ୍ରଥମ ବିଶ୍ୱଯୁଦ୍ଧର ପୂର୍ବବର୍ତ୍ତୀ କବିତା (୧୮୯୦-୧୯୧୮)ରେ ବିଶେଷ ନୂତନତ୍ୱ ନାହିଁ । ପ୍ରି-ରାଫାଏଲାଇଟ୍ କବିତାର ଅବକ୍ଷୟମାନ ସ୍ୱରୂପ ଏଥିରେ ଦେଖିବାକୁ ମିଳେ । 'କଳା-କୈବଲ୍ୟ-ବାଦ'ର ଆଦର୍ଶକୁ ଏ ସମୟର କବି କୈବଲ୍ୟ ପରି ଗ୍ରହଣ କରିନେଇଛନ୍ତି । ଏହି ଅବକ୍ଷୟମାଣ ଯୁଗର କବି (Decadents)ଙ୍କ ମଧ୍ୟରେ ଆର୍ନେଷ୍ଟ ଡସନ୍ ଲିଓନେଲ୍ ଜନସନ୍ ଓ ଆର୍ଥର ସାଇମନ୍‌ସ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନେ ରାଇମର୍ସ କ୍ଲବ୍ (Rhymers' Club)ର ସଭ୍ୟ; ଯୁଗ-ଯନ୍ତ୍ରଣାରୁ ନିଜକୁ ମୁକ୍ତ ରଖି କଳା-କୈବଲ୍ୟ-ବାଦର ଶେଷ ଗୀତ ହିଁ ଗାଇଯାଇଛନ୍ତି । ଏହି ଦୃଷ୍ଟିରୁ ଏମାନେ ପଳାୟନବାଦୀ; ନୂତନ ପ୍ରତିଭାର ଅମ୍ଳାନ ସ୍ୱାକ୍ଷର ରଖିଯିବା ଏମାନଙ୍କ ପକ୍ଷେ ସମ୍ଭବ ହୋଇନାହିଁ ।

ଅବଶ୍ୟ ଏହି ସମୟରେ ଆବିର୍ଭୂତ ଉଇଲ୍‌ଫ୍ରେଡ୍ ବ୍ଲାଣ୍ଟ୍, ଆର୍ନେଷ୍ଟ ହେନ୍‌ଲି ଓ ରାଡ୍‌ୟାର୍ଡ୍ କିପଲିଂଙ୍କ ପରି କେତେକ କବିଙ୍କ ଲେଖାମାରେ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଥିବାବେଳେ ହାର୍ଡି ଓ ହାଉସ୍‌ମ୍ୟାନ୍‌ଙ୍କ କବିତାରେ ବିଷାଦବାଦୀ ସ୍ୱର ଝଂକୃତ ।

କିପ୍‌ଲିଂ (Rudyard Kipling : ୧୮୬୫-୧୯୩୬) ଜଣେ ଆଙ୍ଗ୍ଲୋ-ଇଣ୍ଡିୟାନ୍ । ବମ୍ବେରେ ତାଙ୍କର ଜନ୍ମ; କିନ୍ତୁ ସେ ବ୍ରିଟିଶ ସାମ୍ରାଜ୍ୟର ଜଣେ ଅନ୍ଧସ୍ତାବକ । ଅନ୍ୟାନ୍ୟ ଜାତିଠାରୁ ଶ୍ୱେତାଙ୍ଗ ଜାତି ଉତ୍କୃଷ୍ଟତର ବୋଲି ତାଙ୍କର ବିଶ୍ୱାସ । ସାମ୍ରାଜ୍ୟ ବିସ୍ତାର ପାଇଁ ଯେଉଁ ଜଘନ୍ୟ ପନ୍ଥା ଅନୁସରଣ କରିବାକୁ ପଡ଼ିଥାଏ, ସେଥିପ୍ରତି ସେ ଦୃଷ୍ଟିପାତ କରିନାହାନ୍ତି । ତାଙ୍କର ଗଦ୍ୟ ରଚନା ଭଳି କବିତା ମଧ୍ୟ ଏହି ଚିନ୍ତାଧାରା ପ୍ରଭାବିତ । ଭାରତୀୟ ଜୀବନ ଓ ଦର୍ଶନ ସମ୍ବନ୍ଧରେ ସେ ଅବହିତ ଥିଲେ । ତାଙ୍କର ଗଦ୍ୟ ଓ ପଦ୍ୟ ଉଭୟରେ ଏହାର ପ୍ରଭାବ ଲକ୍ଷ୍ୟ କରାଯାଏ । 'ଶିବ ଆଣ୍ଡ୍ ଗ୍ରାସ୍‌ହପର୍' ଓ 'ଏ ସଙ୍ଗ୍ ଅଫ୍ କବୀର୍' ପରି କବିତା ଏହାର ଉଦାହରଣ । ସୈନିକ ଜୀବନ ରୂପାୟନରେ ସେ ବିଶେଷ ଆଗ୍ରହୀ । ତାଙ୍କର କବିତା ଗ୍ରନ୍ଥ 'ବ୍ୟାରାକ୍ ରୁମ୍ ବ୍ୟାଲଡ୍‌ସ୍' (Barrack Room Ballads) ଏ ଦୃଷ୍ଟିରୁ ଏକ ସଫଳ ସଙ୍କଳନ । ରୋମାଣ୍ଟିକ ଦୁଃସାହସିକତା, ଅତିପ୍ରାକୃତ ଉପାଦାନ ଓ ସାଧାରଣ କଥିତ ଭାଷାର ପ୍ରୟୋଗ ତାଙ୍କ କବିତାର ଆକର୍ଷଣ; କିନ୍ତୁ ସେ ଇଂଲଣ୍ଡର କଥିତ ଭାଷା ସହ ବିଶେଷ ପରିଚିତ ନଥିବାରୁ ଏ କ୍ଷେତ୍ରରେ ତାଙ୍କର ଚେଷ୍ଟାକୃତ ପ୍ରୟାସ ଲକ୍ଷ୍ୟ କରିହୁଏ । ଛନ୍ଦ ସମ୍ପର୍କରେ ସେ ଯଥେଷ୍ଟ ସଚେତନ ନୁହନ୍ତି ।

ହାର୍ଡି (Thomas Hardy : ୧୮୪୦-୧୯୨୮) କବି ଭାବରେ ସାହିତ୍ୟିକ ଜୀବନ ଆରମ୍ଭ କରନ୍ତି । ଇଂଲଣ୍ଡର ଅନ୍ୟତମ ଶ୍ରେଷ୍ଠ ଔପନ୍ୟାସିକର ଆସନରେ ଅଧିଷ୍ଠିତ ହେଲେ ମଧ୍ୟ କବିଭାବରେ ହିଁ ପରିଚିତ ହେବାକୁ ସେ ଅଧିକ ଗୌରବାବହ ମନେକରନ୍ତି । ଆଦ୍ୟଜୀବନର କେତୋଟି ଉପନ୍ୟାସ ବହୁ ସମାଲୋଚିତ ହେବାରୁ ସେ କବିତା ଲେଖାରେ ମନ ବଳାଇଥିଲେ । ଗୋଟିଏ ମହାକାବ୍ୟିକ ନାଟକ ବ୍ୟତୀତ ତାଙ୍କର ଅନ୍ୟୁନ ଦଶଟି କବିତା ସଙ୍କଳନ ରହିଛି ।



ଦ ଡାଇନାଷ୍ଟସ୍ (The Dynasts) କବିଙ୍କର କାନ୍ତକୀର୍ତ୍ତି ରଚନା । ଏହା ଖ୍ରୀ: ୧୯୦୩ରୁ ୧୯୦୮ ମଧ୍ୟରେ ତିନିଖଣ୍ଡରେ ପ୍ରକାଶିତ । ଇଉରୋପୀୟ ବିଭିନ୍ନ ଜାତି ସହ ନେପୋଲିଅନ୍‌ଙ୍କ ଭୟାବହ ସଂଘର୍ଷ (୧୮୦୫-୧୮୧୫) ଏହାର କଥାବସ୍ତୁ । ଏଥିରେ ଇତିହାସ ଓ ଅତିକଥାର ସମନ୍ୱୟ ଘଟିଛି । ଯୁଦ୍ଧର ଘନଘଟା ଶେଷରେ ଅତି-ଭୌତିକ ଚରିତ୍ରମାନେ ଦର୍ଶକ ଭାବରେ ନୈରାଶ୍ୟ-ଜନକ ମନ୍ତବ୍ୟ ଦେଇଛନ୍ତି । ଏହା ଉଣେଇଶଟି ଅଙ୍କ ତଥା ଏକ ଶହ ତିରିଶଟି ଦୃଶ୍ୟରେ ବିଭକ୍ତ; ସତେ ଅବା ଗୋଟିଏ ବିଶାଳ ଚିତ୍ରଶାଳା । କେତେକ

ଅଂଶ ଅଯଥା ଦୀର୍ଘ ହୋଇପଡ଼ିଥିଲେ ମଧ୍ୟ ଏହାର ନାଟକୀୟ ଦୃଶ୍ୟଗୁଡ଼ିକ ଚିତ୍ତାକର୍ଷକ । ଭାଗ୍ୟବାଦରେ କବିଙ୍କ ଅଗାଧ ବିଶ୍ୱାସ ଏଥିରେ ପ୍ରତିଫଳିତ ।

ଅନ୍ୟାନ୍ୟ ସଂକଳନ ମଧ୍ୟରେ ଓ୍ୱେସେକ୍ସ ପଏମ୍ସ (୧୮୯୮) ଉଲ୍ଲେଖଯୋଗ୍ୟ । ଏହା ଖ୍ରୀ: ୧୮୬୫ରୁ ୧୯୦୧ ମଧ୍ୟରେ ରଚିତ ହୋଇଥିଲା । ଓ୍ୱେସେକ୍ସ ଅଞ୍ଚଳର ପ୍ରକୃତି ତଥା ଜୀବନ ଏଥିରେ ଚର୍ଚ୍ଚିତ ।

ମହାକାବ୍ୟିକ ନାଟକଟିକୁ ବାଦଦେଲେ କବି ମୁଖ୍ୟତଃ ଗୀତି-କବିତା ହିଁ ଲେଖିଛନ୍ତି । ଭାଗ୍ୟବାଦ ଓ ବିଷଣ୍ଣତା ତାଙ୍କ ଉପନ୍ୟାସ ପରି କବିତାର ମଧ୍ୟ ମୁଖ୍ୟ ସ୍ୱର ।

**ହାଉସ୍ମ୍ୟାନ୍** (A. E. Houseman : ୧୮୫୯-୧୯୩୬)ଙ୍କର ତିନୋଟି ମାତ୍ର କ୍ଷୁଦ୍ର କବିତା-ସଂକଳନ ପ୍ରକାଶିତ । ଦୃଷ୍ଟିଭଙ୍ଗୀରେ ହାର୍ଡ଼ିଙ୍କ ସହ ତାଙ୍କର ବହୁ ସାମ୍ୟ ରହିଛି । ହାର୍ଡ଼ି ଓ୍ୱେସେକସ୍ ଅଞ୍ଚଳକୁ ରୂପଦେବା ଭଳି ହାଉସ୍ମ୍ୟାନ ଓ୍ୱେଲସ୍ର ସୀମାନ୍ତ ଅଞ୍ଚଳକୁ ନିଜ କବିତାରେ ଅଙ୍କିଛନ୍ତି । ତାଙ୍କ କବିତାରେ ଗୋଟିଏ ତୀବ୍ର ବିଷଣ୍ଣତାର ସ୍ୱର ଫୁଟିଉଠେ । ସେ ନୈରାଶ୍ୟବାଦୀ । ଜୀବନ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ବ୍ୟଙ୍ଗାତ୍ମକ । ଯୁଦ୍ଧ ଓ ଯୋଦ୍ଧାଙ୍କୁ ସେ ବ୍ୟଙ୍ଗ କରିଛନ୍ତି । ପ୍ରେମ ତାଙ୍କଠାରେ ନିରର୍ଥକ, କାରଣ ମୃତ୍ୟୁ ହିଁ ତାର ଶେଷ ପରିଣତି । କବିଙ୍କ କ୍ଳାନ୍ତିକର ନୈରାଶ୍ୟବାଦ ଭିତରେ ପ୍ରକୃତିର ମଞ୍ଜୁଳ ବର୍ଣ୍ଣନା ପାଠକଙ୍କ ପାଇଁ ପ୍ରଧାନ ଆକର୍ଷଣ । ପ୍ରକାଶଭଙ୍ଗୀ ସମ୍ବନ୍ଧରେ କିନ୍ତୁ ସେ ଅତ୍ୟନ୍ତ ସଚେତନ । ପରିମିତି-ବୋଧ ତାଙ୍କ ଶୈଳୀର ଅନ୍ୟତମ ବୈଶିଷ୍ଟ୍ୟ ।

## ଅନ୍ତର୍ବର୍ତ୍ତୀ କବି (Transitional Poets) :

ଆଲୋଚ୍ୟ ସମସ୍ତ ପରିଧି ମଧ୍ୟରେ ରୋବାର୍ଟ ବ୍ରିଜେସ୍, ହପ୍କିନ୍ସ୍ ଓ ଇଟସ୍ ପରି କେତେକ କବିଙ୍କ ରଚନାରେ ନୂତନତାର ଆଭାସ ମିଳେ । ଏମାନେ ଆଗାମୀ କାଳିଆନ୍ କବିତାର ଅଗ୍ରଦୂତ ।

**ରୋବାର୍ଟ ବ୍ରିଜେସ୍** (Robert Bridges : ୧୮୪୪-୧୯୩୦) ପ୍ରେମ ଓ ସୌନ୍ଦର୍ଯ୍ୟର କବି । ଓ୍ୱାର୍ଡ଼ସ୍ଓ୍ୱାର୍ଥଙ୍କ ପ୍ରକୃତିପ୍ରୀତି ଓ କୀଟ୍ସ୍‌ଙ୍କ ସୌନ୍ଦର୍ଯ୍ୟପ୍ରବଣତା ସତେ ଯେପରି ପୁଣି ତାଙ୍କଠାରେ ଆତ୍ମପ୍ରକାଶ କରିଛି । ତାଙ୍କର ପ୍ରକୃତି ଅନାବୃତ ପ୍ରକୃତି; କଳ୍ପନାର ରଙ୍ଗରେ ଏହା ରହସ୍ୟମୟ ହୁଏନାହିଁ । ଶାନ୍ତ ପରିବେଶପାଇଁ ତାଙ୍କର ଏକ ବିଶେଷ ଆକର୍ଷଣ ରହିଛି । ଏପରିକି ତାଙ୍କ ପ୍ରେମାନୁଭୂତିରେ ମଧ୍ୟ ଅସ୍ଥିରତା ବା ଉତ୍ତାପ ନାହିଁ । ଆନନ୍ଦ ଓ ଆଶାବାଦରେ ସେ ବିଶ୍ୱାସୀ । ତାଙ୍କର କବିତା ଗୀତି-ଧର୍ମୀ ହେଲେ ମଧ୍ୟ ସେଥିରେ ଭାବୋଚ୍ଛ୍ୱାସର ତୀବ୍ରତା ନାହିଁ ।

ଅଧ୍ୟାତ୍ମଜୀବନରେ କବି ପ୍ରେମ ଓ ପ୍ରକୃତିକୁ ନେଇ ବ୍ୟସ୍ତଥିଲେ ମଧ୍ୟ 'ଲେଟାର ପଏମ୍ସ' (Later Poems : ୧୯୧୪)ରେ ଏହାର ବ୍ୟତିକ୍ରମ ଦେଖଯାଏ । ଯୁଦ୍ଧ ଓ ରାଜନୀତି ଏହାର କଥାବସ୍ତୁ; କିନ୍ତୁ ଏହା ପରେପରେ କବି ପୁଣି ବାସ୍ତବତା ଉପରୁ ଦୃଷ୍ଟି ଫେରାଇ ନେଇଛନ୍ତି । ଜୀବନର ଶେଷପର୍ଯ୍ୟାୟ ପର୍ଯ୍ୟନ୍ତ ସେ ସୌନ୍ଦର୍ଯ୍ୟର ଆରାଧନା ହିଁ

କରିଛନ୍ତି । ଦ ଟେଷ୍ଟାମେଣ୍ଟ୍ ଅଫ୍ ବିଉଟି (The Testament of Beauty : ୧୯୨୯) ଇଂରେଜୀ ସାହିତ୍ୟର ଶ୍ରେଷ୍ଠ ଦାର୍ଶନିକ କବିତା ମଧ୍ୟରେ ଗଣ୍ୟ । ସୌନ୍ଦର୍ଯ୍ୟକୁ ସେ ଜୀବନର ଏକ ଶକ୍ତିଶାଳୀ ଉପାଦାନ ଭାବରେ ପ୍ରତିପାଦନ କରିବାକୁ ଚେଷ୍ଟାକରିଛନ୍ତି । କବିଙ୍କ ପରିପକ୍ୱ ବ୍ୟକ୍ତିତ୍ୱର ଚିନ୍ତା ଓ ଚେତନାରେ ଏହା ଭାସ୍ୱର; କିନ୍ତୁ ବହୁ ଅବାନ୍ତର ପ୍ରସଙ୍ଗ ଉତ୍ଥାପିତ ହୋଇଥିବାରୁ କବିତାଟି ଅଯଥା ଦୀର୍ଘ ହୋଇପଡ଼ିଛି ।

ହପ୍‌କିନ୍‌ସ୍ (Gerald Manley Hopkins : ୧୮୪୪-୮୯) ସମ୍ଭବତଃ ମିଲ୍‌ଟନଙ୍କ ପରେ ଶ୍ରେଷ୍ଠ ଆଧ୍ୟାତ୍ମବାଦୀ କବି । ପ୍ରଥମେ ସେ ଏଙ୍ଗ୍ଲିକାନ୍ ଚର୍ଚ୍ଚରେ ବିଶ୍ୱାସ କରୁଥିଲେ । ପରେ ରୋମାନ୍ କ୍ୟାଥୋଲିକ୍ ହୋଇଥିଲେ । ଆଦ୍ୟଜୀବନରେ ଲିଖିତ କବିତାରେ ଗଭୀର ସୌନ୍ଦର୍ଯ୍ୟବୋଧ ଓ ଇନ୍ଦ୍ରିୟପ୍ରବଣତା ଦେଖାଦେଇଥିଲା । ଯୌବନର ଉନ୍ମାଦନା ବୋଲି ଏଗୁଡ଼ିକୁ ସେ ପୋଡ଼ିପକାଇଥିଲେ । ପାଣ୍ଡୁଲିପିରୁ ଅଳ୍ପ କିଛି ଅଂଶ ରକ୍ଷା-ପାଇଯାଇଛି । ଭକ୍ତିଭାବ ତାଙ୍କ କବି ବ୍ୟକ୍ତିତ୍ୱର ଅନ୍ତରସ୍ଥ ହୋଇଛି । ପ୍ରେମାନୁଭୂତି ଓ ପ୍ରକୃତି-ପ୍ରୀତି ପରିପୂର୍ଣ୍ଣ ପ୍ରକାଶଲାଭରୁ ବଞ୍ଚିତ ହୋଇଛି ।

'ଦ ରେକ୍ ଅଫ୍ ଦ ଡଏଚ୍ ଲ୍ୟାଣ୍ଡ୍' (The Wreck of the Deutsch Land) ତାଙ୍କର ଦୀର୍ଘତମ କବିତା । ଏକ ଜାହାଜ ବୁଡ଼ିରେ ପାଞ୍ଚଜଣ ସନ୍ନ୍ୟାସିନୀଙ୍କ ମୃତ୍ୟୁ କବିଙ୍କ ହୃଦୟରେ ଯେଉଁ ଭାବାବେଗ ସୃଷ୍ଟି କରିଥିଲା, ଏଥିରେ ତାହା ବିଧୃତ । କବିତାଟିର କେନ୍ଦ୍ରୀୟଭାବ ଈଶ୍ୱରଙ୍କ କରୁଣା । ମୃତ୍ୟୁପରେ ସନ୍ନ୍ୟାସିନୀମାନେ ଈଶ୍ୱରଙ୍କ ସହ ମିଳିତ ହୋଇଥିବାର କବି କଳ୍ପନା କରୁଛନ୍ତି ।

ଭାବ ଅପେକ୍ଷା ପ୍ରକାଶଭଙ୍ଗୀ ହିଁ ହପ୍‌କିନ୍‌ସଙ୍କ କବିତାରେ ଅଧିକ ଗୁରୁତ୍ୱପୂର୍ଣ୍ଣ । ତାଙ୍କ ପ୍ରକାଶଭଙ୍ଗୀକୁ ନେଇ ସମାଲୋଚନା କ୍ଷେତ୍ରରେ ଯେପରି ଆଲୋଡ଼ନ ସୃଷ୍ଟି ହୋଇଛି, ଅନ୍ୟ କୌଣସି ଆଧୁନିକ କବିଙ୍କ କ୍ଷେତ୍ରରେ ସେପରି ଘଟିନାହିଁ ।

'ସ୍ପ୍ରଙ୍ଗ୍ ରିଦ୍‌ମ୍' (sprung rhythm), ହପ୍‌କିନ୍‌ସ୍‌ଙ୍କ ଶୈଳୀର ଅନ୍ୟତମ ବୈଶିଷ୍ଟ୍ୟ । ଏଇ ଛନ୍ଦର ନିୟମ ଅନୁଯାୟୀ ପ୍ରତ୍ୟେକ ଛନ୍ଦପାଦ (foot)ରେ ଆବଶ୍ୟକ ସ୍ଥଳେ ଗୋଟିଏ ଶ୍ୱାସାଘାତଯୁକ୍ତ ମାତ୍ରା (stressed syllable) ଥାଇପାରେ । ଅନିର୍ଦ୍ଦିଷ୍ଟ ସଂଖ୍ୟାରେ ଶ୍ୱାସାଘାତହୀନ ମାତ୍ରାସହ ତାହା ସମନ୍ୱିତ ହୋଇପାରେ—"Each foot contains one stress, possibly, but not necessarily, followed by any number of unstressed syllables." ଏତଦ୍‌ବ୍ୟତୀତ ସେ କାଉଣ୍ଟର୍ ପଏଣ୍ଟ ରିଦ୍‌ମ୍ (Counter point rhythm)ର ବ୍ୟବହାର କରିଛନ୍ତି । ଛନ୍ଦ ସମ୍ବନ୍ଧରେ ଏ ସମସ୍ତ ତାଙ୍କର ନିଜସ୍ୱ ପରିକଳ୍ପନା । କବିତାକୁ ଯଥାଯଥ ଭାବରେ ପାଠ କରିବାରେ ପାଠକଙ୍କୁ ସାହାଯ୍ୟ କରିବାପାଇଁ ସେ ପ୍ରାୟ କୋଡ଼ିଏଟି ବିଭିନ୍ନପ୍ରକାରର ଚିହ୍ନ ବ୍ୟବହାର କରିଥାନ୍ତି ।

ଇଟ୍‌ସ୍ (William Butler Yeats : ୧୮୬୫-୧୯୩୯)ଙ୍କର ଆବିର୍ଭାବ ଏଇ ଯୁଗ ସନ୍ଧିରେ ଘଟିଥିଲେ ମଧ୍ୟ ସେ ତାର ସୀମା ଅତିକ୍ରମକରି ଦୁଇ ବିଶ୍ୱଯୁଦ୍ଧ ଅନ୍ତର୍ବର୍ତ୍ତୀ କବିତା କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିପାରିଛନ୍ତି । ବିଂଶଶତାବ୍ଦୀର ପ୍ରଥମାର୍ଦ୍ଧରେ ସେ ଅନ୍ୟତମ ଶ୍ରେଷ୍ଠ କବି । ଦୀର୍ଘ ପଚାଶ ବର୍ଷର ସାରସ୍ୱତ ସାଧନା ମଧ୍ୟରେ ଦୁଇ ପୁରୁଷର କାବ୍ୟଧାରା ତାଙ୍କଠାରେ ମିଳିତ । ଇଟ୍‌ସ୍‌ଙ୍କ କାବ୍ୟିକ-ଚେତନାର ବିବର୍ତ୍ତନରେ ତିନୋଟି ପର୍ଯ୍ୟାୟ ଅତି ସ୍ପଷ୍ଟ । ପ୍ରଥମ ଜୀବନରେ ସେ ଥିଲେ ସ୍ୱପ୍ନବାଦୀ, ତା’ପରେ ହୋଇଛନ୍ତି ବାସ୍ତବବାଦୀ ଓ ଅବଶେଷରେ ଅତୀନ୍ଦ୍ରିୟବାଦୀ ।



କବିଙ୍କ ପ୍ରାଥମିକ ରଚନାରେ ପ୍ରି-ରାଫାଏଲାଇଟ୍ ଚିନ୍ତାଧର୍ମିତା ଦେଖାଯିବା ସ୍ୱାଭାବିକ । ତା ସହିତ ରହସ୍ୟମୟ ସ୍ୱପ୍ନବାଦିତା ମଧ୍ୟ ଓତପ୍ରୋତ ଭାବରେ ଜଡ଼ିତ । ସମସାମୟିକ ବସ୍ତୁବାଦୀ ସମାଜରେ ଆଧ୍ୟାତ୍ମିକ ଚେତନାଶୂନ୍ୟତା ତାଙ୍କ ରୁଚିର ଅନୁକୂଳ ନଥିଲା । ଅନ୍ୟପକ୍ଷରେ ସେ ଅତିପ୍ରାକୃତ ବିଷୟକୁ ସହଜରେ ବିଶ୍ୱାସ କରୁଥିଲେ । ଏଣୁ ଆୟାରଲ୍ୟାଣ୍ଡ୍‌ର ପୌରାଣିକ କାହାଣୀ ତାଙ୍କ ପକ୍ଷରେ ଅତ୍ୟନ୍ତ ସ୍ୱାଦ୍ୟ ହୋଇଉଠିଥିଲା । ରୋମାଣ୍ଟିକ୍ କବିଙ୍କ ପରି ଇଟ୍‌ସ୍ କଳ୍ପଲୋକକୁ ପଳାୟନ କରିବାକୁ ଚାହିଁଛନ୍ତି । ‘ଲେକ୍ ଆଇଲ୍ ଅଫ୍ ଇନନିସ୍ ଫ୍ରି’ (୧୮୯୩) କବିତାଟି ଏହାର ଏକ ଉଦାହରଣ । କବି ଉକ୍ତ କାଳ୍ପନିକ ନିର୍ଜନ ଦ୍ୱୀପକୁ ପଳାୟନପାଇଁ ଉଦ୍‌ଗ୍ରୀବ ହୋଇଉଠିଛନ୍ତି । ହ୍ରଦ କୂଳରେ ତରଙ୍ଗ ମଧ୍ୟ ପିଟିବାର ଶବ୍ଦ କାନରେ ତାଙ୍କର ବାଜୁଉଠୁଛି—

> I will arise and go now, for always, night and day,
> I hear lake-water lapping with low sound, by the shore.

‘ଓ୍ୱାଣ୍ଡରିଂସ୍ ଅଫ୍ ଓସିନ୍’ (୧୮୮୯), ‘ପଏମ୍‌ସ୍’-୧୮୯୫, ‘ଦି ଓ୍ୱିଣ୍ଡ ଆମଂ ଦି ରିଡ୍‌ସ୍’ (୧୮୯୯), ‘ଦି ସ୍ୟାଡ୍ରୋଇ ଓ୍ୱାଟର୍‌ସ୍’ (୧୯୦୦)ପରି ଏ ସମୟର ବିଭିନ୍ନ ସଙ୍କଳନରେ ଉକ୍ତ ରୋମାଣ୍ଟିକ୍ ଚେତନା ଆତ୍ମପ୍ରକାଶ କରିଛି ।

ସ୍ୱପ୍ନ କ୍ରମେ ଅପସରିଯାଇଛି, ବାସ୍ତବତା ପ୍ରତି କବିଙ୍କ ଦୃଷ୍ଟି ଆକର୍ଷିତ ହୋଇଛି । ଖ୍ରୀ: ୧୯୦୦ ପରେ ପରେ ଏଇ ପରିବର୍ତ୍ତନ । କବି ଯେ କେବଳ ପଳାୟନ ମନୋବୃତ୍ତି ତ୍ୟାଗ କରିଛନ୍ତି ସେତିକି ନୁହେଁ, ଜୀବନର ବାସ୍ତବତା ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇ-

ପଡ଼ିଛନ୍ତି । 'ଦ ଗ୍ରିନ୍ ହ୍ୱେଲମେଟ୍ ଆଣ୍ଡ୍ ଅଦାର୍ ପଏମ୍ସ୍' (୧୯୧୦) ଓ 'ରେସ୍ପନ୍ସିବିଲିଟିଜ୍' (୧୯୧୪) ଏହି ପରିବର୍ତ୍ତନର ଆଲେଖ୍ୟ ବହନକରେ ।

ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮)ର ବିଭୀଷିକା ଓ ଆଇରିସ୍ ଜାତୀୟ ବିପ୍ଳବ ତାଙ୍କ ଦୃଷ୍ଟିଭଙ୍ଗୀକୁ ଅଧିକତର ବାସ୍ତବମୁଖୀ କରିଛି । ଏକ ଅବ୍ୟକ୍ତ ବେଦନା, ବିଚ୍ଛିନ୍ନତା ତଥା ମୃତ୍ୟୁଚେତନା ତାଙ୍କ ମାନସଜଗତକୁ ଗ୍ରାସକରିଛି । କବି ହୋଇଉଠିଛନ୍ତି ଦାର୍ଶନିକ । 'ଦ ୱାଇଲ୍ଡ଼୍ ସ୍ୱାନ୍ସ୍ ଏଟ୍ କୁଲ୍' (୧୯୧୯), 'ଦ ଟାୱାର' (୧୯୨୮), 'ଦ ୱାଇଣ୍ଡିଂ ଷ୍ଟେୟାର ଆଣ୍ଡ୍ ଅଦାର ପଏମ୍ସ୍' (୧୯୩୩), 'ନିଉ ପଏମ୍ସ୍' (୧୯୩୮) ଓ 'ଲାଷ୍ଟ ପଏମ୍ସ୍' (୧୯୩୯) ଏହି ପର୍ଯ୍ୟାୟର ରଚନା । ଏଥି ମଧ୍ୟରୁ 'ଦ ଟାୱାର୍' ଓ 'ଦ ୱାଇଣ୍ଡିଂ ଷ୍ଟେୟାର୍'ରେ କବିପ୍ରତିଭା ଚରମ ଉତ୍କର୍ଷ ଲାଭକରିଛି ।

'ଦ ଟାୱାର' କବିତାଟିର ପ୍ରେରଣାର ଉତ୍ସ ଆୟାରଲ୍ୟାଣ୍ଡ୍ର 'ବ୍ୟାଲିଲି' ଦୁର୍ଗ । କବିତାଟି ତିନଖଣ୍ଡରେ ବିଭକ୍ତ । ପ୍ରଥମଖଣ୍ଡରେ ବାର୍ଦ୍ଧକ୍ୟର ଅବସାଦ ପ୍ରକାଶ ପାଇଛି । କବି ବାଗ୍ଦେବୀଙ୍କୁ ବିଦା ଦେଇ ପ୍ଲାଟୋ, ପ୍ଲୋଟିନସ୍ ଆଦି ଦାର୍ଶନିକଙ୍କ ତତ୍ତ୍ୱ ଅଧ୍ୟୟନରେ ଆଗ୍ରହୀ । ଦ୍ୱିତୀୟଖଣ୍ଡରେ ସେ ବ୍ୟାଲିଲି ଅଞ୍ଚଳର ଇତିହାସ ଓ କିମ୍ବଦନ୍ତୀ ମଧ୍ୟରେ ନିମଜ୍ଜିତ । ତୃତୀୟଖଣ୍ଡରେ ପୁଣି କବି ଦାର୍ଶନିକ ଚିନ୍ତାଧାରା ମଧ୍ୟରେ ଅବସାଦମୁକ୍ତ ହୋଇଛନ୍ତି । ଏହି ସଂକଳନର ପ୍ରଥମ କବିତା 'ସେଲିଂ ଟୁ ବାଇଜାନ୍ଟିଅମ୍' (Sailing to Byzantium) କବିତାରେ ବାର୍ଦ୍ଧକ୍ୟର ଅବସାଦ ମର୍ମସ୍ପର୍ଶୀ ।

> An aged man is but a paltry thing
> A tattered coat upon the stick.

ଜୀବନ ମନେହୋଇଛି କ୍ଷଣଭଙ୍ଗୁର । ଅନ୍ୟ ପକ୍ଷରେ କଳାକୃତି ତାଙ୍କ ଆଖିରେ କାଳଜୟୀ । ସେଥିପାଇଁ ସେ କଳାତୀର୍ଥ ବାଇଜାନ୍ଟିଅମ୍କୁ ଚାଲିଯିବାକୁ ବ୍ୟାକୁଳ ।

'ଦ ୱାଇଣ୍ଡିଂ ଷ୍ଟେୟାର୍' ପୂର୍ବୋକ୍ତ 'ଟାୱାର' କବିତାର ପରିପୂରକ । 'ଟାୱାର'ରେ କବିଙ୍କ ଚିନ୍ତାଧାରା ଆତ୍ମା (soul) କୈନ୍ଦ୍ରିକ ହୋଇଥିବାବେଳେ ଏଠାରେ ସେ ଦେହବାଦୀ; ଧୂଳିର ଧରଣୀପାଇଁ ଆକର୍ଷଣ ତୀବ୍ର । ତାଙ୍କର ଶେଷ କବିତା-ସଂକଳନ 'ନିଉ ପଏମସ୍' ଓ 'ଲାଷ୍ଟ ପଏମ୍ସ୍'ରେ ଶିଶୁସୁଲଭ ସାରଲ୍ୟର ଅନ୍ତରାଳରେ ଗଭୀର ଦାର୍ଶନିକ ଚିନ୍ତା ଗର୍ଭିତ ।

ଇଟ୍ସ୍ ଆୟାରଲ୍ୟାଣ୍ଡବାସୀ, ଜନ୍ମମାଟି ପ୍ରତି ତାଙ୍କର ମମତା ଅସୀମ । ଆଇରିସ ଜାତୀୟ ଆନ୍ଦୋଳନର ସେ ସମର୍ଥକ; ଆୟାରଲ୍ୟାଣ୍ଡର ଇତିହାସ, ଅତିକଥା, ଲୋକକଥା, ସର୍ବୋପରି ସଂସ୍କୃତିର ପ୍ରତିଫଳନ (Celtic Twilight) ତାଙ୍କ କବିତାର ଅନ୍ୟତମ ବୈଶିଷ୍ଟ୍ୟ । ବୈଜ୍ଞାନିକ ତାର୍କିକତା ଅପେକ୍ଷା କଳ୍ପନା, ସ୍ୱଜ୍ଞା (Intuition), 'ପରି', ମ୍ୟାଜିକ୍ ଆଦିରେ ସେ ଅଧିକ ବିଶ୍ୱାସୀ । ପରିଣତ ବୟସରେ ସେ ଭାରତୀୟ ଦର୍ଶନ ପ୍ରତି ଆକୃଷ୍ଟ ହୋଇଛନ୍ତି ।

ଅନେକ ସମୟରେ ଇଟ୍‌ସ୍‌ଙ୍କ ଦାର୍ଶନିକ ଚିନ୍ତାଧାରା ବିଭିନ୍ନ ପ୍ରତୀକ ମାଧ୍ୟମରେ ପ୍ରକାଶିତ । ଉଚ୍ଚ ଅଟ୍ଟାଳିକା (Tower) ଚନ୍ଦ୍ର, ହଂସ, ଖଡ୍‌ଗ, 'ବାଇଜାନ୍‌ଟିଆମ୍', 'ବୁଲଣି ସିଡ଼ି' (Winding stair) ଆଦି ତାଙ୍କର ପ୍ରିୟ ପ୍ରତୀକ । ଅଧିକାଂଶ ପ୍ରତୀକ ବ୍ୟକ୍ତିଗତ ଘଟଣା ଓ ଅନୁଭୂତି ସମ୍ପର୍କିତ ହୋଇଥିବାରୁ ତାହା କବିତାର ଦୁର୍ବୋଧତାର କାରଣ ହୋଇଛି ।

ଗୀତିଧର୍ମିତା ତାଙ୍କ କବିତାରେ ସର୍ବତ୍ର ବିଦ୍ୟମାନ । କବିତାରେ ବାକ୍ ଛନ୍ଦର ବ୍ୟବହାର, ଶବ୍ଦର ସତର୍କ ପ୍ରୟୋଗ ଓ ସଂକ୍ଷିପ୍ତ ତଥା ଦୃଢ଼ ସମ୍ବନ୍ଧିତ (compact) ପ୍ରକାଶଭଙ୍ଗୀ ତାଙ୍କ ସାଫଲ୍ୟର ମୂଳମନ୍ତ୍ର । ପ୍ରାୟ ତିରିଶଟି ନାଟକ ଲେଖିଥିଲେ ମଧ୍ୟ ଗୀତି-କବିତାର ମୋହ ହେତୁ ସେ ନାଟ୍ୟକାରର ଗୌରବ ପାଇପାରିନାହାନ୍ତି । ଇଟ୍‌ସ୍ ଅନ୍ୟତମ ଶ୍ରେଷ୍ଠ ଆଧୁନିକ କବି ।

## ଜର୍ଜିଆନ୍ କବିତା (୧୯୧୦-୧୯୩୫) :

ଅବକ୍ଷୟମାଣ ଭିକ୍ଟୋରୀୟ କବିତା ବେଶି ଦିନ ତିଷ୍ଠିବାର ସମ୍ଭାବନା ନ ଥିଲା । ବିଂଶଶତାବ୍ଦୀର ପ୍ରଥମ ଦଶକରେ ନୂତନ କାବ୍ୟିକ ସ୍ୱର ଶୁଣାଗଲା । ଏ ସମୟର କବି ଗୋଷ୍ଠୀଙ୍କୁ ଜର୍ଜିଆନ୍ କବି କୁହାଯାଏ । ରାଜା ପଞ୍ଚମ ଜର୍ଜ ସେତେବେଳକୁ ବ୍ରିଟିଶ ସାମ୍ରାଜ୍ୟର ସମ୍ରାଟ । ଏହି ସମୟରେ ବହୁ କବିଙ୍କର ଆବିର୍ଭାବ ଘଟିଛି; କିନ୍ତୁ ସଂଖ୍ୟାନୁ-ପାତରେ କାବ୍ୟର ଗୁଣାତ୍ମକ ଉତ୍କର୍ଷ ସାଧିତ ହୋଇନାହିଁ । ଭିକ୍ଟୋରିଆନ୍ ଧର୍ମ ବା ଦର୍ଶନ ପ୍ରତି ଏମାନଙ୍କର ଆକର୍ଷଣ ନଥିଲା । ସମୁନ୍ନତ ଚିନ୍ତା ବା ପ୍ରକାଶଭଙ୍ଗୀର ଗାମ୍ଭୀର୍ଯ୍ୟ ମଧ୍ୟ ଏମାନେ ଗ୍ରହଣ କରିନଥିଲେ । ବିଷୟବସ୍ତୁ ଓ ଶୈଳୀ – ଉଭୟ କ୍ଷେତ୍ରରେ ଏମାନେ ସରଳ-ତାର ପକ୍ଷପାତୀ; ଦୃଷ୍ଟିଭଙ୍ଗୀରେ ବାସ୍ତବବାଦୀ । ଏମାନେ 'thee', 'thou' ପରି ପ୍ରାଚୀନ ଶବ୍ଦର ପ୍ରୟୋଗ ବର୍ଜନ କରିଛନ୍ତି; ଅବକ୍ଷୟମାଣ ଯୁଗର ବିଷଣ୍ଣତା ଏମାନଙ୍କଠାରେ ନାହିଁ । କିନ୍ତୁ ଗୋଟିଏ ଦିଗରୁ ଏମାନେ ମଧ୍ୟ ପଳାୟନବାଦୀ; ବାସ୍ତବ ଜୀବନର ସଂଘର୍ଷ ଏମାନଙ୍କ କବିତାରେ ରୂପ ପାଇନାହିଁ । ଶିଳ୍ପଜଗତର ସମସ୍ୟାକୁ ଏମାନେ ଏଡ଼ାଇ ଯାଇଛନ୍ତି । ପ୍ରାକୃତିକ ଦୃଶ୍ୟ, ପଶୁପକ୍ଷୀ, ଶୈଶବ, ବାର୍ଦ୍ଧକ୍ୟ, ଅବକାଶ, ସଂଘର୍ଷରହିତ ପ୍ରେମ ତଥା ସମସ୍ୟା ରହିତ ବିଷୟ ଏମାନଙ୍କଠାରେ ଆଦରଣୀୟ । ପ୍ରକାଶ ରୀତି ପାରମ୍ପରିକ । ଏହି କବିଙ୍କ ମଧ୍ୟରେ ଓ୍ୱାଲ୍‌ଟର୍ ଡି ଲା ମେୟାର୍, ଜନ୍ ମେଜ୍ ଫିଲ୍ଡ୍, ଏଡ୍ ମାଣ୍ଡ ବ୍ଲାଣ୍ଡେନ, ଡବ୍ଲ୍ୟୁ. ଏଚ୍. ଡେଭିଜ୍ ଓ ଲସ୍‌ଲେସ୍ ଆବାରକ୍ରମ୍ବି ପ୍ରଧାନ । ତତ୍କାଳୀନ ବିଶିଷ୍ଟ କବିଙ୍କ ରଚନା ଖ୍ରୀ: ୧୯୧୨ରୁ ୧୯୨୨ ମଧ୍ୟରେ ପାଞ୍ଚ ଖଣ୍ଡ ସଂକଳନରେ ପ୍ରକାଶିତ ।

ଓ୍ୱାଲ୍‌ଟର୍ ଡି ଲା ମେୟାର୍ (Walter de la Mare : ୧୮୭୩-୧୯୫୬) ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଲେଖିଥିଲେ ମଧ୍ୟ କବି ଭାବରେ ହିଁ ସୁପରିଚିତ । ଶୈଶବ



ପ୍ରତି ସେ ଅତିମାତ୍ରାରେ ଆକୃଷ୍ଟ । ଶିଶୁର ସରଳତା ତାଙ୍କ କବିତାର ଶୈଳୀକୁ ପ୍ରଭାବିତ କରିଛି । 'ସଂସ୍ ଅଫ୍ ଚାଇଲ୍ଡ୍‌ହୁଡ୍' (୧୯୦୨) ତାଙ୍କର ପ୍ରଥମ ପ୍ରକାଶିତ ସଂକଳନ । ଅନ୍ୟତମ ସୁଖ୍ୟାତ ସଂକଳନ 'ଦି ଲିସ୍‌ନର୍ସ ଆଣ୍ଡ୍ ଅଦର୍ ପଏମ୍‌ସ୍' (୧୯୧୨) ଦୁଇ ଦୁଇଟି ବିଶ୍ୱଯୁଦ୍ଧ କବିଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କରିପାରିନାହିଁ । ଜୀବନର ଜଟିଳ ସମସ୍ୟା ପ୍ରତି ସେ ଉଦାସୀନ । ପ୍ରକୃତି ଓ ରୋମାଞ୍ଚକର ପରିବେଶ ତାଙ୍କର ଧ୍ୟେୟ । ଜହ୍ନରାତି, ଶାନ୍ତ ସ୍ନିଗ୍ଧ ବାତାବରଣ ଓ ରହସ୍ୟକୁ ନେଇ ସେ ଏକ ପ୍ରକାର ସ୍ୱପ୍ନିଳ ଜଗତ ସୃଷ୍ଟି କରନ୍ତି । ତାଙ୍କ କବିତାର ଆବେଦନ ଆଧୁନିକ ପାଠକ ମନକୁ ମଧ୍ୟ ସ୍ପର୍ଶ କରେ ।

ଜନ୍ ମେସ୍‌ଫିଲ୍ଡ୍ (John Masefield : ୧୮୭୮-୧୯୬୭) ଭ୍ରମଣଶୀଳ ଜୀବନରେ ବହୁ ଅଭିଜ୍ଞତା ଅର୍ଜନ କରିଥିଲେ । କର୍ମପ୍ରବଣତା ଓ ଦୁଃସାହସିକତା ତାଙ୍କ ଜୀବନ ତଥା ସାହିତ୍ୟକୁ ପ୍ରଭାବିତ କରିଛି । ତାଙ୍କର ଅନ୍ୟୂନ ବାରଟି କବିତା-ସଂକଳନ ରହିଛି । ସେଥି ମଧ୍ୟରୁ 'ସଲ୍ଟ୍ ଓ୍ୱାଟାର୍ ବ୍ୟାଲଡ୍‌ସ୍ (Salt Water Ballads : ୧୯୦୨) ଉଲ୍ଲେଖଯୋଗ୍ୟ । ବାସ୍ତବ ଅନୁଭୂତି ସମ୍ବଳିତ ସାମୁଦ୍ରିକ ଜୀବନର ରୋମାଞ୍ଚ ଏଥିରେ ପରିବେଷିତ । 'ଦି ଏଭର୍ ଲାଷ୍ଟିଂ ମର୍ସି' (The Ever lasting Mercy : ୧୯୧୧)ରେ ତାଙ୍କର ବାସ୍ତବବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ଜଣୈକା ଧର୍ମପରାୟଣା ମହିଳାଙ୍କ ପ୍ରଭାବରେ ଜଣେ ଦୁରାତ୍ମା ମଦ୍ୟପର ହୃଦୟ ପରିବର୍ତ୍ତନ ଏହାର କଥାବସ୍ତୁ । ମଦ୍ୟପ ଜଣକ ଅତ୍ୟନ୍ତ ଅମାର୍ଜିତ ଓ ରୁକ୍ଷଭାଷାରେ ନିଜର ଅଭିଜ୍ଞତା କହିଚାଲିଛି । ଇଂଲଣ୍ଡର ଗ୍ରାମ୍ୟ ଜୀବନର ଚିତ୍ର ତାଙ୍କ କବିତାର ଏକ ଆକର୍ଷଣ । ଚସାର୍‌ଙ୍କ ପରି ସେ ଉଦାର, ମାନବବାଦୀ, ଦୁଃସ୍ଥ ଜନତା ପ୍ରତି ସମବେଦନଶୀଳ । ଅନେକ ସମୟରେ ତାଙ୍କର ବାସ୍ତବ ଚିତ୍ର ମାତ୍ରାଧିକ୍ୟ ହୋଇପଡ଼ିଛି । ତାଙ୍କୁ ରାଜକବି ହେବାର ଗୌରବ ମିଳିଥିଲା ।

ଡେଭିସ୍ (W. H. Davies : ୧୮୭୧-୧୯୪୦) ରେଳଗାଡ଼ିକୁ ଚଢ଼ିବା ବେଳେ ଗୋଡ଼ଟାଏ କଟିଯାଏ; ଏଇଠାରୁ ହିଁ କବିତା ଲେଖିବାର ଆଗ୍ରହ । କବିତାକୁ ଜୀବିକାର୍ଜନର ପନ୍ଥା ଭାବରେ ଗ୍ରହଣ କରନ୍ତି । କବିଙ୍କ ଆତ୍ମଜୀବନୀ 'ଦି ଅଟୋବାୟୋଗ୍ରାଫି ଅଫ୍ ଏ ସୁପାର୍ ଟ୍ରାମ୍ପ'ରୁ ତାଙ୍କର ଭ୍ରମଣଶୀଳ ଜୀବନର ପରିଚୟ ମିଳେ । ଭ୍ରମଣକାରୀର ଜୀବନ ଓ ପାନ୍ଥଶାଳାର ପରିବେଶ ତାଙ୍କ କବିତାରେ ରୂପାୟିତ । ସେ ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥଙ୍କ ପରି ପ୍ରକୃତିପ୍ରେମୀ, କିନ୍ତୁ ପ୍ରକୃତିକୁ ସେ ଅନ୍ତର୍ଦୃଷ୍ଟି ଦେଇ ଦେଖିନାହାନ୍ତି ।

ଏବାରକ୍ରମ୍ବି (Lascelles Abercrombie) ଜର୍ଜିଆନ୍ କବିତା ସଂକଳନରେ ବିଶେଷ ସହଯୋଗିତା କରିଥିଲେ । ଟେନିସନ୍‌ଙ୍କଠାରୁ ବ୍ରିଜେସ୍ ପର୍ଯ୍ୟନ୍ତ ସମସ୍ତ ବିଶିଷ୍ଟ କବିଙ୍କ ପ୍ରତି ସେ ଅନୁରକ୍ତ । ଆବେଗ ଓ ବୌଦ୍ଧିକତାର ସମନ୍ୱୟ ପ୍ରଚେଷ୍ଟା କରି ସେ ମେଟାଫିଜିକାଲ୍ କବିଙ୍କ ସଗୋତ୍ର ହୋଇପଡ଼ିଛନ୍ତି । ଛନ୍ଦ ଓ ନୂତନଛନ୍ଦ (metre) ଯୋଜନାରେ ବୈଶିଷ୍ଟ୍ୟ ରହିଛି । ସମାଲୋଚକ ଭାବରେ ସେ ଯଶସ୍ୱୀ ।

ଜର୍ଜିଆନ୍ କବିତାକୁ ରୁପର୍ଟ ବ୍ରୁକ୍ (Rupert Brooke)ଙ୍କ ଅବଦାନ ମଧ୍ୟ ଉଲ୍ଲେଖଯୋଗ୍ୟ ।

## ସମର କବିତା :

ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮)ର ଘନଘଟା ଇଂରେଜୀ କବିତା କ୍ଷେତ୍ରରେ ନୂତନ ଆଲୋଡ଼ନ ସୃଷ୍ଟି କରିଛି । ଅସଂଖ୍ୟ ଇଂରେଜ ଯୁବକଙ୍କ ମଧ୍ୟରେ କେତେକ ତରୁଣ କବି ମଧ୍ୟ ଏହି ଲଢ଼େଇରେ ପ୍ରାଣ ବିସର୍ଜନ ଦେଇଛନ୍ତି । ଜାତିର ସ୍ୱାର୍ଥ ପାଇଁ ଆତ୍ମବଳିଦେବା ସର୍ବଦା ଗୌରବାବହ ବିବେଚିତ ହୋଇଥାଏ; ଯୁଦ୍ଧର ପ୍ରଥମ ପର୍ଯ୍ୟାୟରେ ତାହା ହିଁ ଘଟିଛି । ବୟୋ-ବୃଦ୍ଧ କବିଗଣ ଘରେ ବସି ଯୁଦ୍ଧକୁ ସ୍ୱାଗତକରି ଆତ୍ମୋତ୍ସର୍ଗର ଆହ୍ୱାନ ଶୁଣାଇଛନ୍ତି । ମଧ୍ୟ-ଯୁଗୀୟ ଦୁଃସାହସିକ ବୀରତ୍ୱ ପ୍ରତିଷ୍ଠାପାଇଁ ଏହାକୁ ପରମ ସୁଯୋଗ ବୋଲି ମନେକରାଯାଇଛି । କିପ୍‌ଲିଂ, ଫ୍ରିମ୍ୟାନ୍, ଲରେନ୍‌ସ, ବିନ୍‌ଅନ୍‌ଙ୍କ ପରି କବି ଯୁଦ୍ଧର ସ୍ତୁତି ଗାନକରିଛନ୍ତି; କିନ୍ତୁ ଯୁଦ୍ଧ ପ୍ରତି ଅହେତୁକ ରୋମାଣ୍ଟିକ ପ୍ରବଣତା ବେଶି ଦିନ ରହିପାରିନାହିଁ । ଯୁଦ୍ଧରେ ଯୋଗ-ଦେଇଥିବା ସୈନିକ-କବିଙ୍କ ଲେଖମାରେ ଏହାର ଅମାନୁଷିକ, ଜଘନ୍ୟ ବୀଭତ୍ସ ଚିତ୍ର ପ୍ରକାଶ ପାଇଛି । ଯୁଦ୍ଧର ବାସ୍ତବ ରୂପ ପ୍ରତି ସମସ୍ତଙ୍କ ଆଖି ଖୋଲିଯାଇଛି । ଯୁଦ୍ଧ କବିତା ଲେଖିଥିବା ତତ୍କାଳୀନ ତିନିଜଣ ବିଶିଷ୍ଟ ତରୁଣ କବିଙ୍କ କୃତି ଏଠାରେ ଆଲୋଚ୍ୟ ।

ରୁପର୍ଟ ବ୍ରୁକ୍ (Rupert Brooke : ୧୮୮୭-୧୯୧୫)ଙ୍କ ଆଦ୍ୟଜୀବନର କବିତାରେ ଅବକ୍ଷୟମାଣ ଯୁଗର ବିମର୍ଷତା ପ୍ରକାଶ ପାଇଥିଲା । ସେଥିରୁ ମୁକ୍ତହୋଇ ସେ ଜର୍ଜିଆନ୍ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଥିଲେ । ପ୍ରକୃତିପ୍ରୀତି, ବିମଳ ଆନନ୍ଦ, ଯୌବନର ପ୍ରାଣୋଚ୍ଛଳ ଉତ୍‌ଫୁଲ୍ଲତା ତାଙ୍କୁ ଜର୍ଜିଆନ୍ କବିଙ୍କ ମଧ୍ୟରେ ସାମିଲ କରିଛି । ତାଙ୍କ ଚିନ୍ତା-ଧାରାରେ ଗଭୀରତା ବା ସ୍ୱକୀୟତାର ସ୍ୱାକ୍ଷର ମିଳେନାହିଁ । ସେ ପ୍ରଥମ ମହାଯୁଦ୍ଧରେ ଖ୍ରୀ: ୧୯୧୪ରେ ଯୋଗଦାନ କରି ତତ୍‌ପର ବର୍ଷ ଯୁଦ୍ଧକ୍ଷେତ୍ରରେହିଁ ପ୍ରାଣ ବିସର୍ଜନ ଦେଇଥିଲେ । ତାଙ୍କର ସମର-କବିତା ଏକଦା ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ତାଙ୍କର କବିତାବଳୀ ତିନୋଟି ସଂକଳନରେ ପ୍ରକାଶିତ ।

ବ୍ରୁକ୍ ଅଳ୍ପସଂଖ୍ୟକ ସମର କବିତା ଲେଖିଛନ୍ତି । ଯୁଦ୍ଧକ୍ଷେତ୍ରର ପ୍ରତ୍ୟକ୍ଷ ଅନୁଭୂତି ତାଙ୍କର ଥିଲା; କିନ୍ତୁ ପରବର୍ତ୍ତୀ କବିଙ୍କ ଭଳି ଯୁଦ୍ଧ ପ୍ରତି ବିତୃଷ୍ଣା ତାଙ୍କଠାରେ ଦେଖାଯାଇ-

ନାହିଁ; ବରଂ ପ୍ରାକ୍ ମହାଯୁଦ୍ଧକାଳୀନ କବିଙ୍କ ପରି ତାଙ୍କର ରୋମାଣ୍ଟିକ ପ୍ରବଣତା ପ୍ରକାଶ ପାଇଛି । ସେ ଦେଶପ୍ରୀତି ଓ ଆତ୍ମୋତ୍ସର୍ଗର ଆଦର୍ଶରେ ଅନୁପ୍ରାଣିତ । 'ଦ ସୋଲ୍ଜର' ନାମକ ସନେଟ୍‌ଟିରେ କବି ଗାଇଛନ୍ତି—

If I should die, Think only This of me
That There's some corner of a foreign field
That is for ever England, There shall be
In that rich Earth a richer dust concealed.

ସିଗ୍‌ଫ୍ରିଡ୍ ସାସୁନ୍ (Siegfried Sassoon : ୧୮୮୬-୧୯୬୭) ମଧ୍ୟ ଯୁଦ୍ଧରେ ଯୋଗ ଦେଇଛନ୍ତି; କିନ୍ତୁ ରୁପର୍ଟ ବ୍ରୁକ୍‌ଙ୍କ ପରି ସେ ଯୁଦ୍ଧର ଗୌରବ ଗାନ କରିପାରିନାହାନ୍ତି । ତାଙ୍କର ବଳିଷ୍ଠ ଲେଖନୀରେ ପ୍ରଥମ ଥର ପାଇଁ ଯୁଦ୍ଧର ମର୍ମନ୍ତୁଦ, ବୀଭତ୍ସ ଚିତ୍ର ଇଂଲଣ୍ଡର ପାଠକଙ୍କ ନିକଟରେ ପହଞ୍ଚିପାରିଛି । କବିଙ୍କ କାଉଣ୍ଟର୍-ଆଟାକ୍ (Counter-attack : ୧୯୧୮) ସଂକଳନଟି ଏ ଦିଗରୁ ଗୁରୁତ୍ୱପୂର୍ଣ୍ଣ । କବି ନିଜ ଅଭିଜ୍ଞତାରୁ ସମରପ୍ରାଙ୍ଗଣ, ଶିବିର ତଥା ଚିକିତ୍ସାଳୟର କରୁଣ ଚିତ୍ର ମର୍ମସ୍ପର୍ଶୀ ଭାଷାରେ ବ୍ୟକ୍ତ କରିଛନ୍ତି । ତାଙ୍କର ଅନ୍ୟାନ୍ୟ କବିତା ସଂକଳନ ଓ୍ୱାର୍ ପଏମ୍‌ସ୍ (୧୯୧୯) ଓ ସାଟାୟାରିକ୍ୟାଲ ପଏମ୍‌ସ୍ (୧୯୨୬)ରେ ମଧ୍ୟ ଏହି ସ୍ୱର ଅବ୍ୟାହତ । ନିମ୍ନ କେତୋଟି ପଙ୍‌କ୍ତିରୁ ତାଙ୍କର ବଳିଷ୍ଠ ପ୍ରକାଶଭଙ୍ଗୀର ପରିଚୟ ମିଳିପାରିବ—

The place was rotten with dead, green clumsy legs
High-booted, sprawled and grovelled along the caps,
And trunks face, downward in the sucking mud,
Wallowed like trodden sand-bags loosely filled,
And naked sodden buttocks, mats of hair,
Bulged clotted heads slept in the plastering slime.

ପରବର୍ତ୍ତୀ କବିଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ ।

ଉଇଲ୍‌ଫ୍ରେଡ୍ ଓଏନ୍ (Wilfred Owen : ୧୮୯୩-୧୯୧୮) ସମସାମୟିକ ସମର କବିତା ରଚୟିତାଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ଆଦ୍ୟଜୀବନରେ ରୋମାଣ୍ଟିକ କବିତା ପ୍ରତି ତାଙ୍କର ଆଗ୍ରହ ଥିଲା; କିନ୍ତୁ କବି ସାସୁନ୍‌ଙ୍କ ପ୍ରଭାବରେ ସେ ଯୁଦ୍ଧର ବାସ୍ତବିକତାକୁ ରୂପଦେବାକୁ ଲାଗିଲେ । ରୁପର୍ଟ ବ୍ରୁକ୍‌ଙ୍କ ପରି ସେ ସମର କ୍ଷେତ୍ରରେ ପ୍ରାଣଦାନ କରିଛନ୍ତି । ସାସୁନ୍‌ଙ୍କ ପରି ଯୁଦ୍ଧକ୍ଷେତ୍ରରେ ପ୍ରତ୍ୟକ୍ଷ ଅନୁଭୂତି ତାଙ୍କ କବିତାକୁ ଆବେଦନଶୀଳ କରିଛି; କିନ୍ତୁ ସାସୁନ୍‌ଙ୍କ ଉତ୍କ୍ଷିପ୍ତତା ଓ ବିରକ୍ତି ତାଙ୍କ କବିତାରେ ନାହିଁ । ତାଙ୍କ ବ୍ୟଙ୍ଗ ବିଦ୍ରୂପ ମଧ୍ୟ କଳାତ୍ମକ ରୁଚିବୋଧ ହରାଇନାହିଁ । ତାଙ୍କର ଉଦ୍ଦେଶ୍ୟ ଯୁଦ୍ଧକ୍ଷେତ୍ରରେ ମଣିଷର ଦୟନୀୟ ଅବସ୍ଥା ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବା "I am not con-

cerned with Poetry. My subject is War and the Pity of War. The Poetry is in the Pity". ତାଙ୍କର ବହୁ ସାର୍ଥକ କବିତା ମଧ୍ୟରେ 'ଷ୍ଟ୍ରେଞ୍ଜ ମିଟିଂ' ଅନ୍ୟତମ । ଏହାର କଥାବସ୍ତୁ ସୈନିକ ଜୀବନର କାରୁଣ୍ୟ । କବି ସ୍ୱପ୍ନରେ ପ୍ରେତପୁରୀର ଗୋଟିଏ ଗଳିର ସୁଡ଼ଙ୍ଗ ମଧ୍ୟରେ ପ୍ରବେଶ କରିଛନ୍ତି । ସେଠାରେ ଜଣେ ସୈନିକ ସହ, ତାଙ୍କର ଭେଟହୁଏ—କବି ଯୁଦ୍ଧକ୍ଷେତ୍ରରେ ନିଜ ହାତରେ ହିଁ ତାକୁ ବଧ କରିଥିଲେ । ସୈନିକଟି ତାର ପୁଞ୍ଜୀଭୂତ ନୈରାଶ୍ୟ ଓ ଦୁଃଖ କବିଙ୍କ ଆଗରେ ବ୍ୟକ୍ତ କରିଛି—

> Courage was mine, and I had mystery,
> Wisdom was mine, and I had mastery;
> To miss the march of this retreating world
> Into vain citadels that are not walled.

କବିତାର ଆଙ୍ଗିକରେ ସେ ପରୀକ୍ଷା ନିରୀକ୍ଷା ଚଳାଇଛନ୍ତି । ତାଙ୍କ ପ୍ରବର୍ତ୍ତିତ ପାରା ରାଇମ୍ (Para Rhyme) ପରବର୍ତ୍ତୀ କବି ଅନୁସରଣ କରିଛନ୍ତି । ଶବ୍ଦଚୟନ ଓ ତାର ସାର୍ଥକ ପ୍ରୟୋଗରେ କବିଙ୍କ ପାରଦର୍ଶିତା ଅବିସମ୍ବାଦିତ । 'ଦି ପଏମ୍‌ସ୍ ଅଫ୍ ଉଇଲ୍‌ଫ୍ରେଡ୍ ଓଏନ୍' (୧୯୩୧) ତାଙ୍କ କବିତାର ପୂର୍ଣ୍ଣାଙ୍ଗ ସଂକଳନ ।

## ଚିତ୍ରକଳ୍ପ ବା ରୂପକଳ୍ପବାଦୀ ଗୋଷ୍ଠୀ (Imagists)

ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ ଜର୍ଜିଆନ କବିତାର ପ୍ରତିବାଦରେ ଦେଖାଦେଲା ଚିତ୍ରକଳ୍ପବାଦୀ କବିତା । ଜର୍ଜିଆନ୍ କବିତାର ଶିଥିଳ, ଅନାୟାସଲଭ୍ୟ ପ୍ରକାଶଭଙ୍ଗୀ ନୂତନ କବିଗୋଷ୍ଠୀର ସ୍ୱାଗତଯୋଗ୍ୟ ହୋଇପାରିନଥିଲା । ଏମାନେ ଖ୍ରୀ: ୧୯୦୯ରୁ ୧୯୧୭ ମଧ୍ୟରେ ଦେଖାଦେଇଥିବା ଫରାସୀ ଚିତ୍ରକଳା ଆନ୍ଦୋଳନଦ୍ୱାରା ପ୍ରଭାବିତ ହୋଇଥିଲେ । ଏହି କବିଗୋଷ୍ଠୀର ନେତୃତ୍ୱ ନେଇଥିଲେ ଟି. ଇ. ହ୍ୟୁମ୍ (T. E. Hulme: ୧୮୮୩-୧୯୧୭) । ହ୍ୟୁମ୍‌ଙ୍କ ମତରେ ତତ୍କାଳୀନ ଚିତ୍ରକଳା ପରି କବିତା କେବଳ ଇନ୍ଦ୍ରିୟଗ୍ରାହ୍ୟ ବିଷୟକୁ ଅବଲମ୍ବନ କରିବା ଉଚିତ । କବି ନିଜର ବକ୍ତବ୍ୟ ପ୍ରକାଶପାଇଁ ଧାରାବାହିକ ଭାବରେ କେବଳ ଚିତ୍ରକଳ୍ପ ହିଁ ପ୍ରୟୋଗ କରିବା ଉଚିତ । ଏହି ଚିତ୍ରକଳ୍ପ ରୂପମୟ ଓ ଦର୍ଶନେନ୍ଦ୍ରିୟଦ୍ୱାରା ଅନାୟାସ ଗ୍ରହଣଯୋଗ୍ୟ ହେବା ଦରକାର । ପ୍ରକାଶଭଙ୍ଗୀ ଶିଥିଳ ନହୋଇ ଘନିଷ୍ଠ ହେବା ବାଞ୍ଛନୀୟ । ହ୍ୟୁମ୍ ମୁକ୍ତଛନ୍ଦ (Verse Libra)ର ପକ୍ଷପାତୀ । ଦୈନନ୍ଦିନ ଜୀବନର କଥିତ ଭାଷାର ଛନ୍ଦକୁ ସେ ପ୍ରାଧାନ୍ୟ ଦେଇଥାନ୍ତି । ଆମେରିକୀୟ କବି ଏଜ୍‌ରା ପାଉଣ୍ଡ ଓ ହିଲ୍‌ଡ଼ା ଡୁଲିଟ୍‌ଲ୍ (Hilda Doolittle) ତାଙ୍କଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ଏଜ୍‌ରା ପାଉଣ୍ଡ ହିଁ ଉକ୍ତ ଆନ୍ଦୋଳନର ନାମ 'ଇମାଜିଜ୍‌ମ' ରଖିଛନ୍ତି । ଅନ୍ୟାନ୍ୟ କବିଙ୍କ ମଧ୍ୟରେ ହିଲ୍‌ଡ଼ାଙ୍କ ସ୍ୱାମୀ ରିଚାର୍ଡ଼ ଆଲ୍‌ଡ଼ିଙ୍ଗଟନ୍,

ଏଫ୍. ଏସ୍. ଫ୍ଲିଣ୍ଟ୍ ଓ ଆମି ଲୋଏଲ୍ (Amy Lowell) ଅନ୍ତର୍ଗତ । ଏଜ୍ରାପାଉଣ୍ଡ ଏହି କବିଗୋଷ୍ଠୀର ଏକ କବିତା ସଂକଳନ (Des Imagistes) ଖ୍ରୀ: ୧୯୧୪ରେ ପ୍ରକାଶ କରିଥିଲେ । ଏହା ବ୍ୟତୀତ ଅନ୍ୟ କେତୋଟି ସଂକଳନ ମଧ୍ୟ ପ୍ରକାଶିତ ।

ବିଷୟବସ୍ତୁ ଅପେକ୍ଷା ପ୍ରକାଶରୀତି ହିଁ ଏମାନଙ୍କଠାରେ ଥିଲା ମୁଖ୍ୟ । ଚିତ୍ରକଳ୍ପ ସୃଷ୍ଟି ଉପରେ ଅତ୍ୟଧିକ ଗୁରୁତ୍ୱ ପ୍ରଦାନହେତୁ କ୍ରମେ ଏଗୁଡ଼ିକ ହୋଇଉଠିଲା ଅତ୍ୟନ୍ତ ଦୁର୍ବୋଧ । ଏ କବିତା ବେଶି ଦିନ ବଞ୍ଚି ନପାରିଥିଲେ ମଧ୍ୟ ହ୍ୟୁମ୍‌ଙ୍କ ଦର୍ଶନେନ୍ଦ୍ରିୟ ଗ୍ରାହ୍ୟ ଚିତ୍ରକଳ୍ପର ଆଦର୍ଶ ପରବର୍ତ୍ତୀ କବିମାନେ ଗ୍ରହଣ କରିଛନ୍ତି ।

## ଦୁଇ ବିଶ୍ୱଯୁଦ୍ଧ ଅନ୍ତର୍ବର୍ତ୍ତୀ କବିତା (୧୯୧୮—୩୯) :

ପ୍ରଥମ ବିଶ୍ୱଯୁଦ୍ଧ ମାନବ-ସମାଜ ପକ୍ଷରେ ଏକ ଭୟାବହ, ମର୍ମନ୍ତୁଦ ଘଟଣା । ଅବିଶ୍ୱାସ୍ୟ ଧ୍ୱଂସଲୀଳା ତଥା ପ୍ରାଣହାନି ମନୀଷିର ଚିନ୍ତାଜଗତରେ ମଧ୍ୟ ସଂକଟ ସୃଷ୍ଟି କରିଛି—ଧର୍ମ, ସମାଜ, ରାଜନୀତି, କଳା, ଦର୍ଶନ ଓ ସାହିତ୍ୟ ସମ୍ବନ୍ଧୀୟ ସମସ୍ତ ପ୍ରାଚୀନ ମୂଲ୍ୟବୋଧ ତ୍ରୁଟିପୂର୍ଣ୍ଣ ତଥା ଅର୍ଥହୀନ ବୋଧହୋଇଛି । ମାନବସମାଜ ଏ ପର୍ଯ୍ୟନ୍ତ କେବଳ କେତେକ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇଥିଲା ବୋଲି ମନେହୋଇଛି । ବର୍ତ୍ତମାନ ଭ୍ରାନ୍ତି ମୋଚନ (disillusionment)ର ବେଳ । ନୂତନ ପରିସ୍ଥିତି ନୂତନ ସମସ୍ୟା ସୃଷ୍ଟି କରିଛି, କିନ୍ତୁ ସମାଧାନର ବାଟ ମିଳେନା । ଏଣୁ ଆଧୁନିକ କବି ମନରେ ଭରିଉଠେ ଅସ୍ଥିରତା ଓ ନୈରାଶ୍ୟ ।

ମହାଯୁଦ୍ଧର ପ୍ରତିକ୍ରିୟା ବ୍ୟତୀତ ସମାଜତତ୍ତ୍ୱ, ମନସ୍ତତ୍ତ୍ୱ ଓ ରାଜନୀତି କ୍ଷେତ୍ରରେ ଦେଖାଦେଇଥିବା ନୂତନ ଚିନ୍ତାଧାରାର ପ୍ରଭାବ ମଧ୍ୟ ଏଯୁଗର ସାହିତ୍ୟ ତଥା କବିତା ଉପରେ ପଡ଼ିଛି । କାର୍ଲ ମାର୍କସ୍ (Karl Marx : ୧୮୧୮-୮୩)ଙ୍କ ସମାଜବାଦୀ ଚିନ୍ତାଧାରା, ଫ୍ରଏଡ୍ (Sigmund Freud : ୧୮୫୬-୧୯୩୯)ଙ୍କ ଅବଚେତନ ମନ ସମ୍ପର୍କୀୟ ତଥ୍ୟ ଓ ୟୁଁ (Yung)ଙ୍କ ସାମାଜିକ ଅବଚେତନ (Racial unconscious) ତତ୍ତ୍ୱ ସାହିତ୍ୟକୁ ପ୍ରଭାବିତ କରିଛି । ଯୁଗଚେତନାର ପରିପ୍ରେକ୍ଷୀରେ ଜଟିଳ ମାନସିକ ପ୍ରକ୍ରିୟାକୁ ରୂପଦେବାକୁ ଯାଇ ଏ ଯୁଗର କବି ପାରମ୍ପରିକ ପ୍ରକାଶଭଙ୍ଗୀକୁ ଅନୁପଯୋଗୀ ମନେକରିଛନ୍ତି । ନୂତନ ପ୍ରକାଶରୀତିର ଆବଶ୍ୟକତା ଉପଲବ୍ଧ ହୋଇଛି । ଏମାନେ ଆମେରିକାର କବି ହ୍ୱିଟ୍‌ମ୍ୟାନ୍‌ଙ୍କ ପ୍ରଭାବରେ ମୁକ୍ତ ଛନ୍ଦ ଓ ହପ୍‌କିନ୍‌ସ୍‌ଙ୍କ ଛନ୍ଦ ବୈଚିତ୍ର୍ୟ ପ୍ରତି ଆକୃଷ୍ଟ ହୋଇଛନ୍ତି । ପ୍ରଚଳିତ ଶବ୍ଦବିନ୍ୟାସ ରୀତି (syntax)କୁ ଉପେକ୍ଷା କରିଛନ୍ତି । ଡାନ୍‌ଙ୍କ 'ମେଟାଫିଜିକାଲ୍ କନ୍‌ସିଟ୍' ଓ ଫରାସୀ ପ୍ରତୀକବାଦୀ ତଥା ଇଟ୍‌ସ୍‌ଙ୍କ ପ୍ରଭାବରେ ପ୍ରତୀକ ଉପରେ ଗୁରୁତ୍ୱ ଦେଇଛନ୍ତି । ଚିନ୍ତାଧାରାର ଯଥାଯଥ ପରିପ୍ରକାଶପାଇଁ କିମ୍ବଦନ୍ତୀ ଓ ଅତିକଥାରୁ ଉପାଦାନ ଗୃହୀତ ହୋଇଛି; କିନ୍ତୁ ଏସବୁ କବିତାର ଦୁର୍ବୋଧତାର କାରଣ ହୋଇଛି ମାତ୍ର । ଜଟିଳ ମାନସିକ ଅବସ୍ଥାର ପ୍ରକାଶବେଳେ ପ୍ରକାଶଶୈଳୀ ଜଟିଳ ହେବାକୁ ବାଧ୍ୟ ବୋଲି ଆଧୁନିକ କବି ଦାବୀ କରେ ।

ଯୁଗଯନ୍ତ୍ରଣାରୁ ନିଜକୁ ମୁକ୍ତ ରଖିବାକୁ ମଧ୍ୟ କେହି କେହି ଚେଷ୍ଟାକରିଛନ୍ତି । ଅତି ବାସ୍ତବବାଦୀ (surrealist) କବିଗୋଷ୍ଠୀ ଏହାର ଉଦାହରଣ । ଡିଲନ୍ ଟୋମାସ୍ ଓ ଜର୍ଜ ବାର୍କାର୍ଙ୍କ ପରି କେତେକ କବି ପୁଣି ରୋମାଣ୍ଟିକ୍ ଧାରାର ପ୍ରବର୍ତ୍ତନ ପାଇଁ ଉଦ୍ୟମ କରିଛନ୍ତି । କେତେକ ବୟୋଜ୍ୟେଷ୍ଠ କବି ରୋମାଣ୍ଟିକ୍ ଧାରାକୁ ଅବ୍ୟାହତ ରଖିଛନ୍ତି । ଏମାନଙ୍କ ମଧ୍ୟରେ ମେଜ୍ ଫିଲ୍ଡ୍, ଡି ଲା ମେୟାର ଓ ଡେଭିଜ୍ ଅନ୍ୟତମ । ଏସବୁ ସତ୍ତ୍ୱେ ଆଧୁନିକ ଯୁଗଚେତନାର ଶ୍ରେଷ୍ଠ କବି ଏଲିଅଟ୍ଙ୍କ ସର୍ବବ୍ୟାପୀ ପ୍ରଭାବ ଅନସ୍ୱୀକାର୍ଯ୍ୟ ।

ଇଲିଅଟ୍ (Thomas Stearns Eliot : ୧୮୮୮-୧୯୬୫) ଓ ଇଟ୍ସ୍ ଦୁଇ ମହାଯୁଦ୍ଧ ଅନ୍ତର୍ବର୍ତ୍ତୀ କବିତାକ୍ଷେତ୍ରରେ ଦୁଇ ମହାନ୍ ପ୍ରତିଭା । ସମସାମୟିକ କବିତା କିନ୍ତୁ ଇଲିଅଟ୍ଙ୍କଦ୍ୱାରା ହିଁ ଅଧିକ ପ୍ରଭାବିତ । ଯୁଦ୍ଧବିଧ୍ୱସ୍ତ ପୃଥିବୀର ବିବର୍ଣ୍ଣ ରୂପ ତାଙ୍କ କବିତାରେ ସାର୍ଥକ ରୂପ ଲାଭକରିଛି । ଇଲିଅଟ୍ଙ୍କ ମତରେ କବି ହିଁ ସମୟର ଶ୍ରେଷ୍ଠ ସଚେତନ ବୃନ୍ଦ । ଯୁଗର ପ୍ରାଣସ୍ପନ୍ଦନ ମୁହୁର୍ମୁହୁଃ ତାର ହୃଦୟରେ ପ୍ରତିଧ୍ୱନିତ ହୁଏ । କବି ଯୁଗଚେତନାର ଶ୍ରେଷ୍ଠ ପ୍ରତିନିଧି । ନିଜ କବିତା ଭିତରେ ଇଲିଅଟ୍ ସେହି ଭାବରେ ହିଁ ଆତ୍ମପ୍ରକାଶ କରିଛନ୍ତି ।



[ ଥୋମାସ୍ ଇଲିଅଟ୍ ]

ଇଲିଅଟ୍ଙ୍କ ଜନ୍ମ ଆମେରିକାରେ । ଖ୍ରୀ: ୧୯୨୭ରେ ସେ ବ୍ରିଟିଶ ନାଗରିକତ୍ୱ ଗ୍ରହଣ କରନ୍ତି । ଶିକ୍ଷକତା, ବ୍ୟାଙ୍କ୍ ବ୍ୟବସାୟ, ପତ୍ରିକା ସମ୍ପାଦନା ଓ ପୁସ୍ତକ ପ୍ରକାଶନପରି ବିଭିନ୍ନ କ୍ଷେତ୍ରରେ ତାଙ୍କର କର୍ମମୟ ଜୀବନ ପରିବ୍ୟାପ୍ତ ।

'ପ୍ରୁଫ୍ରକ୍' (Prufrock : ୧୯୧୭) କବିଙ୍କ ପ୍ରଥମ ଉଲ୍ଲେଖଯୋଗ୍ୟ କବିତା ସଂକଳନ । ଉଭୟ ଆଙ୍ଗିକ ଓ ଆତ୍ମିକ ଦିଗରୁ ଏହା ଏକ ନୂତନ ପ୍ରତିଭାର ଅଭ୍ୟୁଦୟ ସୂଚାଇ ଦିଏ । ଆଧୁନିକ ଜୀବନର ହତାଶା, ନୈରାଶ୍ୟ, ବିରକ୍ତି ଓ ଶୂନ୍ୟତାବୋଧର ଏହା ଏକ ପ୍ରତୀକଧର୍ମୀ ବ୍ୟଙ୍ଗାତ୍ମକ ପରିପ୍ରକାଶ । ପ୍ରୁଫ୍ରକ୍ ବିଗତଯୌବନ, ପ୍ରୌଢ଼; କିନ୍ତୁ ତାର ଅବଦମିତ ରୋମାଣ୍ଟିକ୍ ଯୌନ-ଲିପ୍ସା ଆଗ୍ନେୟଗିରି ପରି ଆତ୍ମପ୍ରକାଶ କରିଉଠିଛି । କାମନା ଚରିତାର୍ଥ କରିବାର ଅବକାଶ ନାହିଁ; ପ୍ରାଣରେ ତାର ଗଭୀର ଅବଶୋଷ । ଏଣୁ ନିଜକୁ ନିଜେ ସେ ବ୍ୟଙ୍ଗ ବିଦ୍ରୂପ କରୁଛି । ଏହା ବ୍ରାଉନିଙ୍କ 'ମନୋଲଗ୍' ପରି । କବିତାର ପ୍ରାରମ୍ଭରେ ପ୍ରଦତ୍ତ ସନ୍ଧ୍ୟାର ଚିତ୍ରରେ ଏହି ହତାଶ-ପ୍ରାଣର ବ୍ୟଞ୍ଜନା ଅତୀବ ମର୍ମସ୍ପର୍ଶୀ—

Let us go then you and I,
When the evening is spread out against the sky
Like a patient etherised upon a table.

ବୁଦ୍ଧିଗ୍ରାହ୍ୟ ପ୍ରତୀକ ଓ ଚିତ୍ରକଳ୍ପର ପ୍ରୟୋଗ, ଅନ୍ତ୍ୟମେଳର ଅନିୟମିତତା, ପଙ୍କ୍ତି ଦୈର୍ଘ୍ୟର ଅସମାନତା, ଶବ୍ଦର ପରିମିତ ତଥା ବଳିଷ୍ଠ ପ୍ରୟୋଗ ଓ ଛନ୍ଦବୈଚିତ୍ର୍ୟ ଏହାର ବିଶେଷତ୍ୱ ।

ପରବର୍ତ୍ତୀ ସଂକଳନ (Poem—୧୯୨୦)ର କାବ୍ୟଚେତନାରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏନାହିଁ; ମାତ୍ର ଏଥିରେ ସନ୍ନିବିଷ୍ଟ 'ଗେରନ୍‌ସନ୍' କବିତାଟି ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ ମହାନ୍ କୃତି 'ଦି ଓ୍ୱେଷ୍ଟ ଲ୍ୟାଣ୍ଡ୍'ର ଅସ୍ପଷ୍ଟ ରୂପ ଏଥିରେ ଦେଖିବାକୁ ମିଳେ । ଅସହାୟ ବୃଦ୍ଧ ଗେରନ୍‌ସନ୍ (an old man in a dry month) ଆଧୁନିକ ଜୀବନର ପ୍ରତୀକ ।

'ଦି ଓ୍ୱେଷ୍ଟ ଲେଣ୍ଡ' (The Waste Land : ୧୯୨୨) ଲେଖକଙ୍କ ସର୍ବଶ୍ରେଷ୍ଠ କୃତି । ଆଧୁନିକ ଯୁଗଯନ୍ତ୍ରଣାର ଏହା ଶ୍ରେଷ୍ଠ ପ୍ରତିଲିପି । ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଇଉରୋପୀୟ ଜୀବନର ବିକଳାଙ୍ଗ ଚିତ୍ର ଅଙ୍କନରେ ଏହାର ସାଫଲ୍ୟ ଅନତିକ୍ରାନ୍ତ ।

କବି 'ଓ୍ୱେଷ୍ଟ ଲ୍ୟାଣ୍ଡ୍'ର କଥାବସ୍ତୁକୁ ପାଞ୍ଚଭାଗରେ ବିଭକ୍ତ କରିଛନ୍ତି; ତଦନୁଯାୟୀ କବିତାଟିର ପାଞ୍ଚଟି ପର୍ବ । ପ୍ରଥମ ପର୍ବ 'ଶବ ସତ୍କାର' (The Burial of the dead)ରେ ଊଷର-ଭୂମିର ରୁକ୍ଷ, ଶୁଷ୍କ, ପ୍ରାଣହୀନ ଚିତ୍ର ପ୍ରଦତ୍ତ । ଦ୍ୱିତୀୟ ଓ ତୃତୀୟ ପର୍ବ ଦ୍ୟୁତ କ୍ରୀଡ଼ା (The Game of Chess) ଓ ଅଗ୍ନି ମନ୍ତ୍ର (The Fire Sermon)ର ବିଷୟବସ୍ତୁ ବିକୃତ ଯୌନଚର୍ଯ୍ୟା । ଚତୁର୍ଥ ପର୍ବ 'ସଲିଳ ସମାଧି' (Death by Water)ରେ ଜଳାଧିକ୍ୟ ହେତୁ ଫ୍ଲେବାସ୍‌ର ମୃତ୍ୟୁ-ପ୍ରସଙ୍ଗ ବର୍ଣ୍ଣିତ । ଅନ୍ତିମ ଖଣ୍ଡ 'ବଜ୍ର କଣ୍ଠ' (What the Thunder Said)ରେ କବି ମୁମୂର୍ଷୁ ପୃଥିବୀର କାନରେ ଆଶାର ବାଣୀ ଶୁଣାଇ ଉପନିଷଦ୍‌ର ସଞ୍ଜୀବନୀ ମନ୍ତ୍ର ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି—ଦତ୍ତ, ଦୟଧ୍ୱମ୍, ଦମ୍ୟତ ।

କବିତାଟିରେ ବ୍ୟବହୃତ ସମସ୍ତ ପ୍ରତୀକର ସଠିକ ଅର୍ଥ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ, କିନ୍ତୁ ତାର ବ୍ୟଞ୍ଜନା ଅତି ସ୍ପଷ୍ଟ । ଟାୟୁର୍ସିଆସ୍ ଚରିତ୍ରଟି ଆମୂଳଚୂଳ ଉପସ୍ଥିତ ରହି କବିତାଟିର ବିଷୟଗତ ଐକ୍ୟ ରକ୍ଷାକରେ । ବସ୍ତୁତଃ ଆବେଗସ୍ପନ୍ଦିତ ପରିବେଶରେହିଁ ଏହାର ଐକ୍ୟ ନିହିତ ।

ଆଧୁନିକ ସମାଜର ଶ୍ରୀହୀନ, ନୈରାଶ୍ୟଗ୍ରସ୍ତ, କ୍ଲୀବ ଓ କୁତ୍ସିତ ଜୀବନଚିତ୍ର ଅଙ୍କିବାକୁ ଯାଇ କବି ଏକ ବଳିଷ୍ଠ ପ୍ରକାଶ ମାଧ୍ୟମର ଆବଶ୍ୟକତା ଅନୁଭବ କରିଛନ୍ତି—ଆଧୁନିକ ଜୀବନର ସମସ୍ୟା ତାଙ୍କ ମନରେ ଯେଉଁ ଜଟିଳ ପ୍ରତିକ୍ରିୟା ସୃଷ୍ଟି କରିଛି ତାହାକୁ ସହଜ,

ସରଳ ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ; ଏଣୁ ସେ ସମଧର୍ମୀ ବହିର୍ବସ୍ତୁ (Objective Co-relative)ର ପ୍ରୟୋଗ କରିଥାନ୍ତି । କବିଙ୍କ ମତରେ ଉପଯୁକ୍ତ ବାହ୍ୟ ବିଷୟ, ପରିବେଶ ବା ଘଟଣାପୁଞ୍ଜର ଉପସ୍ଥାପନାଦ୍ୱାରା ନିର୍ଦ୍ଦିଷ୍ଟ ଆବେଗକୁ ଯଥାଯଥଭାବରେ ପ୍ରକାଶ କରାଯାଇପାରେ । ଏ ସମ୍ପର୍କରେ ସେ କହନ୍ତି—

The only way of expressing emotion in the form of art is by finding an 'Objective Co-relative', in other words, a set of objects, a situation, a chain of events which shall be the formula of that particular emotion; such that when the external facts, which must terminate is sensory experience, are given, the emotion is immediately evoked.

ଆଧୁନିକ ଜୀବନର ଅନ୍ତଃସାରଶୂନ୍ୟତାରେ ପୀଡ଼ିତ କବି ନିଜର ଆବେଗକୁ ପ୍ରକାଶ କରିବାପାଇଁ ୱେଷ୍ଟ ଲ୍ୟାଣ୍ଡରେ ଏହିଭଳି ବହିର୍ବସ୍ତୁର ସାହାଯ୍ୟ ନେଇଛନ୍ତି । ଯୀଶୁଙ୍କ ରକ୍ତ-ପାତ୍ର ସମ୍ପର୍କିତ ଏକ ମଧ୍ୟଯୁଗୀୟ କିମ୍ବଦନ୍ତୀ ଏଥିପାଇଁ ଉପଯୁକ୍ତ ବିବେଚିତ ହୋଇଛି । ଉକ୍ତ ପାତ୍ରରେ ଯୀଶୁ ଶେଷଥର ପାଇଁ ଭୋଜନ କରିଥିଲେ । କ୍ରୁଶବିଦ୍ଧ ହେବାବେଳେ ଏହି ପାତ୍ରରେ ତାଙ୍କର ରକ୍ତ ସଂଗୃହୀତ ହୋଇଥିଲା । କିମ୍ବଦନ୍ତୀ ଅନୁଯାୟୀ ଉକ୍ତ ପାତ୍ର (Holy Grail)ର ରକ୍ଷକ ରାଜା ଫିସାର୍ କିଂ । ପାତ୍ରଟି ଗୋଟିଏ ପ୍ରାସାଦ (Grail castle)ରେ ସଂରକ୍ଷିତ । ପ୍ରାସାଦର ଚତୁର୍ଦ୍ଦିଗରେ ବିସ୍ତୀର୍ଣ୍ଣ ଊଷର ଭୂମି । ଏହା ଅନାବୃଷ୍ଟି କ୍ଲିଷ୍ଟ; ସେଠାରେ ସବୁ କିଛି ପ୍ରଜନନଶକ୍ତି ରହିତ, କ୍ଲୀବ । ଫିସାର କିଂଙ୍କ ଗୋଇଠିରେ ବର୍ଚ୍ଛାର କ୍ଷତ; ସେ ନପୁଂସକ; ମାଛ ଧରିବାହିଁ ତାଙ୍କର ଏକମାତ୍ର ସାନ୍ତ୍ୱନା । କେବଳ ରକ୍ତପାତ୍ର ଅନୁସନ୍ଧାନକାରୀଙ୍କଦ୍ୱାରା ତାଙ୍କର କ୍ଷତ ଆରୋଗ୍ୟ ହେବ । କ୍ଷତ ଆରୋଗ୍ୟ ହେବାମାତ୍ରେ ଊଷର ଭୂଇଁ ବନ୍ଧ୍ୟାତ୍ୱରୁ ମୁକ୍ତି ପାଇବ; ପୁଣି ଫୁଲଫଳରେ ହସିଉଠିବ । ଇଲିଅଟଙ୍କ ଦୃଷ୍ଟିରେ ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଇଉରୋପୀୟ ଜୀବନ ଠିକ୍ ଏହି ଊଷର ଭୂମିପରି ।

ସମଧର୍ମୀ ବହିର୍ବସ୍ତୁର ସନ୍ଧାନରେ ବାହାରି କବି ଅତିକଥା (Myth)ରୁ ମଧ୍ୟ ଉପାଦାନ ଗ୍ରହଣ କରିଛନ୍ତି । ଟାଇରିସିଆସ୍ ଓ ଫିଲୋମେଲା ଚରିତ୍ର ଏହାର ଉଦାହରଣ ।

ଟାଇରିସିଆସ୍ (Tiresias) ଏକ ଗ୍ରୀକ୍ ପୌରାଣିକ ଚରିତ୍ର । ଦେବୀ ଏଥେନା ସ୍ନାନ କରୁଥିବାବେଳେ ଟାଇରିସିଆସ୍ ଦୈବାତ୍ ସେଠାରେ ଉପସ୍ଥିତ ହୁଅନ୍ତି । ଏଥେନା ତାଙ୍କ ମୁହଁକୁ ଜଳ ଛାଟିଦେବାରୁ ସେ ଅନ୍ଧ ହୋଇଯାଆନ୍ତି । ଅନ୍ୟ ଏକ ଗଳ୍ପ ଅନୁଯାୟୀ ଏକଦା ଟାଇରିସିଆସ୍ ଦୁଇଟି ସାପର ସଙ୍ଗମ ଦେଖି ମାଈ ସାପଟିକୁ ମାରିଦେଲେ । ସେଥିପାଇଁ ସେ ନିଜେ ଗୋଟିଏ ନାରୀରେ ପରିଣତ ହୋଇଗଲେ । ଉଭୟ ନାରୀ ଓ ପୁରୁଷଙ୍କ ଯୌନ ଅଭିଜ୍ଞତା

ତାଙ୍କର ରହିଲା । ପରେ ଦେବରାଜ ଜିଅସ୍ (Zeus) ଓ ଦେବୀ ହେରା (Hera)ଙ୍କ ମଧ୍ୟରେ ଯୌନ ଅଭିଜ୍ଞତା ସମ୍ବନ୍ଧରେ କଳହର ସୂତ୍ରପାତ ହେଲା । ରତିକ୍ରୀଡ଼ାରେ ନାରୀ ଓ ପୁରୁଷ ମଧ୍ୟରୁ କିଏ ବେଶି ଆନନ୍ଦ ପାଏ—ଏଇ ତାଙ୍କର ସମସ୍ୟା । ବିଶେଷଜ୍ଞ ଭାବରେ ଟାୟ୍ରେସିଆସ୍‌ଙ୍କୁ ଡାକରା ହେଲା । ସେ ମତ ଦେଲେ ଯେ ଉକ୍ତ କର୍ମରେ ନାରୀ ପୁରୁଷର ଦଶଗୁଣ ଆନନ୍ଦ ପାଇଥାଏ । ଏଥିରେ ହେରା କ୍ରୋଧ-ଜର୍ଜରିତା ହୋଇ ଟାୟ୍ରେସିଆସଙ୍କୁ ଅନ୍ଧ କରିଦେଲେ; ଅଧିକ ଦଣ୍ଡ ଦେବାକୁ ଯାଇ ପୁଣି ତାଙ୍କୁ ପୁରୁଷ ବନାଇଦେଲେ । ଏଇ ଚରିତ୍ରଟି ସମ୍ପର୍କରେ ଇଲିଅଟ୍ କହନ୍ତି, "···two sexes meet in Tireseas. What Tireseas sees, in fact, is the substance of the Poem."

ଫିଲୋମେଲା (Philomela) ଚରିତ୍ରଟି ଗ୍ରୀକ୍ ପୁରାଣରୁ ଗୃହୀତ । ଫିଲୋମେଲା ଏଥେନାର ରାଜକୁମାରୀ । ନିଜ ଭିଣୋଇଁ ରାଜା ଟେରାସ୍ (Tereus)ଙ୍କ ଦ୍ୱାରା ସେ ଧର୍ଷିତା । ନିଜ କଳଙ୍କିତ ଚରିତ୍ର ପ୍ରକାଶ ପାଇଯିବା ଭୟରେ ଟେରାସ୍ ଫିଲୋମେଲାର ଜିହ୍ୱା ଛେଦନକରନ୍ତି । ଅନ୍ୟ ଏକ କାହାଣୀ ଅନୁଯାୟୀ ଟେରାସ୍ ନିଜ ସ୍ତ୍ରୀ ପ୍ରୋସିନ୍ (Procne)ର ଜିହ୍ୱା ଛେଦନକରି ଶାଳିକା ଫିଲୋମେଲାକୁ ବିବାହ କରିଛନ୍ତି । ପ୍ରୋସିନ୍ ମୃତା ବୋଲି ପ୍ରଚାର କରିଛନ୍ତି । ଘଟଣା ଜଣାପଡ଼ିବା ପରେ ଦୁଇ ଭଉଣୀ ମିଶି ଟେରାସ୍‌ର ପୁଅ (ପ୍ରୋସିନର ବି ପୁଅ)କୁ ହତ୍ୟା କରି ତାର ମାଂସ ଭୋଜନପାଇଁ ବାପ ଥାଳିରେ ପରିଷନ୍ତି । ଦେବତାମାନେ ଏଥିରେ ହସ୍ତକ୍ଷେପ କରିଛନ୍ତି । ଫିଲୋମେଲା ଗୋଟିଏ ନାଇଣ୍ଟି-ଗେଲରେ ପରିଣତ ହୋଇଛି, ପ୍ରୋସିନ୍ ଗୋଟିଏ ଚଟକ (Swallow) ଓ ଟେରାସ୍ ହୋଇଛି ଗୋଟାଏ ଛଞ୍ଚାଣ (Hoopoe) । ଏ ଦୃଷ୍ଟିରୁ ଇଲିଅଟ୍‌ଙ୍କ ପାଇଁ ଫିଲୋମେଲା ହୋଇଛି ଆଧୁନିକ ଜୀବନର ଅବୈଧ, ବୀଭତ୍ସ ପ୍ରେମର ପ୍ରତୀକ ।

କେତେକଙ୍କ ମତରେ ଇଲିଅଟ୍‌ଙ୍କ ସମଧର୍ମୀ ବହିର୍ବସ୍ତୁ ପ୍ରୟୋଗ ପରିକଳ୍ପନାରେ କିଛି ନୂତନତ୍ୱ ନାହିଁ । ଏହା ପ୍ରତୀକ ବା ରୂପକର ଉଦ୍ଦେଶ୍ୟ ହିଁ ସାଧନ କରିଥାଏ । ବସ୍ତୁତଃ କବିତାଟି କେତେଗୁଡ଼ିଏ ପ୍ରତୀକ ଓ ଚିତ୍ରକଳ୍ପର ସମନ୍ୱୟ । ମରୁଭୂମି ଓ ବନ୍ୟା କବିତାଟିରେ ଦୁଇଟି ପ୍ରଧାନ ପ୍ରତୀକ । ଏ ଦୁଇଟି ଯଥାକ୍ରମେ ମୃତ୍ୟୁ ଓ ପୁନର୍ଜନ୍ମର ପ୍ରତୀକ । ଲଣ୍ଡନ ସେତୁ ଇଉରୋପୀୟ ସଭ୍ୟତାର ପ୍ରତୀକ । ଉକ୍ତ ସଭ୍ୟତାର ବିପର୍ଯ୍ୟୟରେ କବି ଲଣ୍ଡନ ସେତୁ ଭୁଶୁଡ଼ି ପଡ଼ିବାର ଚିତ୍ର କଳ୍ପନା କରନ୍ତି, "London Bridge is falling down falling down falling down." ପ୍ରତୀକାତ୍ମକ ଭାବରେ ଯୁଗଯନ୍ତ୍ରଣାର ସାର୍ଥକ ରୂପାୟନ କରି କବି 'ଓ୍ୱେଷ୍ଟ ଲ୍ୟାଣ୍ଡ'କୁ ଏକ ମହାକାବ୍ୟର ସୋପାନକୁ ଉନ୍ନୀତ କରିଛନ୍ତି ।

ଓ୍ୱେଷ୍ଟ ଲ୍ୟାଣ୍ଡକୁ ଆମେ ଯେଉଁଭଳି ରୂପରେ ଦେଖୁଁ, ତାହା କବିତାଟିର ମୂଳ ସ୍ୱରୂପ ନୁହେଁ । ଏଜ୍‌ରା ପାଉଣ୍ଡଙ୍କ ପ୍ରସ୍ତାବକ୍ରମେ ମୂଳ କବିତାର ପ୍ରାୟ ଅର୍ଦ୍ଧେକ ଅଂଶ ବାଦ୍ ଦିଆଯାଇଛି । ମିସ୍ ଓ୍ୱେଷ୍ଟନଙ୍କ 'ଫ୍ରମ୍ ରିଚୁଏଲ୍‌ସ୍ ଟୁ ରୋମାନ୍‌ସ୍' ଓ ଫ୍ରେଜାରଙ୍କ 'ଦ

ଗୋଲ୍‌ଡେନ୍ ବାଓ' (Adonis, Attis, Osiris) ଏଦ୍ୱାରା ବିଶେଷ ଅବବୋଧରେ ସହାୟକ ହୋଇଥାଏ ।

ପରବର୍ତ୍ତୀ କବିତା ସଙ୍କଳନ (Poems : ୧୯୦୯-୧୯୨୫)ର ଉଲ୍ଲେଖଯୋଗ୍ୟ ରଚନା 'ଦ ହୋଲୋ ମେନ୍' (The Hollow Men) । ଓ୍ୱେଷ୍ଟଲ୍ୟାଣ୍ଡ ଭଳି ଏଠାରେ ମଧ୍ୟ ଜୀବନର ଅସହାୟତା ତଥା ଅନ୍ତଃସାରଶୂନ୍ୟତା ଚର୍ଚ୍ଚିତ । ଆଧୁନିକ ମଣିଷ ପ୍ରତି ଲକ୍ଷ୍ୟ କରି କବି ଗାଇଛନ୍ତି—

We are the hollow men
We are the stuffed men
Leaning together
Head piece filled with straw.

'ଆଶ୍ ଓ୍ୱେନ୍‌ଜ୍ ଡ଼େ' (Ash Wednes Day : ୧୯୩୦)ରେ ଇଲିଅଟ୍‌ଙ୍କ କାବ୍ୟିକ ଚେତନାର ଅନ୍ୟ ଏକ ପର୍ଯ୍ୟାୟ ଦେଖିବାକୁ ମିଳେ । ସଭ୍ୟତାର ସଙ୍କଟରେ ଅଶାନ୍ତ, କ୍ଷୁବ୍ଧ କବିହୃଦୟ ସତେ ଅବା ସମାଧାନର ପନ୍ଥା ଖୋଜି ପାଇଛି । ଖ୍ରୀଷ୍ଟୀୟ ଧର୍ମ-ଦର୍ଶନ ମଧ୍ୟରେ ସେ ଆଶାର ସଙ୍କେତ ପାଇଛନ୍ତି । ଛଅଟି ଅଂଶରେ ବିଭକ୍ତ ଏହି କବିତା-ଟିରେ କବିହୃଦୟ ଆଶା ଓ ନୈରାଶ୍ୟ ମଧ୍ୟରେ ଆନ୍ଦୋଳିତ । କବିତାଟି ଦୁର୍ବୋଧ, ଗୀତିମୟ ଉଚ୍ଛ୍ୱାସ ମଧ୍ୟରେ ଏଦ୍ୱାରା ମର୍ମବାଣୀ ଧ୍ୱନିତ ।

'ଜର୍ଣ୍ଣି ଅଫ୍ ଦ ମେଜାଇ' (Journey of the Magi) କବିତାଟି କବି ମନର ନିଶ୍ଚିତ ଉତ୍ତରଣ ସୂଚିତ କରେ । ଏଥିରେ ଯୀଶୁ ଖ୍ରୀଷ୍ଟଙ୍କ ଜନ୍ମପ୍ରସଙ୍ଗ ବର୍ଣ୍ଣିତ ।

'ଫୋର୍ କ୍ୱାର୍ଟାର୍ସ' (Four Quarters : ୧୯୪୪) ଗୁଡ଼ିଏ କବିତାର ସମାହାର । କବିତାଗୁଡ଼ିକ ଖ୍ରୀ: ୧୯୩୬ରୁ . ୧୯୪୨ ମଧ୍ୟରେ ବିଭିନ୍ନ ସମୟରେ ପ୍ରକାଶ ପାଇଥିଲା । ଭାବଗତ ଐକ୍ୟ ହେତୁ କବିତା ଗୁଡ଼ିକ ଗୋଟିଏ କବିତାର ଅଂଶବିଶେଷ ଭାବରେ ଗୃହୀତ ହୋଇଛି । ଗୁଡ଼ିଏ ଅଂଶରେ କବିମନର ଗୁଡ଼ିଏ ପର୍ଯ୍ୟାୟ ଲକ୍ଷଣୀୟ । କବି ଏଠାରେ ଧର୍ମୀୟ ସତ୍ୟାନୁସନ୍ଧାନ ଓ ସମୟ ସମ୍ପର୍କିତ ଗଭୀର ମନନଶୀଳତାରେ ବ୍ୟାପୃତ । 'ପ୍ରୁଫ୍ରକ୍'ରେ କବି ଜୀବନର ବିପର୍ଯ୍ୟୟ ପ୍ରତ୍ୟକ୍ଷ କରିଥିଲେ, ଓ୍ୱେଷ୍ଟଲ୍ୟାଣ୍ଡରେ ଅସ୍ଥିର ପ୍ରାଣରେ ସମାଧାନର ବାଟ ଖୋଜିଛନ୍ତି; ଅବଶେଷରେ ଏହି ଫୋର୍ କ୍ୱାର୍ଟାର୍ସରେ ସତେ ଅବା ସେ ଅଚଳ ପ୍ରଶାନ୍ତିର ସନ୍ଧାନ ପାଇଛନ୍ତି । ଖ୍ରୀଷ୍ଟୀୟ ଧର୍ମତତ୍ତ୍ୱ ମଧ୍ୟରେ ହିଁ ବିକ୍ଷୁବ୍ଧ କବିମନ ପ୍ରଶମିତ ହୋଇଛି । ପ୍ରସଙ୍ଗକ୍ରମେ ସମୟ ସମ୍ପର୍କରେ କବିଙ୍କ ଗଭୀର ଦାର୍ଶନିକ ଅନୁଚିନ୍ତା ପ୍ରକାଶ ପାଇଛି :

Time past and time present
Are both perhaps present in time future
And time future contained in time past.

କବିତା ବ୍ୟତୀତ ଇଲିଅଟ୍ କେତେଗୁଡ଼ିଏ ଗୀତିନାଟ୍ୟ ମଧ୍ୟ ରଚନା କରିଛନ୍ତି । ଇଲିଅଟ୍ଙ୍କ କାବ୍ୟିକ ବିକାଶ ଅବବୋଧରେ ସହାୟକ ହେଲେ ମଧ୍ୟ ଏଗୁଡ଼ିକ ନାଟକୀୟ ବୈଶିଷ୍ଟ୍ୟହୀନ । ଉକ୍ତ ନାଟକ ମଧ୍ୟରେ 'ମାର୍ଡାର୍ ଇନ୍ ଦି କ୍ୟାଥେଡ୍ରାଲ୍' (Murder in the Cathedral : ୧୯୩୫), 'ଫ୍ୟାମିଲି ରି ୟୁନିଅନ' (୧୯୩୯), 'ଦି କକ୍ଟେଲ୍ ପାର୍ଟି' (The Cocktail Party : ୧୯୪୯), 'ଦି କନ୍ଫିଡ଼େନ୍ସିଆଲ କ୍ଲାର୍କ' (The Confidential Clerk : ୧୯୫୪) ଆଦି ଉଲ୍ଲେଖଯୋଗ୍ୟ ।

କବିତାର ଦୁର୍ବୋଧ୍ୟତା ଇଲିଅଟ୍ଙ୍କ କାବ୍ୟପ୍ରତିଭା ମୂଲ୍ୟାୟନରେ ପ୍ରଧାନ ଅନ୍ତରାୟ । ପ୍ରଥମ ଅବସ୍ଥାରେ ଏହି ଦୁର୍ବୋଧ୍ୟତାର କାରଣ ହୋଇଥିଲା ପ୍ରତୀକ ତଥା ରୂପକଳ୍ପର ପ୍ରୟୋଗ ଓ ବାହ୍ୟବସ୍ତୁ ନିର୍ଦ୍ଦେଶନା (allusiveness) । ପରବର୍ତ୍ତୀ କାଳରେ ବିଷୟଗତ କ୍ଳିଷ୍ଟତାହିଁ ଦୁର୍ବୋଧ୍ୟତାର କାରଣ ହୋଇଛି ।

ଇଲିଅଟ୍ଙ୍କ ରଚନାଶୈଳୀ ଉପରେ ଲଫର୍ଗ (Laforgue), ରିଁବୋ (Rimbaud) ଓ ଭର୍ଲେନ (Verlaine) ଆଦି ଫରାସୀ ପ୍ରତୀକବାଦୀଙ୍କ ପ୍ରଭାବ ପଡ଼ିଛି । ପାଉଣ୍ଡ ଓ ହ୍ୟୁମ୍ଙ୍କ ଚିତ୍ରକଳ୍ପବାଦର ପ୍ରୟୋଗ ମଧ୍ୟ ସେ କରିଛନ୍ତି । ବାହ୍ୟବସ୍ତୁ ନିର୍ଦ୍ଦେଶନା ତାଙ୍କ ଶୈଳୀର ଅନ୍ୟତମ ବୈଶିଷ୍ଟ୍ୟ । ମେଟାଫିଜିକ୍ୟାଲ୍ କବିଙ୍କ କଷ୍ଟକଳ୍ପିତ ଉପମା (conceit) ଓ ଚେତନାର ସମନ୍ୱୟ (unification of sensibility) ବା ଆବେଗ ଓ ବୌଦ୍ଧିକତାର ସମନ୍ୱୟ ତାଙ୍କ କବିତାରେ ବିଶେଷଭାବରେ ବ୍ୟବହୃତ । ବାକ୍ଛନ୍ଦ, ଅନିୟମିତ ପଙ୍କ୍ତିମେଳ ଓ ଅସମ ପଙ୍କ୍ତି ଦୈର୍ଘ୍ୟ ପ୍ରସଙ୍ଗ ପୂର୍ବେ ଆଲୋଚିତ ।

ଡ୍ୟାଭିଡ୍ ଡାଇଚେସ୍ (David Daiches)ଙ୍କ ମତରେ ଇଲିଅଟ୍ ଇଂରେଜୀ କବିତାରେ ଏକ ନୂତନ ଧାରାର ଉଦ୍‌ବୋଧନ କରିଥିଲେ ମଧ୍ୟ ତାଙ୍କ କବିତାର ଅନ୍ତର୍ନିହିତ ମୂଲ୍ୟ ଖୁବ୍ ବେଶୀ ନୁହେଁ । ତାଙ୍କ ମତରେ ଇଲିଅଟ୍ ବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ଗୌଣ କବି । ବିଶ୍ୱ-ସାହିତ୍ୟ ଉପରେ ଇଲିଅଟ୍ଙ୍କ ପ୍ରଭାବ ଲକ୍ଷ୍ୟ କଲେ ଏଭଳି ମନ୍ତବ୍ୟ ଭିତ୍ତିହୀନ ମନେହୁଏ ।

ନାରୀ କବି ଏଡ଼ିଥ୍ ସିଟ୍ୱେଲ୍ (Edith Sitwell : ୧୮୮୭-୧୯୬୪)ଙ୍କ ଅବଦାନ ସମକାଳୀନ ସାହିତ୍ୟରେ ଉଲ୍ଲେଖଯୋଗ୍ୟ । ଇଲିଅଟ୍ଙ୍କ ପରି ସେ ଆଧୁନିକ ଜୀବନର ରିକ୍ତତା ଓ ହତାଶା ସମ୍ବନ୍ଧରେ ଅବହିତ । ବସ୍ତୁତାନ୍ତ୍ରିକ (materialistic) ସଭ୍ୟତାର ଜୀବନଯନ୍ତ୍ରଣା ସେ ହୃଦୟଙ୍ଗମ କରିଛନ୍ତି; କିନ୍ତୁ ସମସ୍ୟାର ସମାଧାନର ସୂତ୍ର ଦେଖିଛନ୍ତି କଳା ଓ ଶୈଶବର ଆହ୍ଲାଦ ଭିତରେ । କଳାର ସେ ଐକାନ୍ତିକ ପୂଜାରୀ । ତାଙ୍କ ଦୃଷ୍ଟିଭଙ୍ଗୀ ଆଭିଜାତ୍ୟସମ୍ପନ୍ନ; କିନ୍ତୁ ପରିଣତ ରଚନାରେ ଅଧିକରୁ ଅଧିକ ମାନବବୋଧ ପ୍ରକାଶ ପାଇଛି । ଶବ୍ଦ ଚୟନ, ରୂପକଳ୍ପର ପ୍ରୟୋଗ ଓ ବୌଦ୍ଧିକତାପୂର୍ଣ୍ଣ ପ୍ରକାଶଭଙ୍ଗୀ ଏକ ସଚେତନ ଓ ସାଧନାନିଷ୍ଠ କବିମାନସର ପରିଚୟ ଦିଏ । ତାଙ୍କ ଶୈଳୀର ଅନ୍ୟତମ

ବୈଶିଷ୍ଟ୍ୟ ସାନ୍ଦ୍ର ଇନ୍ଦ୍ରିୟାନୁଭୂତ (sense impressions) । 'Braying light', 'Jangling rain' ପରି ଶବ୍ଦଗୁମ୍ଫନ ଏହାର ଉଦାହରଣ ।

ଏହାଛଡ଼ା ସିଟ୍‌ୱେଲ୍‌ଙ୍କ ବ୍ୟତୀତ ତାଙ୍କ ଦୁଇ ଭାଇ ଅସବାର୍ଟ (Osbert) ଓ ସାଚ୍‌ଭେରେଲ୍ (Sacheverell) ଇଲିଅଟ୍‌ଙ୍କ ସମସାମୟିକ ପ୍ରତିଭାବାନ୍ କବି ।

## ସମାଜବାଦୀ କବିଗୋଷ୍ଠୀ :

ଖ୍ରୀ: ୧୯୩୦ ବେଳକୁ ଇଲିଅଟଙ୍କ କବିତାର ପ୍ରତିକ୍ରିୟା ପ୍ରକାଶ ପାଇଛି । ମାଇକେଲ ରୋବାର୍ଟସ୍ ( Michael Roberts)ଙ୍କ ନେତୃତ୍ୱରେ ଏକ ନୂତନ କବିଗୋଷ୍ଠୀ ଦେଖାଦେଇଛି । ଅଳ୍ପକାଳ ମଧ୍ୟରେ ଏହାର ନେତୃତ୍ୱ ନେଇଛନ୍ତି କବି ଅଡ଼େନ୍ । ଅଡ଼େନଙ୍କ ବ୍ୟତୀତ ସ୍ପେଣ୍ଡାର୍ , ଡେ ଲୁଇସ୍ ଓ ମ୍ୟାକ୍‌ନିସ୍ ଏହି ଗୋଷ୍ଠୀର ଅନ୍ତର୍ଗତ । ଏହି ଦଳ ଅଡ଼େନ୍ ଗୋଷ୍ଠୀ ( Auden School ) ନାମରେ ପରିଚିତ । ମାଇକେଲ ରୋବାର୍ଟସ୍ ହିଁ ପ୍ରଥମେ 'ନିଉ ସିଗ୍‌ନେଚର' (୧୯୩୨) ଓ ନିଉ କଣ୍ଟ୍ରି (New Country : ୧୯୩୩) ନାମକ ଦୁଇଟି ସଙ୍କଳନ ପ୍ରକାଶକରି ଏହି କବିଗୋଷ୍ଠୀକୁ ପରିଚିତ କରାଇଥିଲେ । ଉପରୋକ୍ତ କବି ଚାରିଜଣ ଅକ୍ସ୍‌ଫୋର୍ଡ ବିଶ୍ୱବିଦ୍ୟାଳୟ ସହିତ ସମ୍ପୃକ୍ତ ଥିଲେ ।



[ ଅଡ଼େନ ]

ଏହି ନୂତନ କବିଗୋଷ୍ଠୀ ଶୈଳୀଦିଗରୁ ଇଲିଅଟ୍‌ଙ୍କ ଅନୁଗାମୀ ହେଲେ ମଧ୍ୟ ଦୃଷ୍ଟିଭଙ୍ଗୀରେ ଥିଲେ ଭିନ୍ନ । ସମାଜ ଓ ରାଜନୀତି ସଚେତନତା ତଥା ଶ୍ରେଣୀସଂଘର୍ଷର ଚିନ୍ତା ଏମାନଙ୍କଠାରେ ଅଧିକ ପ୍ରକାଶ ପାଇବାକୁ ଲାଗିଲା । ପୂର୍ବବର୍ତ୍ତୀ କବିମାନେ ଆଧୁନିକ ଜୀବନ ସଙ୍କଟର ସମାଧାନ ସୂତ୍ର ଖୋଜିବାକୁ ଯାଇ ନିଜକୁ ଦର୍ଶନ ଓ କଳା ମଧ୍ୟରେ ହଜାଇ ଦେଇଛନ୍ତି । ଏହାଦ୍ୱାରା ସମସ୍ୟାର ସମାଧାନ ହୋଇପାରେନା । ଏଇ ନୂତନ କବିଗୋଷ୍ଠୀ ଅଧିକ ବାସ୍ତବବାଦୀ । ସମାଧାନର ପନ୍ଥା ହିସାବରେ ସେମାନେ ସମାଜବାଦୀ ଚିନ୍ତାଧାରା (Marxism)କୁ ଗ୍ରହଣ କରିଛନ୍ତି । ରାଜନୈତିକ ଆଦର୍ଶଭିତ୍ତିକ ସାହିତ୍ୟ ଅନେକ ସମୟରେ ପ୍ରଚାରଧର୍ମୀ ହୋଇପଡ଼ିଥାଏ । ଉକ୍ତ କବିଙ୍କର ଏଥିପ୍ରତି ଭ୍ରୂକ୍ଷେପ ନଥିଲା ।

# ଉପନ୍ୟାସ :

## ବିଂଶ ଶତାବ୍ଦୀ ଉପନ୍ୟାସ ଯୁଗ

କବିତା ଓ ନାଟକ ଉପରେ ଏହାର ପ୍ରାଧାନ୍ୟ ସୁପ୍ରତିଷ୍ଠିତ । ନାନାପ୍ରକାର ପରୀକ୍ଷା-ନିରୀକ୍ଷା ଏଥିରେ ଲାଗିରହିଛି । କଳାର ଏକ ସ୍ୱତନ୍ତ୍ର ବିଭାଗ ଭାବରେ ଏହା ଗୃହୀତ । ଊନବିଂଶ ଶତାବ୍ଦୀର ଉପନ୍ୟାସର ଅନାବଶ୍ୟକ ବାକ୍ ପଲ୍ଲବନ, ବସ୍ତୁ-ବିନ୍ୟାସରେ ଶିଥିଳତା, ଅପ୍ରାସଙ୍ଗିକ ବିଷୟର ଉପସ୍ଥାପନା ଓ ନୀତିଶିକ୍ଷା ପ୍ରଦାନ ପ୍ରୟାସ ଆଉ ସ୍ପୃହଣୀୟ ନୁହେଁ । ଉପସ୍ଥାପନା ରୀତି ପ୍ରତ୍ୟକ୍ଷ ନ ହୋଇ ପରୋକ୍ଷ ହୋଇଛି । ଚରିତ୍ରଚିତ୍ରଣରେ ଲେଖକ ବାହ୍ୟ କାର୍ଯ୍ୟକଳାପ ଅପେକ୍ଷା ଅନ୍ତର୍ଲୋକ ଉପରେ ଅଧିକ ଧ୍ୟାନ ଦେଇଛି । ଉପନ୍ୟାସ ହୋଇଛି ଏକ ସଚେତନ, ଆୟାସସାଧ୍ୟ କଳା । ଏହା ଅପରିବର୍ଦ୍ଧିତ ଅରମା ଜଙ୍ଗଲ ନୁହେଁ; ବରଂ ସଯତ୍ନ ଲାଳିତ ଉପବନ ।

ଉପନ୍ୟାସ କେବଳ ଅବସରବିନୋଦନର ସାମଗ୍ରୀ ହୋଇ ନାହିଁ; ଏହାର ଉଦ୍ଦେଶ୍ୟ ବହୁବିଧ । ହାର୍ଡ଼ି ଓ କନ୍‌ରାଡ଼ଙ୍କ ଉପନ୍ୟାସରେ ଜୀବନକୁ ଅନୁଶୀଳନ କରିବାର ପ୍ରୟାସ ଦେଖାଯାଏ; ଲେଖକଙ୍କ ଦୃଷ୍ଟିଭଙ୍ଗୀ ଏଠାରେ ଗୁରୁତ୍ୱପୂର୍ଣ୍ଣ । ଅନ୍ୟପକ୍ଷରେ ଏଚ. ଜି. ଓ୍ୱେଲ୍‌ସ୍, ଗାଲ୍‌ସ୍‌ଓ୍ୱାର୍ଦ୍ଦିଙ୍କ ଭଳି ଲେଖକ ଧର୍ମ, ସମାଜ ଓ ପାରିବାରିକ ଜୀବନ ସମ୍ବନ୍ଧୀୟ ନିଜସ୍ୱ ନୂତନ ଚିନ୍ତାଧାରାର ପ୍ରଚାରପାଇଁ ଉପନ୍ୟାସକୁ ମାଧ୍ୟମ କରିଛନ୍ତି ।

ଜର୍ଜ ମୁର୍ ଓ ଗିସିଙ୍ଗ୍‌ଙ୍କ ପରି ଲେଖକ ଉପନ୍ୟାସକୁ ଏକ କଳା ଭାବିରେ ଗ୍ରହଣ କରିଛନ୍ତି । ଜୀବନକୁ ବିଶ୍ଳେଷଣ ବା ଅନୁଶୀଳନ କରିବାର ପ୍ରୟାସ ଏମାନଙ୍କର ନାହିଁ । ନୀତି-ଶିକ୍ଷା ବା ଆଦର୍ଶ ପ୍ରଚାର ମଧ୍ୟ ଏମାନଙ୍କର ଲକ୍ଷ୍ୟ ନୁହେଁ; ଦୈନନ୍ଦିନ ଜୀବନର ବାସ୍ତବ ଚିତ୍ର ଏମାନେ ଆଙ୍କିଯାଇଛନ୍ତି । ଫ୍ଲବାର୍ଟ, ଜୋଲା, ଡଷ୍ଟ ଭସ୍କି, ଟଲ୍‌ଷ୍ଟୟ ପରି ଫରାସୀ ଓ ରୁଷୀୟ କଳାକାରଙ୍କୁ ଏମାନେ ଅନୁସରଣ କରିଛନ୍ତି ।

ଗୋଟିଏ ଗୋଟିଏ ଅଞ୍ଚଳର ସମାଜ, ଜୀବନ ଓ ପ୍ରକୃତିକୁ କେନ୍ଦ୍ର କରି ମଧ୍ୟ ଉପନ୍ୟାସ ରଚନାର ପ୍ରୟାସ ହୋଇଛି । ଏଗୁଡ଼ିକୁ ଆଞ୍ଚଳିକ ଉପନ୍ୟାସ କୁହାଯାଏ । ହାର୍ଡ଼ି ଓ ଆର୍ନଲ୍‌ଡ୍ ବେନେଟ୍ ଏ କ୍ଷେତ୍ରରେ ଅସାମାନ୍ୟ ସାଫଲ୍ୟର ଅଧିକାରୀ । ଉପରୋକ୍ତ ଔପନ୍ୟାସିକମାନେ ସପ୍ତମ ଏଡ଼୍‌ଓ୍ୱାର୍ଡ଼ଙ୍କ ସମୟର ବିଶିଷ୍ଟ ଲେଖକ । ଏମାନଙ୍କ ପରେ ନୂତନ ଦୃଷ୍ଟିଭଙ୍ଗୀ ନେଇ ଦେଖାଦେଇଥିଲେ ଜର୍ଜିଆନ ଔପନ୍ୟାସିକମାନେ । ଏମାନଙ୍କୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଜର୍ଜିଆନ ଶାସନକାଳର ଆଦ୍ୟ ଭାଗରେ ପ୍ରତିଷ୍ଠିତ ହୋଇଥିବା ଔପନ୍ୟାସିକ; ଯଥା—ଡି. ଏଚ. ଲରେନ୍‌ସ, ଆଲଡ଼ସ୍ ହାକ୍‌ସ୍‌ଲି, ସମରସେଟ୍ ମମ୍ ଓ ଜେମ୍‌ସ୍ ଜୟେସ ଆଦିଙ୍କ ଲେଖାରେ ଅତ୍ୟଧିକ ଯୌନପ୍ରବଣତା ଦେଖାଯାଏ । ଲରେନ୍‌ସଙ୍କ 'ଲେଡ଼ି ଚ୍ୟାଟାର୍ଲିସ୍ ଲଭର୍' ଓ ହାକ୍‌ସ୍‌ଲିଙ୍କ 'ପଏଣ୍ଟ କାଉଣ୍ଟର

ପଏଣ୍ଟ' ଏହାର ବିଶିଷ୍ଟ ଉଦାହରଣ । ଜର୍ଜିଆନ ଶାସନକାଳର ଶେଷ ଭାଗରେ ଉପନ୍ୟାସର ଅଭିମୁଖ୍ୟ ପୁଣି ବଦଳିଛି । ମନସ୍ତତ୍ତ୍ୱ ତଥା ଚେତନା ପ୍ରବାହ (Stream of consciousness) ଔପନ୍ୟାସିକର ଧ୍ୟେୟ ହୋଇଛି । ଡରୋଥି ରିଚାର୍ଡସନ୍, ଜେମସ୍ ଜଏସ୍, ଭର୍ଜିନିଆ ଉଲ୍‌ଫ ଆଦି ଏହି ଧାରାର ବିଶିଷ୍ଟ ଲେଖକ । ଏମାନେ ଅବଚେତନ ମନର ଉଦ୍‌ଘାଟନ ପାଇଁ ସାଧାରଣତଃ ଅଭିବ୍ୟକ୍ତିବାଦୀ (Expressionist) ପଦ୍ଧତି ଗ୍ରହଣ କରିଥାନ୍ତି । କେତେ ଜଣ ବିଶିଷ୍ଟ ଔପନ୍ୟାସିକଙ୍କ ବ୍ୟକ୍ତିଗତ ଅବଦାନ ସମ୍ପର୍କିତ ଆଲୋଚନା ଏ ଯୁଗରେ ଉପନ୍ୟାସର ବିକାଶ ଧାରା ନିର୍ଦ୍ଦେଶ କରିବାରେ ସହାୟକ ହେବ ।

## ହାର୍ଡି (Thomas Hardy : ୧୮୪୦-୧୯୨୮)

କବିଭାବରେ ଲେଖକ ଜୀବନ ଆରମ୍ଭ କରନ୍ତି, ଶେଷ ଜୀବନ ମଧ୍ୟ କବିତା ଲେଖାରେ ବିତେ । କବି ଖ୍ୟାତି ହିଁ ତାଙ୍କ ଜୀବନର ଚରମ ଲକ୍ଷ୍ୟ ଥିଲା; କିନ୍ତୁ ବିଧାତାର ବିଧାନ ଅନ୍ୟ ପ୍ରକାରର । ସ୍ତ୍ରୀ, 'ଏମା'ଙ୍କ ଅନୁରୋଧରେ ସେ ଉପନ୍ୟାସ ଲେଖନ୍ତି । ଔପନ୍ୟାସିକ ସାଫଲ୍ୟ ହିଁ ଇଂରେଜୀ ସାହିତ୍ୟରେ ତାଙ୍କୁ ଅସାମାନ୍ୟ ଗୌରବର ଅଧିକାରୀ କରିଛି । ହାର୍ଡିଙ୍କ ସମସ୍ତ ଉପନ୍ୟାସ ଭିକ୍ଟୋରୀୟ ଯୁଗମଧ୍ୟରେ ଲିଖିତ ହୋଇଥିଲେ ମଧ୍ୟ ବାସ୍ତବଧର୍ମୀ ବିୟୋଗାନ୍ତକ ଉପନ୍ୟାସ ଲେଖି ସେ ଆଧୁନିକ ଉପନ୍ୟାସକାର ଭାବରେ ଗଣ୍ୟ ହୋଇଥାନ୍ତି ।

'ଅଣ୍ଡର ଦ ଗ୍ରିନ୍ ଉଡ୍ ଟ୍ରି' (୧୮୭୨) ଲେଖକଙ୍କ ପ୍ରଥମ ସଫଳ ଉପନ୍ୟାସ । ଏହା ଗ୍ରାମ୍ୟ-ଜୀବନଭିତ୍ତିକ । ଡିକ୍ ଓ ଫ୍ୟାନ୍‌ସିଙ୍କ ପ୍ରେମ ଓ ବିବାହ ଏହାର କଥାବସ୍ତୁ । ହାର୍ଡିଙ୍କ ଶ୍ରେଷ୍ଠ କୃତି ମଧ୍ୟରେ 'ଫାର୍ ଫ୍ରମ୍ ଦ ମ୍ୟାଡିଂ କ୍ରାଉଡ୍' ଅନ୍ୟତମ । ଏହା ପ୍ରଥମକରି ଲେଖକଙ୍କୁ ଉଚ୍ଚକୋଟୀର ଔପନ୍ୟାସିକ ଭାବରେ ପରିଚିତ କରାଇଥିଲା । ଲେଖକଙ୍କ ପ୍ରିୟ ବାସଭୂମି ଓ୍ୱେସେକ୍‌ସ (ଡୋର୍ ସେଟ୍ ଓ ତାର ନିକଟବର୍ତ୍ତୀ ଅଞ୍ଚଳ) ଏହାର ପଟ୍ଟଭୂମି ।

ନାୟିକା ବାଥ୍‌ସେବା ପ୍ରତି ତାର କର୍ମଚାରୀ ଗେବ୍ରିଏଲ୍ ଓକ୍ ଅତ୍ୟନ୍ତ ଅନୁରକ୍ତ । ବାଥ୍‌ସେବା କିନ୍ତୁ ସାର୍ଜେଣ୍ଟ ଟ୍ରୟ ନାମକ ସୈନ୍ୟବାହିନୀର ଜନୈକ ଅଫିସରଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ବିବାହ କରିଛି । ବିବାହ ପରେ ପରେ ଟ୍ରୟଙ୍କ ନୃଶଂସ ପ୍ରକୃତି ପ୍ରକାଶ ପାଏ । ବାଥ୍‌ସେବା ଅତ୍ୟାଚାରରେ ଅତିଷ୍ଠ ହୋଇଉଠେ । ଏତିକବେଳେ ଆବିର୍ଭୂତ ହୁଏ ବାଥ୍‌ସେବାର ଅନ୍ୟ ଜଣେ ପ୍ରଣୟପ୍ରାର୍ଥୀ ବୋଲଉଡ୍ ଉଡ । ବୋଲଉଡ୍ ଟ୍ରୟକୁ ହତ୍ୟାକରେ । ନିଜେ କିନ୍ତୁ ପାଗଳ ପାଲଟି ଯାଏ । ଅବଶେଷରେ ଓକ୍ ଓ ବାଥ୍‌ସେବା ମିଳିତ ହୁଅନ୍ତି । ଏଥିରେ ଟ୍ରାଜିକମେଡ଼ିର ଆବେଦନ ସ୍ପଷ୍ଟ ।

ଏହିପରି ଭାବରେ ନିଃସ୍ୱାର୍ଥପର, ଏକନିଷ୍ଠ ପ୍ରେମ ଓ ଦୈହିକସର୍ବସ୍ୱ ଯୌନ ଲାଳସାର ପ୍ରାର୍ଥକ୍ୟକୁ ନେଇ ଉପନ୍ୟାସଟିର କଥାବସ୍ତୁ ପରିକଳ୍ପିତ । ହାର୍ଡି ତାଙ୍କର ବିଭିନ୍ନ

ଉପନ୍ୟାସରେ ସହରର ସଭ୍ୟତାର ଅନୁପ୍ରବେଶକୁ ଗ୍ରାମ୍ୟ ଜୀବନର ଦୁର୍ଦ୍ଦଶାର କାରଣ ଭାବରେ ଚିତ୍ରିତ କରିଛନ୍ତି । ବହୁସଂଗତ ଚରିତ୍ର ସର୍ଜନା ହିଁ ଏହି ଉଦ୍ଦେଶ୍ୟ ସାଧନକରେ ।

'ଦି ରିଟର୍ଣ୍ଣ ଅଫ୍ ଦି ନ୍ୟାଟିଭ୍' (The Return of the Native : ୧୮୭୮)ରେ ମଧ୍ୟ ଆନ୍ତରିକ ଓ ସ୍ୱାର୍ଥସର୍ବସ୍ୱ— ଏଇ ଦ୍ୱିବିଧ ପ୍ରେମ ଚିତ୍ରିତ ହୋଇଥିଲେ ମଧ୍ୟ ଏହାର ପ୍ରଧାନ ଆକର୍ଷଣ ଭାଗ୍ୟବାଦ ଓ ପ୍ରକୃତି ପ୍ରତି ଲେଖକଙ୍କ ଦୃଷ୍ଟିଭଙ୍ଗୀ । ଭାଗ୍ୟ ଏଠାରେ ସର୍ବଶକ୍ତିମାନ, ମଣିଷ ତା ହାତରେ କ୍ରୀଡ଼ନକ । କାହାଣୀର ପଛଭୂମି ଭାବରେ ଗୃହୀତ ହୋଇଥିବା 'ଏଡ୍‌ଗନ୍ ହିଥ୍' ବସ୍ତୁତଃ ଉପନ୍ୟାସର ନାୟକ । ଉପନ୍ୟାସର ଘଟଣା ପ୍ରବାହ ଓ ଚରିତ୍ର ଏହାଦ୍ୱାରା ନିୟନ୍ତ୍ରିତ । ନିଷ୍ଠାପର ପ୍ରେମିକ ଡିଗୋରଭ୍ୟାନ୍ ନାନା ଜଟିଳତା ଭିତରେ ତାର ପ୍ରେୟସୀ ଟୋମାସିନ୍ ୟୁବ୍ ରାଇଟ୍‌କୁ ପାଇବା ଏହାର ମୂଳ କଥାବସ୍ତୁ । ଟୋମାସିନ୍ ଡିଗୋରଭ୍ୟାନ୍‌କୁ ଭୁଲି ଡ୍ୟାମନ୍ ଓ୍ୱାଇଲ୍ଡ଼ଭ୍‌କୁ ବିବାହ କରିଛି । ଓ୍ୱାଇଲ୍ଡ଼ଭ୍‌ର ଅନ୍ୟ ଏକ ପ୍ରେମିକା ୟୁଷ୍ଟାସିଆ । ଟୋମାସିନ୍‌ର ଭାଇ ବ୍ୟବସାୟୀ ପୁରୁଷ କ୍ଲିମ୍ ପ୍ୟାରିସ୍‌ରୁ ଫେରି ୟୁଷ୍ଟାସିଆକୁ ବିବାହ କରିଛି । ଏ ଦୁହିଁଙ୍କର ଦାମ୍ପତ୍ୟଜୀବନରେ କିନ୍ତୁ ଉଠିଛି ଝଡ଼ । ୟୁଷ୍ଟାସିଆ କ୍ଲିମ୍‌କୁ ପରିତ୍ୟାଗକରି ତାର ମୂଳ ପ୍ରେମିକ ଓ୍ୱାଇଲ୍ଡଭଙ୍କ ସହ ପଳାୟନ କରିଛି । ଉଭୟେ ଦୈବୀ ଦୁର୍ବିପାକରେ ପ୍ରାଣ ହରାଇଛନ୍ତି । ୟୁବ୍‌ରାଇଟ୍ ଅବଶେଷରେ ଫେରିଆସିଛି ତାର ନିଷ୍ଠାପର ପ୍ରେମିକ ଡଗୋର ଭ୍ୟାନ ପାଖକୁ । କ୍ଲିମ୍ ସାଜିଛି ଧର୍ମପ୍ରଚାରକ ।

'ଦି ମେୟର୍ ଅଫ୍ କ୍ୟାଷ୍ଟାର ବ୍ରିଜ' (୧୮୮୬)ରେ ସ୍ତ୍ରୀ ନିଲାମରୁ କଥାବସ୍ତୁ ଆରମ୍ଭ । ମାଇକେଲ ହେଞ୍ଚାଡ଼୍ ଅତିରିକ୍ତ ମଦ୍ୟପାନ ହେତୁ ମାତାଲ ହୋଇ ଗୋଟିଏ ମେଳାରେ ନିଜ ସ୍ତ୍ରୀ ଓ କନ୍ୟାକୁ ନାମ ମାତ୍ର ମୂଲ୍ୟରେ ବିକ୍ରି କରିଦିଏ । ପ୍ରକୃତିସ୍ଥ ହେବାପରେ ସେ ନିଜର ଭ୍ରମ ବୁଝିପାରେ । ମଦ୍ୟପାନ ନ କରିବାକୁ କଠୋର ପ୍ରତିଜ୍ଞା କରିବସେ । ନିଜର ଅଧ୍ୟବସାୟ ବଳରେ ଅବଶେଷରେ ସେ ହୁଏ କାଷ୍ଟାର ବ୍ରିଜ୍‌ର ମେୟର । ଅଠର ବର୍ଷର ବିଚ୍ଛେଦ ପରେ ସ୍ତ୍ରୀ ଓ କନ୍ୟା ଫେରି ଆସନ୍ତି; କିନ୍ତୁ ନିୟତିର ଖେଳ ଶେଷ ହୁଏନାହିଁ । ସ୍ତ୍ରୀ ମୃତ୍ୟୁ ମୁଖରେ ପଡ଼େ । କନ୍ୟାକୁ ମେଳାରୁ କିଣି ନେଇ ଥିବା ବ୍ୟକ୍ତି ଦାବୀ କରେ । ବ୍ୟବସାୟ ବିପର୍ଯ୍ୟସ୍ତ ହୁଏ । ହେଞ୍ଚାଡ଼ ଅବଶେଷରେ ମୃତ୍ୟୁବରଣ କରେ ।

ଉପନ୍ୟାସଟିରେ ନିୟତିର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ହେଞ୍ଚାଡ଼ର ଚରିତ୍ର-ଚିତ୍ରଣରେ ଲେଖକ ଅସାମାନ୍ୟ ପାରଦର୍ଶିତା ଦେଖାଇଛନ୍ତି । ପଛଭୂମି ଭାବରେ ଗ୍ରହଣ କରିଥିବା 'କ୍ୟାଷ୍ଟାର ବ୍ରିଜ' ଅଞ୍ଚଳ ମଧ୍ୟ ନିପୁଣତାର ସହିତ ଚିତ୍ରିତ; ଏଥିରୁ ତତ୍କାଳୀନ ଇଂଲଣ୍ଡର କୃଷକଜୀବନ ଓ ତାର ପରିବେଶ ସମ୍ବନ୍ଧରେ ସ୍ପଷ୍ଟ ଧାରଣା କରିହୁଏ ।

ଲେଖକଙ୍କ ଅନ୍ୟାନ୍ୟ ବିଶିଷ୍ଟ ଉପନ୍ୟାସ ମଧ୍ୟରେ 'ଦି ଉଡ୍ ଲ୍ୟାଣ୍ଡାର୍ସ୍', 'ଟେସ୍' ଓ 'ଜୁଡ୍ ଦି ଅବସ୍କ୍ୟୁରେ' ଉଲ୍ଲେଖଯୋଗ୍ୟ ।

କଥାବସ୍ତୁ ପରିକଳ୍ପନା ଦୃଷ୍ଟିରୁ ହାର୍ଡିଙ୍କ ବହୁ ଉପନ୍ୟାସ ଗୋଟିଏ ଗ୍ରାଞ୍ଚରେ ଗଢ଼ା ହେଲା ଭଳି ମନେହୁଏ । ଲେଖକଙ୍କ ଜୀବନଦର୍ଶନଦ୍ୱାରା ଏଗୁଡ଼ିକ ବିଶେଷ ଭାବରେ ପ୍ରଭାବିତ । ପଲ୍ଲୀଜୀବନ, ପ୍ରକୃତି ଓ ପ୍ରେମ ସହିତ ଦୁରନ୍ତ ଭାଗ୍ୟର ଖେଳ ସମନ୍ୱିତ କରି ସେ ଗୋଟିକ ପରେ ଗୋଟିଏ ଉପନ୍ୟାସ ଲେଖିଯାଇଛନ୍ତି । ଅମିତ ଶକ୍ତିସମ୍ପନ୍ନ ଭାଗ୍ୟ ଆଗରେ ମଣିଷ ଅସହାୟ, ସାମାନ୍ୟ କ୍ରୀଡ଼ନକ ପରି ତାଙ୍କୁ ବୋଧହୋଇଛି । ଉପନ୍ୟାସର କଥାବସ୍ତୁ ମୁଖ୍ୟତଃ ଏହି ଭାଗ୍ୟଦ୍ୱାରା ହିଁ ନିୟନ୍ତ୍ରିତ । ନାନା ଆକସ୍ମିକ ଘଟଣା ଭିତରେ ସର୍ବନିୟନ୍ତ୍ରା ଏହି ଭାଗ୍ୟର ସ୍ୱରୂପ ହିଁ ଉଦ୍‌ଘାଟିତ । ବାହ୍ୟ ପ୍ରକୃତି ମଧ୍ୟ ତାଙ୍କ ଆଖିରେ କ୍ରୂର; ବାରମ୍ବାର ସେ ମଣିଷ ଉପରେ ଦାଉ ସାଧୁଛି ।

ପଲ୍ଲୀ ଅଞ୍ଚଳ, ବିଶେଷତଃ ୱେସେକ୍‌ସ୍ ଅଞ୍ଚଳକୁ ହିଁ ସେ ତାଙ୍କ ଉପନ୍ୟାସରେ ପଟ୍ଟଭୂମି ଭାବରେ ଗ୍ରହଣ କରିଛନ୍ତି । ସମୟ ସମୟରେ ଏହି ପଟ୍ଟଭୂମି ଉପନ୍ୟାସର ଚରିତ୍ର ପର୍ଯ୍ୟାୟକୁ ଉନ୍ନୀତ ହୋଇଛି । କାଟିକୁଟି ଖାଉଥିବା ସାଧାରଣ ମଣିଷର ଜୀବନ ତାଙ୍କର ପ୍ରଧାନ ଆକର୍ଷଣ । ଏହି ସମାଜର ବିବିଧ ସମସ୍ୟା ମଧ୍ୟରୁ ପ୍ରେମ, ବିବାହ ତଥା ତତ୍‌ସମ୍ବନ୍ଧୀୟ ଜଟିଳତା ତାଙ୍କ ଲେଖନୀର ମୁଖ୍ୟ ଉପଜୀବ୍ୟ । କଥାବସ୍ତୁର ଜଟିଳତା ସତ୍ତ୍ୱେ ତାଙ୍କ ଉପନ୍ୟାସରେ ବିଷୟଗତ ଐକ୍ୟ ବ୍ୟାହତ ହୋଇ ନ ଥାଏ ।

ମଣିଷର ସ୍ୱତନ୍ତ୍ର ବ୍ୟକ୍ତିସତ୍ତା ହାର୍ଡିଙ୍କ ନିକଟରେ ଗୌଣ । ତାଙ୍କ ଦୃଷ୍ଟିରେ ମନୁଷ୍ୟ ମାନେ ହିଁ ଭାଗ୍ୟର କ୍ରୀଡ଼ନକ । ଏଣୁ ତାଙ୍କ ଔପନ୍ୟାସିକ ଚରିତ୍ର ବ୍ୟକ୍ତି ବିଶେଷ ଭାବରେ ଚର୍ଚ୍ଚିତ ହେବାର ଆବଶ୍ୟକତା ନାହିଁ । ଅଳ୍ପ କେତୋଟିକୁ ବାଦଦେଲେ ତାଙ୍କର ଚରିତ୍ର ସମୂହ ସରଳ (flat) । ଏମାନେ ସାଧାରଣତଃ ପଲ୍ଲୀର କୃଷିଜୀବୀ ସମାଜରୁ ଆସି ଥାଆନ୍ତି । ବୌଦ୍ଧିକତା ଅପେକ୍ଷା ଆବେଗର ଆବେଦନ ଏମାନଙ୍କଠାରେ ଅଧିକ । ସହରାଞ୍ଚଳରୁ ଗୃହୀତ ଚରିତ୍ର ସାଧାରଣତଃ ଜଟିଳ ପ୍ରକୃତିର । ସାଧୁ ଓ ସରଳ ପ୍ରକୃତିର ଚରିତ୍ର ପ୍ରତି ଲେଖକ ସମବେଦନଶୀଳ । ସହର ସଭ୍ୟତା ଓ ପଲ୍ଲୀ ସଭ୍ୟତା ମଧ୍ୟରେ ସଂଘର୍ଷ ତାଙ୍କ ଉପନ୍ୟାସର ଅନ୍ୟ ଏକ ବୈଶିଷ୍ଟ୍ୟ । ସରଳ ଓ ଶାନ୍ତ ପଲ୍ଲୀଜୀବନ ସହରର ପ୍ରଭାବରେ କିପରି ବିପର୍ଯ୍ୟସ୍ତ ହୋଇପଡ଼ୁଛି, ତାହା ହିଁ ସେ ଅଧିକାଂଶ ଉପନ୍ୟାସରେ ଦର୍ଶାଇଛନ୍ତି । ସହରରୁ ଆସି ଗ୍ରାମ୍ୟଜୀବନ ସହ ଜଡ଼ିତ ହୋଇପଡ଼ୁଥିବା ଚରିତ୍ର ହିଁ କଥାବସ୍ତୁର ଜଟିଳତାର କାରଣ ହୋଇଥାଏ ।

ଶିଳ୍ପ ସଭ୍ୟତାର ବିକାଶ ସଙ୍ଗେସଙ୍ଗେ ପଲ୍ଲୀଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ୁଥିବାର ଚିତ୍ର ଲେଖକ ନିଜେ ପ୍ରତ୍ୟକ୍ଷ କରିଛନ୍ତି । ଏଣୁ ତାଙ୍କ ଉପନ୍ୟାସରେ ଏକ ନୈରାଶ୍ୟ ଓ କାରୁଣ୍ୟର ବାୟୁମଣ୍ଡଳ ଲକ୍ଷ୍ୟ କରାଯାଏ । ଦୁର୍ବଳ ସ୍ୱାସ୍ଥ୍ୟ ତାଙ୍କୁ ଏପରି ନୈରାଶ୍ୟବାଦୀ କରି ପକାଇଥିଲା ବୋଲି କେହି କେହି ମତ ବ୍ୟକ୍ତ କରିଥାନ୍ତି ।

ହେନେରୀ ଜେମ୍ସ୍ (Henry James : ୧୮୪୩-୧୯୧୬) :

ଆମେରିକାରେ ଜନ୍ମ; ବ୍ରିଟିଶ୍ ନାଗରିକତ୍ୱ ଗ୍ରହଣ କରନ୍ତି (ଖ୍ରୀ: ୧୮୭୮); ଉଭୟ ସଂସ୍କୃତିର ସେ ସଂଯୋଗ ସେତୁ । ଆତ୍ମିକ ଓ ଆଙ୍ଗିକ ଉଭୟ କ୍ଷେତ୍ରରେ ନୂତନ ସମ୍ଭାବନାର ଦିଗ୍‌ଦର୍ଶନ ଦେଇ ସେ ଉପନ୍ୟାସ ରଚନାକୁ ଏକ ବିଶିଷ୍ଟ କଳାର ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ଆଧୁନିକ ଉପନ୍ୟାସ କ୍ଷେତ୍ରରେ ତାଙ୍କର ପ୍ରଭାବ ଅବିସମ୍ବାଦିତ ।

ହେନେରି ଜେମ୍ସ୍‌ଙ୍କ ଉପନ୍ୟାସକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରିଯାଇପାରେ । ପ୍ରଥମ ଭାଗରେ ଚାରୋଟି ଉପନ୍ୟାସକୁ ନିଆଯାଇଥାଏ; ଯଥା— (୧) ରୋଡ୍ରେରିକ ହାଡ୍‌ସନ୍, (୨) ଦି ଆମେରିକାନ୍, (୩) ଦି ଇଉରୋପିଆନସ୍ ଓ (୪) ଦି ପୋର୍ଟ୍ରେଟ୍ ଅଫ ଏ ଲେଡ଼ି । ଏଗୁଡ଼ିକ ଖ୍ରୀ: ୧୮୭୫ରୁ ଖ୍ରୀ : ୧୮୮୧ ମଧ୍ୟରେ ରଚିତ ଆମେରିକା ଓ ଇଉରୋପର ସଭ୍ୟତା ମଧ୍ୟରେ ଥିବା ସାମ୍ୟ ତଥା ବୈଷମ୍ୟ ଏହି ସମସ୍ତ ଉପନ୍ୟାସର ଉପଜୀବ୍ୟ । ପରିଣତ ବୟସର ଲେଖା ତୁଳନାରେ ଲେଖକଙ୍କ ଏହି ଉପନ୍ୟାସଗୁଡ଼ିକ ଚିନ୍ତାଧାରା ତଥା ପ୍ରକାଶଭଙ୍ଗୀ ଦୃଷ୍ଟିରୁ ଅନେକଟା ସରଳ ଓ ସୁଖପାଠ୍ୟ ।

ଦ୍ୱିତୀୟ ବିଭାଗର ରଚନା ମଧ୍ୟରେ (୧) 'ଦି ଟ୍ରାଜିକ ମ୍ୟୁଜ୍' (୨) 'ଦି ସ୍ପଏଲ୍‌ସ୍ ଅଫ୍ ପଏଣ୍ଟନ୍' ଓ (୩) 'ଦି ଅକ୍‌ୱାର୍ଡ଼ ଏଜ୍' ଉଲ୍ଲେଖଯୋଗ୍ୟ । ଖ୍ରୀ: ୧୮୯୦ ରୁ ଖ୍ରୀ: ୧୮୯୯ ମଧ୍ୟରେ ଏଇ ଉପନ୍ୟାସ ତିନୋଟି ଲିଖିତ ହୋଇଛି । ଏଗୁଡ଼ିକ ଇଂରେଜୀ ସମାଜ ଓ ଜୀବନ ଉପରେ ଆଧାରିତ ।

ତୃତୀୟ ଭାଗରେ ଲେଖକଙ୍କର ତିନୋଟି ବିଶିଷ୍ଟ କୃତି ସ୍ଥାନ ପାଏ । (୧) 'ଦି ଉଇଙ୍ଗ୍‌ସ୍ ଅଫ୍ ଦି ଡାଭ୍' (୨) 'ଦି ଆମ୍ବାସଡ଼ର୍' ଓ (୩) 'ଦି ଗୋଲ୍‌ଡେନ୍ ବାଉଲ' ।

ଏଗୁଡ଼ିକ ଖ୍ରୀ: ୧୯୦୨ ରୁ ଖ୍ରୀ: ୧୯୦୪ ମଧ୍ୟରେ ରଚିତ । ଏଗୁଡ଼ିକର ଲେଖକ ପୁଣି ନିଜର ପ୍ରିୟ ବିଷୟବସ୍ତୁ ଆମେରିକା ଓ ଇଉରୋପର ସଭ୍ୟତା ଅନୁଶୀଳନକୁ ଗ୍ରହଣ କରିଛନ୍ତି । ଏଇ ତିନୋଟି ଉପନ୍ୟାସରେ ତାଙ୍କର ଶୈଳିକ ବିବର୍ତ୍ତନ ଚରମ ପର୍ଯ୍ୟାୟରେ ପହଞ୍ଚିଛି ।

ହେନ୍‌ରି ଜେମସଙ୍କ ସମାଲୋଚନା ଗ୍ରନ୍ଥ 'ଦି ଆର୍ଟ ଅଫ୍ ଫିକ୍‌ସନ' (୧୮୮୪)ରୁ ତାଙ୍କର ଉପନ୍ୟାସ ତତ୍ତ୍ୱ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିହୁଏ । ତାଙ୍କ ମତରେ ଉପନ୍ୟାସ ରଚନା ଏକ କଳାବିଶେଷ । ପ୍ରଚାର ପାଇଁ ବା ନୀତି ଶିକ୍ଷା ପାଇଁ ଉଦ୍ଦିଷ୍ଟ ହେଲେ ଏହାର କଳାଗତମାନ ହ୍ରାସ ପାଏ । ବାସ୍ତବ ଜୀବନ ଚିତ୍ର ଏଥିରେ ନିଷ୍ଠାର ସହିତ ପରିବେଷିତ ହେବା ଉଚିତ । ପ୍ରକାଶଭଙ୍ଗୀ ଦୃଷ୍ଟିରୁ ସେ 'ଇମ୍ପ୍ରେସନିଷ୍ଟ' ଚିତ୍ର ଶିଳ୍ପୀଙ୍କଦ୍ୱାରା ପ୍ରଭାବିତ । ଏକ ନିର୍ଦ୍ଦିଷ୍ଟ ବସ୍ତୁ ମନ ଉପରେ ଯେଉଁ ପ୍ରଭାବ ସୃଷ୍ଟି କରିଥାଏ, ଇମ୍ପ୍ରେସନିଷ୍ଟମାନେ ତାହାକୁ ହିଁ ଚିତ୍ରରେ ପ୍ରକାଶ କରିଥାନ୍ତି । ଏ ପ୍ରକ୍ରିୟାରେ ଆବେଗ ଓ ଉତ୍ତେଜନାର ସ୍ଥାନ ନାହିଁ ।

ସେ ଭିକ୍ଟୋରୀୟ ଉପନ୍ୟାସର ଜୀବନୀ ପ୍ରଖ୍ୟାପନ ରୀତି (biographical technique) ପରିହାର କରିଛନ୍ତି । ଗୋଟିଏ ମାତ୍ର ଚରିତ୍ରର ଚେତନା ପ୍ରବାହ ମଧ୍ୟରେ ସମଗ୍ର କଥାବସ୍ତୁର ଉପସ୍ଥାପନା କରିବାର ଉଦ୍ୟମ କରିଛନ୍ତି । ଚରିତ୍ରଟି ଅନେକ ସମୟରେ ଘଟଣାପ୍ରବାହଠାରୁ କିଞ୍ଚିତ ଦୂରରେ ରହି ସମୀକ୍ଷକର ଭୂମିକା ଗ୍ରହଣକରେ । 'ଦି ଆମ୍ବାସଡ଼ରସ୍' ଉପନ୍ୟାସଟି ଏହାର ଏକ ଉଦାହରଣ । ଜେମସ୍ ଜଏସଙ୍କ ପରି ପରବର୍ତ୍ତୀ ଔପନ୍ୟାସିକ ଏହି ରଚନା ରୀତି ଗ୍ରହଣ କରିଛନ୍ତି । ହେନ୍‌ରି ଜେମ୍‌ସ୍ ମଣିଷକୁ ସାମାଜିକ ପ୍ରାଣୀଭାବରେ ହିଁ ଚିତ୍ରିତ କରିଛନ୍ତି । ମଣିଷର ଈଶ୍ୱରଙ୍କ ସହ ସମ୍ପର୍କ ତାଙ୍କର ଧ୍ୟେୟ ନୁହେଁ । ଔପନ୍ୟାସିକ ଚରିତ୍ରଗୁଡ଼ିକ ସ୍ୱୟଂ ଲେଖକଙ୍କ ପରି ଶିକ୍ଷିତ ଓ ବୁଦ୍ଧିମାନ । ନିରକ୍ଷର, ଦରିଦ୍ରଙ୍କ ପ୍ରତି ସେ ଉଦାସୀନ । ଚରିତ୍ରଚିତ୍ରଣବେଳେ ସେ ଚରିତ୍ରର ଗଠନବନ୍ଧ, ହାବଭାବରୁ ତାର ଅନ୍ତର୍ଲୋକ ଉପରେ ଆଲୋକପାତ କରନ୍ତି । ତାଙ୍କ ଗତି ବହିର୍ଲୋକରୁ ଅନ୍ତର୍ଲୋକକୁ ।

ହେନ୍‌ରି ଜେମ୍‌ସ୍ ଜଣେ ସଚେତନ ଶିଳ୍ପୀ । ଉପଯୁକ୍ତ ଶବ୍ଦ ଚୟନ ଓ ଚିତ୍ରକଳ୍ପ ପ୍ରୟୋଗରେ ସେ ସମସ୍ତ ଶକ୍ତି ନିୟୋଜିତ କରିଥାନ୍ତି ।

ଯୋଶେଫ୍ କନ୍‌ରାଡ୍ (Joseph Conrad : ୧୮୫୭-୧୯୨୪)ଙ୍କ ଜନ୍ମ ପୋଲଣ୍ଡରେ । ସାମୁଦ୍ରିକ ଜୀବନ ପ୍ରତି ତାଙ୍କର ବିଶେଷ ଆଗ୍ରହ । ପ୍ରାୟ କୋଡ଼ିଏ ବର୍ଷ ଧରି ସେ ଏସିଆ ଓ ଆମେରିକା ସମେତ ପୃଥିବୀର ବିଭିନ୍ନ ଅଞ୍ଚଳକୁ ଜଳଯାତ୍ରା କରିଥିଲେ । ଖ୍ରୀ: ୧୮୯୫ରୁ ସେ ବ୍ରିଟିଶ ନାଗରିକତ୍ୱ ଗ୍ରହଣ କରିଥିଲେ । କନ୍‌ରାଡ୍ ଆଧୁନିକ ଯୁଗର ଜଣେ ବିଶିଷ୍ଟ ରୋମାଣ୍ଟିକ୍ ଲେଖକ । ରୋମାଞ୍ଚକର ସାମୁଦ୍ରିକ ଅଭିଜ୍ଞତା ଓ ପୃଥିବୀର ବିଭିନ୍ନ ଅଞ୍ଚଳର ଭୌଗୋଳିକ ବୈଚିତ୍ର୍ୟ ତାଙ୍କ ଉପନ୍ୟାସର ମୁଖ୍ୟ ଉପାଦାନ । ସାହସ, ଆତ୍ମବିଶ୍ୱାସ ଓ ବିଶ୍ୱସ୍ତତା ପରି ସଦ୍‌ଗୁଣାବଳୀ ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କର ପ୍ରଥମ ପର୍ଯ୍ୟାୟର କେତୋଟି ଉପନ୍ୟାସ, ଯଥା—(୧) ଅଲମେୟାର୍ସ ଫଲି (୧୮୯୫), (୨) ଦି ନିଗାର୍ ଅଫ୍ ଦି ନାର୍ସିସାସ୍ (୧୮୯୮) (୩) ୟୁଥ୍ (୧୯୦୨) ଓ (୪) ଲର୍ଡ ଜିମ୍ (୧୯୦୦) ତାଙ୍କୁ ଅଶେଷ ଲୋକପ୍ରିୟତା ଆଣିଦେଇଥିଲା ।



ଏଗୁଡ଼ିକର ପ୍ରକାଶଭଙ୍ଗୀ ସରଳ । କ୍ରମେ ସେ ଉପନ୍ୟାସର ଅଧିକ କଳାତ୍ମକ ଉତ୍କର୍ଷ ସାଧନରେ ବ୍ରତୀ ହୋଇଛନ୍ତି; ପ୍ରକାଶଭଙ୍ଗୀ ହୋଇଉଠିଛି ଜଟିଳ । ଲେଖକ ଆଧୁନିକ ବିଶିଷ୍ଟ ଔପନ୍ୟାସିକର ଗୌରବ ଲଭିକରିଛନ୍ତି । ଏହି ପର୍ଯ୍ୟାୟର ଉପନ୍ୟାସ ମଧ୍ୟରେ ନସ୍ଟ୍ରୋମୋ

(୧୯୦୪), ଦ ସିକ୍ରେଟ୍ ଏଜେଣ୍ଟ (୧୯୦୭), ଅଣ୍ଡର୍ ଓ୍ୱେଷ୍ଟାର୍ଣ୍ଣ ଆଇଜ୍ (୧୯୧୧) ଓ ଭିକ୍ଟୋରୀ (୧୯୧୪) ଉଲ୍ଲେଖଯୋଗ୍ୟ । ଏ ପର୍ଯ୍ୟାୟରେ ଆମେ କନ୍‌ରାଡ୍‌ଙ୍କୁ ଦେଖୁ ଜଣେ ସଚେତନ ଶିଳ୍ପୀ ଭାବରେ । ଫ୍ରେଞ୍ଚର ଜେମ୍‌ସଙ୍କ ପରି ପ୍ରଭାବବାଦୀ (Impressionist) ଆଦର୍ଶକୁ ସେ ଉପନ୍ୟାସରେ ପ୍ରୟୋଗ କରିଛନ୍ତି । ଦୃଶ୍ୟମାନ ଜଗତର ଅବିକଳ ଆଲେଖ୍ୟ ଅଙ୍କନ କରିବା ପରିବର୍ତ୍ତେ ସେ ମନ ଉପରେ ପଡ଼ୁଥିବା ତାର ପ୍ରଭାବକୁ ରୂପ ଦେଇଛନ୍ତି । କଥାବସ୍ତୁର ଆଖ୍ୟାନ ନିମିତ୍ତ ସେ ପ୍ରତ୍ୟକ୍ଷ ପଦ୍ଧତି ପରିବର୍ତ୍ତେ ପରୋକ୍ଷ ପଦ୍ଧତି (oblique method) ଗ୍ରହଣ କରିଛନ୍ତି । ଅନେକ ବିଶିଷ୍ଟ ଚରିତ୍ର ମାଧ୍ୟମରେ ସେ ପରୋକ୍ଷରେ ଉପନ୍ୟାସର କାହାଣୀ ପରିବେଷଣ କରିଥାନ୍ତି । 'ଲର୍ଡ଼ ଜିମ୍' ଉପନ୍ୟାସର ମାର୍ଲୋ ଚରିତ୍ର-ଦ୍ୱାରା ଏହି ଉଦ୍ଦେଶ୍ୟ ସାଧିତ । ଚରିତ୍ର ଚିତ୍ରଣରେ ସେ ମନସ୍ତାତ୍ତ୍ୱିକ ଦିଗ ପ୍ରତି ଅତ୍ୟନ୍ତ ସଚେତନ ।

କନ୍‌ରାଡ୍‌ଙ୍କ ଗଦ୍ୟର ଛନ୍ଦ ଓ ଶବ୍ଦବିନ୍ୟାସ ତାହାକୁ କବିତା ପରି ଆବେଦନଶୀଳ କରିପାରିଛି ।

ଏଚ୍. ଜି. ଓ୍ୱେଲ୍‌ସ୍ (Herbert George Wells : ୧୮୬୬-୧୯୪୬) ବୈଜ୍ଞାନିକ ରୋମାନ୍‌ସ ରଚୟିତା, ଔପନ୍ୟାସିକ ଓ ପ୍ରାବନ୍ଧିକ ଭାବରେ ସୁପରିଚିତ । 'ଦ ଟାଇମ୍ ମେସିନ୍' (୧୮୯୫) ତାଙ୍କର ପ୍ରଥମ ପ୍ରକାଶିତ ବୈଜ୍ଞାନିକ ରୋମାନ୍‌ସ୍ । ସମୟଯନ୍ତ୍ର ସାହାଯ୍ୟରେ ଲେଖକ ସୁଦୂର ଅତୀତ ଓ ଭବିଷ୍ୟତରେ ବିଚରଣ କରିବାର ସ୍ୱପ୍ନ ଦେଖିଛନ୍ତି । ସମୟକୁ ଚତୁର୍ଥ ପରିସର (dimension) ଭାବରେ ଗ୍ରହଣ କରିଛନ୍ତି । 'ଦ ଇନ୍‌ଭିଜିବ୍‌ଲ୍ ମ୍ୟାନ' (୧୮୯୭)ରେ ଔଷଧ ସାହାଯ୍ୟରେ ମନୁଷ୍ୟ ଅଦୃଶ୍ୟ ହୋଇପାରିବାର ପରିକଳ୍ପନା ନିହିତ । କାହାଣୀର ଅଦୃଶ୍ୟ ମାନବ କିନ୍ତୁ କୁକୁରର ଆଘ୍ରାଣ ଶକ୍ତିକୁ ଫାଙ୍କି ଦେଇପାରି-ନାହିଁ । 'ଦ ଫାର୍ଷ୍ଟ ମ୍ୟାନ୍ ଇନ ଦ ମୁନ୍' (୧୯୦୧)ରେ ସେହିପରି ବୈଜ୍ଞାନିକ ଚିନ୍ତା ଓ କଳ୍ପନାର ଅପୂର୍ବ ସମନ୍ୱୟ ଘଟିଛି ।

ସାମାଜିକ ଓ ରାଜନୈତିକ ସମସ୍ୟା ଓ୍ୱେଲ୍‌ସଙ୍କ ଉପନ୍ୟାସର ମୁଖ୍ୟ କଥାବସ୍ତୁ । 'ମ୍ୟାରେଜ୍' (୧୯୧୨)ର ନାୟକ ନିଜ ଅମିତବ୍ୟୟୀ ସ୍ତ୍ରୀର ସନ୍ତୋଷ ବିଧାନ ପାଇଁ ବୈଜ୍ଞାନିକ ଗବେଷଣା ଛାଡ଼ି ବ୍ୟବସାୟ ଧରିଛି । 'ପେସନେଟ୍ ଫ୍ରେଣ୍ଡସ୍' (୧୯୧୩)ର ନାୟିକା ଆର୍ଥିକ ସ୍ୱଚ୍ଛଳତା ପାଇଁ ଜଣେ ଧନୀକର ପାଣି ଗ୍ରହଣକରି ନିଜର ପ୍ରକୃତ ପ୍ରଣୟୀ ସହ ସମ୍ପର୍କ ରଖିଛି । 'ଟୋନୋବାଙ୍ଗେ' (୧୯୦୯)ରେ ଆଧୁନିକ ବ୍ୟବସାୟ କ୍ଷେତ୍ରରେ ଚାଲିଥିବା ପରିପ୍ରଚାର (Advertisement)ର କୁପରିଣାମ ପ୍ରଦର୍ଶିତ । 'ଇନ୍ ଏ ମଡ଼ର୍ଣ୍ଣ ୟୁଟୋପିଆ' (୧୯୦୫)ରେ ଗୋଟିଏ ଆଦର୍ଶ ପୃଥିବୀର ପରିକଳ୍ପନା କରିଥିବା ବେଳେ ଲେଖକ 'ନିଉ ମେକିଆ ଭେଲି (୧୯୧୧)ରେ ସମସାମୟିକ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ବ୍ୟଙ୍ଗବିଦ୍ରୂପ କରିଛନ୍ତି । ହ୍ୱିଲ୍‌ସ ଅଫ୍ ଚାନ୍‌ସ (୧୮୯୬) ଓ କିପସ୍ (୧୯୦୫) ପରି ଉପନ୍ୟାସ ହାସ୍ୟରସର ଖୋରାକ ଯୋଗାଇଥାଏ । ଏ ଦୁଇ ଉପନ୍ୟାସରେ ଲେଖକଙ୍କ ବ୍ୟକ୍ତିଗତ

ଜୀବନରେ ମୁଦ୍ରାଙ୍କ ରହିଛି । କେତେକ ଉପନ୍ୟାସର କଥାବସ୍ତୁ ଓ ଚରିତ୍ର ତୁଳନାରେ ସାମାଜିକ ସମସ୍ୟା ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଛି । ଶିକ୍ଷାର ପ୍ରସାର ଓ ରାଜନୀତି କ୍ଷେତ୍ରରେ ପୁରୁଷଙ୍କ ସହ ନାରୀର ସମାନ ଅଧିକାର ଉପରେ ସେ ପ୍ରାଧାନ୍ୟ ଦେଇଛନ୍ତି । ବ୍ୟକ୍ତିତ୍ୱର ବିକାଶ ଘଟାଇବା ତାଙ୍କର ଅନ୍ୟତମ ଲକ୍ଷ୍ୟ । ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ତାଙ୍କ ଉପନ୍ୟାସରେ ପ୍ରାଧାନ୍ୟ ଲାଭକରିଛି । ଉପନ୍ୟାସ ବ୍ୟତୀତ ବହୁସଂଖ୍ୟକ ଗଦ୍ୟରଚନା ମଧ୍ୟରେ ସେ ସାମାଜିକ ପୁନର୍ଗଠନ ପାଇଁ ଆହ୍ୱାନ ଶୁଣାଇଛନ୍ତି ।

ଡି. ଏଚ୍. ଲରେନ୍ସ (David Herbert Lawrence : ୧୮୮୫-୧୯୩୦) ଏକଦା ଉପନ୍ୟାସ ଜଗତରେ ଥିଲେ ବହୁନିନ୍ଦିତ ବ୍ୟକ୍ତି । ଅଶ୍ଳୀଳ ରଚନା ଭାବରେ ତାଙ୍କର ଦୁଇଟି ଉପନ୍ୟାସ ବାଜ୍ୟାପ୍ତ ହୋଇଥିଲା । ସମୟକ୍ରମେ ସମାଲୋଚକମାନେ ତାଙ୍କର ସମୁନ୍ନତ ଦାର୍ଶନିକ ଚିନ୍ତାଧାରା ହୃଦୟଙ୍ଗମ କରିପାରିଛନ୍ତି । ଲରେନ୍ସ ଆଧୁନିକ ଔପନ୍ୟାସିକଙ୍କ ମଧ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରନ୍ତି । ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ସଂଚୟନ ସମେତ ତାଙ୍କର ଅନ୍ୟୂନ ପଚାଶଖଣ୍ଡ ପୁସ୍ତକ ପ୍ରକାଶିତ ।



ସନ୍ସ ଆଣ୍ଡ୍ ଲଭର୍ସ (Sons and Lovers : ୧୯୧୩) ତାଙ୍କର ଶ୍ରେଷ୍ଠ କୃତି । ଏଥିରେ ମାତାପୁତ୍ରର ସଂପର୍କ ବିଶ୍ଳେଷଣ ଲେଖକଙ୍କର ଉଦ୍ଦେଶ୍ୟ । ଉପନ୍ୟାସଟି ଅନେକମାତ୍ରାରେ ଆତ୍ମଜୀବନୀମୂଳକ । ତାଙ୍କର ଅନ୍ୟାନ୍ୟ ଉପନ୍ୟାସ ମଧ୍ୟରେ ଦି ହ୍ୱାଇଟ୍ ପିକକ୍ (୧୯୧୧), ଦି ରେନ୍‌ବୋ (୧୯୧୫), କଙ୍ଗାରୁ (୧୯୨୩) ଓ ଲେଡି ଚ୍ୟାଟର୍ଲିଙ୍କ ଲଭର୍ (୧୯୨୮) ଉଲ୍ଲେଖଯୋଗ୍ୟ ।

'ଦି ରେନ୍‌ବୋ' ଓ 'ଲେଡି ଚ୍ୟାଟର୍ଲିଙ୍କ ଲଭର୍' ଅଶ୍ଳୀଳ ରଚନା ଭାବରେ ବାଜ୍ୟାପ୍ତ ହୋଇଥିଲା । ଦ୍ୱିତୀୟ ଉପନ୍ୟାସଟି ଖ୍ରୀ: ୧୯୬୦ରେ ପ୍ରକାଶ ପାଇଛି । ଏ ଦୁଇ ଉପନ୍ୟାସରେ ଯୌନ ସଂଭୋଗର ଚିତ୍ର ଦେବାବେଳେ ଦୈହିକ ବର୍ଣ୍ଣନା ମାତ୍ରାଧିକ ହୋଇପଡିଛି ।

ହାର୍ଡିଙ୍କ ଭଳି ଲରେନ୍ସଙ୍କ ଉପନ୍ୟାସରୁ ମଧ୍ୟ ଜୀବନ ପ୍ରତି ତାଙ୍କ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ମଣିଷର ବ୍ୟକ୍ତିତ୍ୱର ବିକାଶରେ ପ୍ରକୃତିଦତ୍ତ, ସ୍ୱାଭାବିକ ପ୍ରବୃତ୍ତିର ଚରିତାର୍ଥତା ଉପରେ ସେ ଗୁରୁତ୍ୱ ଦେଇଛନ୍ତି । ଏଣୁ ଇନ୍ଦ୍ରିୟାନୁଭୂତି ତାଙ୍କର କାମ୍ୟ । ଯୌନଚର୍ଯ୍ୟାର ଆବଶ୍ୟକତା ଦର୍ଶାଇବାକୁ ଯାଇ ଲେଖକ କହିଛନ୍ତି, "My great religion is a belief in the blood, the flesh, as being wiser than the intellect." ଏହି ବିଶ୍ୱାସ ହେତୁ ତାଙ୍କ ଉପନ୍ୟାସଗୁଡ଼ିକ ମସ୍ତିଷ୍କ ଅପେକ୍ଷା ହୃଦୟ ପ୍ରତି ଅଧିକ ଆବେଦନଶୀଳ ।

ଲରେନ୍ସ ଆଧୁନିକ ଯାନ୍ତ୍ରିକ ସଭ୍ୟତାର ବିରୋଧୀ । ଆଦିମ-ସମାଜର ପରି-ବେଶରେହିଁ ମଣିଷ ମଣିଷ ଭାବରେ ବଞ୍ଚିପାରେ ବୋଲି ତାଙ୍କର ବିଶ୍ୱାସ । କାରଣ ମଣିଷ ସେଠାରେ ପ୍ରକୃତିଦ୍ୱାରା ପରିଚାଳିତ ।

ଚରିତ୍ର ଅଧ୍ୟୟନରେ ଲରେନ୍ସ ଅବଚେତନ ମନର ବିଶ୍ଳେଷଣ ଉପରେ ଗୁରୁତ୍ୱ ଦେଇଥାନ୍ତି । କେତୋଟି ବିଶିଷ୍ଟ ଚରିତ୍ର ସ୍ୱୟଂ ଲେଖକଙ୍କ ଅନୁରୂପ । 'ସନ୍ସ ଆଣ୍ଡ୍ ଲଭର୍ସ'ର ପଲ୍ ମରେଲ୍ ଓ କଙ୍ଗାରୁର ଆର. ଏଲ୍. ସୋମାର୍ସ ଏହାର ଉଦାହରଣ । ଲରେନ୍ସ ଉପନ୍ୟାସର କଳାତ୍ମକମାନ ବୃଦ୍ଧି କରିବା ପାଇଁ ଆଦୌ ଯତ୍ନଶୀଳ ହୋଇନାହାନ୍ତି । ଏପରିକି ବ୍ୟାକରଣଗତ ଦୋଷତ୍ରୁଟି ପ୍ରତି ମଧ୍ୟ ସେ ଦୃଷ୍ଟି ଦେଇନାହାନ୍ତି । ତଥାପି ପ୍ରତୀକର ପ୍ରୟୋଗ ଓ ଚିତ୍ରଧର୍ମୀ ପ୍ରାଞ୍ଜଳ ବର୍ଣ୍ଣନା ହେତୁ ଉପନ୍ୟାସଗୁଡ଼ିକ ସୁଖପାଠ୍ୟ ।

ଇ. ଏମ୍. ଫରଷ୍ଟାର୍ (Edward Morgan Forster: ୧୮୭୯—୧୯୭୦) ପାଞ୍ଚଖଣ୍ଡି ମାତ୍ର ଉପନ୍ୟାସ ଲେଖି ବିଶିଷ୍ଟ ଔପନ୍ୟାସିକ ଭାବରେ ସ୍ୱୀକୃତ ।



'ହ୍ୱେୟାର୍ ଏଞ୍ଜେଲ୍ସ୍ ଫିଆର୍ ଟୁ ଟ୍ରେଡ୍' (୧୯୦୫) ତାଙ୍କର ପ୍ରଥମ ଉପନ୍ୟାସ । ଏହା ଇଟାଲୀୟ ପୃଷ୍ଠଭୂମିରେ ଲିଖିତ । ଏଥିରେ ଲେଖକ ପରମ୍ପରାର ଅନ୍ଧାନୁସରଣ ଓ ଆଭିଜାତ୍ୟ ପ୍ରତି ବ୍ୟଙ୍ଗବିଦ୍ରୂପ କରିଛନ୍ତି, ବିଧବା ବିବାହକୁ ଉତ୍ସାହିତ କରିଛନ୍ତି । 'ଦି ଲଙ୍ଗେଷ୍ଟ ଜାର୍ଣ୍ଣି' (୧୯୦୭)ରେ ମଧ୍ୟ ସେ ପରମ୍ପରା ବିରୁଦ୍ଧରେ ସ୍ୱର-ଉତ୍ତୋଳନ କରିଛନ୍ତି । ପ୍ରଥମ ଉପନ୍ୟାସ ଭଳି ତାଙ୍କର ତୃତୀୟ ଉପନ୍ୟାସ 'ଏ ରୁମ୍ ଉଇଥ୍ ଏ ଭିଉ' (୧୯୦୮) ମଧ୍ୟ ଇଟାଲୀୟ ପୃଷ୍ଠଭୂମିରେ ରଚିତ । ଏଥିରେ ଇଟାଲୀୟମାନେ ଇଂରେଜଙ୍କଠାରୁ ଅଧିକ ଉଦାର ହୃଦୟ-ପ୍ରବଣ ଭାବରେ ଚିତ୍ରିତ । ଏହା ହାସ୍ୟରସାତ୍ମକ (Comedy) । ମାନବୀୟ ଚରିତ୍ରର ଉଦ୍ଭଟତା (absurdity) ତାଙ୍କ ହାସ୍ୟରସର ମୁଖ୍ୟ ଉପାଦାନ । ଉପରୋକ୍ତ ତିନୋଟି ଉପନ୍ୟାସ ଅପରିଣତ ବୟସର ଲେଖା, ନାନାଦିଗରୁ ତ୍ରୁଟିପୂର୍ଣ୍ଣ । ପରବର୍ତ୍ତୀ ଦୁଇଟି ରଚନାରେ ହିଁ ତାଙ୍କର ଔପନ୍ୟାସିକ କୃତିତ୍ୱ ପରିଦୃଷ୍ଟ ହୁଏ ।

ବ୍ୟକ୍ତି ବ୍ୟକ୍ତି ଓ ଜାତି ଜାତି ମଧ୍ୟରେ ଭୁଲ୍ ବୁଝାମଣା ତଥା ସଂଘର୍ଷକୁ ଉପାଦାନ କରି ଉଭୟ 'ହାଓ୍ୱାର୍ଡ଼ସ୍ ଏଣ୍ଡ୍' (୧୯୧୦), 'ଏ ପ୍ୟାସେଜ୍ ଟୁ ଇଣ୍ଡିଆ' (୧୯୨୪) ପରିକଳ୍ପିତ । 'ହାଓ୍ୱାର୍ଡ଼ସ ଏଣ୍ଡ'ର ସଂଘର୍ଷ ଗୋଟିଏ ଜର୍ମାନ ପରିବାର ଓ ଇଂରେଜ ପରିବାରର ଆଦର୍ଶଗତ ସଂଘର୍ଷ । ଜର୍ମାନ ପରିବାରର ଲୋକେ ନୀତିବାଦୀ, ସୁରୁଚି ସମ୍ପନ୍ନ ଓ କଳାପ୍ରେମୀ ହୋଇଥିବାବେଳେ ଇଂରେଜ ପରିବାରର ଲୋକେ ଅତ୍ୟନ୍ତ ବସ୍ତୁବାଦୀ ତଥା ବ୍ୟବସାୟବୁଦ୍ଧିସମ୍ପନ୍ନ । ବିବାହ ବନ୍ଧନ ମାଧ୍ୟମରେ ଏ ଦୁଇ ଆଦର୍ଶର ସମନ୍ୱୟ ସମ୍ଭବ ବୋଲି ଲେଖକ ବିଶ୍ୱାସ କରନ୍ତି ।

'ଏ ପ୍ୟାସେଜ୍ ଟୁ ଇଣ୍ଡିଆ' (୧୯୨୪) ଲେଖକଙ୍କ ସର୍ବଶ୍ରେଷ୍ଠ କୃତି । ଇଂରେଜ ଓ ଭାରତୀୟ ଜାତି ମଧ୍ୟରେ ଦେଖାଦେଇଥିବା ବିଭିନ୍ନ ସମସ୍ୟା ଉପରେ ଲେଖକ ଆଲୋକପାତ କରିଛନ୍ତି । ସାମ୍ରାଜ୍ୟବାଦ ଓ ଉପନିବେଶ ମଧ୍ୟରେ ଚାଲିଥିବା ସଂଘର୍ଷର ବିଶ୍ଲେଷଣରେ ଦୂରଦର୍ଶିତାର ପରିଚୟ ମିଳେ । ଭାରତ ଶାସନରେ ନିଯୁକ୍ତ ଇଂରେଜ ଅଫିସରଙ୍କ ମନୋଭାବକୁ ଲେଖକ ବ୍ୟଙ୍ଗବିଦ୍ରୂପ କରିବାକୁ ଛାଡ଼ିନାହାନ୍ତି । ଉପନ୍ୟାସଟି ପ୍ରତୀକଧର୍ମୀ । ଏହାରତିନୋଟି ଅଂଶ 'ମସ୍କ', 'କେଭ୍ସ୍' (ଗୁମ୍ଫା) ଓ 'ଟେମ୍ପଲ୍' (ମନ୍ଦିର) ସମ୍ଭବତଃ କର୍ମ, ଜ୍ଞାନ ଓ ଭକ୍ତିର ପ୍ରତୀକ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ମିଳନ ଲେଖକଙ୍କର ଉଦ୍ଦେଶ୍ୟ; କିନ୍ତୁ ଉପନ୍ୟାସର ଶେଷ ଅଂଶରେ ପହଞ୍ଚିବାବେଳକୁ ତାଙ୍କର ସେ ବିଶ୍ୱାସ ଶିଥିଳ ହୋଇ-ପଡ଼ିଥିବାର ଲକ୍ଷ୍ୟ କରାଯାଏ ।

ବିଷୟ-ବିନ୍ୟାସରେ ଲେଖକ ପାରମ୍ପରିକ ପନ୍ଥା ଅନୁସରଣ କରିନାହାନ୍ତି । ବିଷୟକ୍ରମ ରକ୍ଷା ନକରି ଆକସ୍ମିକ ଭାବରେ ସେ କଥାବସ୍ତୁର ବିଭିନ୍ନ ଅଂଶ ଉତ୍ଥାପନ କରିଥାଆନ୍ତି । ଏହା ଦୁର୍ବୋଧତାର କାରଣ ହୋଇଥାଏ । ମାନବୀୟ ଆବେଗ ଓ ଉତ୍ତାପ ତାଙ୍କ ରଚନାରେ କ୍ଷୀଣ । ପ୍ରତୀକର ପ୍ରୟୋଗ ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ସେ ଅତ୍ୟନ୍ତ ଉଦାରବାଦୀ । ଉନ୍ନତତର ସଭ୍ୟତା ତଥା ସଂସ୍କୃତିର ବିକାଶପାଇଁ ସେ ବ୍ୟାକୁଳ । ପ୍ରାଚ୍ୟ-ସଂସ୍କୃତି ସମ୍ବନ୍ଧରେ କିପ୍ଲିଂଙ୍କ ପରି ସେ ସଂକୀର୍ଣ୍ଣମନା ନୁହନ୍ତି । ଉପନ୍ୟାସ ବ୍ୟତୀତ ସେ କିଛି କ୍ଷୁଦ୍ରଗଳ୍ପର ରଚୟିତା ।

**ଜେମ୍ସ୍ ଜଏସ୍** (James Joyce: ୧୮୮୨-୧୯୪୧) ମନୋବିଜ୍ଞାନର ଚେତନାପ୍ରବାହ ତତ୍ତ୍ୱକୁ ଭିତ୍ତିକରି ଉପନ୍ୟାସ ଲେଖିବାରେ ଅଗ୍ରଣୀ । 'ୟୁଲିସିସ୍' (Ulysses) ତାଙ୍କର କାନ୍ତିକାରୀ ରଚନା ।



ମଣିଷର ଅସତର୍କ ମୁହୂର୍ତ୍ତରେ ତା'ର ମନୋରାଜ୍ୟରେ ନାନା ବିଚ୍ଛିନ୍ନ ଚିନ୍ତାଧାରା ନଦୀର ସ୍ରୋତ ପରି ଅବିରାମ ଗତିରେ ବହିଚାଲିଥାଏ । ଏହା ସ୍ୱପ୍ନ ପରି; ଏଥିରେ ବିଷୟକ୍ରମ ବା ଯୌକ୍ତିକତା ଖୋଜିବା ବଡ଼ମୂର୍ଖତା ମାତ୍ର । ଏହି ଚେତନାପ୍ରବାହ ଆଧୁନିକ ଔପନ୍ୟାସିକ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହା ଚରିତ୍ର ତଥା ପରିବେଶ ଅଧ୍ୟୟନରେ ବିଶେଷ ସହାୟକ ହୋଇଥାଏ । ।

'ୟୁଲିସିସ୍'ର ନାୟକନାୟିକାଙ୍କ ଚେତନା-ପ୍ରବାହ ମଧ୍ୟରେ ଆଧୁନିକ ଯୁଗଯନ୍ତ୍ରଣା ରୂପାୟିତ । ଲିଓପୋଲିଡ୍ ବ୍ଲୁମ୍ ଓ ତା' ସ୍ତ୍ରୀର ମାତ୍ର ଗୋଟିଏ ଦିନର ଜୀବନ ତଥା ପ୍ରବହମାନ ମନର ଚିତ୍ର ଏଥିରେ ଅଙ୍କିତ । ବିଜ୍ଞାପନ ପ୍ରଚୁର

ଲର୍ଓପୋଲ୍ ଭ୍ଲର ପେଣ୍ଟ । ସାରା ଦିନଟି ସେ ଡବଲିନ୍ ସହରରେ ଘୂରିବୁଲିଛି; ସତେ କି ଏହା ହୋମାରଙ୍କ 'ଓଡ଼ିସି' (Odyssey)ର ନାୟକ ୟୁଲିସିସ୍‌ର ରୋମାଞ୍ଚକର ଜଳଯାତ୍ରା ! ଉପନ୍ୟାସଟିର ପରିକଳ୍ପନା 'ଓଡ଼ିସି'ର ଅନୁରୂପ; ସତେ ଅବା ଏହା ତାର ଏକ ବ୍ୟଙ୍ଗ ସଂସ୍କରଣ । ହୋମାରଙ୍କ ୟୁଲିସିସ୍‌ର ପ୍ରାଣପ୍ରାଚୁର୍ଯ୍ୟ ଆଧୁନିକ ଜୀବନରେ ସ୍ୱପ୍ନ । ଆଧୁନିକ ଜୀବନରେ କେବଳ ଉଦ୍‌ବେଗ ଓ ନୈରାଶ୍ୟର ରାଜତ୍ୱ । ଦୁଇଟି ଚିତ୍ର ଯୁଗପତ୍ ଉତ୍ଥାପିତ କରି ଲେଖକ ଆଧୁନିକ ଜୀବନର ବିକଳାଙ୍ଗ ରୂପକୁ ସ୍ପଷ୍ଟତର କରିପାରିଛନ୍ତି ।

'ଫିନେଗାନ୍‌ସ୍ ୱେକ' (Finnegan's Wake : ୧୯୩୯) ଲେଖକଙ୍କ ଅନ୍ୟତମ ସଫଳ ସୃଷ୍ଟି । ଆଦିମକାଳରୁ ମାନବ ସମାଜର କ୍ରମବିବର୍ତ୍ତନ ଅନୁଧ୍ୟାନ କରିବା ଉପନ୍ୟାସଟିର ଲକ୍ଷ୍ୟ । ଲେଖକଙ୍କ ଏ ସମ୍ବନ୍ଧୀୟ ଧାରଣା ମିଷ୍ଟର୍ ଇଆରୱିକାର୍‌ଙ୍କ ଅସଂଲଗ୍ନ ସ୍ୱପ୍ନ ମଧ୍ୟରେ ପରିବେଷିତ । ମନସ୍ତତ୍ତ୍ୱ, ବିଶେଷତଃ ଯୌନ ସଂପର୍କିତ ମନସ୍ତତ୍ତ୍ୱ ବିଶ୍ଳେଷଣ ପ୍ରତି ଲେଖକଙ୍କ ପ୍ରବଣତା ଅଧିକ । କଥାବସ୍ତୁର ଅସଂଲଗ୍ନତା ଓ ବ୍ୟକ୍ତିଗତ ଶବ୍ଦର ପ୍ରୟୋଗ ତାଙ୍କ ଉପନ୍ୟାସକୁ ଦୁର୍ବୋଧ କରିଥାଏ । ବାକ୍ୟ ବାକ୍ୟ ମଧ୍ୟରେ ଯୁକ୍ତିସିଦ୍ଧ ସଂପର୍କ ନଥାଏ । ଅନେକ ସମୟରେ ସେ ବିଭିନ୍ନ ଶବ୍ଦରୁ ଗୋଟିଏ ଗୋଟିଏ ଅଂଶ ଆଣି ସେଗୁଡ଼ିକର ସମନ୍ୱୟରେ ନୂତନ ଶବ୍ଦ ସୃଷ୍ଟି କରିଥାନ୍ତି ।

ଡରୋଥି ରିଚାର୍ଡ଼ସନ୍ (Dorothy Richardson : ୧୮୮୨-୧୯୫୭) ଓ ଭର୍ଜିନିଆ ଉଲ୍‌ଫ୍ (Virginia Woolf : ୧୮୮-୧୯୪୧) ମଧ୍ୟ ଚେତନା-ପ୍ରବାହ ଭିତ୍ତିକ ଉପନ୍ୟାସ ଲେଖିଛନ୍ତି । ଡରୋଥି ରିଚାର୍ଡସନ୍ ଏହି ଧାରାରେ ପ୍ରଥମେ ଉପନ୍ୟାସ ଲେଖିଥିବାର ଦାବୀ କରିଛନ୍ତି ।

ଭର୍ଜିନିଆ ଉଲ୍‌ଫ୍ ଏ ଯୁଗର ଜଣେ ଶକ୍ତିଶାଳୀ ଲେଖିକା । ସମାଜ-ଜୀବନର ବିଭିନ୍ନ ଘଟଣା, ଆଚାର-ବ୍ୟବହାର ଆଦିର କେବଳ ବିଶ୍ୱସ୍ତ ବିବରଣୀ ଦେବା ତାଙ୍କର ଉଦ୍ଦେଶ୍ୟ ନୁହେଁ । ଏସବୁ ବାହ୍ୟ ରୂପରୁ ଜୀବନର ପ୍ରକୃତ ସତ୍ୟ ଉଦ୍‌ଘାଟିତ ହୁଏନାହିଁ; ସେଥିପାଇଁ ଚରିତ୍ରର ଅନ୍ତର୍ଲୋକରେ ପ୍ରବେଶ କରିବା ଆବଶ୍ୟକ । ଏ ଦୃଷ୍ଟିରୁ ଲେଖିକା ଚେତନାପ୍ରବାହ ତତ୍ତ୍ୱକୁ ଗ୍ରହଣ କରିଛନ୍ତି । 'ଜ୍ୟାକବସ୍ ରୁମ୍' (୧୯୨୨), 'ମିସେସ୍ ଡାଲଓ୍ୱେ' (୧୯୨୫), 'ଟୁ ଦ ଲାଇଟ୍ ହାଉସ୍' (୧୯୨୭) ଓ 'ଦ ୱେଭ୍‌ସ୍' (୧୯୩୧) ଉପନ୍ୟାସ ଏହି ଧାରାରେ ଲିଖିତ । 'ଦ ୱେଭସ୍' ପ୍ରାୟ କଥାବସ୍ତୁରହିତ । ଏହା ପ୍ରତୀକଧର୍ମୀ । ଚରିତ୍ରର ଯଥାଯଥ ଅଧ୍ୟୟନ ପାଇଁ ଲେଖିକା ଅନ୍ତଃସଂଳାପ (Internal monologue) ବ୍ୟବହାର କରିଛନ୍ତି । ଉପନ୍ୟାସଟିର କାବ୍ୟିକ ସୌନ୍ଦର୍ଯ୍ୟ ଲକ୍ଷଣୀୟ । ବସ୍ତୁତଃ ଏହା ଏକ ଗଦ୍ୟକବିତା ।

'ଅର୍ଲାଣ୍ଡୋ, ଏ ବାୟୋଗ୍ରାଫି' (Orlando, a Biography : ୧୯୨୮) ତାଙ୍କର ଗୋଟିଏ ବହୁ ପଠିତ ରଚନା । ଏହା ଏକ ଭିନ୍ନ ସ୍ୱାଦର ଉପନ୍ୟାସ ।

ଏଲିଜାବେଥାନ୍ ଯୁଗଠାରୁ ସମସାମୟିକ କାଳ ପର୍ଯ୍ୟନ୍ତ ଲେଖିକାଙ୍କ ଉପନ୍ୟାସର ନାୟକ ଅର୍ଲ୍ଯାଣ୍ଡୋର ଜୀବନ ଅନୁଧ୍ୟାନ କରିଛନ୍ତି । ବିଭିନ୍ନ ବ୍ୟକ୍ତିବିଶେଷ ଭିତରେ ସେ ଅର୍ଲ୍ଯାଣ୍ଡୋକୁ ଦେଖିଛନ୍ତି । ନାରୀଭାବରେ ବି ସେ ଆବିର୍ଭୂତ । ଐତିହାସିକ ପଟ୍ଟଭୂମି ତଥା ପରିବେଶ ସୃଷ୍ଟିରେ ଲେଖିକାଙ୍କ ସାଫଲ୍ୟ ପ୍ରଶଂସାର୍ହ । ଚରିତ୍ର ଅଧ୍ୟୟନ ହିଁ ତାଙ୍କ ଉପନ୍ୟାସର ମୁଖ୍ୟ ଉଦ୍ଦେଶ୍ୟ ହୋଇପଡ଼ିଛି । ସେ ସୌନ୍ଦର୍ଯ୍ୟର ପୂଜାରିଣୀ । ଜୀବନର କୁତ୍ସିତ ରୂପ ପ୍ରତି ସେ ଲକ୍ଷ୍ୟ ଦେଇନାହାନ୍ତି ।

ସମରସେଟ୍ ମମ୍ (Somerset Maugham : ୧୮୭୪—୧୯୬୫)ଙ୍କ ଜନ୍ମ ପ୍ୟାରିସରେ; ଶିକ୍ଷାଦୀକ୍ଷା ଇଂଲଣ୍ଡରେ । ଲଣ୍ଡନରେ ଡାକ୍ତରୀ ବ୍ୟବସାୟ ଆରମ୍ଭ କରନ୍ତି; କିନ୍ତୁ ସାହିତ୍ୟହିଁ ଅବଶେଷରେ ହୁଏ ଜୀବିକା ନିର୍ବାହର ପନ୍ଥା । ଉପନ୍ୟାସ, ନାଟକ ଓ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ଲେଖନୀଚାଳନା କରିଥିଲେ ମଧ୍ୟ ସେ ମୁଖ୍ୟତଃ ଔପନ୍ୟାସିକ ଭାବରେ ହିଁ ସୁପରିଚିତ ।



ମମ୍‌ଙ୍କ ପ୍ରଥମ ପର୍ଯ୍ୟାୟର ଉପନ୍ୟାସ ନୀତି-ବହୁଳ । 'କାଟାଲିନା' ଏହାର ଅନ୍ତର୍ଗତ । ଉପନ୍ୟାସଟିରେ ଲେଖକ ଖ୍ରୀଷ୍ଟୀୟ ସାଧୁ ସନ୍ଥଙ୍କ ଅଲୌକିକ କାର୍ଯ୍ୟକଳାପର ବିବରଣୀ ଦେଇଛନ୍ତି; ହଠ-ଯୋଗୀଙ୍କ ପରି ଶରୀରକୁ ନିର୍ଯ୍ୟାତନା ନ ଦେଇ, ଧର୍ମ-ଯୁଦ୍ଧ ନାମରେ ପ୍ରାଣବଳୀ ନ ଦେଇ, ନିଜର ସୀମିତ ପରିସର ମଧ୍ୟରେ 'କର୍ତ୍ତବ୍ୟ ପାଳନ ଦ୍ୱାରା ହିଁ ଈଶ୍ୱରସେବା କରାଯାଇପାରେ ବୋଲି ସେ ମତ ପୋଷଣ କରିଛନ୍ତି ।

ଦ୍ୱିତୀୟ ପର୍ଯ୍ୟାୟର ଉପନ୍ୟାସରେ ଲେଖକଙ୍କ ଦୃଷ୍ଟିଭଙ୍ଗୀ ବାସ୍ତବଧର୍ମୀ । ଇନ୍ଦ୍ରିୟପ୍ରବଣତା ତଥା ପ୍ରେମଚେତନା ତାଙ୍କ ମନୋରାଜ୍ୟକୁ ଆବୃତ କରିଛି । 'ଥିଏଟର' ଉପନ୍ୟାସର ନାୟିକା ଜୀବନର ଗୋଧୂଳିରେ ମଧ୍ୟ ଯୌବନର ଉଷ୍ଣତା ଅନୁଭବ କରିବାକୁ ବ୍ୟାକୁଳ । 'ଲିଜା ଅଫ୍ ଲାମ୍ବେଥ୍'ରେ ନାୟିକା 'ଲିଜା' ଗୋଟିଏ କାରଖାନାର କର୍ମଚାରୀ; ହୃଦୟରେ ତାର ତୀବ୍ର ଆବେଗର ସଂଘାତ । ଏଠାରେ ଜୀବନଚିତ୍ର ଅତିମାତ୍ରାରେ ବାସ୍ତବ ।

ତୃତୀୟ ପର୍ଯ୍ୟାୟର ଉପନ୍ୟାସ ଦାର୍ଶନିକ ଭାବାପନ୍ନ । 'ଅଫ୍ ହ୍ୟୁମାନ୍ ବଣ୍ଡେଜ୍'ରେ ନାୟକ 'କେରି'ର ନିଃସଙ୍ଗ ଜୀବନ ଚିତ୍ରିତ । ପାଦ ତା'ର ବିଣ୍ଡା । ଶୈଶବରୁ ସେ ମାତୃହୀନ । ଜୀବନର ସମସ୍ତ କ୍ଷେତ୍ରରେ ସେ ନିଃସଙ୍ଗ; ପ୍ରେମିକ ଭାବରେ ଅବାଞ୍ଛିତ । ତା ପାଇଁ ଜୀବନ ଅର୍ଥହୀନ, ଜନ୍ମହେବା ଓ ନହେବା ଏକ କଥା; ଜୀବନ ଓ ମୃତ୍ୟୁ ତା'ଠାରେ ସମାନ ।

'ଦି ମୁନ୍ ଆଣ୍ଡ୍ ସିକ୍ସ୍ ପେନ୍ସ୍' ଏକ ଜୀବନୀ-ଉପନ୍ୟାସ । ଏହାର ନାୟକ ଚାର୍ଲସ୍ ଷ୍ଟ୍ରିକ୍‌ଲ୍ୟାଣ୍ଡ୍ ଜଣେ କଳାକାର । ଜଟିଳ ସମାଜଜୀବନ ମଧ୍ୟରେ ସେ ଶ୍ୱାସରୁଦ୍ଧ । ସ୍ତ୍ରୀ ପୁତ୍ର ଓ ବ୍ୟବସାୟ ଛାଡ଼ି ସେ ନିଭୃତରେ କଳାର ସାଧନ କରିବାକୁ ତାହିତି ଦ୍ୱୀପକୁ ପଳାୟନ କରିଛନ୍ତି; ଉକ୍ତ ଦ୍ୱୀପର ଅସଂସ୍କୃତ ଅଧିବାସୀଙ୍କ ମଧ୍ୟରୁ ନିଜର ସଙ୍ଗିନୀ ବାଛି-ନେଇଛନ୍ତି । କୁଷ୍ଠ ରୋଗରେ ତାଙ୍କର ମୃତ୍ୟୁ ଘଟିଛି । ଉପନ୍ୟାସଟି ବିଖ୍ୟାତ ଫରାସୀ ଚିତ୍ରକର ପଲ୍ ଗଗିନ୍‌ଙ୍କ ଜୀବନୀ ଉପରେ ଆଧାରିତ ।

'ଦି ରେଜର୍ସ ଏଜ୍'ର କଥାବସ୍ତୁ ଭାରତୀୟ ଦର୍ଶନର ଅନାସକ୍ତି (renunciation) । 'କେକ୍ସ୍ ଆଣ୍ଡ୍ ଏଲ୍'ରେ ବିଳାସବ୍ୟସନ ଭିତରେ ଜୀବନକୁ ତିଳ ତିଳ କରି ଉପଭୋଗ କରିବାର ପ୍ରୟାସକୁ ଲେଖକ ବ୍ୟଙ୍ଗ-ବିଦ୍ରୂପ କରିଛନ୍ତି ।

ଲେଖକଙ୍କ ପ୍ରକାଶଭଙ୍ଗୀରେ ଆନ୍ତରିକତାର ସ୍ୱର ଅତୀବ ହୃଦ୍ୟ । କିନ୍ତୁ ବିଷୟ-ବିନ୍ୟାସରେ ଦୃଢ଼ବଦ୍ଧତା ଲକ୍ଷ୍ୟ କରାଯାଏ ନାହିଁ । ବିଷୟକ୍ରମ ମଧ୍ୟ ବିଶୃଙ୍ଖଳିତ ।

ଆଲ୍‌ଡ଼ସ୍ ହକ୍ସ୍‌ଲି (Aldous Leonard Huxley : ୧୮୯୪-୧୯୬୩)ଙ୍କ ପରି ବୁଦ୍ଧିଦୀପ୍ତ, ଦାର୍ଶନିକ-ଭାବାପନ୍ନ ବ୍ୟକ୍ତିତ୍ୱ ଇଂରେଜୀ ଉପନ୍ୟାସ କ୍ଷେତ୍ରରେ କ୍ୱଚିତ୍ ଦେଖାଯାନ୍ତି । ପିତା ଟମାସ୍ ହାକ୍ସ୍‌ଲି ଥିଲେ ବିଶିଷ୍ଟ ବୈଜ୍ଞାନିକ ଚାର୍ଲସ ଡାରଉଇନ୍‌ଙ୍କ ତତ୍ତ୍ୱର ବିଶିଷ୍ଟ ବ୍ୟାଖ୍ୟାକାର; ମା' ଥିଲେ ବିଶିଷ୍ଟ କବି ମ୍ୟାଥ୍ୟୁ ଆର୍ନଲ୍ଡଙ୍କ ପରିବାରର । ଉପନ୍ୟାସ ବ୍ୟତୀତ ହକ୍ସ୍‌ଲି ଉଚ୍ଚ ମାନର ଦାର୍ଶନିକ ଗ୍ରନ୍ଥ, ପ୍ରବନ୍ଧ, କ୍ଷୁଦ୍ରଗଳ୍ପ ଓ କବିତା ମଧ୍ୟ ରଚନା କରିଛନ୍ତି ।



'ପଏଣ୍ଟ କାଉଣ୍ଟର୍ ପଏଣ୍ଟ' (୧୯୨୮) ଓ 'ବ୍ରେଭ୍ ନିଉ ୱାର୍ଲଡ୍' (୧୯୩୨) ତାଙ୍କର ଦୁଇ ବିଶିଷ୍ଟ ରଚନା । ଅନ୍ୟାନ୍ୟ ଉପନ୍ୟାସ ମଧ୍ୟରେ 'ଆଣ୍ଟିକ୍ ହେ', 'ଦୋଜ ବାରେନ୍ ଲିଭ୍ସ୍', 'ଆଇଲେସ୍ ଇନ୍ ଗାଜା' ଓ 'ଆଫ୍‌ଟର୍ ମେନି ଏ ସମର୍' ଉଲ୍ଲେଖ-ଯୋଗ୍ୟ ।

'ପଏଣ୍ଟ କାଉଣ୍ଟର ପଏଣ୍ଟ' ଯୁଦ୍ଧ ପରବର୍ତ୍ତୀ ଜୀବନର ମୋହମୁକ୍ତ ଓ ହତାଶାର ଜୀବନ୍ତ ଆଲେଖ୍ୟ । ପାରମ୍ପରିକ ନୀତିବୋଧ ମାନବବ୍ୟକ୍ତିତ୍ୱର ବିକାଶରେ କିଭଳି ଅନ୍ତରାୟ ହୋଇଛି ତା ମଧ୍ୟ ଲେଖକ ଦର୍ଶାଇଛନ୍ତି । ଆଦର୍ଶର ଅନୁସରଣ ବେଳେ ଏକଦେଶଦର୍ଶିତା ତାଙ୍କ ମତରେ ଅବାଞ୍ଛିତ । ଏଣୁ ଆବେଗ ଓ ବୌଦ୍ଧିକତାର ଦ୍ୱନ୍ଦ୍ୱରେ ସେ ଉଭୟର ସମନ୍ୱୟ କାମନା କରିଛନ୍ତି ।

'ଦି ବ୍ରେଭ୍ ନିଉ ଓ୍ୱାର୍ଲଡ୍' (୧୯୩୨)ରେ ଲେଖକ ଅତିରିକ୍ତ ବୈଜ୍ଞାନିକ ବୁଦ୍ଧିର କୁପରିଣାମ ବର୍ଣ୍ଣାଇଛନ୍ତି । ସେ ଗୋଟିଏ ଭବିଷ୍ୟତ ପୃଥିବୀର କଳ୍ପନା କରିଛନ୍ତି । ଏଥିରେ ରୋଗ, ଦୁଃଖ ନାହିଁ ସତ; କିନ୍ତୁ ଆବେଗ ମଧ୍ୟ ବିଜ୍ଞାନ-ବୁଦ୍ଧି-ନିୟନ୍ତ୍ରିତ । କଳା ଓ ସାହିତ୍ୟ ସେଠାରେ ବିପର୍ଯ୍ୟସ୍ତ; ଆଧ୍ୟାତ୍ମିକତା ବିଦାୟ ନେଇଛି । ବ୍ୟକ୍ତିସତ୍ତାର ସ୍ୱାଧୀନତା ଓ ବିକାଶ ପାଇଁ ଲେଖକଙ୍କ ଉଦ୍‌ବେଗ ଏଥିରୁ ସ୍ପଷ୍ଟ ।

ଯୁଦ୍ଧ ପରବର୍ତ୍ତୀ ସାହିତ୍ୟରେ ବ୍ୟଙ୍ଗାତ୍ମକ ସମାଜଚିତ୍ର ପରିବେଷଣ ହକ୍‌ସଲିଙ୍କ ପରି କେହି କରିପାରିନାହାନ୍ତି । ଏଥିପାଇଁ ତାଙ୍କୁ ସ୍ୱିଫ୍‌ଟଙ୍କ ସହିତ ତୁଳନା କରାଯାଏ । କଥାବସ୍ତୁ ପରିକଳ୍ପନା ଓ ଚରିତ୍ରଚିତ୍ରଣରେ ତାଙ୍କର ଦକ୍ଷତା ସଙ୍କୁଚିତ । ସବୁ କ୍ଷେତ୍ରରେ କିନ୍ତୁ ପାଣ୍ଡିତ୍ୟ ଓ ବିଚକ୍ଷଣ ବୁଦ୍ଧିସତ୍ତାର ଛାପ ପଡ଼ିଛି ।

## ନାଟକ :

ରୋମାଣ୍ଟିକ୍ ଓ ଭିକ୍‌ଟୋରୀୟ ଯୁଗରେ ନାଟକର ପୁଷ୍କଳ ବିକାଶ ଲକ୍ଷ୍ୟ କରାଯାଏ ନାହିଁ । ରୋମାଣ୍ଟିକ୍ ଲେଖକଙ୍କର ବ୍ୟକ୍ତିନିଷ୍ଠତା ଓ ଭିକ୍‌ଟୋରୀୟ ଯୁଗର ନୀତିବାଦିତା ଏହାର ପ୍ରତିବନ୍ଧକ ହୋଇଛି । କିନ୍ତୁ ବିଂଶ ଶତାବ୍ଦୀର ସାରସ୍ୱତ ମଞ୍ଚରେ ନାଟକ ପୁଣି ସଗୌରବେ ଅବତୀର୍ଣ୍ଣ । ନାଟକ କେବଳ କଳା କୃତି ଭାବରେ ଅଭିନନ୍ଦନୀୟ ନୁହେଁ, ସାମାଜିକ ଓ ବ୍ୟକ୍ତିଗତ ଜୀବନର ବିଭିନ୍ନ ଜଟିଳ ସମସ୍ୟାର ଉତ୍ଥାପନ ତଥା ସମାଧାନର ପନ୍ଥା ନିର୍ଦ୍ଦେଶ କରି ଏହା ଆଧୁନିକ ଜୀବନର ଅପରିହାର୍ଯ୍ୟ ଅଙ୍ଗ ହୋଇପଡ଼ିଛି । ଏ ପ୍ରକାରର ନାଟକକୁ ସମସ୍ୟାମୂଳକ ନାଟକ (problem play) କୁହାଯାଏ । ବର୍ଣ୍ଣାଡ଼ ଶ, ଗାଲ୍‌ସ୍‌ଓ୍ୱାର୍ଦ୍ଦି ଓ ଗ୍ରାନ୍‌ଭିଲ୍ ବାର୍‌କାର୍‌ଙ୍କର ଅବଦାନ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ଏଥିରେ ଜୀବନର ବାସ୍ତବ ଚିତ୍ର ଫୁଟିଉଠେ । ଘଟଣା ଓ ଚରିତ୍ର ଅପେକ୍ଷା ଚିନ୍ତାଧାରା ଉପରେ ହିଁ ବିଶେଷ ଗୁରୁତ୍ୱ ଆରୋପିତ । ଇଲିଅଟ୍ ଓ ଇଟ୍‌ସ୍‌ଙ୍କ ପରି କେହି କେହି ନାଟ୍ୟକାର ଗୀତିନାଟ୍ୟ ରଚନାରେ ମନୋନିବେଶ କରିଛନ୍ତି । ଇଟ୍‌ସ୍ ଓ ସିଞ୍ଜ୍‌ଙ୍କ ପରି ଆଇରିସ୍ ନାଟ୍ୟକାର ଆୟାର୍‌ଲ୍ୟାଣ୍ଡର ସଂସ୍କୃତିକୁ କେନ୍ଦ୍ରକରି ସାହିତ୍ୟ ତଥା ନାଟକ ରଚନାରେ ବ୍ରତୀ । ରେଷ୍ଟୋରେସନ୍ କମେଡ଼ିର ପୁନରାବିର୍ଭାବ ଘଟିଛି । ଓସ୍‌କାର ଓ୍ୱାଇଲ୍‌ଡ୍ ଓ ସମରସେଟ୍ ମମ୍ ଏହି ନାଟ୍ୟଶୈଳୀ ଅବଲମ୍ବନ କରିଛନ୍ତି । ପ୍ରଭାବବାଦ (Impressionism) ଓ ଅଭିବ୍ୟକ୍ତିବାଦ (Expressionism) ଭଳି ନୂତନ ଆଙ୍ଗିକର ପରୀକ୍ଷା ନିରୀକ୍ଷା ଚାଲିଛି । ଏସବୁ ଦୃଷ୍ଟିରୁ ବିଂଶ ଶତାବ୍ଦୀର ନାଟକ ଯେପରି ବର୍ଣ୍ଣିଳ, ସେହିପରି ବ୍ୟାପକ । ପୂର୍ବରୁ କେବଳ ଏଲିଜାବେଥୀୟ ଯୁଗରେ ନାଟକର ଏପରି ପ୍ରାଚୁର୍ଯ୍ୟ ତଥା ଉତ୍କର୍ଷ ଦେଖାଦେଇଥିଲା ।

ଆଧୁନିକ ଇଂରେଜୀ ନାଟକର ପ୍ରଧାନ ପ୍ରେରଣାର ଉତ୍ସ ନରଓ୍ୱେର ନାଟ୍ୟକାର ହେନ୍‌ରିକ୍ ଇବ୍‌ସେନ୍ (Henrik Ibsen : ୧୮୨୮-୧୯୦୬) । ସେ ବାସ୍ତବଧର୍ମୀ

ନାଟକର ପକ୍ଷପାତୀ । ସମସାମୟିକ ସମାଜର ବିଭିନ୍ନ ସମସ୍ୟାକୁ ରୂପ ଦେବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ତାଙ୍କ ନାଟକ ମଧ୍ୟରେ 'ଡଲସ୍ ହାଉସ୍', 'ଦ ପିଲର୍ ଅଫ୍ ସୋସାଇଟି', 'ଉଆଇଲ୍ଡ ଡାକ୍' ଓ 'ଦ ଗୋଷ୍ଟ' ପ୍ରଧାନ । ପାରମ୍ପରିକ ବିବାହପଦ୍ଧତି ଓ ଦାମ୍ପତ୍ୟଜୀବନ 'ଡଲସ୍ ହାଉସ୍'ର ବିଷୟବସ୍ତୁ । 'ନୋରା'ର ସ୍ୱାମୀ ମନେକରେ ଯେ ସ୍ତ୍ରୀର ସ୍ଥାନ ରୋଷେଇଶାଳାରେ; ବୁଦ୍ଧିବୃତ୍ତି, କଳା, ସାହିତ୍ୟ କ୍ଷେତ୍ରରେ ତାର ସ୍ଥାନ ନାହିଁ । ସେ ଗୋଟାଏ ବ୍ୟକ୍ତିତ୍ୱହୀନ କଣ୍ଢେଇ । ନୋରା ଗୃହତ୍ୟାଗ କରେ । 'ଦ ଗୋଷ୍ଟ'ର ପରିକଳ୍ପନା ଆଧୁନିକ ସମାଜର କଳଙ୍କ ସିଫିଲିସ୍ ରୋଗକୁ ନେଇ । ଆଧୁନିକ ଯୁଗର ଶ୍ରେଷ୍ଠ ନାଟ୍ୟକାର ବର୍ଣ୍ଣାର୍ଡ଼ ଶ'ଙ୍କ ଉପରେ ତାଙ୍କର ପ୍ରଭାବ ପଡ଼ିଛି ।

**ଜର୍ଜ ବର୍ଣ୍ଣାର୍ଡ଼ ଶ'** ( George Bernard Shaw : ୧୮୫୬-୧୯୫୦) ବିଂଶ ଶତାବ୍ଦୀର ନାଟ୍ୟ-ଜଗତରେ ସର୍ବଶ୍ରେଷ୍ଠ ପ୍ରତିଭା । ଶିକ୍ଷାଗତ ଯୋଗ୍ୟତା ତାଙ୍କର ବିଶେଷ ନ ଥିଲା । କିଛିକାଳ ସାମ୍ବାଦିକତାକୁ ପେଶା କରିଥିଲେ; ବିଭିନ୍ନ ପତ୍ରିକାର କଳା, ସଙ୍ଗୀତ ଓ ନାଟ୍ୟ ସମୀକ୍ଷକ ଭାବରେ ନିଯୁକ୍ତି ପାଇଥିଲେ । ଲେଖକ ହେବାର ବଳବତୀ ଇଚ୍ଛା ନେଇ ସେ ଉପନ୍ୟାସଲେଖାରେ ହାତ ଦିଅନ୍ତି । ଗୋଟିଏ ଉପନ୍ୟାସ ଲେଖିଲେ ମଧ୍ୟ କେଉଁଟି ସଫଳ ହୁଏ ନାହିଁ । ନାଟକ ଲେଖା ଆରମ୍ଭ କରନ୍ତି (୧୮୯୨) । ସେଥିରେ ମଧ୍ୟ ସ୍ୱୀକୃତି ମିଳେ ନାହିଁ; ସାଧନା କିନ୍ତୁ ଅବ୍ୟାହତ ରହେ । କ୍ରମେ ବିଦେଶରେ ତାଙ୍କ ଲେଖାର ଆଦର ବଢ଼େ । ନାଟ୍ୟ-ଜଗତରେ ସେ ଅପ୍ରତିଦ୍ୱନ୍ଦ୍ୱୀ ହୋଇ ଦେଖାଦିଅନ୍ତି । ଖ୍ରୀ: ୧୯୨୫ରେ ତାଙ୍କୁ ନୋବେଲ ପ୍ରାଇଜ୍ ଅର୍ପିତ ହୁଏ ।

ଶ'ଙ୍କ ନାଟକ ମୁଖ୍ୟତଃ ସମସ୍ୟାମୂଳକ । ସାମାଜିକ, ରାଜନୈତିକ ତଥା ନୀତି ସମ୍ପର୍କିତ ସମସ୍ୟା ତାଙ୍କ ନାଟକର ପ୍ରଧାନ ଉପଜୀବ୍ୟ; ଦାର୍ଶନିକ ଚିନ୍ତାଧାରାର ପରିପ୍ରକାଶ ଅବା କେତେବେଳେ ନାଟ୍ୟ ରଚନାର ଉଦ୍ଦେଶ୍ୟ ହୋଇଛି । ବିତର୍କମୂଳକ ସମସ୍ୟାକୁ ସେ ପ୍ରାଧାନ୍ୟ ଦେଇଥାନ୍ତି ।

ଶ'ଙ୍କ ପ୍ରଥମ ନାଟକ 'ଉଇଡ଼ୋଉର୍ସ୍ ହାଉସ୍' (Widower's House : ୧୮୯୨) ସମାଜର ଏକ ବିଶେଷ ସମସ୍ୟା ବସ୍ତି ଅଞ୍ଚଳର ମାଲିକାନା ଉପରେ ଆଧାରିତ । 'ମିସେସ୍ ଓ୍ୱାରେନ୍ସ୍ ପ୍ରଫେସନ' (Mrs. Warren's Profession : ୧୮୯୪)ର କଥାବସ୍ତୁ ଗଣିକାବୃତ୍ତି । ଉକ୍ତ ବ୍ୟବସାୟକୁ ହେୟ ପ୍ରତିପନ୍ନ କରିବା ଲେଖକଙ୍କର ଉଦ୍ଦେଶ୍ୟ । ଏହା ଟ୍ରାଜି କମେଡ଼ି ଶ୍ରେଣୀର । 'ଆର୍ମସ୍ ଆଣ୍ଡ୍ ଦ ମ୍ୟାନ' (Arms and the man : ୧୮୯୪)ରେ ଲେଖକ ତଥାକଥିତ ଗୌରବାବହ ଯୁଦ୍ଧ ଓ ରୋମାଣ୍ଟିକ ପ୍ରେମକୁ ବ୍ୟଙ୍ଗ-ବିଦ୍ରୂପ କରିଛନ୍ତି । ନାୟିକା 'ରାଇନା' ସର୍ଜିଆସ୍‌କୁ ପ୍ରେମ କରେ । ସର୍ଜିଆସ୍ ଜଣେ ନିଷ୍ଠାପର ସୈନିକ ତଥା ପ୍ରେମିକ । ଅନ୍ୟ ପକ୍ଷରେ ବ୍ଲୁଣ୍ଟ୍‌ଚ୍ଲି । (Bluntschli) ମଧ୍ୟ ଜଣେ ସୈନିକ; କିନ୍ତୁ ଯୁଦ୍ଧ-ପଡ଼ିଆ ଅପେକ୍ଷା ରୂପସୀର ଶୟନକକ୍ଷ ତାର ଅଧିକ କାମ୍ୟ । ସର୍ଜିଆସ୍‌ର ପ୍ରେମ ଓ ସାହସିକତା ଗୋଟିଏ ବିରାଟ ଛଳନା ବୋଲି ଜଣାପଡ଼ିଛି । ରାଇନା

ସେହି ଯୁବତୀରୁ 'ଚକୋଲେଟ୍ କ୍ରିମ୍ ସୋଲ୍‌ଜାର୍' ପ୍ରତି ଆକୃଷ୍ଟ ହୋଇପଡ଼ିଛି । 'ମ୍ୟାନ୍ ଆଣ୍ଡ୍ ସୁପରମ୍ୟାନ' (Man and Superman : ୧୯୦୩)ରେ 'ଜୀବନୀଶକ୍ତି' ସମ୍ବନ୍ଧୀୟ ଲେଖକଙ୍କ ଚିନ୍ତାଧାରା ଅଭିବ୍ୟକ୍ତ । ଏହି ପ୍ରାଣଶକ୍ତି ମଣିଷକୁ ଏକ ମହତ୍ତର ସୋପାନ ଆଡ଼କୁ ଟାଣିନେଉଛି ବୋଲି ସେ ବିଶ୍ୱାସ କରନ୍ତି । ଏହି ପ୍ରକ୍ରିୟାରେ ନାରୀ ହେଉଛି ପ୍ରକୃତିର ଅସ୍ତ୍ର, ଆଉ ନାରୀର ଅସ୍ତ୍ର ପୁରୁଷ । ମଣିଷ ଏହି ଶକ୍ତିକୁ ମାନି ନେଇ ତା ସହିତ ସହଯୋଗ କରିବା ଉଚିତ । ସୁନିର୍ବାଚିତ ବିବାହ ଓ ପ୍ରଜନନଦ୍ୱାରା ଏହା ତ୍ୱରାନ୍ୱିତ ହୋଇପାରେ ଓ ଧରାପୃଷ୍ଠରେ ଅତିମାନବ ଅବତୀର୍ଣ୍ଣ ହେବାର ପଥ ସୁଗମ ହୋଇପାରେ—ଏହିଠାରେହିଁ ମାନବ-ସୃଷ୍ଟିର ସାର୍ଥକତା ବୋଲି ତାଙ୍କର ମତ । ନାଟକଟି ଯେପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ, ସେହିପରି ଆମୋଦପ୍ରଦ । 'ମ୍ୟାନ୍ ଆଣ୍ଡ୍ ସୁପରମ୍ୟାନ୍' ପରି 'ହାର୍ଟ ବ୍ରେକ୍ ହାଉସ୍' (୧୯୧୯) ଓ 'ବ୍ୟାକ୍ ଟୁ ମେଥୁସେଲା' (୧୯୨୧)ର କଥାବସ୍ତୁ ମଧ୍ୟ ମଣିଷର ବିବର୍ତ୍ତନ । ଅନେକଙ୍କ ମତରେ 'ସେଣ୍ଟ ଜୋନ୍' (Saint Joan : ୧୯୨୩) ଲେଖକଙ୍କ ସର୍ବଶ୍ରେଷ୍ଠ ରଚନା । ଏହା ଏକ ଧର୍ମୀୟ ଟ୍ରାଜେଡ଼ି । ଫରାସୀ ବାଳିକା ଜୋନ୍ ନିଜର ଅସାଧାରଣ ଶକ୍ତିବଳରେ ଫରାସୀ ସୈନ୍ୟଙ୍କର ନେତୃତ୍ୱ ନେଇଛି; ପରାକ୍ରମଶାଳୀ ବ୍ରିଟିଶ ସୈନ୍ୟଙ୍କର ମୁକାବିଲା କରିଛି । କିନ୍ତୁ ଧର୍ମଧ୍ୱଜୀଙ୍କ ଆଖିରେ ସେ ହୋଇଛି ଡାକିନୀ; ସେ ରାଷ୍ଟ୍ରନାୟକଙ୍କର ଈର୍ଷାର କାରଣ ମଧ୍ୟ ହୋଇଛି । ତାକୁ ଜୀବନ୍ତ ଦଗ୍ଧ ହେବାକୁ ପଡ଼ିଥିଲେ ମଧ୍ୟ ଅବଶେଷରେ ସେ ଜଣେ ଖ୍ରୀଷ୍ଟୀୟ ସନ୍ଥ (Saint) ଭାବରେ ଗୃହୀତ ହୋଇଛି । ନାଟ୍ୟକାର ଏହି ଚରିତ୍ରଟିକୁ ଗୋଟିଏ ଅସାମାନ୍ୟ ଦେଶପ୍ରେମୀ ଓ ପ୍ରକୃତ ପ୍ରୋଟେଷ୍ଟାଣ୍ଟ ଭାବରେ ଚିତ୍ରଣ କରିଛନ୍ତି । ସଂଗଠିତ, ପାରମ୍ପରିକ ସମାଜ ବିରୁଦ୍ଧରେ ସେ ଏକ ଜ୍ୱଳନ୍ତ ପ୍ରତିବାଦ । ଜୋନ୍‌ର ବିଚାର ଦୃଶ୍ୟଟି ଅତ୍ୟନ୍ତ ମର୍ମସ୍ପର୍ଶୀ । ଶ'ଙ୍କ ଅନ୍ୟାନ୍ୟ ନାଟକ ମଧ୍ୟରେ 'ମିସ୍ ଆଲାୟେନ୍‌ସ୍'ରେ ଶିକ୍ଷା, 'ଦ ଡକ୍‌ଟର୍ସ ଡିଲେମା' (୧୯୦୬)ରେ ଚିକିତ୍ସାବୃତ୍ତି, 'ଦ ଆପଲ୍ କାର୍ଟ' (୧୯୨୮)ରେ ଗଣତନ୍ତ୍ର ତଥା ଆନ୍ତର୍ଜାତିକ ରାଜନୀତି, 'ମେଜର ବାର୍‌ବାରା' (୧୯୦୫) ଓ 'ଆଣ୍ଡ୍ରୋକ୍ଲସ୍ ଆଣ୍ଡ୍ ଲାୟନ' (୧୯୧୩)ରେ ଖ୍ରୀଷ୍ଟୀୟ ଧର୍ମ ଓ ନୈତିକତା, 'କ୍ୟାନ୍‌ଡିଡ଼ା'ରେ ବୈବାହିକ ସମ୍ପର୍କ ପରି ନାନା ସମସ୍ୟା ଉତ୍ଥାପିତ ।

ଲେଖକ ସ୍ୱୟଂ କେତୋଟି ନାଟକକୁ ପ୍ରୀତିପ୍ରଦ (pleasant) ଓ ଅନ୍ୟ କେତୋଟି ନାଟକକୁ ନିରାନନ୍ଦ (unpleasant) ନାଟକ ଭାବରେ ଚିହ୍ନିତ କରିଛନ୍ତି । ପ୍ରୀତିପ୍ରଦ ନାଟକ ମଧ୍ୟରେ 'ଆର୍ମସ୍ ଆଣ୍ଡ୍ ଦ ମ୍ୟାନ୍', 'କ୍ୟାନ୍‌ଡିଡ଼ା' ଓ 'ୟୁ ନେଭର୍ କେନ୍ ଟେଲ' ଅନ୍ତର୍ଗତ । ଏଗୁଡ଼ିକ ବିଶେଷ ସମସ୍ୟା ଆଲୋକିତ ନୁହେଁ; ବ୍ୟଙ୍ଗ-ବିଦ୍ରୂପ ତୀବ୍ର ନୁହେଁ; ନାଟକର ପରିସମାପ୍ତି ପ୍ରୀତିପ୍ରଦ । ଅନ୍ୟ ପକ୍ଷରେ 'ଓ୍ୱିଡ଼ୋଓ୍ୱାର୍‌ସ୍ ହାଉସ୍', 'ମିସେସ୍ ଓ୍ୱାରେନ୍‌ସ୍ ପ୍ରଫେସନ୍' ଓ 'ଦ ଫିଲାଣ୍ଡାରର୍' ବିଷୟବସ୍ତୁ ଦୃଷ୍ଟିରୁ ନିରାନନ୍ଦ ପର୍ଯ୍ୟାୟଭୁକ୍ତ ।

ଶ'ଙ୍କ ନାଟକୀୟ ବୈଶିଷ୍ଟ୍ୟ ପର୍ଯ୍ୟାଲୋଚନାବେଳେ ଇବସେନ୍‌ଙ୍କ ନାଟ୍ୟାଦର୍ଶ ଅବଶ୍ୟ ଉଲ୍ଲେଖଯୋଗ୍ୟ । ଇବସେନ୍‌ଙ୍କୁ ଅନୁସରଣ କରି ସେ ସମସ୍ୟାମୂଳକ ନାଟକ ଲେଖିଥିଲେ ।

ଶ' ବା ଇବ୍‌ସେନ୍‌ଙ୍କ ଆଗରୁ ଯେ ସମସ୍ୟାମୂଳକ ନାଟକ ଲେଖାହୋଇନଥିଲା, ତା ନୁହେଁ; କିନ୍ତୁ ସଚେତନ ଭାବରେ ଏଭଳି ଧାରାବାହିକ ଉଦ୍ୟମ ପୂର୍ବରୁ ହୋଇନଥିଲା । ନାଟକର ଗଠନ ଷେତ୍ରରେ ମଧ୍ୟ ଇବ୍‌ସେନ୍ ନୂତନତ୍ୱ ଆନୟନ କରିଥିଲେ । ପାରମ୍ପରିକ ନାଟକର କଥାବସ୍ତୁ କ୍ରମେ ଜଟିଳତର ହୋଇ ଶୀର୍ଷ ଓ ଗ୍ରନ୍ଥିମୋଚନ ଦେଇ ଉପସଂହାରରେ ପହଞ୍ଚିଥାଏ । କିନ୍ତୁ ଇବ୍‌ସେନ୍‌ଙ୍କ ନାଟକରେ ଗ୍ରନ୍ଥିମୋଚନ ସ୍ଥାନରେ ରହେ 'ଆଲୋଚନା'; ନାଟକରେ ଉତ୍ଥାପିତ ସମସ୍ୟାର ଆଲୋଚନା ପାଇଁ ଲେଖକ ଏଠାରେ ସୁଯୋଗ ସୃଷ୍ଟି କରିଥାନ୍ତି । ଶ'ଙ୍କ ଗଠନକୌଶଳରେ ମଧ୍ୟ ତାହାହିଁ ଦେଖାଯାଏ ।

ସମସ୍ୟା ଉପସ୍ଥାପନା ବ୍ୟତୀତ ଶ' ନାଟକ ମାଧ୍ୟମରେ ସ୍ୱକୀୟ ଚିନ୍ତାଧାରା (ideas) ପ୍ରକାଶ କରିବାକୁ ବ୍ୟାକୁଳ । ପ୍ରଚଳିତ ଚିନ୍ତାଧାରାକୁ ବିନା ଦ୍ୱିଧାରେ ଗ୍ରହଣ କରିନେବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ବିବାହ ତାଙ୍କ ଆଖିରେ ଏକ ଆଇନସିଦ୍ଧ ବେଶ୍ୟାବୃତ୍ତି; ଯୁଦ୍ଧର ଗୌରବ ଅର୍ଥହୀନ, ରୋମାଣ୍ଟିକ୍ ପ୍ରେମ ଏକ ପ୍ରତାରଣା, ଆବେଗ ଅପେକ୍ଷା ବୁଦ୍ଧିବୃତ୍ତି ହିଁ ମଣିଷର ଅଧିକ କାମ୍ୟ, ପ୍ରାଣଶକ୍ତିର ବିକାଶ ମଣିଷକୁ ଅତିମାନବ ସ୍ତରରେ ପହଞ୍ଚାଇପାରେ, ମଣିଷ ଦୀର୍ଘାୟୁ ହେଲେ ହିଁ ତାର ଇନ୍ଦ୍ରିୟକବଳରୁ ମୁକ୍ତ ହୋଇ ଉନ୍ନତ ଚିନ୍ତା କରିବାକୁ ସକ୍ଷମ ହେବ; ଫଳତଃ ଅନାବିଳ ଆନନ୍ଦ ପାଇପାରିବ—ଏହିପରି ନୂତନ ସ୍ୱକୀୟ ଚିନ୍ତାଧାରା ସମସାମୟିକ ସମାଜରେ ଚହଳ ପକାଇଥିଲା ।

ସମସ୍ୟାର ଅନୁଶୀଳନ ଓ ସ୍ୱକୀୟ ଚିନ୍ତାଧାରାର ପରିପ୍ରକାଶ ଉପରେ ଗୁରୁତ୍ୱ ଦେବାରୁ ଶ'ଙ୍କ ନାଟକର ଗଳାଂଶ କ୍ଷୀଣ । ଏ ସମ୍ବନ୍ଧରେ ଶ' ନୂତନ ଶକ୍ତ ଉପସ୍ଥାପନ କରନ୍ତି : "A play is anything which interests an audience for two hours and half on the stage of a theatre." ଏଣୁ ତାଙ୍କ ନାଟକକ୍ରିୟା (Action) କ୍ଷୀଣ ହୋଇପଡ଼ିବାରେ ବୈଚିତ୍ର କିଛି ନାହିଁ । ଏଥିରେ ନାଟକୀୟ ଦ୍ୱନ୍ଦ୍ୱ ବୋଲି ଯଦି କିଛି ଥାଏ, ତାହା ପାରମ୍ପରିକ ନାଟକର୍ ବାହ୍ୟ ଦ୍ୱନ୍ଦ୍ୱ ବା ଅନ୍ତର୍ଦ୍ୱନ୍ଦ୍ୱ ନୁହେଁ; ଅନ୍ୟ ପକ୍ଷରେ ଏହା ଚିନ୍ତାଧାରା ମଧ୍ୟରେ ସଂଘର୍ଷ ବା ପ୍ରଚଳିତ ବିଶ୍ୱାସ ସହ ନୂତନ ଚିନ୍ତାର ସଂଘର୍ଷ । ତାଙ୍କ ନାଟକରେ ଅନବରତ ତର୍କ-ପ୍ରତିଯୋଗିତା (debate) ଲାଗିରହିଥିଲା ଭଳି ମନେହୁଏ ।

ଶ'ଙ୍କ ନାଟ୍ୟପ୍ରତିଭା ଅନନ୍ୟ । ଉଦ୍ଦେଶ୍ୟମୂଳକ ଭାବରେ ନାଟକକୁ ସମସ୍ୟାଧର୍ମୀ କରିଥିଲେ ମଧ୍ୟ, ନିଜର ଚିନ୍ତାଧାରାର ପରିପ୍ରଚାର ପାଇଁ ଏହାକୁ ମାଧ୍ୟମ କରିଥିଲେ ମଧ୍ୟ ତାଙ୍କ ନାଟକ ପ୍ରଚାରଧର୍ମୀ ହୋଇପଡ଼ିନାହିଁ; କଳାତ୍ମକତା ହ୍ରାସ ପାଇନାହିଁ । ଲେଖକଙ୍କ ଅସାଧାରଣ ମଞ୍ଚଜ୍ଞାନ ଉକ୍ତ ନାଟକକୁ ପ୍ରଭାବଶାଳୀ କରିପାରିଛି । ବ୍ୟଙ୍ଗବିଦ୍ରୂପ ଓ ହାସ୍ୟରସଭରା ଚାତୁର୍ଯ୍ୟପୂର୍ଣ୍ଣ ସଂଳାପ ମଧ୍ୟରେ ନାଟକର ଗଳ୍ପଶୂନ୍ୟତା ବା କ୍ରିୟାହୀନତା ସହଜରେ ବୁଝାପଡ଼େନାହିଁ ।

ଚରିତ୍ରଚିତ୍ରଣ କ୍ଷେତ୍ରରେ ମଧ୍ୟ ଶ' ଅସାଧାରଣ ବ୍ୟୁତ୍ପତ୍ତି ପ୍ରକାଶ କରିଛନ୍ତି । ସେକସ୍-ପିଅରଙ୍କ ପରେ ଏଭଳି ବିବିଧ ଶ୍ରେଣୀର ଚରିତ୍ରକୁ ନୈପୁଣ୍ୟତାର ସହିତ ଉପସ୍ଥାପନ କରିବା

ଅନ୍ୟ କାହାର ପକ୍ଷରେ ସମ୍ଭବ ହୋଇନାହିଁ; କିନ୍ତୁ ସେକ୍ସପିଅରଙ୍କ ନାଟକୀୟ ଚରିତ୍ର ନୈସର୍ଗିକ ସ୍ୱକୀୟ ବ୍ୟକ୍ତିତ୍ୱରେ ଭାସ୍ୱର, ଶ'ଙ୍କ ନାଟକରେ ତା ହୋଇନାହିଁ—ଶ'ଙ୍କ ଚରିତ୍ର ପ୍ରତିନିଧିମୂଳୀୟ, ଗୋଟିଏ ଗୋଟିଏ ଚିନ୍ତାଧାରାର ବାହକ । ଅନେକ ସମୟରେ ସେମାନେ ଶ'ଙ୍କ ବ୍ୟକ୍ତିତ୍ୱର ଗୋଟିଏ ଗୋଟିଏ ପ୍ରତିବିମ୍ବ ବା ମୁଖପାତ୍ର ମାତ୍ର । ଏଣୁ କୁହାଯାଇଥାଏ ଯେ ଶ' ତାଙ୍କର ନାଟକସମୂହରେ ଗୋଟିଏ ମାତ୍ର ଚରିତ୍ର ରୂପାୟିତ କରିଛନ୍ତି; ସେ ଚରିତ୍ରଟି ସ୍ୱୟଂ ନାଟ୍ୟକାର ବର୍ଣ୍ଣାର୍ଡ଼ ଶ' । ସେକ୍ସପିଅରଙ୍କ ପରି ନାରୀ-ଚରିତ୍ର ଚିତ୍ରଣରେ ସେ ଅପୂର୍ବ ପାରଦର୍ଶିତା ଅର୍ଜନ କରିଛନ୍ତି ।

ନିଜ ନାଟକର ମୁଖବନ୍ଧ ଲେଖିବା ଶ'ଙ୍କର ଅଭ୍ୟାସଗତ ହୋଇପଡ଼ିଥିଲା । ଏଥିରେ ସେ ନାଟକରେ ପରିବେଷିତ ଚିନ୍ତାଧାରାର ସ୍ପଷ୍ଟୀକରଣ କରିବାକୁ ଉଦ୍ୟମ କରିଥାନ୍ତି । ନାଟକଗୁଡ଼ିକ ଅଭିନୀତ ହେବାର ସୁଯୋଗ ନଥିବାବେଳେ ଏହାର ସ୍ୱତନ୍ତ୍ର ଆବଶ୍ୟକତା ଥିଲା । ଶ'ଙ୍କ ଚିନ୍ତାଧାରା ବୁଝିବାପାଇଁ ନାଟକ ଅପେକ୍ଷା ଉକ୍ତ ମୁଖବନ୍ଧଗୁଡ଼ିକ ଅଧିକ ନିର୍ଭରଯୋଗ୍ୟ ।

ନାଟକରେ ଶ'ଙ୍କ ପ୍ରଦତ୍ତ ମଞ୍ଚ-ନିର୍ଦ୍ଦେଶନା ମଧ୍ୟ ସ୍ୱତନ୍ତ୍ର ଧରଣର । ଏଗୁଡ଼ିକ ଅତ୍ୟନ୍ତ ଦୀର୍ଘ; କିନ୍ତୁ ଖୁବ୍ ଯତ୍ନର ସହ ଲିଖିତ । ଅଭିନୟକୁ ପ୍ରଭାବଶାଳୀ କରିବାରେ ଏହା ସହାୟକ ହୋଇଥାଏ ।

ଜନ୍ ଗାଲ୍ସ୍ୱର୍ଦ୍ଦି (John Galsworthy : ୧୮୬୭-୧୯୩୩) ବିଂଶ ଶତାବ୍ଦୀର ଅନ୍ୟତମ ବଶିଷ୍ଟ ନାଟ୍ୟକାର । ନାଟକ ବ୍ୟତୀତ ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧ ରଚନାକ୍ଷେତ୍ରରେ ମଧ୍ୟ ସେ ଯଶସ୍ୱୀ ହୋଇଛନ୍ତି । ସେ ନିଜେ ଥିଲେ ଜଣେ ଅଭିଜ୍ଞ ବ୍ୟବସାୟୀ । ଆଇନଜ୍ଞଙ୍କର ଦୃଷ୍ଟିରେ ସମାଜ-ଜୀବନରେ ଲାଗିରହିଥିବା ବୈଷମ୍ୟ ଓ ଅବିଚାରକୁ ପ୍ରତ୍ୟକ୍ଷ କରି ସେ ଅତ୍ୟନ୍ତ ବ୍ୟଥିତ ହୋଇ-ପଡ଼ିଥିଲେ । ଏହାହିଁ ତାଙ୍କୁ ସମସ୍ୟାମୂଳକ ନାଟକ ଲେଖିବାପାଇଁ ପ୍ରେରଣା ଯୋଗାଇ-ଥିଲା ।



ଶ'ଙ୍କ ପରି ସମସାମୟିକ ସମାଜର ବିଭିନ୍ନ ସମସ୍ୟା ଗାଲ୍ସ୍ୱର୍ଦ୍ଦିଙ୍କ ନାଟକରେ ରୂପାୟିତ । ତାଙ୍କର ସୁପରିଚିତ ନାଟକ 'ସିଲ୍ଭର୍ ବକ୍ସ୍' (Silver Box : ୧୯୦୬)ର କଥାବସ୍ତୁ ଧନିକ ପ୍ରତି ଆଇନର ପକ୍ଷପାତ । ତାଙ୍କ ମତରେ ସେ ଦେଶରେ ଦୁଇଟି ଆଇନ ପ୍ରଚଳିତ ଥିବା କଥା କହିଛନ୍ତି—ଗୋଟିଏ ଧନୀ ପାଇଁ,

ଅନ୍ୟଟି ଦରିଦ୍ର । ଜୋନ୍‌ସ୍ ଜଣେ ବେକାର ଯୁବକ । ମଦ୍ୟପାନ କରିଥିବା ଅବସ୍ଥାରେ ସେ ଜ୍ୟାକ୍‌ର ଟଙ୍କା ଥଳି ଚୋରି କରେ । ଜ୍ୟାକ୍ ଧନୀକର ପୁତ୍ର, ସେ ବି ଜଣେ ସ୍ତ୍ରୀଲୋକର ଟଙ୍କାଥଳି ଚୋରିକରିଛି । ଟଙ୍କାବଳରେ ଜ୍ୟାକ୍ ଆଇନ୍‌କୁ ଫାଙ୍କିଦେଇଛି; କିନ୍ତୁ ଜୋନ୍‌ସର ଖାତିର ନାହିଁ । ଆଇନର ଏ ପକ୍ଷପାତିତା ପ୍ରତି ଲେଖକ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ସେ ଗରିବ ପ୍ରତି ସହାନୁଭୂତିଶୀଳ ହେଲେ ମଧ୍ୟ ତାଙ୍କର ଦୃଷ୍ଟିଭଙ୍ଗୀ ନିରପେକ୍ଷ । ଜୋନ୍‌ସ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବା ନିର୍ବୋଧ ନୁହେଁ, ସେ ଦୁଷ୍ଟ ପ୍ରକୃତିର; ଅନ୍ୟପକ୍ଷରେ ଜ୍ୟାକ୍‌ର ପିତା ଧନୀକ ହେଲେ ମଧ୍ୟ ବିଚାରବନ୍ତ । 'ଷ୍ଟ୍ରାଇଫ୍' (୧୯୦୯)ର କଥାବସ୍ତୁ ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ସଂଘର୍ଷ । ଏଥିରେ ମଧ୍ୟ ଲେଖକଙ୍କ ନିରପେକ୍ଷ ଦୃଷ୍ଟିଭଙ୍ଗୀ ପ୍ରକାଶପାଇଛି । 'ଜଷ୍ଟିସ୍' (୧୯୧୦) ତାଙ୍କର ଅନ୍ୟତମ ଶ୍ରେଷ୍ଠ ନାଟକ । ଏଥିରେ ସେ ପ୍ରଚଳିତ ବିଚାରପଦ୍ଧତି ଓ କାରାଗାରର ସଂସ୍କାରପାଇଁ ଆହ୍ୱାନ ଦେଇଛନ୍ତି । ସାମାଜିକ ପରିବେଶ ହିଁ ମଣିଷକୁ ଅପରାଧୀ କରି ଗଢ଼ିତୋଳେ ବୋଲି ସେ ଦର୍ଶାଇଛନ୍ତି । ଏହି ନାଟକଟିର ପ୍ରଭାବରେ ଇଂଲଣ୍ଡର କାରାଗାର ସଂସ୍କାର ହୋଇଥିଲା । 'ଲୟାଲ୍‌ଟିଜ୍' (୧୯୨୨)ର କଥାବସ୍ତୁ ସାଂପ୍ରଦାୟିକ ଆନୁଗତ୍ୟ । ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟର ଲୋକେ ଜିଉଙ୍କ ଉପରେ କି ଭଳି ଅସହିଷ୍ଣୁ ଓ ତାର ପରିଣାମ କି ଭଳି ଦୁଃଖାବହ, ଲେଖକ ତାହା ଦର୍ଶାଇଛନ୍ତି । ଧର୍ମୀୟ ଆନୁଗତ୍ୟ ବ୍ୟତୀତ ବ୍ୟାବସାୟିକ ଆନୁଗତ୍ୟ ଓ ବୈବାହିକ ଆନୁଗତ୍ୟ ପରି ବିଭିନ୍ନ ଆନୁଗତ୍ୟ ପ୍ରସଙ୍ଗ ଉତ୍‌ଥାପନ କରିଛନ୍ତି ।

ଗାଲ୍‌ସ୍‌ୱର୍ଦ୍ଦି ଅନ୍ତଃମାନରେ ମାନବବାଦୀ । ଦୁଇ ବିବଦମାନ ଗୋଷ୍ଠୀପ୍ରସଙ୍ଗ ଉତ୍‌ଥାପନ କରୁଥିବାବେଳେ ସେ ନିରପେକ୍ଷ ପ୍ରତୀୟମାନ ହେଲେ ମଧ୍ୟ ତାଙ୍କର ଅନ୍ୟାୟ ଓ ଅତ୍ୟାଚାର ବିରୋଧୀ ମନୋଭାବ ହୃଦୟଙ୍ଗମ କରିହୁଏ । ନୀତିଶିକ୍ଷା ମାଧ୍ୟମରେ ସମାଜ-ସଂସ୍କାର ସାଧନ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ; କିନ୍ତୁ ସେ ଶ'ଙ୍କ ପରି ପ୍ରଚାରଧର୍ମୀ ହୋଇ ପଡ଼ିନାହାନ୍ତି । ତାଙ୍କର ଉଦ୍ଦେଶ୍ୟ କ୍ଲୃପ୍ତ; ଏଣୁ ଅନେକ ସମୟରେ ବିବଦମାନ ସମସ୍ୟା ଉତ୍‌ଥାପନ କରିଦେଇ ଦର୍ଶକ ଉପରେ ତାର ନିଷ୍ପତ୍ତିର ଭାର ଛାଡ଼ିଦେଇଥାନ୍ତି ।

ଚିନ୍ତାଧାରା ହିଁ ଗାଲ୍‌ସ୍‌ୱର୍ଦ୍ଦିଙ୍କ ନାଟକର ମୁଖ୍ୟ ବିଷୟ; ତଦନୁଯାୟୀ ଚରିତ୍ର ଓ ଘଟଣା ପରିକଳ୍ପିତ । ସାଧାରଣ ଜୀବନରୁ ସେ ଚରିତ୍ର ନିର୍ବାଚିତ କରିଥାନ୍ତି; କିନ୍ତୁ ଗୋଟିଏ ଗୋଟିଏ ଚିନ୍ତାଧାରାର ବାହକ ହୋଇଥିବାରୁ ଏ ସବୁ ଚରିତ୍ର ବ୍ୟକ୍ତିବିଶେଷ ନ ହୋଇ ପ୍ରତିନିଧି-ସ୍ଥାନୀୟ ହୋଇପଡ଼ିଥାନ୍ତି । ଶ'ଙ୍କ ଚରିତ୍ର ସୃଷ୍ଟିରେ ବୁଦ୍ଧିମତ୍ତାର ଆଧିକ୍ୟ ଦେଖା-ଦେଇଥିବାବେଳେ ଗାଲ୍‌ସ୍‌ୱର୍ଦ୍ଦିଙ୍କ ଚରିତ୍ର ଆବେଗପ୍ରବଣ । ଏମାନେ ଲେଖକଙ୍କ ମୁଖପାତ୍ରରେ ପରିଣତ ହୋଇନାହାନ୍ତି । ଅନ୍ତର୍ଦ୍ୱନ୍ଦ୍ୱ ଚିତ୍ରଣକରିବା ସମୟରେ ସେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଉପରେ ଗୁରୁତ୍ୱ ଦେଇଥାନ୍ତି । ସଂଳାପ ସଂଯୋଜନାରେ ସେ ଆବେଗାତିଶଯ୍ୟ ବା ଅତିନାଟକୀୟତାକୁ ପ୍ରଶ୍ରୟ ଦେଇନାହାନ୍ତି । ଗାଲ୍‌ସ୍‌ୱର୍ଦ୍ଦିଙ୍କ ନାଟକ

ସମ୍ବନ୍ଧୀୟ ଚିନ୍ତାଧାରା ତାଙ୍କ ପ୍ରବନ୍ଧ ସଂକଳନ 'ଦ ଇନ୍ ଅଫ୍ ଟ୍ରାନ୍‌କୁଇଲିଟି' (୧୯୧୨)ରେ ଦେଖିବାକୁ ମିଳେ ।

ଗ୍ରାନ୍‌ଭିଲ୍ ବାର୍‌କର୍ (Harley Granville-Barker : ୧୮୭୭-୧୯୪୬) ଜଣେ ବିଶିଷ୍ଟ ନାଟ୍ୟବ୍ୟବସାୟୀ, ନାଟ୍ୟକାର ଓ ସେକ୍‌ସପିଅର୍ ନାଟ୍ୟବିଶାରଦ । ତେରବର୍ଷ ବୟସରୁ ରଙ୍ଗମଞ୍ଚ ସହ ତାଙ୍କର ସମ୍ପର୍କ । ଶ' ଓ ଗାଲ୍‌ସ୍‌ଓ୍ୱର୍ଦିଙ୍କ ନାଟକ ମଞ୍ଚସ୍ଥ କରି ସେ ତାର ପ୍ରସାରରେ ସାହାଯ୍ୟ କରିଛନ୍ତି । ତାଙ୍କର ନିଜସ୍ୱ ରଚନା ମଧ୍ୟରେ ଅନ୍ତତଃ ଗୋଟି ପାଞ୍ଚୋଟି ନାଟକ ବିଶେଷ ଗୁରୁତ୍ୱପୂର୍ଣ୍ଣ (The Marrying of Ann Leete : ୧୮୯୯, The Voysey Inheritance : ୧୯୦୫, Waste : ୧୯୦୭, The Madras House : ୧୯୧୦, The Secret Life : ୧୯୨୩) ।

ଦୈନନ୍ଦିନ ଜୀବନର ଚିତ୍ର ତାଙ୍କ ନାଟକର ମୁଖ୍ୟ ଉପାଦାନ । ସମସାମୟିକ ନାଟ୍ୟକାରଙ୍କ ତୁଳନାରେ ସେ ଅଧିକ ବାସ୍ତବବାଦୀ । ସ୍ୱାଭାବିକତା (naturalism) ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ଶ' ଓ ଗାଲ୍‌ସ୍‌ଓ୍ୱର୍ଦିଙ୍କପରି ସେ ମଧ୍ୟ ସମସ୍ୟାମୂଳକ ନାଟକ ଲେଖିଛନ୍ତି । ବିବାହ, ଯୌନଜୀବନ ଓ ନାରୀର ସାମାଜିକ ପ୍ରତିଷ୍ଠା ଆଦି ତାଙ୍କର ମୁଖ୍ୟ ଆଲୋଚ୍ୟ ବିଷୟ । ସମସ୍ୟାରେ ଛନ୍ଦିହୋଇ ସେ କଥାବସ୍ତୁ ଓ ମଞ୍ଚୋପଯୋଗିତା ପ୍ରତି ଲକ୍ଷ୍ୟ ଦେଇପାରିନାହାନ୍ତି; କିନ୍ତୁ ଚରିତ୍ରଚିତ୍ରଣ ଓ ବାସ୍ତବଧର୍ମୀ ସଂଳାପ ସଂଯୋଜନାରେ ସେ ସିଦ୍ଧହସ୍ତ ।

ଅସ୍‌କାର୍ ଓ୍ୱାଇଲ୍‌ଡ୍ (Oscar Wilde : ୧୮୫୬-୧୯୦୦) ଆୟାର୍‌ଲ୍ୟାଣ୍ଡ୍‌ର ଜଣେ ବିଶିଷ୍ଟ ଚିକିତ୍ସକଙ୍କ ସନ୍ତାନ । ଯୌବନରେ ସେ ଅସାମାନ୍ୟ ପ୍ରତିଭାର ପରିଚୟ ଦେଇଥିଲେ; କିନ୍ତୁ ଜୀବନ ତାଙ୍କର ଥିଲା ଉଚ୍ଛୃଙ୍ଖଳ । ଚାଳିଶ ବର୍ଷ ବୟସରେ ସମଲିଙ୍ଗୀ ମୈଥୁନ ଅପରାଧରେ ସେ କାରାବରଣ କରିଥିଲେ । କବିତା, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ନାଟକ ଆଦି ବିଭିନ୍ନ କ୍ଷେତ୍ରରେ ଲେଖନୀ ଚାଳନା କରିଥିଲେ ମଧ୍ୟ ନାଟ୍ୟକାର ଭାବରେ ହିଁ ସେ ସ୍ମରଣୀୟ ।



ଅସ୍‌କାର୍ ଓ୍ୱାଇଲ୍‌ଡ୍‌ଙ୍କ ନାଟକ ମଧ୍ୟରେ 'ଲେଡ଼ି ଓ୍ୱିଣ୍ଡର୍‌ମିଆର୍‌ସ୍ ଫାନ୍' (Lady Windermere's Fan : ୧୮୯୨), 'ଏ ଓମ୍ୟାନ ଅଫ୍ ନୋ ଇମ୍ପର୍‌ଟାନ୍‌ସ' (A Woman of no Importance : ୧୮୯୩), 'ଏନ୍ ଆଇଡିଆଲ୍ ହଜ୍‌ବ୍ୟାଣ୍ଡ' (An Ideal Husband : ୧୮୯୫)

ଓ 'ଦ ଇମ୍ପରଟାନ୍ସ ଅଫ୍ ବିଇଙ୍ଗ୍ ଆର୍ନେଷ୍ଟ୍' (The Importance of being Earnest : ୧୮୯୫) ଉଲ୍ଲେଖଯୋଗ୍ୟ । ନାଟକଗୁଡ଼ିକ ଶେରିଡ଼ାନ୍‌ଙ୍କ ଅଦବକାଇଦା ସମ୍ପର୍କିତ ନାଟକ (Comedy of manners) ଶ୍ରେଣୀର । ଏଥିରେ ଅଭିଜାତ ଶ୍ରେଣୀର ଜୀବନ ଚିତ୍ରିତ । ବସ୍ତୁବିନ୍ୟାସ ବା ଚରିତ୍ରଚିତ୍ରଣରେ ଉତ୍କର୍ଷ ଦେଖାଇପାରି ନାହାନ୍ତି, କେବଳ ବୌଦ୍ଧିକତାପୂର୍ଣ୍ଣ ସଂଳାପଯୋଜନା ଉପରେ ସେ ଗୁରୁତ୍ୱ ଦେଇଥାନ୍ତି ।

## ଆଇରିସ୍ ଜାତୀୟ ନାଟ୍ୟ ଆନ୍ଦୋଳନ

ଡବ୍ଲ୍ୟୁ ବି ୟେଟ୍‌ସ୍ ଖ୍ରୀ: ୧୮୯୨ରେ 'ଆଇରିସ୍ ନ୍ୟାସନାଲ ଲିଟାରାରି ସୋସାଇଟି' ପ୍ରତିଷ୍ଠା କରିଥିଲେ । ଏହି ଅନୁଷ୍ଠାନ ହିଁ 'ଆଇରିସ୍ ନ୍ୟାସ୍‌ନାଲ ଥିଏଟର'ର ଉଦ୍‌ଗାତା । ୟେଟ୍‌ସ୍‌ଙ୍କ ବ୍ୟତୀତ ସିଞ୍ଜ୍ ଓ ଲେଡି ଗ୍ରିଗୋରି ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ଏମାନେ ଖ୍ରୀ: ୧୯୦୪ରେ ଡାବଲିନରେ 'ଏବେ ଥିଏଟର' (Abbey Theatre) ସ୍ଥାପିତ କରି ସେଇଠାରେ ହିଁ ସ୍ୱରଚିତ ନାଟକ ମଞ୍ଚସ୍ଥ କରିଛନ୍ତି ।

ବାସ୍ତବଧର୍ମୀ ନାଟକର ବିରୋଧ କରିବା ଏମାନଙ୍କର ଅନ୍ୟତମ ଲକ୍ଷ୍ୟ । ସମସାମୟିକ ସମାଜଚିତ୍ର ଦେବା ପରିବର୍ତ୍ତେ ଏମାନେ ଆୟାରଲ୍ୟାଣ୍ଡ୍‌ର ଅତୀତକଥା ଓ ଲୋକକଥାରୁ ବିଷୟବସ୍ତୁ ଗ୍ରହଣ କରିଛନ୍ତି । ନଗର-ଜୀବନର ସମସ୍ୟାକ୍ଲିଷ୍ଟ ଚିତ୍ର ଦେବା ଅପେକ୍ଷା ଗ୍ରାମର ସରଳ କୃଷକଙ୍କ ଜୀବନଚିତ୍ର ପ୍ରଦାନ କରିଛନ୍ତି । ଏଗୁଡ଼ିକ ଆବେଗପ୍ରଧାନ ଓ କାବ୍ୟିକ ଗୁଣଯୁକ୍ତ ।

## ଗୀତିନାଟ୍ୟ

ଏଲିଜାବେଥୀୟ ଗୀତିନାଟ୍ୟ ରଚନାର ଧାରା ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଅବଲୁପ୍ତ ପ୍ରାୟ । ୟେଟ୍‌ସ୍ ଏ ଦିଗରେ ଉଦ୍ୟମ କରି ନାଟ୍ୟ-ପ୍ରତିଭା ଅଭାବରୁ ବିଫଳ ହୋଇଥିଲେ । ଜେମ୍ସ ଇ. ଏଲ୍‌ରୟ୍ ଫ୍ଲେକାର୍, ଜନ୍ ଡ୍ରିଙ୍କ୍‌ୱାଟର୍ ଆଦିଙ୍କ ପ୍ରଚେଷ୍ଟାରେ ଏହା ଲୋକପ୍ରିୟ ହୋଇପାରିଥିଲା; କିନ୍ତୁ ପରବର୍ତ୍ତୀ ଲେଖକ ଟି. ଏସ୍. ଏଲିଅଟ୍, କ୍ରିଷ୍ଟୋଫାର୍ ଫ୍ରାଇ ଓ ଡବ୍ଲ୍ୟୁ. ଏଚ୍. ଅଡେନଙ୍କ ଲେଖନୀରେ ଏହାର ଚରମ ବିକାଶ ସାଧିତ । ଏମାନଙ୍କ ମଧ୍ୟରେ ଏଲିଅଟ ହିଁ ସର୍ବଶ୍ରେଷ୍ଠ । ସେ ସାତଟି ଗୀତିନାଟ୍ୟ ରଚନା କରିଛନ୍ତି (Sweeny Agonistes, The Rock, Murder in the Cathedral, The Family Reunion, The Cocktail Party, The Confidential Clerk and The Elder Statesman.) । ଏଥିରୁ ଅଧିକାଂଶ ସଫଳ ନାଟକ ଗୌରବରୁ ବଞ୍ଚିତ ।

## ନାଟକରେ ଅଭିବ୍ୟକ୍ତିବାଦ (Expressionism)

ବାସ୍ତବଧର୍ମୀ ନାଟକର ପ୍ରତିକ୍ରିୟା ସ୍ୱରୂପ ବିଭିନ୍ନ ପାଶ୍ଚାତ୍ୟ ଦେଶରେ ନୂତନ ପରୀକ୍ଷା ନିରୀକ୍ଷା ଚାଲିଛି; ଅଭିବ୍ୟକ୍ତିବାଦୀ ନାଟ୍ୟରଚନା ଏହାର ଏକ ନିଦର୍ଶନ । ଏ ଧାରାର

ଲେଖକ ସମାଜ-ଜୀବନ ଅପେକ୍ଷା ବ୍ୟକ୍ତିମାନସ ଉପରେ ଅଧିକ ଗୁରୁତ୍ୱ ଆରୋପକରେ; ଚରିତ୍ରକୁ, ବାହ୍ୟଘଟଣା ବା କାର୍ଯ୍ୟକଳାପଦ୍ୱାରା ଫୁଟାଇବା ଅପେକ୍ଷା ତାର ଅନ୍ତଃସ୍ୱରୂପ ଉଦ୍‌ଘାଟନ ଉପରେ ଅଧିକ ଗୁରୁତ୍ୱ ଦିଏ । ନାଟକର ପ୍ରଚଳିତ ପ୍ରକାଶରୀତି ଏଥିପାଇଁ ପର୍ଯ୍ୟାପ୍ତ ମନେହୁଏନାହିଁ । ନାଟ୍ୟକାର ନୂତନ ଆଙ୍ଗିକ ଗ୍ରହଣକରେ । ପ୍ରତୀକର ଆବଶ୍ୟକତା ଦେଖାଦିଏ । ଭାଷା କେତେବେଳେ ପଦ୍ୟମୟ, କେତେବେଳେ ସାଙ୍କେତିକ ତ କେତେବେଳେ ଦୁର୍ବୋଧ । ଏ ସମସ୍ତର ଉଦ୍ଦେଶ୍ୟ ଜଟିଳ ମାନସିକ ଅବସ୍ଥାର ଉପସ୍ଥାପନା । ଏ ଜାତୀୟ ନାଟକ ବିଶେଷ ଆଦୃତ ହୋଇପାରିନାହିଁ । ଆମେରିକାର ନାଟ୍ୟକାର 'ଇଉଜିନ୍ ଓ ନିଲ୍' (Eugene O' Neil : ୧୮୮୮-୧୯୫୩) ଏ ଦିଗରେ ଅଗ୍ରଣୀ । ଇଂରେଜୀ ନାଟ୍ୟକାରଙ୍କ ମଧ୍ୟରେ 'ଓ କେସି' (O' Casey) ଓ ଜେ. ବି. ପ୍ରିଷ୍ଟ୍‌ଲିଙ୍କ ନାମ ଉଲ୍ଲେଖଯୋଗ୍ୟ ।

**ଗଦ୍ୟ :** (ଉପନ୍ୟାସ ବ୍ୟତୀତ)

ବିଂଶ ଶତାବ୍ଦୀରେ ଗଦ୍ୟ ସାହିତ୍ୟର ଚରମ ବିକାଶ ସାଧିତ । ସାମାଜିକ ତଥା ରାଜନୈତିକ କ୍ଷେତ୍ରରେ ବିଶ୍ୱବ୍ୟାପୀ ଆଲୋଡ଼ନ, ଚିନ୍ତା ଓ ଚେତନାର ଦ୍ରୁତପ୍ରସାର ଗଦ୍ୟର ଭୂମିକାକୁ ଗୁରୁତ୍ୱପୂର୍ଣ୍ଣ କରିଛି; ମୁଦ୍ରାଯନ୍ତ୍ରର ବ୍ୟାପକ ବ୍ୟବହାର ଏହାର ବିକାଶରେ ସହାୟତା କରିଛି । ବ୍ୟକ୍ତିନିଷ୍ଠ ଲଘୁ ପ୍ରବନ୍ଧ, ଜୀବନୀ, ଆତ୍ମଜୀବନୀ, ସମାଲୋଚନା, ଭ୍ରମଣ କାହାଣୀ ପରି ବିବିଧ ଶାଖା ବିସ୍ତାରକରି ଏହା ଏକ ବିଶାଳ ମହୀରୁହରେ ପରିଣତ ହୋଇଛି ।

**ପ୍ରବନ୍ଧ :**

ଜି. କେ. ଚେଷ୍ଟାରଟନ (Gilbert Keith Chesterton): ଖ୍ରୀ: ୧୮୭୪-୧୯୩୬) ଉପନ୍ୟାସ, ସମାଲୋଚନା, ଜୀବନୀ, କବିତା ଓ ନାଟକ ବ୍ୟତୀତ ପ୍ରାବନ୍ଧିକ ଭାବରେ ମଧ୍ୟ ସୁଖ୍ୟାତ । ସେ ବିଂଶ ଶତାବ୍ଦୀର ନାଗରିକ ହେଲେ ମଧ୍ୟ ମନୋପ୍ରାଣରେ ଥିଲେ ଭିକ୍‌ଟୋରିଆନ୍ । ଆଦିମ ମନୁଷ୍ୟଠାରୁ ମହିଳା ଦାରିଦ୍ର୍ୟର ପର୍ଯ୍ୟନ୍ତ ବିବିଧ ବିଷୟବସ୍ତୁ ତାଙ୍କ ପ୍ରବନ୍ଧର ଅନ୍ତର୍ଗତ । ସେ ରୋମାଣ୍ଟିକ୍ ଜୀବନଦର୍ଶନରେ ବିଶ୍ୱାସୀ; ପ୍ରାଚୀନ ତଥା ମଧ୍ୟଯୁଗୀୟ ବିଷୟ ପ୍ରତି ତାଙ୍କର ଆକର୍ଷଣ ଅତ୍ୟଧିକ । ରହସ୍ୟପୂର୍ଣ୍ଣ ହାସ୍ୟରସିକତା (quizzical humour) ଓ ବିରୋଧାଭାସସମ୍ବଳିତ (paradoxical) ସଂକ୍ଷିପ୍ତ, ପୀନଦ୍ଧ (epigrammatical) ପ୍ରକାଶଭଙ୍ଗୀ ତାଙ୍କ ଶୈଳୀର ବୈଶିଷ୍ଟ୍ୟ । ବିଂଶ ଶତାବ୍ଦୀର ସାମାଜିକ ଜୀବନର ଦୋଷତ୍ରୁଟି, ବିଶେଷତଃ ପ୍ରତାରଣା ଓ ମୂଢ଼ତାକୁ ସେ ବ୍ୟଙ୍ଗବିଦ୍ରୂପ କରିଛନ୍ତି । ତାଙ୍କ ବ୍ୟଙ୍ଗବିଦ୍ରୂପ ଗଠନମୂଳକ ଉଦ୍ଦେଶ୍ୟରେ ବ୍ୟବହୃତ । ଚେଷ୍ଟାରଟନ୍‌ଙ୍କ ପ୍ରବନ୍ଧ ସଂକଳନ ମଧ୍ୟରେ 'ଦି ଡିଫେଣ୍ଡାଣ୍ଟ' (୧୯୦୧), 'ହେରେ ଟିକ୍‌ସ' (୧୯୦୫), 'ଅଲ୍ ଥିଂସ୍ କନ୍‌ସିଡ଼ର୍‌ଡ଼୍' (୧୯୦୮), 'ଟ୍ରେମେଣ୍ଡସ୍ ଟ୍ରିଫଲ୍' (୧୯୦୯) ଓ 'ଏ ମିସ୍‌ସାଲିନ ଅଫ୍ ମେନ୍' (୧୯୧୨) ପ୍ରଧାନ ।

ହିଲୟାର୍ ବେଲକ୍ (Joseph Hilaire Belloc : ୧୮୭୦-୧୯୫୩) ଚେଷ୍ଟାରଟନଙ୍କ ପରି କବିତା, ଉପନ୍ୟାସ, ଭ୍ରମଣ କାହାଣୀ ଓ ଇତିହାସ ବ୍ୟତୀତ ପ୍ରବନ୍ଧ ରଚନାରେ ମଧ୍ୟ ମନୋଯୋଗୀ ହୋଇଛନ୍ତି । କବିର କଳ୍ପନା ଓ ଅନ୍ତର୍ଦୃଷ୍ଟି ଢାଳି ସେ ପ୍ରବନ୍ଧ ଲେଖନ୍ତି; ଭାଷା ସରଳ ଓ ସାବଲୀଳ । ତାଙ୍କ ପ୍ରବନ୍ଧସମୂହ 'ଆଭ୍ରିଲ' (Avril), 'ହିଲସ୍ ଆଣ୍ଡ୍ ଦ ସି', 'ଅନ୍ ନଥିଂ', 'ଅନ୍ ଏଭ୍ରିଥିଂ', 'ଅନ୍ ସମ୍‌ଥିଂ' ଆଦି ସଂକଳନରେ ପ୍ରକାଶିତ ।

ଇ. ଭି. ଲୁକାସ୍ (E. V. Lucas : ୧୮୬୮-୧୯୩୮) ବିଂଶ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ପ୍ରବନ୍ଧକାର । ଚାର୍ଲସ୍ ଲ୍ୟାମ୍ବଙ୍କ ଜୀବନୀ ଲେଖି, ତାଙ୍କ ରଚନାବଳୀ ତଥା ଚିଠିପତ୍ରର ସଂକଳନ କରି ଲୁକାସ୍ ଖ୍ୟାତି ଅର୍ଜନ କରିଛନ୍ତି । ପ୍ରବନ୍ଧ ରଚୟିତା ଭାବରେ ମଧ୍ୟ ସେ ସୁବିଦିତ । ତାଙ୍କର ପ୍ରବନ୍ଧ ସବୁ 'କ୍ୟାରେକ୍ଟର୍ ଆଣ୍ଡ୍ କମେଡ଼ି', 'ଓଲ୍ଡ୍ ଲ୍ୟାମ୍ପ୍‌ସ୍ ଫର ନିଉ', 'ଲଏଟାରିଂ ହାରଭେଷ୍ଟ' ଓ 'କ୍ଲାଉଡ଼୍ ଆଣ୍ଡ୍ ସିଲ୍‌ଭର୍' ଆଦି ସଂକଳନରେ ପ୍ରକାଶିତ ।

ଲୁକାସ୍ ଲ୍ୟାମ୍ବଙ୍କୁ ଅନୁସରଣ କରିଥିଲେ ମଧ୍ୟ ଉଭୟଙ୍କ ଶୈଳୀ ମଧ୍ୟରେ ପାର୍ଥକ୍ୟ ଅବଶ୍ୟ ରହିଛି । ଲୁକାସ୍‌ଙ୍କ ପ୍ରବନ୍ଧରେ ସହରିଆ ଦୃଷ୍ଟିଭଙ୍ଗୀ ଓ ରକ୍ଷଣଶୀଳତା (urbanity and sophistication) ଅତି ସ୍ପଷ୍ଟ, ଯାହାକି ଲ୍ୟାମ୍ବଙ୍କ ରଚନାରେ ନାହିଁ । ବୌଦ୍ଧିକତା, କୌତୁକ କଳ୍ପନା ଓ ହାସ୍ୟରସିକତା ତାଙ୍କ ରଚନାକୁ ସୁଖପାଠ୍ୟ କରିଛି । କେବେ କେବେ ତାଙ୍କ ହାସ୍ୟରସ ଅତ୍ୟନ୍ତ ତୀବ୍ର ଓ ମର୍ମଭେଦୀ । 'ଦୋଜ୍ ଥାର୍ଟି ମିନିଟ୍‌ସ୍' ରଚନାଟିରେ ଆମେ ଏହାର ଉଦାହରଣ ଦେଖୁ ।

ଏ. ଜି. ଗାର୍ଡିନର୍ (A. G. Gardiner : ୧୮୬୫-୧୯୪୬)ଙ୍କ ଛଦ୍ମନାମ ଆଲ୍‌ଫା ଅଫ୍ ଦ ପ୍ଲାଓ (Alpha of the Plough) । ପ୍ରାବନ୍ଧିକ ଭାବରେ ସେ ଅତ୍ୟନ୍ତ ଜନପ୍ରିୟ । ତାଙ୍କର ପ୍ରବନ୍ଧ ସଂକଳନ ମଧ୍ୟରେ 'ପେବ୍‌ଲ୍‌ସ୍ ଅନ୍ ଦ ସୋର୍' (୧୯୧୬) ଓ 'ଲିଭ୍‌ସ୍ ଇନ୍ ଦ ଉଇଣ୍ଡ' (୧୯୨୦) ଉଲ୍ଲେଖଯୋଗ୍ୟ ।

ଗାର୍ଡିନର୍‌ଙ୍କ ଅଧିକାଂଶ ପ୍ରବନ୍ଧ ଶିକ୍ଷାମୂଳକ; କିନ୍ତୁ ଲେଖକଙ୍କ ଶିକ୍ଷାଦେବା ଉଦ୍ଦେଶ୍ୟଟି ସହଜରେ ଧରିପଡ଼େନାହିଁ; ପାଠକଙ୍କୁ ଆନନ୍ଦ ଦେବା ଉପରେ ସେ ଗୁରୁତ୍ୱ ଆରୋପ କରିଥାନ୍ତି; ବିଭିନ୍ନ ଘଟଣା ଓ ଉପାଖ୍ୟାନର ସମାବେଶରେ ପ୍ରବନ୍ଧକୁ ସ୍ୱାଦ୍ୟ କରିଥାନ୍ତି । ସଫଳ, ବ୍ୟକ୍ତିନିଷ୍ଠ ପ୍ରବନ୍ଧକାର ଭାବରେ ସେ ପାଠକ ସହିତ ଆତ୍ମୀୟତା ପ୍ରତିଷ୍ଠା କରିଥାନ୍ତି । ତାଙ୍କର ହାସ୍ୟ ଓ ବ୍ୟଙ୍ଗ ଆଘାତ ଦେବା ଅପେକ୍ଷା ବେଶି ଆନନ୍ଦହିଁ ପ୍ରଦାନ କରିଥାଏ । ଲେଖାଗୁଡ଼ିକ ଆଳାପଧର୍ମୀ; ଉପଯୁକ୍ତ ଶବ୍ଦ ଚୟନ ଉପରେ ଗୁରୁତ୍ୱ ଦେଲେ ମଧ୍ୟ ପ୍ରକାଶଭଙ୍ଗୀ ଅତ୍ୟନ୍ତ ସରଳ । ତାଙ୍କ ମତରେ ଭାବଧାରାକୁ କ୍ଲିଷ୍ଟ ଶବ୍ଦରେ ଆଚ୍ଛାଦନ କରିବା ଚନାବାଦାମକୁ ହାତୁଡ଼ିରେ ଫଟାଇବାଭଳି ଅସ୍ପୃହଣୀୟ ।

ରୋବାର୍ଟ ଲଣ୍ଡ୍ (Robert Lynd : ୧୮୭୯-୧୯୪୯)ଙ୍କ ପ୍ରବନ୍ଧ ସଂକଳନ ମଧ୍ୟରେ 'ଦ ପେଜ୍ସ ଅଫ୍ ଇଗ୍ନୋରେନ୍ସ' (୧୯୨୧), 'ସିଲେକ୍ଟେଡ୍ ଏସେଜ୍,' 'ଦ ଲିଟ୍ଲ୍ ଏଞ୍ଜେଲ୍' (୧୯୨୬) ଓ ଇନ୍ଟ୍ ଦ ଫାଇନ୍ ଓ୍ୱାର୍ଲ୍ଡ' (୧୯୩୦) ଉଲ୍ଲେଖ-ଯୋଗ୍ୟ । ଲଣ୍ଡ୍ ଲ୍ୟାମ୍ବ୍ଙ୍କ ପରି ବ୍ୟକ୍ତିନିଷ୍ଠ ଧାରାର ଲେଖକ । ବ୍ୟକ୍ତିଗତ ଜୀବନର ରୁଚି, ବିତୃଷ୍ଣା, ଆକର୍ଷଣ ଓ ବିକର୍ଷଣ କଥା ସେ ଦ୍ୱିଧାହୀନ ଭାବରେ ପ୍ରକାଶ କରିଥାନ୍ତି; ତାଙ୍କ ବ୍ୟକ୍ତିତ୍ୱର ସ୍ପର୍ଶ ପ୍ରବନ୍ଧର ଛନ୍ଦେ ଛନ୍ଦେ ମିଳିଥାଏ । ବ୍ୟକ୍ତିଗତ ଜୀବନର ଅନୁଭୂତି କହୁଥିବାବେଳେ ଅହମିକାର ଲେଶମାତ୍ର ଚିହ୍ନ ଦେଖିବାକୁ ମିଳେନାହିଁ । ଜୀବନ ସମ୍ବନ୍ଧୀୟ ତାଙ୍କର ମତାମତ ସର୍ବକାଳୀନ । ସେ ଅତ୍ୟନ୍ତ ଉଦାର ଓ ମାନବବାଦୀ । ତଥାପି ଅଶ୍ଳୀଳତା, ଅସାଧୁତା, ଅମାର୍ଜିତ ରୁଚି, ନିଷ୍ଠୁରତା ଓ ପାଶବିକତା ପ୍ରତି ଶ୍ଳେଷାତ୍ମକ ବାକ୍ୟ ପ୍ରୟୋଗ କରିବାକୁ ସେ କୁଣ୍ଠାବୋଧ କରନାହାନ୍ତି । ସେ ଜଣେ ବିଶିଷ୍ଟ ସାମ୍ବାଦିକ ହେଲେ ମଧ୍ୟ ତାଙ୍କ ପ୍ରବନ୍ଧ ସମ୍ବାଦ ପରିବେଷଣର ବାବଦୁକତାରୁ ମୁକ୍ତ ।

ମାକ୍ସ୍ ବେୟାରବମ୍ (Max Beerbohm : ୧୮୭୨-୧୯୫୬) ବିଂଶ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ପ୍ରାବନ୍ଧିକ । ଅନ୍ୟ ପ୍ରାବନ୍ଧିକଙ୍କ ତୁଳନାରେ ତାଙ୍କ ଲେଖା ଅଧିକ ସ୍ୱକୀୟତାରେ ଭାସ୍ୱର । ସମସାମୟିକ ସମାଜ ତଥା ଭିକ୍ଟୋରୀୟ ଜୀବନଧାରାର ଦୋଷ ତ୍ରୁଟି ପ୍ରତି ସେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ଅଦ୍ଭୁତରୁକ ଆତ୍ମବଡ଼ିମା ଓ ଛଳନା ମୁଖ୍ୟତଃ ତାଙ୍କର ଶରବ୍ୟ । ବ୍ୟଙ୍ଗ, ବିଦ୍ରୂପ ଓ ହାସ୍ୟ ଉଚ୍ଚକୋଟୀର । ତାଙ୍କ ସମାଲୋଚନା ଭିତରେ ଗଭୀର ସହାନୁଭୂତିଶୀଳତାର ସ୍ପର୍ଶ ମିଳେ । ଶବ୍ଦଚୟନ ସୃଷ୍ଟିରେ ସେ ଅନନୁକରଣୀୟ; ଭାଷା ଅତ୍ୟନ୍ତ ସଯତ ଓ ପରିମିତ । ତାଙ୍କ ପ୍ରବନ୍ଧଗୁଡ଼ିକ, 'ଦ ଓ୍ୱାର୍କସ୍ ଅଫ୍ ମାକ୍ସ୍ ବେୟାରବମ୍' (୧୮୯୬), 'ମୋର୍' (More: ୧୮୯୯), 'ୟେଟ୍ ଏଗେନ୍' (୧୯୦୯) ଓ 'ଆଣ୍ଡ ଇଭନ୍ ନାଓ' (୧୯୨୦)ରେ ସଂକଳିତ । ଏତଦ୍‌ବ୍ୟତୀତ ତାଙ୍କର ବେତାର ଭାଷଣ-ଗୁଡ଼ିକ 'ମେନ୍ଲି ଅନ୍ ଦ ଏୟାର୍' ପୁସ୍ତକରେ ସଂକଳିତ ।

ଜେ. ବି. ପ୍ରିଷ୍ଟ୍ଲି (J. B. Priestley : ଜନ୍ମ ୧୮୯୪) ଉପନ୍ୟାସ, ନାଟକ, ଭ୍ରମଣ କାହାଣୀ ଆଦି ବିଭିନ୍ନ କ୍ଷେତ୍ରରେ ଲେଖନୀ ଚାଳନା କରିଛନ୍ତି । ଚେଷ୍ଟାକୃତ ଭାବରେ ସେ ପ୍ରକାଶଭଙ୍ଗୀକୁ ଯଥାସମ୍ଭବ ସରଳ କରିଥାନ୍ତି । ଅଧ୍ୟୟନ ତାଙ୍କର ଏକ ନିଶା । ଏଣୁ ପ୍ରବନ୍ଧ ମଧ୍ୟରେ ବିବିଧ ଗ୍ରନ୍ଥରୁ ନାନା ବିଷୟର ଅବତାରଣା ଦେଖିବାକୁ ମିଳେ । ଏ ଦୃଷ୍ଟିରୁ ସେ ହାଜ୍‌ଲିଟ୍‌ଙ୍କ ସହ ତୁଳନୀୟ ।

**ସମାଲୋଚନା :**

ବିଂଶ ଶତାବ୍ଦୀର ସମାଲୋଚନା ସାହିତ୍ୟର ଦୁଇଟି ଧାରା—ପାରମ୍ପରିକ ଓ ଆଧୁନିକ । ପାରମ୍ପରିକ ବା ଊନବିଂଶ ଶତାବ୍ଦୀର ସମାଲୋଚନା ରୀତି ଅନୁସରଣ କରିଛନ୍ତି ସେଣ୍ଟ୍ସବାରି, ଏ. ସି. ବାଡ୍ଲେ, ଏଲ୍ଟନ୍, ସାର୍ ଓ୍ୱାଲ୍ଟର ରାଲେ, ଆର୍ଥର କ୍ୱିଲର୍

କାଉଚ, ଟେମ୍ପଲ୍ ସ, ଗ୍ରିଯ୍ସରସନ, ଏଲିଅଟ ଓ ସେଲନ୍ କୋର୍ଟ ପ୍ରମୁଖ । ଅନ୍ୟ ପକ୍ଷରେ ଆଧୁନିକ ଧାରାର ପ୍ରସାର ଘଟାଇଛନ୍ତି, ଆଇ.ଏ. ରିଚାର୍ଡ଼ସ୍, ଏଫ୍. ଆର୍. ଲିଭିସ୍, ଟି. ଏସ. ଇଲିଅଟ୍, ଜେ. ସି. ନାଇଟ୍ ଓ ଅନ୍ୟମାନେ ।

ପାରମ୍ପରିକ ସମାଲୋଚକଙ୍କ ମତାମତ ବ୍ୟକ୍ତିଗତ ପ୍ରତିକ୍ରିୟା ବା ଅଭିରୁଚି ପ୍ରଭାବିତ । ବୈଜ୍ଞାନିକ ଗବେଷଣା ମନୋବୃତ୍ତି ଏମାନଙ୍କ ନିକଟରେ ଦେଖାଯାଏନାହିଁ । ଏମାନଙ୍କ ମଧ୍ୟରେ ଜର୍ଜ ସେଣ୍ଟସ୍‌ବାରି (୧୮୪୫-୧୯୩୩) ବିଶିଷ୍ଟ ସ୍ଥାନ ଅଧିକାର କରନ୍ତି । ତାଙ୍କ ରଚନା ମଧ୍ୟରେ ଏଲିଜାବେଥାନ୍ ଲିଟରେଚର୍ (୧୮୮୭), ଏ ହିସ୍‌ଟ୍ରି ଅଫ୍ କ୍ରିଟିସିଜ୍‌ମ୍ (୧୯୦୦-୪), ହିସ୍‌ଟ୍ରି ଅଫ୍ ଇଂଲିସ୍ ପ୍ରୋଜ୍ (୧୯୦୬) ଓ ଦ ପିସ୍ ଅଫ୍ ଦ ଅଗଷ୍ଟାନ୍ (୧୯୧୬) ଉଲ୍ଲେଖଯୋଗ୍ୟ ।

ଏ. ସି. ବ୍ରାଡ୍‌ଲେ (୧୮୫୧-୧୯୩୫) ସେକ୍‌ସପିଅରଙ୍କ ଟ୍ରାଜେଡ଼ି ସମ୍ବନ୍ଧରେ ବିଶେଷଜ୍ଞ । ତାଙ୍କର 'ସେକ୍‌ସପିଅରିଆନ୍ ଟ୍ରାଜେଡି' (୧୯୦୪) ଓ 'ଅକ୍‌ସ୍‌ଫୋର୍ଡ ଲେକଚର୍ସ ଅନ୍ ପଏଟ୍ରି' (୧୯୦୯) ସମାଲୋଚନା ସାହିତ୍ୟକୁ ଉଲ୍ଲେଖଯୋଗ୍ୟ ଅବଦାନ ।

ସାର୍ ଆର୍ଥର୍ କୁଇଲର୍ କାଉଚ୍ (୧୮୬୩-୧୯୪୪) କେମ୍ବ୍ରିଜ୍‌ର ଇଂରେଜୀ ପ୍ରଫେସର ଥିଲେ । ତାଙ୍କର ବହୁ ସାହିତ୍ୟିକ ଅଭିଭାଷଣ ଗ୍ରନ୍ଥ ଆକାରରେ ସଂକଳିତ । ସମାଲୋଚନାରେ ଭାଷଣ ଦେବାର ଭଙ୍ଗୀ ପରିଦୃଷ୍ଟ । ଚନ୍ଦନଖଣ୍ଡରେ ପ୍ରକାଶିତ 'ଷ୍ଟଡ଼ିଜ୍ ଇନ୍ ଲିଟରେଚର୍', 'ସେକ୍‌ସପିଅର୍ସ ଓ୍ୱାର୍କମ୍ୟାନ୍‌ସିପ୍' (୧୯୧୮) ଓ 'ଅନ୍ ଦ ଆର୍ଟ ଅଫ୍ ରିଡ଼ିଂ' (୧୯୨୦) ତାଙ୍କର ବିଶିଷ୍ଟ କୃତି ।

ଆଧୁନିକ ଧାରାର ସମାଲୋଚକଙ୍କ ମଧ୍ୟରେ ଆଇ. ଏ. ରିଚାର୍ଡ଼ସ (I. A. Richards ; ଜନ୍ମ ୧୮୯୩) ଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ସମାଲୋଚନାକୁ ସେ ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ କରିଛନ୍ତି । ଆମେରିକା ଓ ଇଉରୋପରେ ବିଶେଷ ପ୍ରଭାବ ପକାଇଥିବା ନବ କ୍ରିଟିସିଜ୍‌ମ୍ (New Criticism)ର ସୂତ୍ରପାତ ସେଇ ହିଁ କରିଛନ୍ତି । ତାଙ୍କର ସମାଲୋଚନା ବିଶ୍ଳେଷଣାତ୍ମକ (Analytical) । ଇତିପୂର୍ବରୁ ସମାଲୋଚନା ସ୍ୱଜ୍ଞା (intuition) ଓ କେତେକ ଧରାବନ୍ଧା ନିୟମ ଉପରେ ନିର୍ଭର କରୁଥିଲା; କିନ୍ତୁ ଆଇ. ଏ. ରିଚାର୍ଡ଼ସ୍ ବିଶ୍ଳେଷଣ ବ୍ୟାଖ୍ୟା ଓ ମୂଲ୍ୟାୟନ (analysis, interpretation and valuation) ଉପରେ ଗୁରୁତ୍ୱ ଦେଲେ । ଉକ୍ତ ଅଧ୍ୟୟନ ମନସ୍ତତ୍ତ୍ୱଭିତ୍ତିକ । ରିଚାର୍ଡସ୍‌ଙ୍କ ମତରେ କବି ନିଜର ଅଭିଜ୍ଞତାକୁ ସୁଶୃଙ୍ଖଳ ଭାବରେ କବିତାରେ ପ୍ରକାଶ କରିଥାଏ । ପାଠକଠାରେ ତତ୍ତୁଲ୍ୟ ମାନସିକ ଅବସ୍ଥା ସୃଷ୍ଟି କରିପାରିବାରେ ହିଁ ତାର ସାର୍ଥକତା । ସମାଲୋଚକ ଲେଖକର ଏହି ମାନସିକ କ୍ରିୟା ବା ଅନୁଭୂତିକୁ ଆତ୍ମସ୍ଥ କରି ତାର ମୂଲ୍ୟାୟନ କରିବା ଉଚିତ ।

ପ୍ରାକ୍‌ଟିକାଲ୍ କ୍ରିଟିସିଜ୍‌ମ୍ (Practical Criticism : ୧୯୨୯) ତାଙ୍କର ବହୁ ଆଲୋଚିତ ସମାଲୋଚନା ଗ୍ରନ୍ଥ । ଏଥିରେ ସେ ଏକ ନୂତନ ପରୀକ୍ଷା ଚଳାଇଥିବାର

ଦେଖାଯାଏ । କବିଙ୍କର ନାମ ବା ସମୟର ସୂଚନା ନ ଦେଇ କେବଳ ଗୁଡ଼ିଏ କବିତାର ସମାଲୋଚନା ସେ ବିଭିନ୍ନ ଗ୍ରନ୍ଥଙ୍କଦ୍ୱାରା କରାଇଛନ୍ତି । ଏହି ଭାବରେ ସେ ସମାଲୋଚନାକୁ ଇତିହାସ କବଳରୁ ମୁକ୍ତ କରିଛନ୍ତି । ତାଙ୍କର ଅନ୍ୟ ଦୁଇଟି ସମାଲୋଚନା ଗ୍ରନ୍ଥ 'ପ୍ରିନ୍ସିପଲସ୍ ଅଫ୍ ଲିଟାରାରି କ୍ରିଟିସିଜମ୍' (୧୯୨୪) ଓ 'ସାଇନ୍ସ୍ ଆଣ୍ଡ୍ ପଏଟ୍ରି' (୧୯୨୫) ସେହିପରି ପ୍ରଭାବଶାଳୀ ।

ଟି. ଏସ୍. ଇଲିଅଟ୍‌ଙ୍କ ପ୍ରଭାବ ବିଂଶ ଶତାବ୍ଦୀର ସମାଲୋଚନା ସାହିତ୍ୟରେ ସର୍ବାଧିକ । ଆଇ. ଏ. ରିଚାର୍ଡ଼ସ୍‌ଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଛି । ଆମେରିକାର ମାନବବାଦୀ ସମାଲୋଚନା ଧାରାର ନାୟକଦ୍ୱୟ ପ୍ରଫେସର ଅର୍‌ଭିଂ ବାବିଟ୍ ଓ ପଲ୍ ଏଲ୍‌ମାର୍ ମୋରଙ୍କୁ ମଧ୍ୟ ସେ ଅନୁସରଣ କରିଛନ୍ତି । ତାଙ୍କ ସମାଲୋଚନା ଗ୍ରନ୍ଥ ମଧ୍ୟରେ 'ଦି ସେକ୍ରେଡ୍ ଉଡ୍' (୧୯୨୦), ସିଲେକ୍ଟେଡ୍ ଏସେଜ୍ (୧୯୩୨), ଦି ଇଉସ୍ ଅଫ ପଏଟ୍ରି ଆଣ୍ଡ୍ ଦି ଇଉସ୍ ଅଫ କ୍ରିଟିସିଜମ୍ (୧୯୩୩), ଏଲିଜାବେଥାନ୍ ଏସେଜ୍ (୧୯୩୪), ଆଫ୍‌ଟର୍ ଷ୍ଟ୍ରେଞ୍ଜ୍ ଗଡ଼ସ୍ (୧୯୩୪), ପଏଣ୍ଟସ ଅଫ ଭିଉ (୧୯୪୧) ଓ ହୁଆଟ୍ ଇଜ୍ ଏ କ୍ଲାସିକ୍ (୧୯୪୫) ଉଲ୍ଲେଖଯୋଗ୍ୟ ।

ଇଲିଅଟ୍ ମନୋପ୍ରାଣରେ ଥିଲେ କ୍ଲାସିକ । ରୋମାଣ୍ଟିକ୍ ସମାଲୋଚନା ବିରୁଦ୍ଧ ବିଦ୍ରୋହୀ ହୋଇ ସେ ଶୃଙ୍ଖଳା, ସଂଯମ, (balance) ଓ ପ୍ରଯୁକ୍ତିମୂଳକ ଉପରେ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ମତରେ ସାହିତ୍ୟ ସୃଷ୍ଟିର ଏକ ଅବିଚ୍ଛିନ୍ନ ଧାରା ରହିଛି । ଏହା ଭିତରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଏକାକାର ହୋଇଯାଏ । ଏଣୁ ବର୍ତ୍ତମାନର ସାହିତ୍ୟିକ କୃତି ବିଚାର କରିବାବେଳେ ଅତୀତ ଓ ଭବିଷ୍ୟତକୁ ଦୃଷ୍ଟି ଆଗରେ ରଖିବା ଉଚିତ । ପ୍ରତ୍ୟେକ ଯୁଗରେ ପୂର୍ବ ସୃଷ୍ଟିଙ୍କ କୃତିତ୍ୱର ମୂଲ୍ୟାୟନ ହେବା ଉଚିତ ବୋଲି ତାଙ୍କର ମତ । ଏ ଦାୟିତ୍ୱ ନିଜ ହାତକୁ ନେଇ ସେ ପ୍ରାଚୀନ କବିଙ୍କର ମୂଲ୍ୟାୟନ କରିଛନ୍ତି । ଡାନ୍, ଡ୍ରାଇଡ଼େନ୍ ଓ ବେନ୍ ଜନ୍‌ସନ୍‌ଙ୍କୁ ବିସ୍ମୃତିର ଗର୍ଭରୁ ଉଦ୍ଧାରକରି ପୁନଃ ପ୍ରତିଷ୍ଠିତ କରିଛନ୍ତି । ମିଲ୍‌ଟନ୍‌ଙ୍କ କାବ୍ୟର ଉତ୍କର୍ଷ ସମ୍ବନ୍ଧରେ ପ୍ରଥମେ ସେ ପ୍ରଶ୍ନ ଉଠାଇଛନ୍ତି ।

ଆବେଗକୁ ଯଥାଯଥଭାବରେ ପ୍ରକାଶ କରିବାପାଇଁ ଇଲିଅଟ୍ ଅବ୍‌ଜେକ୍‌ଟିଭ୍ କୋ-ରିଲେଟିଭ୍ (objective co-relative)ର ଆବଶ୍ୟକତା ଦର୍ଶାଇଛନ୍ତି । 'ଓ୍ୱେଷ୍ଟଲ୍ୟାଣ୍ଡ'ର କାବ୍ୟିକ ବୈଶିଷ୍ଟ୍ୟ ପ୍ରସଙ୍ଗରେ ଏହା ଆଲୋଚିତ । ଏହାର ଅଭାବରେ ସେକ୍ସପିଅର୍‌ଙ୍କ 'ହାମ୍‌ଲେଟ୍' ଏକ ଅସଫଳ କୃତିରେ ପରିଣତ ହୋଇଛି ବୋଲି ତାଙ୍କର ମତ ।

ଏଫ୍. ଆର. ଲିଭିସ୍ (F. R. Leavis : ଜନ୍ମ ୧୮୯୫)ଙ୍କ ସମାଲୋଚନାର ବୈଶିଷ୍ଟ୍ୟ ହେଉଛି ଆଲୋଚ୍ୟ ଗ୍ରନ୍ଥର ଅର୍ଥବୋଧ ଉପରେ ଗୁରୁତ୍ୱ ଦେବା । ବାହାରର ସେ ପାଠକକୁ ଆଲୋଚ୍ୟ ମୂଳଗ୍ରନ୍ଥକୁ ଫେରାଇ ନଅନ୍ତି । ମୂଳଗ୍ରନ୍ଥର ଗଭୀର ଅନୁଶୀଳନ ନକରି ତା ଉପରେ ମନ୍ତବ୍ୟ ଦେଇଯିବାର ସେ ଘୋର ବିରୋଧୀ । ଇଲିଅଟ୍‌ଙ୍କ ଐତିହ୍ୟ ଚେତନା

ଓ ରଗ୍ସ୍‌ର୍ଡ୍‌ସ୍‌ଙ୍କ ନୈତିକ ଚେତନା ତାଙ୍କଠାରେ ଦେଖାଯାଏ । ବିଶ୍ଳେଷଣ ଓ ଯୌକ୍ତିକତା ଉପରେ ମଧ୍ୟ ସେ ଗୁରୁତ୍ୱ ଦେଇଥାନ୍ତି । ଆଲୋଚନା ମାଧ୍ୟମରେ ସେ ପ୍ରଥମେ ଇଲିଅଟ୍‌ଙ୍କ ପ୍ରତିଭାକୁ ସ୍ୱୀକୃତି ଦେଇଥିଲେ । ତାଙ୍କ ସମାଲୋଚନା ଗ୍ରନ୍ଥ ମଧ୍ୟରେ 'ନିଉ ବିଅରିଂସ୍ ଇନ୍ ଇଂଲିଶ୍ ପଏଟ୍ରି', 'ରି ଭାଲ୍ୟୁଏସନ୍', 'ଦି କମନ୍ ପାର୍ସୁଟ୍', 'ଡି. ଏଚ୍. ଲରେନ୍ସ'-ଓ 'ମିଲ୍ ଆଣ୍ଡ୍ ବେନଥାମ୍ ଅନ୍ କୋଲ୍‌ରିଜ୍' ଉଲ୍ଲେଖଯୋଗ୍ୟ ।

ଆଧୁନିକ ସମାଲୋଚକଗଣ ସେକ୍ସପିଅର୍‌ଙ୍କ ନାଟକର ସମାଲୋଚନା ପ୍ରତି ବିଶେଷ ଆଗ୍ରହ ଦେଖାଇଛନ୍ତି । ନାଟକର ବିଭିନ୍ନ ପାଠ, କଥାବସ୍ତୁର ମୂଳସୂତ୍ର, ସମସାମ-ୟିକ ଯୁଗଚେତନା ଓ ରଙ୍ଗମଞ୍ଚ ଉପରେ ସେମାନଙ୍କ ଦୃଷ୍ଟି ନିବଦ୍ଧ । କ୍ୟାରୋଲିନ୍ ସ୍ପାର୍ଜିନ୍ ସେକ୍ସପିଅର୍‌ଙ୍କ ଚିତ୍ରକଳ୍ପ ଅଧ୍ୟୟନ କରିଥିବାବେଳେ ଜି. ଉଇଲ୍‌ସନ୍ ନାଇଟ୍ ତାଙ୍କ ପ୍ରତୀକ ଓ ଚିତ୍ରକଳ୍ପର ମନୋଜ୍ଞ ଆଲୋଚନା କରିଛନ୍ତି ।

ବିଂଶ ଶତାବ୍ଦୀର ଜୀବନୀ ଲେଖକଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଛନ୍ତି ଲିଟନ୍ ଷ୍ଟ୍ରାଚି (Giles Lytton Strachey : ୧୮୮୦-୧୯୩୨) । ଏମିନେଣ୍ଟ ଭିକ୍ଟୋରିଆନ୍‌ସ୍ (୧୯୧୮), କୁଇନ୍ ଭିକ୍ଟୋରିଆ (୧୯୨୧) ଓ ଏଲିଜାବେଥ୍ ଅଣ୍ଡ୍ ଏସେକ୍ସ୍ (୧୯୨୮) ତାଙ୍କର ତିନୋଟି ମହାନ୍ ଆଲେଖ୍ୟ । ରାଜା, ରାଣୀ ବା ବିଶିଷ୍ଟ ବ୍ୟକ୍ତିଙ୍କର ଚରିତ୍ରଚିତ୍ରଣବେଳେ ସେ ସେମାନଙ୍କୁ ଅତିମାନବ ବା ଦେବପ୍ରତିମ କରି ଗଢ଼ି ତୋଳିବା ପରିବର୍ତ୍ତେ ରକ୍ତମାଂସର ମଣିଷ ଭାବରେ ଉପସ୍ଥାପିତ କରିଥାନ୍ତି ଏବଂ ଶ୍ଳେଷାତ୍ମକ (ironical) ଭଙ୍ଗୀରେ ସେମାନଙ୍କ ଦୋଷତ୍ରୁଟି ମଧ୍ୟ ଦର୍ଶାଇଥାନ୍ତି ।

ବୈଜ୍ଞାନିକ ତଥା ଦାର୍ଶନିକ ପ୍ରବନ୍ଧ ରଚନା କ୍ଷେତ୍ରରେ ଏଚ୍. ଜି. ୱେଲ୍‌ସ୍, ବାର୍ଟ୍ରାଣ୍ଡ୍ ରସେଲ୍, ଏ. ଏନ୍. ହ୍ୱାଇଟ୍ ହେଡ୍, ଜେମ୍ସ୍ ଜିନ୍‌ସ୍, ଜୁଲିୟାନ୍ ହାକ୍ସ୍‌ଲି ଓ ଜେ. ବି. ଏସ୍. ହାଲ୍‌ଡେନ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । □□□

# ସାଧାରଣ ନାମ ସୂଚୀ

## ଗ



## ଚ



## ଜ



## ଟ



## ଡ